# ତିରୁକ୍କୁରଳ

ଅନୁବାଦକ : ଶ୍ରୀ ସୌରୀନ୍ଦ୍ର ବାରିକ



ଓଡ଼ିଶା ସାହିତ୍ୟ ଏକାଡେମୀ

Digitized by srujanika@gmail.com

# ବିଚାର

ଅନୁବାଦକ : ଶ୍ରୀ ସୌରୀନ୍ଦ୍ର ବାରିକ

ପ୍ରକାଶକ : ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର-୭୫୧୦୧୪

ମୁଦ୍ରଣ : କିରଣ ପ୍ରକାଶିନୀ
ମହତାବରୋଡ଼, କଟକ-୧୨

ପ୍ରଥମ ପ୍ରକାଶ : ୧୯୮୯

ମୂଲ୍ୟ : ଟ ୪୨ (ବୟାଳିଶି ଟଙ୍କା ମାତ୍ର)

# BICHAR

Translated by :
**Sourindra Barik**

Published by :
**Orissa Sahitya Akademi**
Bhubaneswar—751014

Printed at :
**Kiran Prakashini**
Mahatab Road, Cuttack—12

First Edition : 1989

**Price : Rs. 42**

(Rupees Forty two only)

Digitized by srujanika@gmail.com

# ଅଗ୍ରଲେଖ

ବିଭିନ୍ନ ଭାରତୀୟ ଓ ବୈଦେଶିକ ଭାଷାରେ ରଚିତ ଉଚ୍ଚାଙ୍ଗ ସାହିତ୍ୟର ଓଡ଼ିଆ ଅନୁବାଦ ପ୍ରକାଶନ, ଓଡ଼ିଶା ସାହିତ୍ୟ ଏକାଡେମୀର ପ୍ରକାଶନ ଯୋଜନାର ଏକ ପ୍ରମୁଖ କାର୍ଯ୍ୟକ୍ରମ ଭାବେ ଗୃହୀତ । ଭାରତୀୟ ତଥା ବିଶ୍ୱସାହିତ୍ୟର ଅମୂଲ୍ୟ ଭାବ-ସମ୍ପଦ ସହିତ ଓଡ଼ିଆ ପାଠକ-ପାଠିକାମାନଙ୍କୁ ପରିଚିତ କରାଇବାର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ନେଇ ଓଡ଼ିଆ ଭାଷାନୁବାଦ କାର୍ଯ୍ୟକ୍ରମର ପ୍ରଚଳନ କରା-ଯାଇଛି । ଏତଦ୍ୱାରା ସେମାନଙ୍କର ବୌଦ୍ଧିକ ବିକାଶ ସାଧିତ ହେବା ସଙ୍ଗେ ସଙ୍ଗେ ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ଯେ ନିଶ୍ଚିତ ରୂପେ ସାଧିତ ହୋଇପାରୁଛି, ଏହା କହିବା ବାହୁଲ୍ୟ ମାତ୍ର ।

ଏହି କାର୍ଯ୍ୟକ୍ରମ ଅନୁସାରେ ବିଶ୍ୱବିଖ୍ୟାତ ଜର୍ମାନ ଔପନ୍ୟାସିକ ଫ୍ରାଁ କାଫ୍‌କାଙ୍କର "The Castle"ର ଓଡ଼ିଆ ରୂପାନ୍ତର 'ଦୁର୍ଗ' ନାମରେ ଏହି ଏକାଡେମୀ ଦ୍ୱାରା '୯୮' ମସିହାରେ ପ୍ରକାଶିତ ହୋଇଥିଲା । କାଫ୍‌କାଙ୍କର ସମସ୍ତ ରଚନାବଳୀ ପ୍ରତୀକ-ଧର୍ମୀ ଏବଂ ସେଗୁଡ଼ିକରେ ଯୁଦ୍ଧବିକ୍ଷୁବ୍ଧ ଓ ଏକ-ଛତ୍ରବାଦ ଶାସନରେ ଅତ୍ୟାଚାରିତ ଓ ଜର୍ଜରିତ ୟୁରୋପର ଲୋମହର୍ଷକୋଣ ତଥା କରୁଣ ଚିତ୍ର ଜୀବନ୍ତ ଭାବେ ପ୍ରତିଫଳିତ । ସେହି ପ୍ରଥିତଯଶା ଲେଖକଙ୍କର ଅନ୍ୟତମ ସାର୍ଥକ ସୃଷ୍ଟି, 'The Trial'ର ଓଡ଼ିଆ ରୂପାନ୍ତର 'ବିଚାର' ଶୀର୍ଷକରେ ଏବେ ପ୍ରକାଶିତ ହେଲା । ପୂର୍ବ ଉପନ୍ୟାସ ପରି ଏହା ମଧ୍ୟ ଅସମ୍ପୂର୍ଣ୍ଣ ଏବଂ ଲେଖକଙ୍କର ମୃତ୍ୟୁ ପରେ ପ୍ରକାଶିତ; କିନ୍ତୁ ଭାବ-ସମ୍ପଦରେ ଏହା ଅସମ୍ପୂର୍ଣ୍ଣ ନୁହେଁ ।

Digitized by srujanika@gmail.com

ଅପାର କ୍ଲାନ୍ତତା ସତ୍ତ୍ୱେ ସୁପ୍ରତିଷ୍ଠିତ ସାହିତ୍ୟିକ ଶ୍ରୀ ସୌରୀନ୍ଦ୍ର ବାରିକ ଉପନ୍ୟାସଟିର ଓଡ଼ିଆ ଅନୁବାଦ ସୁଷ୍ଠୁରୂପେ ସଂପନ୍ନ କରିଥିବାରୁ ପୁସ୍ତକର ପ୍ରକାଶନ ଅବସରରେ ମୁଁ ତାଙ୍କୁ ଧନ୍ୟବାଦ ଜଣାଉଛି । ସୁଧୀ ପାଠକ-ପାଠିକା-ମାନେ ଉପନ୍ୟାସଟିର ଭାବ-ସଂପଦ ସହିତ ପରିଚିତ ହେବା ସଙ୍ଗେ ସଙ୍ଗେ ବିଶେଷ ଭାବରେ ଉପକୃତ ହେବେ ବୋଲି ମୁଁ ଆଶା କରୁଛି ।

ଦେବସ୍ନାନ ପୂର୍ଣ୍ଣିମା
ତା ୧୯-୬·୮୯

ସୁରେନ୍ଦ୍ର ନାଥ ଶତପଥୀ
ସଂପାଦକ
ଓଡ଼ିଶା ସାହିତ୍ୟ ଏକାଡେମୀ



Digitized by srujanika@gmail.com

# ସୂଚୀ



Digitized by srujanika@gmail.com



Digitized by srujanika@gmail.com

## ପ୍ରଥମ ପରିଚ୍ଛେଦ

# ଗିରଫଦାରୀ

ନିଶ୍ଚୟ କେହି ଜଣେ ଜୋସେଫ୍ କେ' ନାମରେ ମିଛ କହୁଥିବ, କାରଣ କୌଣସି ଗର୍ହିତ କାର୍ଯ୍ୟ ନକରି ସୁଦ୍ଧା ଦିନେ ସକାଳଟାରେ ସେ ଗିରଫ୍ ହେଲା । ସବୁଦିନେ ସକାଳ ଆଠଟାରେ ତା ଘରବାଲିର ପୂଜାରୀ ତା ପାଇଁ ସକାଳ ଜଳଖିଆ ଆଣି ଦେଇଯାଏ । ସେଥର ସେ ଆଉ ଆସିଲା ନାହିଁ । ଏପରି ପୂର୍ବେ କେବେ ହୋଇନଥିଲା । କେ' ଆଉ ଟିକିଏ ବେଳ ଅପେକ୍ଷା କଲା । ସେ ତକିଆ ଉପରୁ ଆଉ ପାଖରୁ ଅନାଇଥିବା ବୁଢ଼ୀକୁ ଚାହିଁଥାଏ । ବୁଢ଼ୀ ଏପରି କୁତୂହଳୀ ହୋଇ ତାକୁ ନିକୃଟି ଦେଖିଲା ଭଳି ଲାଗୁଥାଏ ଯାହା ସେ ବୁଢ଼ୀ ପକ୍ଷରେ ବି ଅସ୍ୱାଭାବିକ । ସେଇଠୁ ତାକୁ ଭୋକ କଲା ଓ ବିରକ୍ତ ଲାଗିଲା ଓ ବିରକ୍ତିରେ ସେ ଘଣ୍ଟି ବଜାଇଲା । ସଙ୍ଗେ ସଙ୍ଗେ କବାଟରେ ଠକ୍ ଠକ୍ ଶବ୍ଦ ହେଲା ଓ ଏଭଳି ଜଣେ ଲୋକ ଘର ଭିତରକୁ ପଶି ଆସିଲା ଯାହାକୁ ସେ ପୂର୍ବେ କେବେ ସେ ଘରେ ଦେଖି ନଥିଲା । ସେ ଜଣେ ପତଳା ଲୋକ କିନ୍ତୁ ବେଶ୍ ଦୃଢ଼ଳ ଦୃଢ଼ଳ । ସେ ତା ଦେହକୁ ଜାକି ହେଉଥିବା ଗୋଟିଏ କଳା ସୁଟ୍ ପିନ୍ଧିଥାଏ । ସେ ସୁଟ୍‌ରେ ନାନା ପ୍ରକାରର ପ୍ଲିଟ୍, ବକ୍‌ଲେସ୍, ବୋତାମ ଲାଗିଥାଏ, ଗୋଟିଏ ବେଲ୍‌ଟ ବି ଲାଗିଥାଏ । ଯେମିତିକି ଜଣେ ପରିବ୍ରାଜକର ଯାହା ଯାହା ଲୋଡ଼ା ସେଥିରେ ସେଥିପାଇଁ ସବୁ ବ୍ୟବସ୍ଥା ଥାଏ । ସେ ପୋଷାକ ଯୋଗୁଁ ଲୋକଟି ବେଶ୍ କାମିକା ପରି ଜଣା ଯାଉଥାଏ । ଯଦିଓ ଏପରି ପୋଷାକ ତାର କେଉଁ କାମରେ ଲାଗୁନଥାଏ । କେ' ବିଛଣା ଉପରୁ ନିଜକୁ ଅଧା ଟେକି ଦେଇ ପଚାରିଲା—"ତୁମେ କିଏ ହୋ ?" କିନ୍ତୁ ଲୋକଟା ତା ପ୍ରଶ୍ନକୁ ପୁରା ବେଖାତିର କଲା, ଯତେ ଯେମିତି ତାର ସେଠି ଆବିର୍ଭାବ ହେବା ଯୋଗୁଁ କୌଣସି କୈଫିୟତ୍ ଦେବା ଦରକାର ନଥିଲା । ଖାଲି ପଚାରିଲା—"ତୁମେ ଘଣ୍ଟି ବଜାଇଲ ? ଆନ୍ନା ମୋ ପାଇଁ ସକାଳ ଜଳଖିଆ ଆଣିଦେବା କଥା ।" ଏତିକି କହି କେ' ନୀରବରେ ସେ ଲୋକଟିକୁ ଖୁବ୍ ତୀକ୍ଷ୍ଣ

Digitized by srujanika@gmail.com

ଦୃଷ୍ଟିରେ ଅନାଇ ରହିଥାଏ । ସେ ଜାଣିବାକୁ ଚେଷ୍ଟା କରୁଥାଏ ଲୋକଟା କିଏ । କିନ୍ତୁ ଆଉ ବେଶୀ ବେଳଯାଏ ତାକୁ ଏମିତି ନିରେଖି ଦେଖିବାକୁ ପ୍ରଶ୍ରୟ ନ ଦେଇ ଲୋକଟା ଦ୍ୱାର ମୁହଁ ଆଡ଼କୁ ବୁଲିଯାଇ କବାଟକୁ ଟିକିଏ ଖୋଲି ଦେଲା ଓ କବାଟ ସେପାଖେ କିଏ ଜଣେ ଠିଆ ହୋଇଥିବା ଲୋକକୁ କହିଲା—'ଆନ୍ନା ତା ପାଖକୁ ସକାଳ ଜଳଖିଆ ଆଣିଦେବା କଥା ।'

ଉତ୍ତରରେ ଆର ବଖରାରୁ ହୋ ହୋ ହସ ଟିକିଏ ଶୁଭିଲା । ଶବ୍ଦରୁ ଜାଣି ହେଉନାହିଁ ସେ ହସ ଜଣେ ଲୋକର କି ଏକାଠି ବହୁ ଲୋକଙ୍କର । ସେ ଅଜଣା ଲୋକଟା ପୂର୍ବରୁ ଯେତିକ ଜାଣିଥିଲା ସେ ହସରୁ ତହିଁରୁ ଅଧିକ ଜାଣିପାରି ଥାଆନ୍ତା ସତ; ତଥାପି ସେ ଗୋଟାଏ ନୂଆ ଖବର ଜଣାଇ ଦେଲାପରି କେ'କୁ କହିଲା— ''ସେଇଟା କରି ହେବ ନାହିଁ ।' କେ' ବିଛଣା ଉପରୁ ଡେ଼ଇଁ ପଡ଼ିଲା ଓ ଶୀଘ୍ର ତା' ପାଇଜାମାକୁ ଗଳେଇ ପକାଇ ପାଟିକଲା—''ବଢ଼ିଆ ଖବରଟାଏ ଏକା ! ଆର ଘରେ କିଏ ସବୁ ଅଛନ୍ତି ମୁଁ ନିଶ୍ଚୟ ଦେଖିବି ଆଉ ମୋ ପ୍ରତି କାହିଁକି ଏପରି ବ୍ୟବହାର ହେଉଛି ସେଥିପାଇଁ ଫ୍ରାଉଗ୍ରୁବାକ୍ ମତେ କି କୈଫିୟତ୍ ଦେବ ମୁଁ ଶୁଣିବି ।'' କିନ୍ତୁ ସଙ୍ଗେ ସଙ୍ଗେ ତାର ମନେ ପଡ଼ିଗଲା ଏକଥା ସେ ଏଡ଼େ ପାଟିରେ କହିବା ଉଚିତ୍ ହୋଇ ନାହିଁ । ଏପରି କହି ସେ ଏକପ୍ରକାର ସ୍ୱୀକାର କରିଗଲା ଯେ ତା' ବ୍ୟକ୍ତିଗତ ଘଟଣାରେ ମୁଣ୍ଡ ପୂରେଇବାକୁ ସେ ଅଜଣା ଲୋକଟାର ଗୋଟାଏ ଅଧିକାର ଅଛି । ତଥାପି ସେହି ମୁହୂର୍ତ୍ତରେ ସେ କଥା ତାକୁ ଗୁରୁତ୍ୱପୂର୍ଣ୍ଣ ବୋଲି ଲାଗିଲା ନାହିଁ ।

କିନ୍ତୁ ସେ ଲୋକଟା ତ ତା' କଥାକୁ ସେମିତିଆ କିଛି ଅର୍ଥରେ ନେଲା, କାରଣ ସେ ପଚାରିଲା—''ତୁମେ ଏଇଠି ରହିଲେ ଭଲ ହୁଅନ୍ତା ନାହିଁ ?''

''ଯେ ପର୍ଯ୍ୟନ୍ତ ତୁମେ ମତେ ତୁମର ପରିଚୟ ନଦେଇଛ ସେପର୍ଯ୍ୟନ୍ତ ମୁଁ ଏଠାରେ ରହିବିନାହିଁ କି ତୁମକୁ କିଛି କହିବାକୁ ଦେବି ନାହିଁ ।''—କେ' କହିଲା ।

''ମୁଁ ତୁମ ଭଲ ପାଇଁ କହୁଛି ।''—ସେ ଅଜଣା ଲୋକ ଜଣକ କହିଲା ଓ ତା ମନକୁମନ କବାଟକୁ ଖୋଲିଦେଲା ।

କେ' ଆର କୋଠରୀରେ ପଶିଲା, ଯେତେ ଧୀରେ ଧୀରେ ତା' ଭିତରକୁ ପଶିବ ବୋଲି ଭାବିଥିଲା ତା'ଠାରୁ ଅଧିକ ଧୀରେ ଧୀରେ ଗଲା । ପ୍ରଥମେ ତାକୁ ଜଣାଗଲା ଯେ ଗତ ସନ୍ଧ୍ୟାରେ ସେ କୋଠରୀ ଭିତରେ ସବୁ ଯେମିତି ଦିଶୁଥିଲା ପ୍ରାୟ ସେମିତି ଦିଶୁଛି । ସେଇଟା ଥିଲା ଫ୍ରାଉଗ୍ରୁବାକ୍ଙ୍କ ରହିବା ବଖରା । ବଖରାଟି କମ୍ବଳ, ଚିନାମାଟି ପାତ୍ର ଆଉ ଫଟୋ ଆଦିରେ ଖୁନ୍ଦି ହୋଇଥିଲା ।

Digitized by srujanika@gmail.com

କିନ୍ତୁ ତାହା ଭିତରେ ଯେତିକି ଫାଙ୍କା ଜାଗା ଛଡ଼ା ଯାଇଥାଏ ସେତେବେଳେ ଯେ ଢଙ୍ଗିରୁ ଟିକିଏ ବେଶୀ ଜାଗା କରିଯାଇଥିଲା ସେଇଟା ପ୍ରଥମେ ଜଣେ ଲକ୍ଷ୍ୟ କରିପାରିବ ନାହିଁ । ବିଶେଷତଃ ସେତେବେଳେ ସେ କୋଠରୀରେ ପ୍ରଧାନ ପରିବର୍ତ୍ତନ ଥିଲା ସେଠି ଜଣେ ପୁରୁଷ ଲୋକର ଉପସ୍ଥିତି । ଲୋକଟା ଖୋଲା ଝରକା ପାଖରେ ବସି ବହିଟିଏ ପଢ଼ୁଥାଏ । କେ’ ଆସିବାରୁ ସେ ବହିରୁ ମୁହଁ ଟେକି ତାକୁ ଅନାଇ ରହିଲା ଓ କହିଲା – “ତୁମ ନିଜ କୋଠରୀ ଭିତରେ ସିନା ରହିଥାନ୍ତ । ଫ୍ରାନ୍‌ଜ କଅଣ ତୁମକୁ ସେକଥା କହିନାହିଁ ?”

“ହଁ, ହଁ, କିନ୍ତୁ ତୁମେ ଏଠି କଅଣ କରୁଛ ?” ନୂଆକରି ଦେଖାଯାଉଥିବା ଲୋକ ଆଡ଼ୁ ଦୃଷ୍ଟି ବୁଲାଇ ନେଇ ଫ୍ରାନ୍‌ଜ୍ ବୋଲି କୁହାଯାଉଥିବା ଲୋକଟାକୁ କେ’ ଚାହିଁଲା ଓ ପଚାରିଲା । ଫ୍ରାନ୍‌ଜ୍ ସେତେବେଳେ ବି ଦ୍ୱାର ମୁହଁ ପାଖରେ ଛିଡ଼ା ହୋଇଥାଏ । ପୁଣି କେ’ ପଛକୁ ଚାହିଁଲା । ଖୋଲା ଝରକାବାଟେ କେ’ ଆଉଥରେ ସେ ବୁଢ଼ୀକୁ ଦେଖିଲା । ବୁଢ଼ାଦିନେ ଲୋକଙ୍କର ଯେମିତି ଗୋଟାଏ ପ୍ରକାର କୁତୂହଳ ହୁଏ ବୁଢ଼ୀର ପ୍ରକୃତିରେ ସେଇଆ ହୋଇଥିଲା । ଝରକା ବାଟେ ଯେତେ ଯାହା ଦେଖିପାରିବ ସବୁ ସେ ଦେଖି ପକାଇବ ବୋଲି ମନକରି ଠିକ୍ ଆର ପାଖ ଝରକା ପାଖକୁ ଚାଲିଯାଇଥିଲା ।

“ମୁଁ ଯାଏ ଫ୍ରାଉଗ୍ରୁବାକ୍‌କୁ ଖୋଜି ଆଣେ ।” କେ’ କହିଲା । ସତେ ଯେମିତି ସେ ଦି ଜଣ ଲୋକ ତାକୁ ଧରି ପକାଇଛନ୍ତି ଓ ତାଙ୍କଠୁ ନିଜକୁ ବଳପୂର୍ବକ ଓଟାରି ନେଇ ସେ ପଦାକୁ ବାହାରିଛି ସେହିପରି ବ୍ୟବହାର ଦେଖାଇଲା ଅଥଚ ସେ ଦିହେଁ ତା ପାଖରୁ ଖଣ୍ଡେ ଦୂରରେ ଛିଡ଼ାହୋଇଥିଲେ ।

“ନା” ଝରକା ପାଖରେ ଥିବା ଲୋକଟା ପଢ଼ୁଥିବା ବହିଟିକୁ ଟେବୁଲ ଉପରେ କଚାଡ଼ି ଦେଇ ଠିଆ ହୋଇ ପଡ଼ି କହିଲା – “ତୁମେ ବାହାରକୁ ଯାଇ ପାରିବ ନାହିଁ । ତୁମକୁ ଗିରଫ୍ କରାଗଲା ।”

“ସେମିତି ତ ଜଣାଯାଉଛି । କିନ୍ତୁ କଣ ପାଇଁ ?” କେ’ ପଚାରିଲା ।

“ତୁମକୁ ସେ କଥା ଜଣାଇବାକୁ ଆମର କ୍ଷମତା ନାହିଁ, ତୁମ କୋଠରୀକୁ ଯାଇ ସେଠି ଅପେକ୍ଷା କରି ରହିଥା । ତୁମ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇଛି ଓ ଯଥା ସମୟରେ ତୁମକୁ ସବୁ ଜଣାଇ ଦିଆଯିବ । ତୁମ ସଙ୍ଗେ ଏମିତି ଖୋଲଖୋଲି ଭାବରେ କଥା କହିବା ଦ୍ୱାରା ମୁଁ ମୋର କ୍ଷମତାର ବାହାରକୁ ଚାଲିଯାଉଛି । କିନ୍ତୁ ମୁଁ ଆଶା କରୁଛି ଫ୍ରାନ୍‌ଜ ବ୍ୟତୀତ ଆଉ କେହି ମୋ’ କଥା ଶୁଣୁନାହାନ୍ତି । ଫ୍ରାନ୍‌ଜ୍ ନିଜେ ତ ତୁମ ସହ ଖୁବ୍ ସହଜ ଭାବେ ମିଶିଛି ।

Digitized by srujanika@gmail.com

ଫଳରେ ସେ ନିଜେଡ଼ ନିର୍ଦ୍ଦେଶକୁ ନିମାନି ସୀମା ଟପିଛି । ତୁମ କପାଳ ଟାଣଯୋଗୁ ତୁମେ ଯେମିତ ଓ୍ୱାଡର ପାଇଲ ସେମିତ ଯଦ ତୁମ କପାଳ ସବୁବେଳେ ଟାଣ ହୁଏ ତେବେ ତୁମ ଶେଷ ପଶଣତ ବୟସ୍ସରେ ତୁମେ ନିଶ୍ଚିନ୍ତ ରହ୍ୱପାର ।''

କେ' ଭାବଲା ସେ ଟିକିଏ ବସିବ । ମାତ୍ର ସେ ଦେଖିଲା ଯେ ଝରକା ପାଖରେ ପଡ଼ିଥିବା ଚଉକିଟି ବ୍ୟତୀତ ସେ କୋଠରୀରେ ଆଦୌ ଚଉକି ନାହିଁ । ଅନ୍ୟ ଲୋକଟି ସହ୍ୱତ କେ' ଅଡ଼କୁ ଆଗେଇ ଆସୁ ଆସୁ ଫ୍ରାନ୍‌ଜ କହିଲା—''ଅଳ୍ପ ସମୟ୍ସ ଭିତରେ ତୁମେ ଜାଣିପାରିବ ଯେ ଆମେ ଯାହ୍ୱା କହୁଛୁ ସତ କହୁଛୁ ।'' ଅନ୍ୟ ଲୋକଟି କେ' ଠାରୁ ଆହ୍ୱରି ବହୁତ ଉଚ୍ଚ, ସେ ତା' କାନ୍ଧ ଉପରେ ଥାପୁ ଡେଇବାକୁ ଲଗିଲା । ଉଭୟ୍ସେ ତାର ରାତି ପିନ୍ଧା ସାର୍ଟକୁ ପରୀକ୍ଷା କରିବାକୁ ଲାଗିଲେ ଏବଂ କହ୍ୱଲେ ଯେ ବର୍ତ୍ତମାନ ତାକୁ ଆଉ ଟିକିଏ କମ୍ ଫେସନର ସାର୍ଟ ପିନ୍ଧିବାକୁ ପଡ଼ିବ । ସେମାନେ ବର୍ତ୍ତମାନ ତାର ଏହ୍ୱ ସାର୍ଟ ଏବଂ ଅନ୍ୟସବୁ ଅନ୍ତର୍ବାସର ମାର୍ଫତ ନେବେ ଓ ପରେ ଯଦ ତାର କିସ୍ସର ଭଲରେ ଭଲରେ ସରେ ତେବେ ତାକୁ ସେ ସବୁ ଫେରାଇ ଦେବେ ।

ସେମାନେ କହ୍ୱଲେ—''ଉପରେ ନଦେଇ ଏସବୁ ଆମକୁ ଦେଇଦେବା ବରଂ ତୁମ ପାଇଁ ଭଲ ହେବ । କାରଣ ଉପରେ ବହୁତ ଚୋରି ହୁଏ ଏବଂ କିଛିଦିନ ପରେ ସେମାନେ ସବୁ ବିକ ଦଅନ୍ତି । ତୁମ ମକଦ୍ଦମା ସେତେବେଳକୁ ଛିଣ୍ଡି ଥାଉ କ ନଛିଣ୍ଡିଥାଉ ତହିଁରେ ତାଙ୍କର କିଛି ଯାଏ ଆସେ ନାହିଁ । ପୁଣି ତୁମ କିସ୍ସର କେତେ ଦିନ ଧରି ଚାଲିବ ସେ କଥା ବି ଜଣାନାହିଁ ବିଶେଷତଃ ଆଜିକାଲି । ତୁମେ ଉପରୁ ତୁମ ଜିନିଷ ବାବଦରେ ଟଙ୍କା ପାଇବ ଯେ, କିନ୍ତୁ ଯେଉଁ ଦାମ୍ ପାଇବ ତା' କିଛି ନୁହେଁ । ତାହ୍ୱା ଅତି ତୁଚ୍ଛ । କାରଣ ଯିଏ ବେଶୀ ଲାଞ୍ଚ ଦେଲା ସେମାନେ ତାକୁ ଜିନିଷ ବିକନ୍ତି, ଯିଏ ବେଶୀ ମୂଲ୍ୟ ଦେବ ତାକୁ ନୁହେଁ । ଏହ୍ୱା ସମସ୍ତେ ଜାଣନ୍ତି ଯେ ବର୍ଷ ଯେତିକ ଯାଉଥିବ ଟଙ୍କା ଯେତିକ ହାତକୁ ହାତ ହେଉଥିବ, ତାର ମୂଲ୍ୟ ସେତିକ କମି କମି ଆସୁଥିବ ।''

ସେ ଉପଦେଶକୁ କେ' ଆଦୌ ମନ ଦେଲାନାହିଁ । ତା ପାଖରେ ଯାହ୍ୱା ଜିନିଷ ଥିଲା ତାକୁ ବିକିବାକୁ ତାର ନିଜର ଯାହ୍ୱା ଅଧିକାର ତାକୁ ସେ ସେତେ ମୂଲ୍ୟବାନ୍ ବୋଲି ଭାବିଲା ନାହିଁ । ସେତେବେଳେ ଯେଉଁ ଅବସ୍ଥାରେ ସେ ପଡ଼ିଲାଣି ସେହ୍ୱ ଅବସ୍ଥାକୁ ପରିଷ୍କାର କରି ବୁଝିବା ତାକୁ ଆହ୍ୱରି ବେଶି ଗୁରୁତ୍ୱପୂର୍ଣ୍ଣ ଲାଗିଲା । ତା' ପାଖରେ ସେଠି ସେ ଲୋକ ଦିଟା ଥିବାରୁ ସେ କିଛି ଚିନ୍ତା ମଧ୍ଯ କରିପାରିଲା ନାହିଁ ।

Digitized by srujanika@gmail.com

ବିଶାଳ ଓ୍ୱାର୍ଡ଼ରର ପେଟଟା ତା ଦେହରେ ପ୍ରାୟ ବନ୍ଧୁତ୍ୱପୂର୍ଣ୍ଣ ଭାବେ ବାରମ୍ବାର ଠେସି ହେଉଥାଏ । କିନ୍ତୁ କେ' ଉପରକୁ ଚାହିଁଲେ ଯେଉଁ ମୁହଁଟାକୁ ଦେଖୁଥିଲି, ମୋଟା ଦେହ ସାଙ୍ଗରେ ତାହା ଟିକିଏ ବି ଖାପୁ ନଥିଲା । ସେ ମୁହଁଟା ଶୁଖିଲା ଓ ହାଡ଼ୁଆ ଥିଲା । ଆଉ ତା ଉପରେ ଗୋଟିଏ ପ୍ରକାଣ୍ଡ ନାକ ଯେଉଁଟା ଗୋଟିଏ ଆଡ଼କୁ ବଙ୍କା, ଯେମିତିକି ସେ ନାକଟା କେ' ମୁଣ୍ଡ ଉପର ଦେଇ ଆର ଓ୍ୱାର୍ଡ଼ର ଜଣକ ସଙ୍ଗେ କ'ଣ ପରାମର୍ଶ କରୁଛି ।

ଏ ଲୋକଗୁଡ଼ିକ କିଏ ହୋଇପାରନ୍ତି ? ସେମାନେ କେଉଁ ବିଷୟରେ କଥା ହେଉଛନ୍ତି ? କେଉଁ କ୍ଷମତାପନ୍ନ କର୍ତ୍ତୃତ୍ୱର (କର୍ତ୍ତାଙ୍କୁ) ସେମାନେ ପ୍ରତିନିଧିତ୍ୱ କରୁଛନ୍ତି ? ଗୋଟିଏ ଆଇନ୍‌ସମ୍ମତ ସମ୍ବିଧାନ ଥିବା ଦେଶରେ କେ' ବାସକରେ । ସେ ଦେଶରେ ସବୁଆଡ଼େ ଶାନ୍ତି, ଚିରଶାନ୍ତି ବିରାଜିତ । ସବୁପ୍ରକାର ଆଇନ୍ ପ୍ରଚଳିତ । ଏପରି ସ୍ଥଳେ କେବେ ତାକୁ ତା' ଘରେ ଗିରଫ କରିବାକୁ ସାହସ କାହାର ? ସେ ସବୁବେଳେ ସବୁ ଘଟଣାକୁ ସହଜ ଭାବରେ ଗ୍ରହଣ କରିବାକୁ ଇଚ୍ଛା କରିଥାଏ, ମନ୍ଦ ଘଟିଲେ ଯାଇ ମନ୍ଦ ହେଲା ବୋଲି ବିଶ୍ୱାସ କରେ, ଯେତେବେଳେ ଭବିଷ୍ୟତ ଶଙ୍କାପ୍ରଦ ସେତେବେଳେ ବି ଆସନ୍ତାକାଲି ପ୍ରତି ତାର ଚିନ୍ତା ନଥାଏ । କିନ୍ତୁ ଏ କ୍ଷେତ୍ରରେ ସେ ଠିକ୍ ବୋଲି ତାକୁ ଲାଗିଲା ନାହିଁ । ଯାହା କିଛି ଘଟିଗଲା ସେ ସବୁକୁ ଜଣେ ଥଟ୍ଟା ବୋଲି ଗ୍ରହଣ କରିପାରେ । ବ୍ୟାଙ୍କ୍ ସହକର୍ମୀମାନଙ୍କର ତାପ୍ରତି ଏଇଟା ଗୋଟିଏ କ୍ରୂର ପରିହାସ ବୋଲି ଧରି ନିଆଯାଇ ପାରେ କାରଣଟା ଏପରି ହୋଇପାରେ ଯେ ଆଜି ମେ ମାସ ୩୦ ତାରିଖ ତାର ଜନ୍ମଦିନ ବୋଲି ତା ସହକର୍ମୀମାନେ ଏ ପରିହାସଟା ଫାନ୍ଦିଛନ୍ତି । ସେଇଟା ସମ୍ଭବ । ବୋଧହୁଏ ଏଇ ଲୋକଙ୍କ ମୁହଁରେ ଜାଣି ଜାଣି ତାକୁ ହସିବାକୁ ପଡ଼ିଥା'ନ୍ତା ଆଉ ସେମାନେ ତା' ସହିତ ହସିଥାନ୍ତେ । ହୁଏତ ଏ ଲୋକ ଦୁହେଁ କେବଳ ରାସ୍ତାର କୁଲି । ସେଇପରି ବି ଦେଖାଯାଉଛନ୍ତି । ଯାହା ହେଉପଛେ ଫ୍ରାନ୍‌ଜ ବୋଲି ଲୋକଟାକୁ ସେ ପ୍ରଥମ ଥର ଦେଖିବା ମାତ୍ରେ ଠିକ୍ କରି ନେଇଥିଲା ଯେ ସେମାନଙ୍କ ତୁଳନାରେ ତାଠାରେ ଯାହା ଯାହା ଅଧିକା ଗୁଣ ଓ ସୁବିଧା ରହିଥାଇପାରେ ସେସବୁ ଅନ୍ତତଃ ଏ ସମୟରେ ସେ ହରାଇ ବସିବ ନାହିଁ । ଟିକିଏ ବିପଦ ହେଲା ଯେ ପରେ ତାର ବନ୍ଧୁମାନେ କହିପାରନ୍ତି ସେ ଗୋଟିଏ ପରିହାସକୁ ଗ୍ରହଣ କରିପାରିଲା ନାହିଁ । ଯଦିଓ ପୂର୍ବ ଅନୁଭୂତି ସତ୍ତ୍ୱେ ଶିଖି ନପାରିବାଟା ତା ପାଖରେ ସ୍ୱାଭାବିକ; ତଥାପି ଏମିତି ଘଟଣା ତାର ମନେ ଅଛି ଯେଉଁଗୁଡ଼ିକ କି ଆଦୌ ଗୁରୁତ୍ୱପୂର୍ଣ୍ଣ ନୁହେଁ, ଯେତେବେଳେ ତାର ସବୁ ବନ୍ଧୁମାନଙ୍କର ଉପଦେଶ ସତ୍ତ୍ୱେ ପରିଣାମ ପ୍ରତି ଖାତିର ନକରି ସେ ଜାଣିଶୁଣି ବେପରୁଆ ଭାବରେ ବ୍ୟବହାର କରିଛି ଓ ଫଳତଃ

Digitized by srujanika@gmail.com

ତାକୁ ବହୁତ କଷ୍ଟ ସହିବାକୁ ପଡ଼ିଛି । ଆଉ ସେପରି ହେବା ଉଚିତ ନୁହେଁ । ଅନ୍ତତଃ ଏଥରକ ନୁହେଁ । ଯଦି ଏହା ଏକ ପରିହାସ ହୋଇଥାଏ ତେବେ ଏପରି ନାଟକର ଯବନିକା ପଡ଼ିବା ପର୍ଯ୍ୟନ୍ତ ସେ ଏଥିରେ ତାର ଅଭିନୟ କରିଯିବ ।

କିନ୍ତୁ ଏପର୍ଯ୍ୟନ୍ତ ତ ସେ ମୁକ୍ତ । ଓ୍ୱାଡ଼ର ଦୁହିଁଙ୍କ ମଝିରେ ପଶି ଖୁବ୍ ଶୀଘ୍ର ତା କୋଠରୀକୁ ଯାଉ ଯାଉ ସେ କହିଗଲା "ଠିକଏ ବାଟ ଛାଡ଼ନ୍ତୁ ।"

"ଲୋକର ଯା'ହେଉ କିଛି ବୁଦ୍ଧି ଶୁଦ୍ଧି ଅଛି ।" ସେମାନଙ୍କ ଭିତରୁ କେହି ଜଣେ ତା ପଛରେ କହୁଥିବାର ସେ ଶୁଣିପାରିଲା । ଘର ଭିତରକୁ ପଶି ସେ ସାଙ୍ଗେ ସାଙ୍ଗେ ତା'ଡ଼େସ୍କର ଡ୍ରୟାର ସବୁକୁ ଟାଣି ଦେଇ ଖୋଲିଦେଲା । ସବୁ ଠିକ୍ ଥିଲା । କିନ୍ତୁ ଉତ୍ତେଜନାରେ ବ୍ୟସ୍ତ ହୋଇ ସେ ଖୋଜୁଥିବା ତାର ପରିଚୟ ପତ୍ରକୁ ପ୍ରଥମେ ପାଇଲା ନାହିଁ । ଶେଷରେ ସେ ତାର ସାଇକଲ ଲାଇସେନ୍ସ୍‌କୁ ପାଇଲା । ତାକୁଇ ଧରି ସେ ଓ୍ୱାଡ଼ରଙ୍କ ପାଖକୁ ଯିବାକୁ ବସିଥିଲା । ମାତ୍ର ଲାଇସେନ୍ସ୍‌ଟା ଏପରି ବ୍ୟାପାରରେ ଅତି ତୁଚ୍ଛ ଓ ଅଦରକାରୀ ବୋଲି ତାକୁ ଜଣାଗଲା । ପୁଣିଥରେ ସେ ଖୋଜାଖୋଜି ଆରମ୍ଭ କଲା ଏବଂ ଶେଷରେ ସେ ତାର ଜନ୍ମ ସାର୍ଟିଫିକେଟ୍‌ଟି ପାଇଲା । ପାଖ କୋଠରୀକୁ ସେ ଯେତେବେଳେ ଆଉଥରେ ପଶୁଥିଲା, ସେତେବେଳେ ବିପରୀତ ଦିଗ ଦ୍ୱାରଟି ଖୋଲିଗଲା ଏବଂ ଫ୍ରାଉଗ୍ରୁବାକ୍ ଦେଖା ଦେଲା । କେବଳ ମୁହୂର୍ତ୍ତିକ ପାଇଁ ସେ ତାକୁ ଦେଖିଥିଲା । କାରଣ କେ'କୁ ଚିହ୍ନିବା ମାତ୍ରେ ସେ ଅପ୍ରସ୍ତୁତ ହୋଇପଡ଼ିଲା ଏବଂ ତା ଘରେ ଅନଧିକାର ପ୍ରବେଶ କରିଥିବାରୁ କ୍ଷମା ମାଗିନେଇ ଅଦୃଶ୍ୟ ହୋଇଗଲା । ଗଲାବେଳେ ଖୁବ୍ ଯତ୍ନସହକାରେ କବାଟ ବନ୍ଦ କରି ଦେଇଗଲା । "ଭିତରକୁ ଆସନ୍ତୁ"—ଏତିକି କହିବାକୁ ସମୟ ସେ ପାଇଥିଲା । ମାତ୍ର କେବଳ ସେ କାଗଜଟିକୁ ଧରି କୋଠରୀ ମଝିରେ ସେଇ ଦ୍ୱାର ଆଡ଼କୁ ଚାହିଁ କେ' ଠିଆହୋଇ ରହିଲା । ମାତ୍ର ସେ ଦ୍ୱାର ଆଉ ଫିଟିଲା ବି ନାହିଁ । ଖୋଲା ଝରକା ପାଖରେ ପଡ଼ିଥିବା ଟେବୁଲ ନିକଟରେ ବସିଥିବା ଓ୍ୱାଡରମାନଙ୍କ ଚିତ୍କାରରେ ତାର ଧ୍ୟାନ ଭାଙ୍ଗିଲା । ସେ ଦେଖିଲା ତା ପାଇଁ ଦିଆ ହୋଇଥିବା ପ୍ରାତଃଭୋଜନ ସେମାନେ ଖାଇବାରେ ଲାଗିଛନ୍ତି ।

"ସେ ଭଦ୍ରମହିଳା କାହିଁକି ଭିତରକୁ ଆସିଲେ ନାହିଁ ?" ସେ ପଚାରିଲା ।

"ଯେହେତୁ ତୁମକୁ ଗିରଫ କରାଯାଇଛି ତେଣୁ ତାଙ୍କୁ ଭିତରକୁ ଛଡ଼ାଯାଇ ନାହିଁ ।" ଡେଙ୍ଗା ଓ୍ୱାଡ଼ରଟି କହିଲା । "କିନ୍ତୁ ମୁଁ କାହିଁକି ଗିରଫ ହେବି,

Digitized by srujanika@gmail.com

ବିଶେଷତଃ ଏପରି ସ୍ୱାସ୍ଥ୍ୟାସ୍ପଦ ସ୍ଥିତିରେ ?" "ଅର୍ଥାତ୍ ଦାସେ ଆସିଲେ ଆଉଥରେ ମୂଳରୁ ଗାଅ ? ଆମେ ଏମିତି ପ୍ରଶ୍ନର ଉତ୍ତର ଦେଉନା ।" ଓ୍ୟାଡ଼ର୍ ଲଣ୍ଠଣୀମଖା ଗୋଟି ଖଣ୍ଡେ ମଝିରେ ବୁଡ଼ାଉ ବୁଡ଼ାଉ କହିଲା ।

"କିନ୍ତୁ ତୁମକୁ ଏ ସବୁର ଉତ୍ତର ଦେବାକୁ ପଡ଼ିବ"—କେ' କହିଲା । "ହେଇ ମୋର କାଗଜପତ୍ର, ତୁମେ ତୁମର କାଗଜ ଦେଖାଅ, ବିଶେଷତଃ ମୋତେ ଗିରଫ କରିବାର ପରୱାନା ଦେଖାଅ ।"

"ହେ ଭଗବାନ !" ଓ୍ୟାଡ଼ର୍ କହିଲା । "ତୁମେ ଯଦି ତୁମର ଅବସ୍ଥା ହୃଦୟଙ୍ଗମ କରନ୍ତ, ଯେଉଁ ଦୁଇଜଣ ପୃଥିବୀର ଯେକୌଣସି ଲୋକଙ୍କଠାରୁ ବଳି ତୁମର ଭଲ ଚାହାନ୍ତି ଓ ତୁମର ଅଧିକ ନିକଟତର ହେବାକୁ ଚାହାନ୍ତି, ତାଙ୍କୁ ବିନା କାରଣରେ ବିରକ୍ତ କରିବାକୁ ଜୋର ଦିଅନ୍ତନାହିଁ ।"

"ସେଇଆଡ଼ ! ତୁମେ ଏହାକୁ ବିଶ୍ୱାସ କରିପାର ।" ହାତରେ ଧରିଥିବା କଫି କପ୍‌କୁ ପାଟି ପାଖକୁ ନନେଇ ଫ୍ରାନ୍‌ଜ କହିଲା ଆଉ କେ' ଆଡ଼େ ଚାହିଁ ରହିଲା ଗୋଟିଏ ଦୀର୍ଘ ଅବୋଧ ଅଥଚ ଅର୍ଥପୂର୍ଣ୍ଣ ଚାହାଣିରେ । ନିଜର ଅନିଚ୍ଛା ସତ୍ତ୍ୱେ ଅଜାଣତରେ କେ'ର ଫ୍ରାନ୍‌ଜ ସହିତ ଗୋଟାଏ କଥାକୁହା ଚାହାଣିର ବିନିମୟ ଘଟିଗଲା । ତଥାପି ସେ ତାର କାଗଜପତ୍ରକୁ ଥାପୁଡ଼େଇ ପୁଣି କହିଲା "ହେଇ ମୋର ପରିଚୟ-ପତ୍ର ।"

"ତୁମ କାଗଜରେ ଆମର କି କାମ ?" ଡେଙ୍ଗା ଓ୍ୟାଡର୍ ପାଟିକଲା । ତୁମ ବ୍ୟବହାର ତ ଗୋଟାଏ ସାନପିଲାର ବ୍ୟବହାରଠୁଁ ବଳିଗଲା ! ତୁମେ କ'ଣ ଚାହୁଁ ? ତୁମେ କ'ଣ ଭାବିଛ ଆମମାନଙ୍କ ପରି ଏଇ ଓ୍ୟାଡ଼ର୍‌ମାନଙ୍କ ସଙ୍ଗେ କାଗଜ, ପରୱାନା ଏଇସବୁ ବିଷୟରେ ଝମେଲା ସୃଷ୍ଟିକରି ତୁମର ଏଇ ସୁନ୍ଦର କେଶ୍‌ଟିକୁ ଶୀଘ୍ର ଶେଷକରିଦେଇ ଦେଇପାରିବ ? ଆମେ ଖାଲି ନିଚଯ ଅଧସ୍ତନ କର୍ମଚାରୀ । ଆମେ ସେ ଆଇନ ଫାଇନ୍ କାଗଜପତ୍ରର ଧାର୍-ଧାରୁନା । ଆମେ ଖାଲି ଦିନକୁ ଦଶ ଘଣ୍ଟା ତୁମକୁ ଜଗିବୁ ଆଉ ସେଇଥିପାଇଁ ଆମ ଦରମା ଗଣ୍ଡାକ ପାଇବୁ । ଆମର ଦଉଡ଼ ଏତିକି । କିନ୍ତୁ ଏତକ ବୁଝିବାକୁ ଆମର ମଗଜ ଅଛି ଯେ ଏମିତି ଗୋଟିଏ ଗିରଫଦାରୀ କରିବା ପୂର୍ବରୁ ଗିରଫ କରିବାର କାରଣ କଣ ଏବଂ ଯାହାକୁ ଗିରଫ କରାଯିବ ତା ବିଷୟରେ ଠିକଣଠି ଖବର ଆମ ଉପର ମାଲିକମାନେ ନିଶ୍ଚୟ ଜାଣିଥିବେ । ଏ ବିଷୟରେ କିଛି ଭୁଲ ହେବାର ନାହିଁ । ମୁଁ ଯେତେଦୂର ଜାଣିଛି—ଅବଶ୍ୟ ମୁଁ କେବଳ ତଳତଳିଆ ଅଫିସରଙ୍କୁ ଜାଣିଛି—ଆମ ଅଫିସରମାନେ କେବେ ସାଧାରଣଲୋକଙ୍କ ଭିତରେ ଦୋଷ

Digitized by srujanika@gmail.com

ଖୋଜି ବୁଲନ୍ତି ନାହିଁ । ଯେତେବେଳେ ଆଇନ ନିର୍ଦ୍ଦେଶ ହଏ ସେତେବେଳେ ସେମାନେ ଦୋଷୀମାନଙ୍କ ପାଖକୁ ଟାଣି ହୋଇଯା'ନ୍ତି ଏବଂ ଶେଷରେ ଆମ ଓ୍ୟାର୍ଡରମାନଙ୍କୁ ପଠାନ୍ତି । ଆଇନ୍‌ତ ଏଇଆ । ଏଥିରେ ଭୁଲ୍ କେମିତି ହେବ ।"

"ମୁଁ ତ ଏ ଆଇନ୍ ଜାଣେ ନାହିଁ ।"—କେ' କହିଲି ।

ସେ ଗୃହୁଁ ଥିଲି ସେ ଓ୍ୟାର୍ଡରମାନେ କଣ ଭାବୁଛନ୍ତି ତାହା ସେ ଯେମିତି ଜାଣିପାରନ୍ତା ଓ ଯେମିତି ତାଙ୍କ ଚିନ୍ତାକୁ ତା ନିଜର ସୁବିଧା ପାଇଁ ମୋଡ଼ିଦେଇ ବାଗେଇ ପାରନ୍ତା । କିମ୍ବା ତାହା ନହୋଇ ପାରିଲେ ଚେଷ୍ଟା କରନ୍ତା କେମିତି ତାଙ୍କ ସହିତ ନିଜକୁ ଖାପଖୁଆଇ ପାରନ୍ତା । କିନ୍ତୁ ସେ ଓ୍ୟାର୍ଡ଼ର ଏମିତି ଗଳାରେ କହିଲି ଯେ ସେଥିରେ ଉତ୍ସାହିତ ହେବାର କିଛି ନଥିଲି । ସେ କହିଲି—"ତୁମେ ଫେର୍ ତାଆଗରେ ମୁହାଁମୁହିଁ ହେବ ଯେ ।"

ଫ୍ରାନଜ୍ ମଝିରେ କହିଲା "ଦେଖ ଉଇଲ୍‌ୟମ୍, ସେ ନିଜେ ମାନୁଛି ଯେ ସେ ଆଇନ୍ ଜାଣେନି ପୁଣି କ'ଣ କହୁଛି ନା ସେ ନିର୍ଦ୍ଦୋଷୀ ।"

"ତୁମେ ଠିକ୍ କହୁଛ । କିନ୍ତୁ ତୁମେ ଏମିତି ଲୋକକୁ ଯୁକ୍ତିରେ ଉଚିତ କଥା ବୁଝେଇ ପାରିବ ନାହିଁ । ସେମାନେ କେବେ ଠିକ୍‌ଟାକୁ ମାନିବେ ନାହିଁ ।" ଅନ୍ୟ ଜଣକ ଉତ୍ତର ଦେଲି ।

କେ' ଆଉ କିଛି କହିଲି ନି । ମନେ ମନେ ଭାବିଲି—"ମୁଁ କ'ଣ ଏଇ ନିଃସାର ଭଡ଼ାଟିଆଙ୍କ ଅର୍ଥହୀନ କଥା ଶୁଣି ଶୁଣି ମୁଣ୍ଡ ଗୋଳମାଳ କରୁଥିବ ? ଧନ୍ଦ ହେଉଥିବ ? ସେମାନେ ତ ଜଣେଇ ସାରିଲେଣି ଯେ ସେମାନେ ସେଇଆ । ଯାହାହେଉ, ନିଜେ କିଛି ବୁଝି ନଥିବା କଥା ବିଷୟରେ ସେମାନେ କହୁଛନ୍ତି । କେବଳ ନିପଟ ମୂର୍ଖତାହିଁ ତାଙ୍କୁ ଏମିତି କହିବାକୁ ଆତ୍ମବିଶ୍ୱାସ ଦେଇ ପାରେ । ଏ ଦ'ଟାଙ୍କ ସହ ଘଣ୍ଟା ଘଣ୍ଟା ଅଯଥା କଥା କହିବା ପରିବର୍ତ୍ତେ ମୋ ନିଜ ସ୍ତରର ଲୋକଙ୍କ ସହିତ ସାମାନ୍ୟ ଆଲୋଚନା କଲେ ଘଟଣାଟି ଅଧିକ ପରିଷ୍କାର ହୋଇଯିବ । କୋଠରିର ଫାଙ୍କା ଅଂଶଟିରେ ସେ କିଛିସମୟ ଏପାଖ ସେପାଖ ହୋଇ ଟହଲ ମାରିଲି । ରାସ୍ତାର ଆରକଡ଼ରେ ସେ ସେଇ ସ୍ତ୍ରୀ ଲୋକଟିକୁ ତଥାପି ଦେଖି ପାରୁଥିଲି । ସେ ସ୍ତ୍ରୀ ଲୋକଟି ବର୍ତ୍ତମାନ ତା'ଠାରୁ ଆହୁରି ଅଧିକ ବୟସ୍କ ଗୋଟେ ବୁଢ଼ାକୁ ଝର୍କା ପାଖକୁ ଟାଣି ଆଣିଥିଲି ଓ ତା' ଅଣ୍ଟାରେ ତା' ନିଜ ହାତକୁ ବେଢ଼ାଇ ଧରିଥିଲି । କେ' ଅନୁଭବ କଲି ଏମିତି ସୁଆଙ୍ଗ ତାକୁ ଯେମିତି ହେଲେ ବନ୍ଦ କରିବାକୁ ପଡ଼ିବ । କେ' କହିଲି—"ମୋତେ ତୁମ ଉପର ଅଫିସରଙ୍କ ପାଖକୁ ନେଇ ଚାଲ ।"

Digitized by srujanika@gmail.com

"ଯେତେବେଳେ ସେ ମୋତେ ଆଦେଶ ଦେବେ । ତା' ଆଗରୁ ନୁହେଁ ।" ଉଇଲିଏମ୍ ନାମକ ଓ୍ୟାଡ଼ାର୍‌ଟି ଚିହ୍ନିକି ଉଠିଲା ଓ କହିବାରେ ଲାଗିଲା "ବର୍ତ୍ତମାନ ତୁମକୁ ଉପଦେଶ ଦେଉଛୁ ଯେ ତୁମେ ତୁମ ଘରକୁ ଯାଇ ଚୁପ୍‌ଚାପ୍ ବସ । ତୁମ ବିଷୟରେ କିଛି ନିଷ୍ପତ୍ତି ହେବା ପର୍ଯ୍ୟନ୍ତ ସେଠି ଅପେକ୍ଷା କର । ବାଜେ ଚିନ୍ତାରେ ଅଯଥା ଗୋଳେଇ ଘାଣ୍ଟି ନ ହୋଇ ଚୁପ୍‌ଚାପ୍ ରୁହ । ତୁମ ପାଖରୁ ଅନେକ କଥା ଆଦାୟ କରିବାକୁ ହେବ । ତୁମ ପାଖରୁ ଆମେ ଯେମିତି ବ୍ୟବହାର ଆଶା କରୁ ତୁମେ ସେମିତି ବ୍ୟବହାର କରିନାହଁ । ଆମେ ଯିଏ ହେଉନା କାହିଁକି ତୁମେ ଏତିକି ଭୁଲି ଯାଉଛ ଯେ ତୁମ ପାଖରୁ ଆମେ ଅଧିକ ସ୍ୱାଧୀନ, ଏହା କମ କଥା ନୁହେଁ । ତଥାପି ତୁମେ ଯଦି ଚାହଁ ଆଉ ତୁମର ଯଦି ପଇସା ଥାଏ ତେବେ ଗ୍ରାଣ୍ଡ କଫିହାଉସ୍‌ରୁ ତୁମ ପାଇଁ ସକାଳର ଖାଇବା ଆଣିଦେବା ପାଇଁ ଆମେ ପ୍ରସ୍ତୁତ ।"

ଏପରି ପ୍ରସ୍ତାବର କିଛି ଉତ୍ତର ନ ଦେଇ କେ' ଯେଉଁଠି ଛିଡ଼ା ହୋଇଥିଲା ସେଇଠି ଅଳ୍ପ ସମୟ ଠିଆହୋଇ ରହିଲା । ଯଦି ସେ ଆର କୋଠରୀ କବାଟ ବା ହଲକୁ ପଶିବା ପାଇଁ କବାଟକୁ ଖୋଲନ୍ତା ତେବେ ବୋଧହୁଏ ଏ ଦୁଇଜଣ ତାକୁ ବାଧା ଦେବାକୁ ସାହସ କରନ୍ତେ ନାହିଁ । ବୋଧହୁଏ ତାହାହିଁ କରିଥିଲେ ଏ ସବୁଯାକ ଅଡୁଆ ତୁଟି ଯାଇଥାନ୍ତା, ଏହାର ଶେଷ ପରିଣତି ଘଟିଥାନ୍ତା କିନ୍ତୁ ସେମାନେ ବୋଧେ ତାକୁ ଧରି ଅଟକାଇବେ । ଆଉ ଥରେ ତାଙ୍କ ପାଖରେ ଯଦି ସେ ନଇଁଗଲା ତେବେ ବର୍ତ୍ତମାନ ପୁଦ୍ଧା ଥିବା ତାର ବଡ଼-ପଣିଆ ସବୁ ନଷ୍ଟ ହୋଇଯିବ । ତେଣୁ ଗୋଟିଏ ଆଶୁ ସମାଧାନ ପରିବର୍ତ୍ତେ କାଳକ୍ରମେ ସାଧାରଣ ଭାବେ ଯାହା ନିଶ୍ଚିତରେ ଘଟିବ ସେଇ ନିଶ୍ଚିତତାକୁ ଗ୍ରହଣ କରିବାକୁ କେ' ଠିକ୍ କଲା ଏବଂ ନିଜ କୋଠରୀଭିତରକୁ ଫେରିଗଲା । କେହି ପଦଟିଏ ହେଲେ କଥା କହିନଥିଲେ, କେ' କିମ୍ବା ସେ ଦୁଇଜଣ ଓ୍ୟାଡ଼ାର ।

ସେ ନିଜ ବିଛଣାରେ ଗଡ଼ି ପଡ଼ିଲା ଏବଂ ପାଖ ଆଲିରୁ ପ୍ରାତଃଭୋଜନ ପାଇଁ ରାତିରୁ ରଖିଥିବା ଆପଲଟିକୁ ଆଣିଲା । ବର୍ତ୍ତମାନ ତାହାହିଁ ଏକମାତ୍ର ପ୍ରାତଃ-ଭୋଜନ । ଆପଲଟିକୁ କିଛିଥର କାମୁଡ଼ି ଅନୁଭବ କଲା ଯେ ସେ ଦୁଇ ଓ୍ୟାଡ଼ାରଙ୍କ ଦୟାରୁ ଅପରିଛନିଆ ହୋଟେଲରୁ ଯେଉଁ ଖାଇବା ଆସିଥାଆନ୍ତା ତାଠାରୁ ଏହା ଢେର ଭଲ । ବର୍ତ୍ତମାନ ସେ ନିଜକୁ ପ୍ରସ୍ତୁତ ମନେ କଲା । ନିଜ ଉପରେ କେମିତି ଗୋଟିଏ ବିଶ୍ୱାସ ଆସିଗଲା । ଏହା ଅବଶ୍ୟ ସତ ଯେ ସେ ସକାଳେ ବ୍ୟାଙ୍କ କାମ କରି ପାରିବନି, ତଥାପି ସେଥିରେ କିଛି ଯାଏଆସେ ନାହିଁ । କାରଣ ଏଠାରେ ସେ ଯେଉଁ ଉଚ୍ଚ ଆସନ ଅଧିକାର କରିଛି ତା ତୁଳନାରେ ତାକୁ ସହଜରେ ଅବହେଳା

Digitized by srujanika@gmail.com

କରାଯାଇ ପାରେ । ଏ ଅନୁପସ୍ଥିତି ପାଇଁ ଠିକ୍ କାରଣ ଦର୍ଶାଇବା କଅଣ ତାର ଉଚିତ୍ ହେବ ? ଯଦି ସେ କାରଣ ନ ଦର୍ଶାଏ ତେବେ ପରିଣତି କଅଣ ହେବ ସେ ବିଷୟରେ ସେ ବିଚାର କରିବାକୁ ଲାଗିଲା । ଯଦି ସେମାନେ ତାକୁ ବିଶ୍ୱାସ ନ କରନ୍ତି ? ଏପରି କ୍ଷେତ୍ରରେ ତାକୁ ବିଶ୍ୱାସ ନ କରିବାଟାହିଁ ସାଧାରଣ, ଫ୍ରା ଗ୍ରୁବାକ୍‌ଙ୍କୁ ସେ ସାକ୍ଷୀ କରିପାରେ । ଏମିତିକି ସମ୍ଭବ ସେପାଖର ସେ ଦୁଇଟି ବିଚିତ୍ର ଜୀବଙ୍କୁ ସାକ୍ଷୀ ରୂପେ ଗ୍ରହଣ କରି ପାରେ । ଯେଉଁମାନେ କି ତା କୋଠରୀ ସେପାଖ ସେ ଝରକାଟା ପାଖକୁ ଫେରି ଯିବେଣି ।

କେ' ଆଶ୍ଚର୍ଯ୍ୟ ହୋଇଗଲା ବିଶେଷତଃ ସେ ଦୁଇ ଓ୍ୟାର୍ଡ଼ାରଙ୍କ ଦୃଷ୍ଟିକୋଣକୁ ବିଚାର କରି ଆଶ୍ଚର୍ଯ୍ୟ ହୋଇଗଲା । ସେମାନେ କେମିତି ତାକୁ ତା ନିଜ କୋଠରୀକୁ ଯିବାକୁ ଦେଲେ ଏବଂ ସେଠି ତାକୁ (ଏକୁଟିଆ) ରହିବାକୁ ଦେଲେ ଏକଥା ଭାବି ବିସ୍ମିତ ହେଲା । ସେ କୋଠରୀରେ ନିଜ ପାଇଁ ତାର ତ ଅନେକ ସୁଯୋଗ । ସେ ପୁଣି ନିଜଆଡୁ କଥାଟାକୁ ଭାବିବାକୁ ଲାଗିଲା । ସେ ନିଜକୁ ପଚାରିଲା ଏପରି କରି ପାରିବା ତାର ବା କଅଣ ଯୁକ୍ତିଅଛି । କାରଣ ଦୁଇଜଣ ଓ୍ୟାର୍ଡ଼ାର ଆର କୋଠରୀରେ ଜଗିଛନ୍ତି ଆଉ ତା ପ୍ରାତଃଭୋଜନରେ ବାଧା ଦେଇଥିଲେ । ଏଥିପାଇଁ କଅଣ ସିଏ ତା ଜୀବନ ହରାଇ ଦେବ ? ନିଜ ଜୀବନ ହରାଇଦେବା ଏତେ ଅର୍ଥହୀନ ପାଗଳା କଥା ଯେ ସେ ଇଚ୍ଛା କଲେ ବି ତାହା କରି ପାରିବ ନାହିଁ । କେବଳ ତାର ଅର୍ଥହୀନତା ଯୋଗୁ । ସେ ଦୁଇଜଣଙ୍କ ବୁଦ୍ଧି ଶୁଦ୍ଧିର ଅଭାବ ଏତେ ସ୍ପଷ୍ଟ ହୋଇନଥିଲେ ସେ ଧରି ନେଇଥାଆନ୍ତା ଯେ ସେଇ କାରଣ ଯୋଗୁ ସେମାନେ ବି ତାକୁ କୋଠରୀ ଭିତରେ ଏକଲା ଛାଡ଼ି ଦେବାରେ କୌଣସି ବିପଦ ଦେଖୁନାହାଁନ୍ତି । ତାକୁ ଜଗିବା ପାଇଁ ସେମାନେ ପୂରା ସ୍ୱାଧୀନ । ସେ ତାର କାନ୍ଥଆଲମାରି ପାଖକୁ ଯିବ ଯେଉଁଠି ସେ ବୋତଲେ ସୁନ୍ଦର ବ୍ରାଣ୍ଡି ରଖିଛି । ଗ୍ଲାସ୍‌ରେ ବ୍ରାଣ୍ଡି ଢ଼ାଳି ପ୍ରାତଃଭୋଜନର ଅଭାବ ଦୂର କରିବାକୁ ପିଇଲା । ତାପରେ ମନରେ ବଳ ଆଣିବା ପାଇଁ ଦ୍ୱିତୀୟ ଢ଼ୋକ ପିଇଲା । ପୁଣି ଭବିଷ୍ୟତରେ ଲୁଚି ରହିଥିବା ଅଜଣା ବିପଦ ପାଇଁ ଅଗୁଆ ପଦକ୍ଷେପ ସ୍ୱରୂପ ତୃତୀୟ ଢ଼ୋକଟି ପିଇଲା ।

ଏତିକିବେଳେ ଆର ଘରୁ ଚିତ୍କାରଟାଏ ଶୁଣି ସେ ଏତେ ଜୋର୍‌ରେ ଚମକି ପଡ଼ିଲା ଯେ (ଗିଲାସରେ) ତାର ଦାନ୍ତ ଠକ୍‌ଠକ୍ ବାଜିବାକୁ ଲାଗିଲା ।

"ଇନସ୍‌ପେକ୍ଟର ଡ଼ାକୁଛନ୍ତି ।" ଗମ୍ଭୀର ସ୍ୱରରେ ଡ଼ାକରା ଆସିଲା ।

ଏହି ଡ଼ାକରାର ସ୍ୱରଟାହିଁ ତାକୁ ଚମକାଇ ଦେଲା । ଏପରି କ୍ଷଣିକ ମିଲିଟାରୀ ଚିତ୍କାରଟିଏ କେବେ ସାମାନ୍ୟ ଓ୍ୟାର୍ଡ଼ର ଫ୍ରାନ୍‌ଜ୍ ପାଖରୁ ସମ୍ଭବ ବୋଲି

Digitized by srujanika@gmail.com

କେହି ଶାରି ପାରିବନି । ଏ ଡାକରାକୁ କିନ୍ତୁ ସେ ସ୍ୱାଗତ କରିଥିଲା । ଶେଷରେ ସେ ପାଟିକରି ଉଠିଲା ଏବଂ ସଙ୍ଗେ ସଙ୍ଗେ କାନ୍ଥ ଆଲମାରୀର କବାଟ ବନ୍ଦ କରି ଖୁବ୍ ତରତରରେ ଆର କୋଠରୀକୁ ପଶିଗଲା । ସେଠାରେ ସେ ଦୁଇଜଣ ଓ୍ୱାର୍ଡ଼ର ଛିଡ଼ା ହୋଇଥିଲେ ଓ ସଙ୍ଗେ ସଙ୍ଗେ ତାକୁ ତା' ନିଜ କୋଠରୀକୁ ଫେରାଇ ଅଣିଲେ ।

"ତୁମେ କ'ଣ ଭାବୁଛ ?" ସେମାନେ ପଚାରିଲେ ।

ତୁମେ କ'ଣ ଭାବୁଛ ଇନ୍‌ସ୍‌ପେକ୍ଟରଙ୍କ ସାମ୍ନାକୁ ତୁମ ନିଜ ସାର୍ଟ ପିନ୍ଧି ଯାଇ ପାରିବ ? ସେ ତୁମକୁ ଟାଙ୍କେ ଦେବେ ଆଉ ଆମକୁବି ।

"ହତଭାଗାମାନେ ମୋତେ ଟିକେ (ଏକଲା) ଏକୁଟିଆ ରହିବାକୁ ଦିଅ ।" କେ' ଚିତ୍କାର କରି ଉଠିଲା । ଏତେବେଳକୁ ସେମାନେ ତା ଆଲମାରି ପାଖକୁ ତାକୁ ଜବରଦସ୍ତି ପେଲି ଦେଇଥିଲେ ।

ବିଛଣାରୁ ଉଠୁ ଉଠୁ ତୁମେମାନେ ଯଦି ମୋତେ କାବୁଜ଼ି ଧର ତେବେ ମୁଁ କେମିତି ମୋର ସବୁଠୁ ଭଲ ପୋଷାକ ପିନ୍ଧିପାରିବ ବୋଲି ତୁମେ ଭାବୁଛ ଯେ ?"

"ତା'ଛଡ଼ା ଆଉ କିଛି କରିବାର ଉପାୟ ନାହିଁ ।" ଯେଉଁ ଓ୍ୱାର୍ଡ଼ରଟି କେ' ପାଟି କଲାବେଳେ ଚୁପ୍ ହୋଇଯାଏ, ଏମିତିକି ମୁହଁ ଶୁଖାଇଦିଏ ସେ କହିଲା । ଏମିତି କରିବାର କାରଣ ହେଉଛି କେ'କୁ ବିବ୍ରତ କରିଦେବା ବା ତାକୁ ତା'ର ହୋସକୁ ଫେରାଇ ଆଣିବା ।

"ଯେତେସବୁ ବାଜେ ଆଜେ କାଇଦା ।" କେ' ଗାରୁ ଗାରୁ ହୋଇ କହିଲା । କିନ୍ତୁ ସାଙ୍ଗେ ସାଙ୍ଗେ ଚୌକି ଉପରୁ କୋଟ୍‌ଟିଏ ଆଣି ଦୁଇହାତରେ ଅଳ୍ପ ସମୟ ପାଇଁ ଧରି ରଖିଲା ଯେମିତିକି ଓ୍ୱାର୍ଡ଼ରମାନଙ୍କ ମତାମତ ଦେବାପାଇଁ ସେମାନଙ୍କୁ ଦେଖାଇଲା । ସେମାନେ ମୁଣ୍ଡହଲାଇ କହିଲେ ଯେ କୋଟ୍‌ଟି ନିଶ୍ଚିତ ଭାବରେ କଳା ହେବା ଦରକାର ।" ଏହା ଶୁଣି କେ' କୋଟ୍‌ଟିକୁ ଭୂଇଁରେ ଫୋପାଡ଼ି ଦେଲା ଏବଂ ଯାହା କହିଲା ତା' ସେ କେଉଁ ଅର୍ଥରେ କହୁଛି ନିଜେବି ବୁଝିଲାନି । ସେ କହୁଥିଲା—"ଏବେବି ତ ଏହା ମୃତ୍ୟୁଦଣ୍ଡ ନୁହେଁ ।" ଓ୍ୱାର୍ଡ଼ରମାନେ ହସୁଥିଲେ ଏବଂ ତାଙ୍କର ପୂର୍ବ ମତକୁ ଦୋହରାଇଲେ—"କୋଟ୍‌ଟି ନିହାତି କଳା ହେବା ଦରକାର ।"

"ଏହା ଯଦି ମୋ କେସ୍‌କୁ ଜଲଦି ସାରିଦେବ ତେବେ ମୋର କିଛି ଆପତ୍ତି ନାହିଁ ।" ଏହା କହି ସେ ତା' ଆଲମାରୀ ଖୋଲି ବହୁତ ସମୟ ଧରି

Digitized by srujanika@gmail.com

ଖୋଜିଲା ଏବଂ ପୋଷାକ ଭିତରୁ ସବୁଠାରୁ ସୁନ୍ଦର କଳା ସୁଟ୍‌ଟିକୁ ବାଛିଲା । ଏହା ଗୋଟିଏ ସାଧାରଣ ସୁଟ୍ ଥିଲା, ଆଉ ତାର ସୌନ୍ଦର୍ଯ୍ୟ ପାଇଁ କେ'ର ଚହ୍ଲାବନ୍ଧୁ-ମାନଙ୍କ ପାଖରେ ସେଦିନ ଶିହରଣ ସୃଷ୍ଟି କରିଥିଲା । କେ' ସେ ସୁଟ୍‌ଟିକୁ ବାଛିଲା ଆଉ ଅତି ଯତ୍ନ ସହକାରେ ପିନ୍ଧିବାରେ ଲାଗିଲା । ସୁଟ୍ ପିନ୍ଧୁଥିଲା ବେଳେ କେ' ମନେ ମନେ ଭାବିଲା ଯେ ଯା' ହେଉ ସେ ଏ ଝମେଲାକୁ ଜଲ୍‌ଦି ସାରିଦେବାରେ ସକ୍ଷମ ହୋଇପାରିଛି । କାରଣ ଓ୍ୱାର୍ଡ଼ରମାନେ ତାକୁ ଗାଧୋଇବା କଥା କହିବାକୁ ଭୁଲିଯାଇଛନ୍ତି । ସେ ସେମାନଙ୍କ ଉପରେ ଆଖିରଖି ଦେଖୁଥାଏ । ସେମାନେ ଗାଧୋଇବା କଥା ମନେରଖିଛନ୍ତି ନା ନାହିଁ । ଅବଶ୍ୟ ଏ କଥା ତାଙ୍କ ମୁଣ୍ଡକୁ ଆସିଲା ନାହିଁ । କିନ୍ତୁ ଅନ୍ୟଦିଗରେ କେ'ର ଲୁଗାପିନ୍ଧିବା ଖବରଟା···।

"ପୋଷାକ ପୁରା ପିନ୍ଧିସାରିଲା ପରେ କେ' ପୁରା ଫାଙ୍କା ପଡ଼ିଥିବା ବଡ଼ ଘର ଦେଇ ଚାଲିବାକୁ ଲାଗିଲା, ତାର ଠିକ୍ ପଛେ ପଛେ ଚାଲିଥାଏ ଉଇଲିୟମ । ସେ ପହଞ୍ଚିଲା ପାଖଘରେ ଯା'ର ଦୁଇଟି ଦ୍ୱାର ଖୋଲାଗଲା, ଏଇ କୋଠରିଟିକୁ କେ' ଭଲକରି ଜାଣେ । ଅଳ୍ପଦିନ ତଳେ ଫ୍ରଲେନ୍ ବ୍ରାର୍ସନାର୍ ଏହାକୁ ଭଡ଼ା ନେଇଥିଲା । ସେ ଜଣେ ଟାଇପିଷ୍ଟ । ଖୁବ୍ ଜଲ୍‌ଦି କାମକୁ ଯାଏ । ଫେରେ ଖୁବ୍ ଡେରିରେ । ଏହା ସହିତ କେ'ର ଖୁବ୍ କମ୍ କଥାବାର୍ତ୍ତା, ଯିବାଆସିବା ବାଟରେ ଯାହା କଥା । ବର୍ତ୍ତମାନ ତା ଖଟ ପାଖରେ ଟେବୁଲ୍‌ଟି କୋଠରିର ମଝିରେ ଲେଖାଲେଖି ପାଇଁ ପଡ଼ିଛି ଏବଂ ଟେବୁଲ କଡ଼ରେ ଇନସ୍‌ପେକ୍ଟର ଜଣକ ବସିଛନ୍ତି । ସେ ତାଙ୍କର ଗୋଡ଼କୁ ଛନ୍ଦିଛନ୍ତି ଏବଂ ତାଙ୍କର ଗୋଟିଏ ହାତ ଚୌକି ପଛରେ ରହିଛି ।

କୋଠରିର ଗୋଟିଏ କୋଣରେ ତିନିଜଣ ତରୁଣ ଠିଆ ହୋଇଛନ୍ତି । କାନ୍ଥରେ ଟଙ୍ଗା ହୋଇଥିବା ଫ୍ରଲେନ୍ ବାର୍ସନାରର ଫଟୋଟିକୁ ସେମାନେ ଦେଖୁ-ଥାଆନ୍ତି । ଗୋଟିଏ ଧଳା ବ୍ଲାଉଜ ଖୋଲା ଝର୍କାର ଗୋଟିଏ ଛୁଟ୍‌କଣିରୁ ଏହା ଝୁଲୁଥାଏ । ରାସ୍ତାକଡ଼ରେ ସେ ଝର୍କା ପାଖରେ ସେ ଦୁଇମୂର୍ତ୍ତି ପୁଣି ଠିଆ ହୋଇ-ଗଲେଣି । ଏଥର କିନ୍ତୁ ତାଙ୍କର ସଂଖ୍ୟା ବଢ଼ିଥାଏ । ଆଉ ଜଣେ ସେ ଦୁଇମୂର୍ତ୍ତି ପଛରୁ ତାର ମୁଣ୍ଡ ଆଉ କାନ୍ଧ ଟେକି ରହିଥାଏ । ସେ ଲୋକଟିର ସାର୍ଟଟି ବେକ ପାଖରେ ଖୋଲା ଏବଂ ତାର ନାଲି ଦାଢ଼ିକୁ ନିଜହାତରେ ସାଉଁଳିବାରେ ଲାଗିଥାଏ ।

"ଜୋସେଫ୍ କେ' ଇନ୍‌ସପେକ୍ଟର ଡାକିଲେ ବୋଧହୁଏ କେ'ର ଘୂରି ବୁଲୁଥିବା ଦୃଷ୍ଟିକୁ ତାଙ୍କ ଆଡ଼କୁ ଆକର୍ଷଣ କରିବାପାଇଁ । ଏପରି ଡାକିବାର ଉଦ୍ଦେଶ୍ୟ ଥିଲା । କେ' ମୁଣ୍ଡ ଟୁଙ୍ଗାଇଲା ।

Digitized by srujanika@gmail.com

‘ବୋଧହୁଏ ଆଜି ସକାଳର ଘଟଣାରେ ତୁମେ ଖୁବ୍ ଆଶ୍ଚର୍ଯ୍ୟ ହୋଇଥିବ ?’ ଟେବୁଲ ଉପରେ ଥିବା ଗୋଟିଏ ମହମବତୀ, ଦିଆସିଲି, ବହି, ଆଉ ଗୋଟିଏ ପିନ୍ ଗଦା ଆଦିକୁ ଦୁଇହାତରେ ସଜାଡ଼ି ସଜାଡ଼ି ସେ ପଚାରିଲେ । ତାଙ୍କ ସଜାଡ଼ିବାରୁ ମନେ ହେଉଥାଏ ଯେମିତି ତାଙ୍କର ପ୍ରଶ୍ନ କରିବା ପାଇଁ ଏଇସବୁ ଜିନିଷଗୁଡ଼ିକ ନିହାତି ଦରକାର ।

‘ନିଶ୍ଚୟ’, କେ’ କହିଲା । କେ’ର ମନ ଖୁସି ହୋଇଗଲା, କାରଣ ସେ ଭାବିଲା ଯା’ ହେଉ ଶେଷରେ ସେ ଜଣେ ବୁଝିବା ସୁଝିବା ଲୋକଟିଏ ପାଇଲା ଯା’ ସାଙ୍ଗରେ ଏ ବିଷୟରେ ସେ କିଛି ଆଲୋଚନା କରିପାରିବ । ତେଣୁ ସେ କହି ଉଠିଲା ‘‘ନିଶ୍ଚୟ, ମୁଁ ଖୁବ୍ ଆଶ୍ଚର୍ଯ୍ୟ । କିନ୍ତୁ କେବେହେଲେ ଖୁବ୍ ବେଶୀ ଆଶ୍ଚର୍ଯ୍ୟ ନୁହେଁ ।’’

‘‘ଖୁବ୍ ବେଶୀ ଆଶ୍ଚର୍ଯ୍ୟ ନୁହେଁ ?’’ ଟେବୁଲ ମଝିରେ ବତୀଟିକୁ ରଖି ଅନ୍ୟ ଜିନିଷଗୁଡ଼ିକୁ ତା ଚାରିପାଖରେ ସଜାଡ଼ି ସଜାଡ଼ି ଇନ୍‌ସପେକ୍ଟର ପଚାରିଲେ ।

‘‘ବୋଧହୁଏ ଆପଣ ମୋତେ ଭୁଲ ବୁଝିଲେ ।’’ କେ’ ଖୁବ୍ ଶୀଘ୍ର କହିଲା । ‘ମୁଁ କହୁଥିଲି···’ ଏହା କହି କେ’ ବନ୍ଦ ହୋଇଗଲା ଏବଂ ନିଜେ ଚାରିଆଡ଼କୁ ମିନିଟିଏ ପାଇଁ ଅନାଇଲା ।

‘‘ମୁଁ ଟିକିଏ ବସନ୍ତ ।’’

‘ସାଧାରଣତଃ ଏହା ହୁଏନି ।’—ଇନ୍‌ସପେକ୍ଟର କହିଲେ ।

ଆଉ ଅଧିକ ଯୁକ୍ତି ନକରି କେ’ କହିଲା—‘ମୁଁ ଭାବୁଛି ମୁଁ ଖୁବ୍ ବିସ୍ମିତ ହୋଇଛି । ଅବଶ୍ୟ ମୋପରି ଜଣେ ଲୋକ ଯିଏକି ତିରିଶ ବର୍ଷ ଧରି ବଞ୍ଚିଲାଣି ଆଉ ଏହାର ସବୁ ସୁବିଧା ଅସୁବିଧା ସହି ଲଢ଼ି ଆସିଲାଣି ତା ପାଖରେ ଆଉ ବିସ୍ମୟ କଅଣ ? ସେତ ସବୁ ବିସ୍ମୟକୁ କାଲିପିଠିଆ ହୋଇଯାଇ ଆଉ ସେଗୁଡ଼ିକ ଉପରେ ଗୁରୁତ୍ୱ ଦିଏନାହିଁ । ବିଶେଷ ଭାବରେ ଆଜି ସକାଳେ ଘଟିଥିବା ବିସ୍ମୟକର ଘଟଣା-ଗୁଡ଼ିକୁ ସେ ଆଦୌ ଖାତିର କରେ ନାହିଁ ? ଆଜି ସକାଳର ଘଟଣାଟା ପ୍ରତି ବିଶେଷ ଗୁରୁତ୍ୱ କାହିଁକି ? ଯାହାସବୁ ଘଟିଗଲା ତାକୁ ଗୋଟାଏ ପରିହାସ ବୋଲି ମୁଁ କହୁନାହିଁ । କାରଣ ଏହା ପାଇଁ ଯେଉଁ ପ୍ରସ୍ତୁତ ହୋଇଛି ତା ଅତି ବିରାଟ । ଏ ବୋର୍ଡ଼ିଂ ଘରର ସମସ୍ତ କର୍ମଚାରୀ ପୁଣି ତୁମେ ସବୁ ଏହା ସହ ସମ୍ପୃକ୍ତ ହେବାକୁ ବାଧ୍ୟ । ତେଣୁ ଏହା ପରିହାସର ଉପରେ । ଏହାକୁ ମୁଁ କେବେ ଥଟ୍ଟା ପରିହାସ ବୋଲି କହୁ ନାହିଁ ।’

Digitized by srujanika@gmail.com

ଡଆସିଲରେ କେତେ କାଠିଅଛୁ ତାକୁ ଦେଖୁ ଦେଖୁ ଇନସ୍‌ପେକ୍ଟର କହିଲେ—"ତା ଅବଶ୍ୟ ଠିକ୍ ।"

କେ' କିନ୍ତୁ ସେଠାରେ ଥିବା ସମସ୍ତଙ୍କୁ ଦେଖୁଥିଲା । ସେ ଚାହୁଁଥିଲା ଯେ ଫଟୋକୁ ଦେଖିଥିବା ସେ ତିନିଜଣ ତରୁଣଙ୍କୁ ମଧ୍ୟ ସେ ଏହା ଭିତରକୁ ଆଣିବ । ତେଣୁ ସେ କହିଲା "ଅନ୍ୟ ଦିଗରୁ ବିଚାରକଲେ କିନ୍ତୁ ଏହା କେବେହେଲେ ମୋଟେ ଗୁରୁତ୍ୱପୂର୍ଣ୍ଣ ଘଟଣା ନୁହେଁ । ମୋର ଏପରି ଯୁକ୍ତିକରିବାର କାରଣ ହେଉଚି ଯେ, ଯଦିଓ ମୋ ବିରୁଦ୍ଧରେ କୌଣସି ଅଭିଯୋଗ ଅଣା ହୋଇଚି କିନ୍ତୁ ଏପରି କୌଣସି ଦୋଷ କରିଥିବାର ତ ମୋର ମନେପଡୁନି । ଏହା ମଧ୍ୟ କଅଣ ବଡ଼ କଥା ନୁହେଁ ? ସବୁଠୁ ବଡ଼ ପ୍ରଶ୍ନ ହେଉଚି ମୋ ବିରୁଦ୍ଧରେ ଦୋଷାରୋପ କରିଛି କିଏ ? କେଉଁ କର୍ତ୍ତୃପକ୍ଷ ମୋ ବିରୁଦ୍ଧରେ ଏହିସବୁ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରୁଛନ୍ତି ? ଆପଣମାନେ କଅଣ ଆଇନ ବିଭାଗ କର୍ମଚାରୀ ? ଆପଣଙ୍କ ଭିତରୁ ତ କାହାରି ସରକାରୀ ପୋଷାକ ନାହିଁ । ଯେ ପର୍ଯ୍ୟନ୍ତ ଆପଣଙ୍କର ପୋଷାକ··· ।' ଏତିକି କହି ସେ ଫ୍ରାନ୍‌ଜ ଆଡ଼କୁ ଚାହିଁଲା ଓ କହିବାକୁ ଲାଗିଲା—

"ଯେ ପର୍ଯ୍ୟନ୍ତ ଆପଣଙ୍କର ଏ ସୁଟ ସରକାରୀ ପୋଷାକ ଭାବେ ବିବେଚିତ ନ ହୋଇଚି କିନ୍ତୁ ଏହାତ ପର୍ଯ୍ୟଟକମାନଙ୍କର ପୋଷାକ ଭଳି ମନେ ହେଉଚି । ଏସବୁ ପ୍ରଶ୍ନର ଗୋଟିଏ ପରିଷ୍କାର ଉତ୍ତର ମୁଁ ଚାହେଁ । ଏବଂ ମୁଁ ନିଶ୍ଚିତ ଯେ ଏପରି ଏକ ଜବାବ ପାଇଲା ପରେ ଆମ୍ଭେମାନେ ଭଲରେ ଭଲରେ ବନ୍ଧୁତ୍ୱ-ପୂର୍ଣ୍ଣ ଭାବେ ବିଦାୟ ନେଇ ପାରିବା ।'

ଇନସ୍‌ପେକ୍ଟର ଟେବୁଲ ଉପରେ ଦିଆସିଲିଟିକୁ ଫୋପାଡ଼ି ଦେଇ କହିଲେ—"ତୁମେ ଅଯଥା ଗୋଟିଏ ଭୁଲ ଧାରଣା ପଛରେ ଧନ୍ଦି ହେଉଛ । ମୁଁ ଆଉ ଏଠାରେ ଥିବା ସବୁ ଭଦ୍ରଲୋକମାନଙ୍କର ତୁମର ଏ ଘଟଣା ସହିତ ସେମିତି କିଛି ସମ୍ପର୍କ ନାହିଁ । ପ୍ରକୃତରେ ଆମେ ଏ ବିଷୟରେ ଆଉ କିଛି ଜାଣିନାହୁଁ । ଆମେ ଯେତେ ସରକାରୀ ପୋଷାକ ପିନ୍ଧିଲେବି ତୁମ କେସ୍‌ର କିଛି ପରିବର୍ତ୍ତନ ହେବନାହିଁ । ଏମିତି କି କିଛି ନିର୍ଦ୍ଦିଷ୍ଟ ଅପରାଧ ପାଇଁ ତୁମ ବିରୁଦ୍ଧରେ ଅଭିଯୋଗ ଅଛି କି ନାହିଁ ମୁଁ ଆଦୌ କହି ପାରିବିନି । ତୁମକୁ ନିଶ୍ଚିତ ଭାବେ ଗିରଫ କରାଯାଇ ଅଛି ବାସ୍ ଏତିକି, ଏହାଠାରୁ ଆଉ ଅଧିକ ମୁଁ କିଛି ଜାଣେନି । ହୁଏତ ଏହି ଓ୍ୟାର୍ଡରମାନେ ତୁମକୁ ଭିନ୍ନ ଧାରଣା ଦେଇଥିବେ । ମାତ୍ର ସେସବୁ ଦାୟିତ୍ୱହୀନ ଗୁଜବ ମାତ୍ର । ମୁଁ ଯଦିଓ ତୁମ ପ୍ରଶ୍ନର ଉତ୍ତର ଦେଇପାରୁନି ତେବେ ତୁମକୁ ମୁଁ ଗୋଟିଏ ଉପଦେଶ ଦେଇପାରେ । ମୁଁ ଏତିକି କହିପାରେ ଆମ ବିଷୟରେ ଏବଂ ତୁମପାଇଁ କଅଣ ସବୁ ହେଉଚି ସେ ବିଷୟରେ ଖୁବ୍ କମ ଭାବ । ତୁମେ ବରଂ ନିଜ ବିଷୟରେ ବେଶି

Digitized by srujanika@gmail.com

ଭାବ । ଆଉ ନିଜେ ନିର୍ଦ୍ଦୋଷ ବୋଲି ତୁମ ଧାରଣାକୁ ଏପରି ଉଚ୍ଚସ୍ୱରରେ ପ୍ରକାଶ କର ନାହିଁ । ଏହା ଖାଲି ଅନ୍ୟବାଟରେ ତୁମ ପ୍ରତି ସୃଷ୍ଟି ହୋଇଥିବା ଅନୁକୂଳ ମତାମତକୁ ଯାହା ଖାଲି ନଷ୍ଟ କରିବ । ଆଉ ତୁମେ ଟିକେ ଅଧିକ ଅଳ୍ପଭାଷୀ ହୁଅ । କାରଣ ଏଇ ବର୍ତ୍ତମାନ ତୁମେ ଯାହାସବୁ କହିଲ ସେ ସବୁରେ ବ୍ୟବହୃତ ଗୋଟିଏ ଗୋଟିଏ ଶବ୍ଦ ଭିତରେ ତୁମ ବ୍ୟବହାର ସୂଚିତ, ଏବଂ ଏହାକେବେ ତୁମ ସପକ୍ଷରେ ଯିବନାହିଁ ।”

କେ’ ଇନ୍‌ସ୍‌ପେକ୍ଟର ଆଡ଼କୁ ଚାହିଁଲା । ତାଠାରୁ ବୟସରେ ଶ୍ରେଷ୍ଠ ଜଣେ ଲୋକ ପାଖରୁ ବ୍ୟବହାର ବିଷୟରେ ଶିଖିବାକୁ ପଡ଼ିବ ? ତାର ଖୋଲା ଖୋଲି କଥାଯୋଗୁ ଗାଳି ଦ୍ୱାରା ସେ ଦଣ୍ଡିତ ହେବ ? ଅଥଚ ତାର ଗିରଫଦାରୀର କାରଣ ଏବଂ କିଏ ତା ବିରୁଦ୍ଧରେ ଅଭିଯୋଗ କରିଛି ସେ ବିଷୟରେ ଜାଣି ପାରିବନି ?

ସେ ଉତ୍ତେଜିତ ହୋଇଉଠିଲା । ଏବଂ ଏପାଖ ସେପାଖ ଘୂରିବୁଲିବାକୁ ଲାଗିଲା । କେହି ତାକୁ ବାଧା ଦେଲେ ନାହିଁ । ତା ହାତକୁ ପଛକୁ ମୋଡ଼ି ଦେଲା, ସାର୍ଟ ଆଗରେ ହାତ ଘଷିଲା, ବାଳକୁ ଅଳେଇ କରି ଦେଲା ଏବଂ ସେଇ ତିନିଜଣ ଯୁବକ ପାଖ ଦେଇ ଗଲାବେଳେ କହିଲା—“ଏସବୁ ବାଜେକଥା ।”

ଏତିକି ଶୁଣି ସେମାନେ ତା ଆଡ଼କୁ ସହାନୁଭୂତିରେ ଚାହିଁଲେ । କିନ୍ତୁ ସେମାନଙ୍କ ଚାହାଣି ବଡ଼ ଗମ୍ଭୀର ଥିଲା । ଶେଷରେ ସେ ଇନ୍‌ସ୍‌ପେକ୍ଟରଙ୍କ ଟେବୁଲ ସାମ୍ନାରେ ଠିଆହୋଇ ପଚାରିଲା । “ଓକିଲ ହେଷ୍ଟାରର ମୋର ଜଣେ ବ୍ୟକ୍ତିଗତ ବନ୍ଧୁ” ମୁଁ ତାଙ୍କୁ ଟେଲିଫୋନ କରିପାରେ କି ?

‘ନିଶ୍ଚୟ’ ଇନ୍‌ସ୍‌ପେକ୍ଟର ଉତ୍ତର ଦେଲେ । “କିନ୍ତୁ ଏପରି ଟେଲିଫୋନ କରିବାରେ କିଛି ଅର୍ଥ ଥିଲାପରି ମୁଁ ଦେଖୁନି । ତୁମ ନିଜର କିଛି ବ୍ୟକ୍ତିଗତ କାମ ଥିଲେ ତୁମେ ଏପରି ଆଲୋଚନା କରି ପାରନ୍ତ ।”

ଏମିତି କରିବାରେ କିଛି ଅର୍ଥନାହିଁ ? କେ’ ଚିତ୍କାର କରି ଉଠିଲା, ତା ଚିତ୍କାରରେ ବିରକ୍ତି ଅପେକ୍ଷା ବେଶୀ ବିସ୍ମୟ ଥିଲା । ସେ ପୁଣି କହିଚାଲିଲା—

“ତୁମେ ତେବେ କେମିତିକା ଲୋକ ହେ ? ମୋତେ ପୁଣି ବିଚାରବନ୍ତ ହେବାକୁ କହି ନିଜେ ପାଗଳଙ୍କ ପରି ସବୁ କାମ କରୁଛ ? ତୁମେ ଯାହାକରୁଛ କ୍ଲୁରବି ସେଥିରେ ବିରକ୍ତ ହୋଇଯିବ । ପ୍ରଥମେ ଲୋକେ ମୋ ନିଜଘରେ ମୋତେ ଚଢ଼ାଉକଲେ ତାପରେ ମୋର ଘର ଭିତରେ ବିଶ୍ରାମ ନେଇ ତୁମର ଲାଭ ପାଇଁ

Digitized by srujanika@gmail.com

ମୋତେ ବସିବା ପାଇଁ ବି ଦେଲନାହିଁ । ଆପାତତଃ ଯେତେବେଳେ ମୁଁ ଗିରଫ ହୋଇଛି ସେତେବେଳେ ଜଣେ ଓକିଲ ପାଖକୁ ଟେଲିଫୋନ୍ କରି କିବା ଲାଭ ? ଠିକ୍ ଅଛି ମୁଁ ଟେଲିଫୋନ୍ କରିବିନି ।"

"ଯଦି ତୁମେ ଚାହୁଁଛ ତେବେ ଟେଲିଫୋନ କର ।" ୱିରକା ଆଡକୁ ଯାଇଁ ଯାଇଁ ଟେଲିଫୋନ ଥିବା ହଲ ଆଡ଼କୁ ହାତ ଦେଖାଇ ଇନ୍‌ସପେକ୍ଟର କହିଲେ—"ଦୟାକରି ଟେଲିଫୋନ କରନ୍ତୁ ।"

"ନାଁ, ବର୍ତ୍ତମାନ ଟେଲିଫୋନ ମୁଁ ଆଉ କରିବିନି ।"—କେ'ର ଜବାବ ।

ଝରକା ସେକଡ଼ର ସେ ତିନିଜଣିଆ ଦଳଟି ତେବେ ବି ଏ ଦୃଶ୍ୟ ଦେଖିବାରେ ବ୍ୟସ୍ତ ଥିଲେ । ୱିର୍କା ପାଖରେ କେ'ର ଉପସ୍ଥିତି ତାଙ୍କ ଦେଖିବାରେ ପ୍ରଥମେ ସାମାନ୍ୟ ବାଧା ସୃଷ୍ଟିକଲା । ଦୁଇଜଣ ବୁଢା ଉଠିବା ଉଠିବା ହେଲେ । ମାତ୍ର ତାଙ୍କ ପଛରେ ଥିବା ଲୋକଟି ସେମାନଙ୍କୁ ବସାଇ ଦେଲା ।

"ଏଠାରେ ଦର୍ଶକଙ୍କର ବେଶ୍ ଭିଡ଼ ହୋଇଛି ।" ବଡ଼ ପାଟିରେ କେ' କହି ଉଠିଲା ଓ ସେମାନଙ୍କ ଆଡ଼କୁ ଆଙ୍ଗୁଳି ଦେଖାଇ ଇନ୍‌ସପେକ୍ଟରକୁ ଦେଖାଇ ଦେଲା ।

"ଚାଲିଯାଆନ୍ତୁ"—ସେ ଚିତ୍କାର କରି ଉଠିଲା । ଏତିକରେ ତିନିଜଣଯାକ ତିନି ପାଦ ପଛକୁ ହଟିଗଲେ । ସେ ବୁଢ଼ା ଦୁଇଟି ପ୍ରକୃତରେ ଟୋକାଟି ପଛରେ ଲୁଚି ପଡ଼ିଲେ । ଟୋକାଟିର ବିରାଟ ଦେହ ସେମାନଙ୍କୁ ଲୁଚାଇ ଦେଲା । ତା ଓଠହଲାରୁ ଜଣାଗଲା ଯେ ସେ ସେମାନଙ୍କୁ କଅଣ କହୁଛି ମାତ୍ର ଦୂରତା ଯୋଗୁ କଅଣ କହୁଛି ଧରିହେଲା ନାହିଁ । ତଥାପି ସେମାନେ ସେଠୁ ପୁରା ପଳାଇଗଲେ ନାହିଁ । ନଦେଖିବା ଭଳି ଆଉଥରେ ୱିର୍କା ପାଖକୁ ଆସିବାର ସୁଯୋଗକୁ ଅପେକ୍ଷା କରି ରହିଲେ । ପୁଣିଥରେ କୋଠରୀ ଆଡ଼କୁ ଫେରି ଅନାଇଲା ବେଳେ କେ' କହିଉଠିଲା "ସରକାରୀ ଚାକିରିଆଗୁଡ଼ାକ ହତଭାଗା, ନିର୍ବୋଧ" ।

ପ୍ରଥମ ଦେଖାରେ କେ' ଭାବିଲା ଇନ୍‌ସପେକ୍ଟର ବୋଧହୁଏ ଏଇପରି । ଅନ୍ତତଃ ତାର ଯେତେଦୂର ଏହି ଧାରଣା ହୋଇଛି । କିନ୍ତୁ ଏହା ମଧ୍ୟ ସମ୍ଭବ ଯେ ଯେ ଇନ୍‌ସପେକ୍ଟର ତା'କଥା ସବୁ ଆଦୌ ଶୁଣିନି । କାରଣ ସେ ତାର ଗୋଟିଏ ହାତକୁ ଟେବୁଲ ଉପରେ ଚାପିଧରି ନିଜ ଆଙ୍ଗୁଳିର ଲମ୍ବ ମାପିବାପରି ମନେହେଲା । ଛୁଞ୍ଚି କାମ ହୋଇଥିବା ଗୋଟିଏ ଢିନାଢ଼ଙ୍କା ବାକ୍ସ ଉପରେ, ଓ୍ୟାଡ଼ାର ଦୁଇଜଣ ବସି ସେମାନଙ୍କର ଆଣ୍ଠୁ ଆଉଁସୁଥିଲେ । ନିଜ ଅଣ୍ଟାରେ ହାତରଖି ତରୁଣ ତିନିଜଣ

Digitized by srujanika@gmail.com

ଲକ୍ଷ୍ୟହୀନ ଭାବରେ ସେମାନଙ୍କ ମୁଖପଟ୍ଟ ଖୁଣ୍ଟି ଖୁଣ୍ଟି ଦେଖୁଥିଲେ । ଗୋଟିଏ ଖାଲି ଅଫିସ ଘରପରି ସେ ଘରଟା ଚୁପ୍ ଚାପ୍ ଜଣା ପଡୁଥିଲା ।

ହଠାତ୍ କ୍ଷଣିକ ପାଇଁ କେ'ଙ୍କୁ ଜଣାଗଲା ଯେମିତି ଏ ସମସ୍ତଙ୍କ ପାଇଁ ସେ ଦାୟୀ । ସେ କହି ଉଠିଲା "ଆପଣମାନେ ବସନ୍ତୁ । ଆପଣମାନଙ୍କ ମୁହାଁଣିରୁ ଜଣାଯାଉଛି ଯେମିତି ମୋ ଘଟଣାର ମୀମାଂସା ହୋଇଗଲା । ଆପଣମାନଙ୍କ ବ୍ୟବହାର ନ୍ୟାୟ-ଅନ୍ୟାୟ କଥା ବିଗ୍ୟର ନକରି ନିଜ ନିଜ ଭିତରେ ଏ ଘଟଣାର ଗୋଟିଏ ବନ୍ଧୁତ୍ୱପୂର୍ଣ୍ଣ ମୀମାଂସା ହାତମିଳାଇ କରିଦେବାଟା ମୋ ମତରେ ସବୁଠୁ ଭଲକଥା ହେବ । ଆପଣମାନେ ସମସ୍ତେ ଯଦି ମୋ ସହ ଏକମତ ତେବେ କାହିଁକି ଆଉ······" ଏତିକି କହି ସେ ଇନ୍‌ସପେକ୍ଟରଙ୍କ ଟେବୁଲ ପାଖକୁ ଆଗେଇଯାଇ ନିଜ ହାତକୁ ବଢାଇ ଦେଲା । ଇନ୍‌ସପେକ୍ଟର ଆଖିଟେକି ଚାହିଁଲେ । ନିଜ ଓଠକୁ ସାମାନ୍ୟ କାମୁଡ଼ି ତାଙ୍କ ଆଡ଼କୁ ଲମ୍ବିଆସିଥିବା କେ'ର ହାତକୁ ଦେଖିଲେ ।

ଏହାପରେ ସବୁ ଘଟଣାର ଶେଷହେବ ବୋଲି ତେବେବି କେ' ବିଶ୍ୱାସ କରୁଥିଲା । କିନ୍ତୁ ହାତ ନ ଧରି ଇନ୍‌ସପେକ୍ଟର ଠିଆ ହୋଇପଡ଼ିଲେ । ଫ୍ରଲେନ୍-ବାର୍ସନାରର ଖଟଉପରେ ଥିବା ଗୋଟିଏ ଶକ୍ତ ଗୋଲ ଟୋପିଟିକୁ ଧରି ଦୁଇ ହାତରେ ବଡ଼ ସତର୍କତାର ସହ ନିଜ ମଥାରେ ଥୋଇଲେ । ଯେମିତିକି ସେ ପ୍ରଥମଥର ପାଇଁ ତାକୁ ପିନ୍ଧୁଚନ୍ତି । ଆଉ ଏପରି କରୁ କରୁ କହିଲେ—"ସବୁ କଥା ତୁମକୁ କେତେ ସରଳ ଲାଗୁଛି । ତୁମେ ଭାବୁଛ ସବୁକଥା ବନ୍ଧୁତ୍ୱପୂର୍ଣ୍ଣ ଭାବରେ ମୀମାଂସା କରିଦେବ ନୁହେଁ ? ନାଁ ନାଁ ତା କେବେ ସମ୍ଭବ ନୁହେଁ । କିନ୍ତୁ ଅନ୍ୟ ଦଗରେ ସେ ଆଶା ଛାଡ଼ିଦିଅ ବୋଲି ମୁଁ କହୁନି । କାହିଁକି ବା ତୁମେ ଛାଡ଼ିବ ଯେ ? ତୁମେ କେବଳ ଆରେଷ୍ଟ ହୋଇଛ । ଆଉତ କିଛି ହୋଇନି । ତୁମକୁ ଏତିକି କହିବା ପାଇଁ ମୋତେ ଅନୁରୋଧ କରାହୋଇଛି । ମୁଁ ସେତିକି କରିଛି । ଆଉ ତୁମର ପ୍ରତିକ୍ରିୟାକୁ ଲକ୍ଷ୍ୟ କରିଛୁ । ଆଜିପାଇଁ ଏତିକି ଯଥେଷ୍ଟ । ବର୍ତ୍ତମାନ ଆମେ ବିଦାୟ ନେଇପାରୁ ଅବଶ୍ୟ କେବଳ ଆଜିକା ପାଇଁ । ମୁଁ ଭାବୁଛି ତୁମେ ବର୍ତ୍ତମାନ ବେଙ୍କ୍‌କୁ ଯିବ ?"

"ମୁଁ ଭାବୁଛି ମୁଁ ଗିରଫ୍ ହୋଇଛୁ ?" ବେଖାତିର ଭାବରେ କେ' ଏହି ପ୍ରଶ୍ନଟି ପଚାରିଲା । କାରଣ ଯଦିଓ କରମର୍ଦ୍ଦନ କରୁଥିବାର ନିମନ୍ତ୍ରଣକୁ ତାର ଉପେକ୍ଷା କରାଯାଇଛି ତଥାପି ସେ ଧୀରେ ଧୀରେ ନିଜକୁ ଏମାନଙ୍କ ପାଖରେ ମୁକ୍ତ ମନେ କଲା । ବିଶେଷତଃ ଯେତେବେଳେ ଇନ୍‌ସପେକ୍ଟର ଯିବାକୁ ଉଠିଲେଣି ସେ

Digitized by srujanika@gmail.com

ସେମାନଙ୍କ ସହ ଖେଳୁଥିଲା । ସାମ୍ନା ଦ୍ୱାର ପର୍ଯ୍ୟନ୍ତ ତାଙ୍କ ପଛେ ପଛେ ଯାଇଁଯିବାକୁ ବାଧ୍ୟ କରୁଥିଲା । ଆଉ ତାକୁ ଆରେଷ୍ଟ କରିନେବା ପାଇଁ ଆହ୍ୱାନ କରୁଥିଲା । ତେଣୁ ସେ ପୁଣିଥରେ କହିଲା—"କେମିତି ବେଙ୍କ୍‌କୁ ଯିବି ? ମୁଁ ପରା ଗିରଫ୍‌ ହୋଇଚି ?"

"ଆଜ୍ଞା"—ଇନ୍‌ସପେକ୍ଟର କହିଲେ ଓ ସେ ସେତେବେଳକୁ ଦ୍ୱାର ପାଖରେ ପହଞ୍ଚି ଯାଇଥିଲେ । ସେ ପୁଣି କହିଲେ "ମୋତେ ତୁମେ ଭୁଲ୍‌ବୁଝିଲ । ନିଶ୍ଚିନ୍ତ ଭାବରେ ତୁମେ ଗିରଫ୍ ହୋଇଚ । ତୁମ କାମରେ ଯିବାକୁ ତ କେବେ ବାଧା ଦେଉନି କିମ୍ବା ତୁମ ନିତିଦିନିଆ ଜୀବନ କଟାଇବାକୁ ମନା କରିବିନି ।"

'ତାହେଲେ ଗିରଫ୍ ହେବା ସେତେକିଛି ଖରାପ ନୁହେଁ ?' ଇନ୍‌ସପେକ୍ଟର ପାଖରୁ ଯାଉ ଯାଉ କେ' କହିଲା ?

'ଏହା ଖରାପ ବୋଲିତ ମୁଁ କେବେ କହିନି ।' ଇନ୍‌ସପେକ୍ଟର କହିଲେ ।

'ସେହିପରି ସ୍ଥଳରେ ନିର୍ଦ୍ଦିଷ୍ଟଭାବରେ ମୁଁ ଆରେଷ୍ଟ ହୋଇଚି ବୋଲି କହିବା କିଛି ଦରକାର ନଥିଲା ।' ଇନ୍‌ସପେକ୍ଟରଙ୍କର ଅହୁରି ପାଖକୁ ଲାଗିଯାଇ କେ' କହିଲା ।

ଅନ୍ୟମାନେ ସମସ୍ତେଙ୍କ ପାଖକୁ ଲାଗିଆସି ଦ୍ୱାରପାଖରେ ଖୁବ୍ ଅଳ୍ପ ଜାଗାରେ ରୁଣ୍ଡ ହୋଇଯାଇଥିଲେ ।

'ଏଟା ମୋର ଗୋଟିଏ କର୍ତ୍ତବ୍ୟ ।' ଇନ୍‌ସପେକ୍ଟର କହିଲେ ।

'ଗୋଟେ ବାଜେ କର୍ତ୍ତବ୍ୟ ।'—ଟାଉଁ ଟାଉଁ କରି କେ' କହିଲା ।

'ତା ହୋଇପାରେ । କିନ୍ତୁ ଏହା ଉପରେ ଆଉ ବାଜେ ଯୁକ୍ତିତର୍କ କରି ସମୟ ନଷ୍ଟ କରିବା ଆମର ଉଚିତ୍ ନୁହେଁ ।' ଇନ୍‌ସପେକ୍ଟର ଜବାବ ଦେଲେ । 'ମୁଁ ଧରିନେଇଛି ଯେ ତୁମେ ବେଙ୍କ୍‌କୁ ଯିବ । ଅସଲ କଥାକୁ ନବୁଝି ତୁମ ରକମ ଲୋକଙ୍କୁ ମୁଁ କହିରଖୁଛି ଯେ ମୁଁ ତୁମକୁ ବେଙ୍କ୍ ଯିବାପାଇଁ ଜୋର୍ କରୁନି । ମୁଁ ଖାଲି ଧରିନେଇଛି ଯେ ତୁମେ ବେଙ୍କ୍‌କୁ ଯିବାକୁ ଚାହୁଁଚ । ଏବଂ ଏଇଥି-ପାଇଁ ଯେମିତି ତୁମେ ଭଲରେ ବିନା ବାଧାରେ ବେଙ୍କ୍‌ରେ ପହଞ୍ଚି ପାରିବ, ମୁଁ ଏଇ ତିନିଜଣ ଭଦ୍ରଲୋକଙ୍କୁ ଏଠାରେ ଅଟକାଇ ରଖିଚି । ସେମାନେ ତୁମର ସହକର୍ମୀ । ସେମାନେ ସବୁବେଳେ ତୁମପାଖରେ ରହିବେ ।"

"କଅଣ ?"—ସେହି ତିନିଜଣ ଆଡକୁ ବଲବଲା କରି ଚାହିଁ କେ' ଚିତ୍କାର କରି ଉଠିଲା । ଏଇ ରୋଗୀଣା ତରୁଣମାନେ ଯାହାକୁ ସେ ଫଟୋକୁ ଚାହିଁ

Digitized by srujanika@gmail.com

ଉଲ୍ଟଥିବାର ଦେଖିଥିଲା, ପ୍ରକୃତରେ ବ୍ୟାଙ୍କର କରଣୀ । ତାର ସହକର୍ମୀ ଲୁହନ୍ତି । ଏମିତି ଫେଣେଇକି ଦେଖିଲେ ଇନସପେକ୍ଟରଙ୍କ ସନ୍ଦେହ ପାଣିଆରେ ଆଖି ଅପେ । ଯେତେ ଯା' ହେଲେବି ସେମାନେ ମଧ୍ୟ ବ୍ୟାଙ୍କ୍‌ର ଭଲିଆ କର୍ମଚାରୀ । ଏଇକଥା କେମିତି ତାର ନଜର ଏଡ଼ିଦେଇ ପାରିଲା ? ନିଶ୍ଚିତ ଭାବେ ଇନ୍‌ସପେକ୍ଟରଙ୍କ ଅନ୍ତବେଣୀ ଛନ୍ଦ ରଖିଚ ଓ ଓ୍ୟାଡ଼ାରମାନେ ଏଇ ତିନିଜଣ ତରୁଣଙ୍କୁ ଚିହ୍ନୁନ୍ତି ନାହିଁ । କାଠପର ଟାଣୁଆ ରେବେନ୍ ଷ୍ଟେନଥର ତାର ହାତ-ହଲଉଥିଲେ । ଗହ୍ୱର ଆଖିଆ ସେ ରୋଗା କୁଲଚ୍, ଆଉ ମାଂସପେଶୀର ଦୁର୍ବଳତା ଯୋଗୁ ଅଯଥା ହସୁଥିବାପରି ଦିଶୁଥିବା କାମେନାର ଠିଆ ହୋଇଥିଲା ।

"ସୁପ୍ରଭାତ" କହୁ ସମସ୍ତ ଚୁପ୍‌ରହି କେ' କହିଲା ଆଉ ଅତି ବିନମ୍ର ଭାବରେ ଠିଆ ହୋଇଥିବା ସେ ତିନିଜଣଙ୍କ ଆଡ଼କୁ ତା'ହାତ ବଢ଼ାଇ ଦେଲା ।

ମୁଁ ଆପଣମାନଙ୍କୁ ଚିହ୍ନି ନଥିଲି । ବର୍ତ୍ତମାନ କଅଣ ଆମେ ଆମ କାମକୁ ଯିବା ?' ସେ ଯୁବକମାନେ ହସି ହସି ଅତି ଆଗ୍ରହରେ ମୁଣ୍ଡ ହଲାଇଲେ । ଯେମିତିକି ଏଇଥିପାଇଁ ସେମାନେ ଏତେ ସମୟ ଅପେକ୍ଷା କରିଥିଲେ । କିନ୍ତୁ ଯେତେବେଳେ ତା ନିଜ କୋଠରୀରେ ଗ୍ରୁଞ୍ଜିଆସିଥିବା ଟୋପିଟିକୁ ଆଣିବାପାଇଁ କେ' ଭୁଲିପଡ଼ିଲା ସେମାନେ ସମସ୍ତେ ଜଣେ ପରେ ଜଣେ ତାକୁ ଆଣିବା ପାଇଁ ଦୌଡ଼ିଲେ । ଏମିତି ଦୌଡ଼ିବା କେ'କୁ କେମିତି ଲଜ୍ଜ୍ୟାକର ମନେ ହେଲା । ଚୁପ୍‌ଚାପ୍ ଠିଆହୋଇ ଖୋଲା ଦ୍ୱାର ଦେଇ କେ' ସେମାନଙ୍କୁ ଲକ୍ଷ୍ୟକଲା । ମଠୁଆ ରେବେନ୍ ଷ୍ଟେନଥାର ସମସ୍ତଙ୍କ ପଛରେ ପଡ଼ିବା ସ୍ୱାଭାବିକ । କାରଣ ସେ ବିଚରା ପ୍ରବଳ ଦୌଡ଼ ଭିତରେ ବ୍ୟର୍ଥ ହୋଇଗଲା । କେମିନାର ଟୋପି ଆଣି କେ'କୁ ଦେଲା । ଏବଂ କେ' ନିଜେ ନିଜେ କହିବାକୁ ଲାଗିଲା ଏମିତି ବ୍ୟାଙ୍କ୍‌ରେ ତାକୁ ଜାହିବାକୁ ପଡ଼େ । କେମିନାରର ହସ ଇଚ୍ଛାକୃତ ନୁହେଁ । ମଣିଷ ଚେଷ୍ଟାକଲେବି ଇଚ୍ଛାକୃତ ଭାବେ ହସିପାରିବନି । କୌଣସି ଦୋଷ ପ୍ରତି ସଚେତନ ଥିଲାପରି ଜଣାଯାଉନଥିଲା । ବ୍ରା ରୁବାକ୍ ତାପରେ ସାମ୍ନାଦ୍ୱାର ଖୋଲିଦେଲା । ଯେମିତିକି ସମସ୍ତ ଦଳଟି ବାହାରି ଯାଇ-ପାରିବେ । ପୂର୍ବରୁ ଯେମିତି ତଳକୁ ବାରମ୍ବାର ଘୁରୁଥିଲା ଠିକ୍ ସେହିପରି କେ' ଆଉଥରେ ତା ପୋଷାକର ସୂତାକୁ ଦେଖିବା ପାଇଁ ତଳକୁ ଚାହିଁଲା । ସେ ଦେଖିଲା ଯେ ସେହି ସୂତାଟି ତା' ଦେହରେ ଗୋଟିଏ ଗହ୍ୱର ଦାଗ ପକାଇଛି । ବାହାରିଯାଇ ତଳେ, ହାତରେ ଟୋପିଟିକୁ ଧରି କେ' ଠିକ୍ କଲା ବ୍ୟାଙ୍କ୍‌ରେ ପହଞ୍ଚିବାପାଇଁ ଅଧିକ ବିଳମ୍ବରୁ ରକ୍ଷାପାଇବାକୁ ହେଲେ ତାକୁ ଗୋଟିଏ ଟେକ୍‌ସି କରିବାକୁ ପଡ଼ିବ । କାରଣ ସେତେବେଳକୁ ତାର ଅଧଘଣ୍ଟାଏ ବିଳମ୍ବ ହୋଇ ସାରିଥିଲା । କେମିନାର୍ ରାସ୍ତାର ପାଖବାଙ୍କକୁ ଦୌଡ଼ିଲା ଟେକ୍‌ସିଟିଏ ଆଣିବା ପାଇଁ । ଅନ୍ୟ

Digitized by srujanika@gmail.com

ଦୁଇଜଣ କେ'ର ଦୃଷ୍ଟିକୁ ଭିନ୍ନମୁଖୀ କରିବା ପାଇଁ ଅପ୍ରାଣ ଚେଷ୍ଟା କରୁଥିଲେ । ହଠାତ୍ କୁଲିଚ ସାମ୍ନାଘରର ଦ୍ୱାରଆଡ଼କୁ ଅଙ୍ଗୁଳି ଦେଖାଇଲା । ସେଇଠିକି ସେ ନାଲି ଛେଳି ଦାଢିଆ ଲମ୍ବା ଲୋକଟି ଆଖିରେ ପଡ଼ୁଥିଲା । ଏବଂ ସାଙ୍ଗେ ସାଙ୍ଗେ ତାର ପୁରା ଦେହଟି ଦଣିଯାଉଥିବାରୁ ଅପ୍ରସ୍ତୁତ ହୋଇ ଯାଉଥିବା ପଛକୁ ଘୁଞ୍ଚିଗଲା ଓ ସେଠି ଆଉଜି ଛିଡ଼ାହେଲା । ସେ ପୁରୁଣା ଦର୍ମିତ ଏବେବି ସିଡ଼ିରେ ଅସୁ-ଥିବେ । ସେ ଲୋକ ପ୍ରତି ତାର ଦୃଷ୍ଟି ଆକର୍ଷଣ କରିଥିବାରୁ କୁଲିଚ ଉପରେ କେ' ବିରକ୍ତ ହେଲା । କାରଣ ସେ ଲୋକକୁ ସେ ଚହ୍ନିପାରିଥିଲା, ଆଉ ସେଠାରେ ଦେଖିବ ବୋଲି ଆଶାକରୁଥିଲା ।

"ରାସ୍ତା ସେଇଆଡ଼କୁ ଯିବନି ।" କେ' ଖୁବ୍ ଶୀଘ୍ର କହିଲା ଆଉ ଗ୍ରାମର ଜଣେ ବୟସ୍କ ଲୋକଙ୍କୁ ଏମିତି ଭାବରେ କହିବା କେତେ ଅଡୁଆ ଲାଗିଥିବ ।

କିନ୍ତୁ କୌଣସି କୈଫିଅତ ଦେବାକୁ ପଡ଼ିଲାନି, କାରଣ ସେତେବେଳକୁ ଟେକ୍ସି ଆସି ସାରିଥିଲା । ସେମାନେ ଯେ' ଯାହାର ସ୍ଥାନ ଦଖଲ କରି ବସିଗଲେ । ତାପରେ କେ'ର ଇନ୍‌ସପେକ୍‌ସନ୍ କଥା ମନେ ପଡ଼ିଲା । ତାର ମନେ ପଡ଼ିଲା ଯେ, ଇନ୍‌ସପେକ୍ଟର ଓ ଓ୍ୱାର୍ଡ଼ରମାନେ ଗଲାବେଳେ ସେ ଦେଖିନି । ଇନ୍‌ସପେକ୍ଟର ଥିଲା ବେଳେ ତାର ନଜରକୁ ଏମିତି ଧରିରଖିଥିଲେ ଯେ ସେ ଆଉ ତନିଜଣ କିରାଣୀଙ୍କୁ ଚହ୍ନି ପାରିନି ଏବଂ କିରାଣୀମାନେ ତା ମନକୁ ଏମିତି ଘାରିଥିଲେ ଯେ ସେ ଇନ୍‌ସପେକ୍ଟର କଥା ପୁରା ଭୁଲିଗଲା । ଏପରି ବ୍ୟବହାର ତା ପ୍ରତ୍ୟୁତ୍ପନ୍ନ ମତିଗତିର ପରିଚୟ ଆଦୌ ଦିଏନି । ଏହାପରଠୁ ଏ ବିଷୟରେ ସେ ବେଶୀ ସତର୍କ ହେବ । ତା ଅନିଚ୍ଛା ସତ୍ତ୍ୱେ ସେ କାର୍‌ର ପଛପଟକୁ ବେକ କାଟି ଅନାଇଲା କାଳେ ଇନ୍‌ସପେକ୍ଟର ଓ ଓ୍ୱାର୍ଡ଼ରମାନଙ୍କୁ ଠିକ୍‌ଏ ଦେଖିପାରିବ କିନ୍ତୁ ସାଙ୍ଗେ ସାଙ୍ଗେ ସେ ତା ନିଜ ସିଟ୍‌ରେ ଅରାମ୍‌ରେ ଆଉଜି ପଡ଼ିଲା । ଅନ୍ୟ ଯାତ୍ରୀଙ୍କ ସହଥିବା ପାର୍ଥକ୍ୟକୁ ଚିନ୍ତା ମଧ୍ୟ କଲା ନାହିଁ । ତାକୁ ଲାଗୁଥିଲା ଯେମିତି ସେହି ମୁହୂର୍ତ୍ତରେ ତାର ଅନ୍ୟ ସାଙ୍ଗମାନଙ୍କ ପାଖରୁ ପଦେ ଅଧେ କଥାକୁ ସେ ବରଂ ଅଧିକ ସ୍ୱାଗତ କରିବ । କିନ୍ତୁ ସେମାନେ ଯେମିତି ହଠାତ୍ କ୍ଲାନ୍ତ ହୋଇ ପଡ଼ିଥିଲେ । ରେବେନ୍ ଷ୍ଟୋନଅର ଡାହାଣକୁ ଅନାଇଲା, କୁଲିଚ୍ ଗ୍ରହିଲା ବାଁକୁ । କେବଳ କେମିନାର ତା ଡ଼ରକୁଳା ଭେସେଡ଼ା ହସ ଧରି ତା ଆଡ଼କୁ ଅନାଇଥିଲା । କିନ୍ତୁ ଦୁର୍ଭାଗ୍ୟବଶତଃ ମଣିଷର ବୁଢ ଦୃଷ୍ଟିରୁ ସେପରି ମୁହଁ ବିଷୟରେ କଥାବାର୍ତ୍ତା କରା ହେବନି ।

ସେହି ବସନ୍ତରେ କେ' ତାର ସନ୍ଧ୍ୟାଗୁଡ଼ିକୁ ଏହିପ୍ରକାର କାଟିବାରେ ଅଭ୍ୟସ୍ତ ହୋଇଥିଲା । ଅଫିସ୍ କାମ ପରେ ସାଧାରଣତଃ ସେ ସବୁଦିନେ ରାତି ନଅଟା

Digitized by srujanika@gmail.com

ପର୍ଯ୍ୟନ୍ତ ଅଫିସ୍‌ରେ ଥାଏ । ଯେତେବେଳେ ସମ୍ଭବ ହୁଏ, ସାମାନ୍ୟ ଟିକିଏ ବୁଲିବାକୁ ଯାଏ । ଏକୁଟିଆ ବା କେତେବେଳେ ତାର ସହକର୍ମୀମାନଙ୍କ ସାଙ୍ଗରେ । ତାପରେ ସେ ଯାଏ ପାନଶାଳାକୁ । ସେଠି ବୟସ୍କ ଲୋକମାନେ ବସିଥିବା ଗୋଟିଏ ଟେବୁଲରେ ଏଗାରଟା ପର୍ଯ୍ୟନ୍ତ ବସେ । କିନ୍ତୁ ଏପରି ରୁଟିନ୍ ଜୀବନରେ ବି ବେଳେ ବେଳେ ବ୍ୟତିକ୍ରମ ଘଟେ । ଦିନେ ଦିନେ ତାଙ୍କ ବ୍ୟାଙ୍କର ମେନେଜର ଯିଏକି ତାର ପରିଶ୍ରମ ଏବଂ ଦାୟିତ୍ୱବୋଧକୁ ଖୁବ୍ ପସନ୍ଦ କରନ୍ତି, ଥରେ ଥରେ ତାଙ୍କ ଗାଡ଼ିରେ ବୁଲିଆସିବାକୁ ବା ତାଙ୍କ ଘରକୁ ରାତ୍ରି ଭୋଜନ ପାଇଁ ତାକୁ ନିମନ୍ତ୍ରଣ କରନ୍ତି । ପୁଣି ପ୍ରତିସପ୍ତାହରେ ଥରେ ସେ ଏଲିସା ନାମ୍ନୀ ଝିଅଟି ପାଖକୁ ଯାଏ । ସେ ଝିଅଟି ରାତିସାରା ସକାଳ ପର୍ଯ୍ୟନ୍ତ ଶାବାରେ ନାଚ ଘରେ ପରିଚାରିକା କାମ କରେ ଆଉ ଦିନରେ ତାର ବନ୍ଧୁମାନଙ୍କୁ ତା ବିଛଣାରେ ସ୍ୱାଗତ କରେ ।

କିନ୍ତୁ ଆଜି ସକାଳଟା ଭିନ୍ନ । କାମ ଭିଡ଼ ଆଉ ବନ୍ଧୁମାନଙ୍କର ମଧୁର ଜନ୍ମଦିନ ଶୁଭେଚ୍ଛା ଭିତରେ ଆଜିଦିନଟି ଖୁବ୍ ତରତରରେ ସରିଗଲା । କେ' ଠିକ୍ କରିଥିଲା ସେ ସିଧା ଘରକୁ ଫେରିବ । ଦିନରେ କାମର ଭିଡ଼ ଭିତରେ ମିଳୁଥିବା ଟିକିଏ ବିରତିରେ ସେ ଏହି କଥାଟିକୁ ମନେ କରୁଥିଲା । କିନ୍ତୁ ଠିକ୍ ଜାଣିପାରୁ ନଥିଲା କାହିଁକି । ତାକୁ ମନେ ହେଉଥିଲା ଯେମିତି ଆଜି ସକାଳର ଘଟଣା ଯୋଗୁଁ ଫ୍ରା ଗ୍ରୁବାକ୍ ପାଇଁ ସବୁ ଯେମିତି ବିପର୍ଯ୍ୟସ୍ତ ହୋଇଯାଇଛି । ଏବଂ ତାକୁ ହିଁ ଆଉଥରେ ସବୁ ସଜାଡ଼ିବାକୁ ପଡ଼ିବ । ଥରେ ସବୁ ସଜାଡ଼ି ଦେଲେ ଏ ଘଟଣାର ସମସ୍ତ ଦାଗ ବିସ୍ମରଣ ଭିତରେ ହଜିଯିବ ଏବଂ ପୁଣିଥରେ ତା ଜୀବନ ସ୍ୱାଭାବିକ ହୋଇଉଠିବ । ଏହି ତିନିଜଣ କିରାଣୀଙ୍କୁ ଭୟ କରିବାର କିଛିନାହିଁ । ବ୍ୟାଙ୍କରେ ଥିବା ତଳିଆ କର୍ମଚାରୀଙ୍କଠାରୁ ଆରମ୍ଭ କରି ସବା ଉପର ମହଲରେ ଥିବା ବିରାଟ ଭିଡ଼ ଭିତରେ ସେମାନେ କେଉଁଠି ହଜି ଯିବେ । ତାଙ୍କ ଭିତରେ କୌଣସି ପରିବର୍ତ୍ତନ ପରିଲକ୍ଷିତ ହେବନାହିଁ । ଜଣ, ଜଣ କରି ବା ଏକାସାଙ୍ଗରେ ସେମାନଙ୍କୁ ସେ ତା କୋଠରୀକୁ ଡାକିଛି । ଉଦ୍ଦେଶ୍ୟ ଆଉ କିଛି ନୁହେଁ କେବଳ ସେମାନଙ୍କୁ ଲକ୍ଷ୍ୟ କରିବା । ଯେତେଥର ଡ଼ାକିଛି ସେମିତି କିଛି ଦେଖିନାହିଁ । ପ୍ରତିଥର ସେମାନଙ୍କୁ ସେ ନିଶ୍ଚିନ୍ତ ମନରେ ବିଦାୟ ଦେଇଛି ।

ସାଢ଼େ ନଅଟା ବେଳେ ତା ବସାଘରକୁ ଯେତେବେଳେ ଫେରିଲା ଦେଖିଲା ଯେ ରାସ୍ତା ପାଖ ଦରଜା ସାମ୍ନାରେ ଜଣେ ଟୋକା ଗୋଡ଼ ଫାରକେଟେଇ ଠିଆହୋଇ ପାଇପ୍ ଟାଣୁଛି । ଅନ୍ଧାରରେ ଭଲ ଦିଶୁନଥିବା

Digitized by srujanika@gmail.com

ଟୋକାଟିର ମୁହଁ ପାଖକୁ ନିଜ ମୁହଁକୁ ଭିଡ଼ାଇଦେଇ ସାଙ୍ଗେ ସାଙ୍ଗେ ପଚାରିଲା 'ଆପଣ କିଏ ?'

'ମୁଁ ଏଇ ଘରମାଲିକଙ୍କ ମୁଟିଆର ପୁଅ ଆଜ୍ଞା ।' ପାଟିରୁ ପାଇପ୍‌ଟି କାଢ଼ି ନେଇ ଓ କଡ଼କୁ ଟିକେ ଘୁଞ୍ଚିଯାଇ ସେ କହିଲା ।

'ଏଇଘର ମୁଟିଆର ପୁଅ ?' ଅଧୈର୍ଯ୍ୟ ଭାବେ ତା ବାଡ଼ିଟିକୁ ଭୂଇଁରେ କୁଟୁକୁଟୁ କରି ଜେ' ପଚାରିଲା ।

'ଆଜ୍ଞା ଆପଣ କିଛି ଚାହୁଁଛନ୍ତି କି ? ମୋ ବାପାଙ୍କୁ ଡାକି ଆଣିବି କି ?'

'ନା ନା' ଜେ' କହି ଉଠିଲା । ତା ସ୍ୱରରେ ଏକ ନିଶ୍ଚିନ୍ତ ଭାବ ଫୁଟି ଉଠୁଥିଲା । ସେ ଭାବୁଥିଲା ଏ ଟୋକାଟି କିଛି ଭୁଲ୍ କରି ପକାଇଛି ତଥାପି ତାକୁ କ୍ଷମା ଦେବା ଉଚିତ୍ ।

'ଠିକ୍ ଅଛି ।' —ସେ କହିଲା ଓ ଆଗେଇ ଚାଲିଲା । ତଥାପି ସିଡ଼ିରେ ଉଠୁ ଉଠୁ ତାକୁ ଅନ୍ଧାରରେ ଦେଖିବାପାଇଁ ପଛକୁ ଫେରି ଚାହିଁଲା ।

ତାର ଇଚ୍ଛାଥିଲା ସେ ସିଧା ତା କୋଠରୀକୁ ଯିବ କିନ୍ତୁ ଫ୍ର ଟ୍ରୁବାକ୍ ସହ କଥାହେବା ଉଦ୍ଦେଶ୍ୟରେ ତା କବାଟରେ ଠକ୍ ଠକ୍ କରିବା ପାଇଁ ସେ ଠିଆ ହୋଇଗଲା । ଟ୍ରୁବାକ୍ ଟେବୁଲ୍ ପାଖରେ ବସି ରଫୁ କରୁଥିଲା । ଟେବୁଲ ଉପରେ ଗଦାଏ ପୁରୁଣା ମୋଜା ଜମା ହୋଇଥିଲା । ଏତେ ବିଳମ୍ବରେ ତାକୁ ଡ଼ାକି ବିରକ୍ତ କରିଥିବାରୁ ଜେ' ପ୍ରଥମେ କ୍ଷମା ମାଗିଲା । କିନ୍ତୁ ଟ୍ରୁବାକ୍‌ର ବ୍ୟବହାର ଥିଲା ଖୁବ୍ ଆନ୍ତରିକ ଓ ବନ୍ଧୁତ୍ୱପୂର୍ଣ୍ଣ । ସେ ଜେ'ର ସୌଜନ୍ୟପୂର୍ଣ୍ଣ ଦୁଃଖ ପ୍ରକାଶ ଅଉ କ୍ଷମା ମାଗିବାଟାକୁ ଗୁରୁତ୍ୱ ଦେଲାନାହିଁ । କାରଣ ଜେ' ସହିତ ଟିକିଏ କଥାବାର୍ତ୍ତା ହେବାର ଟ୍ରୁବାକ୍‌କୁ ଖୁବ୍ ଭଲ ଲାଗେ । ସେ ଜାଣେ ସବୁ ଭଡ଼ାଟିଆଙ୍କ ଭିତରେ ଜେ' ସବୁଠାରୁ ଭଲ । କୋଠରୀର ଚାରିଆଡ଼କୁ ଜେ' ଥରେ ଆଖିବୁଲାଇ ନେଲା ଏହା ପୂର୍ବପୂର୍ବ ତା ପୂର୍ବାବସ୍ଥାକୁ ଫେରି ଆସିଛି । ସକାଳ ଭୋଜନର ପ୍ଲେଟସବୁ ସେଗୁଡ଼ିକ ସକାଳେ ଝରକା ପାଖ ଟେବୁଲ ଉପରେ ଥିଲା, ଏବେ ଅଉ ସେଠି ନାହିଁ । ଜେ' ମନେ ମନେ ଭାବିଲା ସ୍ତ୍ରୀ ଲୋକର ହାତ ଦେଖ୍ କାମିକା ସେ ନିଜେ ହୁଏତ ସେଇ ଜାଗାରେ ପ୍ଲେଟଗୁଡ଼ିକୁ ସବୁ ଭାଙ୍ଗିଦେଇ ଥାଆନ୍ତା ସିନା କିନ୍ତୁ ଭଲରେ ଭଲରେ ସେଗୁଡ଼ିକୁ ସେଠାରୁ ଉଠାଇ ପାରି ନ ଥାଆନ୍ତା । ସେ ଟ୍ରୁବାକ୍ ଆଡ଼େ ଚାହିଁଲା । ତା ଆଖିରେ କେମିତି ଏକ କୃତଜ୍ଞତା ଭାବ ।

Digitized by srujanika@gmail.com

'ଏତେ ରାତିରେ କାହିଁକି କାମ କରୁଛ ?' ସେ ପଚାରିଲା । ସେ ଦୁହେଁ ବର୍ତ୍ତମାନ ଗୋଟିଏ ଟେବୁଲ ପାଖରେ ବସିଥିଲେ । କେ' ମଝିରେ ମଝିରେ ସେଇ ମୋଜା ଗଦା ଭିତରେ ତା ନିଜ ହାତକୁ ଗଳାଉଥିଲା ।

'ଅନେକ କାମ କରିବାର ଅଛି ।' —ଗ୍ରୁବାକ୍ କହିଲା । 'ଦିନରେ ତ ମୋ ସମସ୍ତ ଭଡ଼ାଟିଆଙ୍କ କଥା ବୁଝିବୁଝି କଟେ ତେଣୁ ନିଜ ଜିନିଷ ସଜାଡ଼ିବା କାମ ତ ସବୁ ଏଇ ରାତିରେ ।'

'ମୋର ଭୟ ହେଉଛି ମୋ' ପାଇଁ ଆଜି ତୁମକୁ ଅନେକ ଅଧିକ କାମ କରିବାକୁ ପଡ଼ିଲା ।' —କେ' ନମ୍ର ହୋଇ କହିଲା ।

'କେମିତି ?' ଟିକିଏ ଅଧିକ କୌତୂହଳୀ ହୋଇ ସେ ପଚାରିଲା । କୋଳରେ ରହିଥାଏ ଅଧା ସିଲାଇ ମୋଜା ।

'ମାନେ, ଆଜି ସକାଳେ ଯେଉଁ ଲୋକମାନେ ଏଠାକୁ ଆସିଥିଲେ !'

ତାର ପୂର୍ବସ୍ଥିରତା ଫେରାଇ ଆଣି ସେ କହିଲା—'ଓ ସେକଥା ! ସେଥିପାଇଁ ମୋତେ କିଛି କରିବାକୁ ପଡ଼ିନି ।'

କେ' ନୀରବରେ ବସି ରହିଲା ଆଉ ଗ୍ରୁବାକ୍ ତାର ସିଲେଇ କାମ[redacted] ଉପରେ ମନ ଦେଲା ।

ସକାଳ କଥା କହିବାରୁ ସେ ଆଶ୍ଚର୍ଯ୍ୟ ହେଲାପରି ମନେହେଲା । କେ' ମନେ ମନେ ଭାବିଲା, ମୋର ସେକଥା ତା ପାଖରେ କହିବା ଉଚିତ ନୁହେଁ ବୋଲି ସେ ଯେମିତି ଭାବୁଛି କିନ୍ତୁ ମୋତେ ତ ସେକଥା ଏହାରି ପାଖରେ କହିବା ଦରକାର । ଏହି ବୁଢ଼ୀଟି ବ୍ୟତୀତ ମୁଁ ଯେ ଆଉ କାହା ପାଖରେ ଏକଥା କହି ପାରିବିନି ।

'ଅବଶ୍ୟ ଏହା ଯୋଗୁଁ ଅନେକ ଧନ୍ଦା ବଢ଼ିଗଲା । କିନ୍ତୁ ଆଉ କେବେ ଏହା ହେବନି ।' କେ' ଶେଷରେ କହିଲା ।

'ନା ! ଏହା ଆଉ କେବେ ହୋଇପାରିବନି ।' ଏକ ବିଷାଦପୂର୍ଣ୍ଣ ହସହସି ଜୋର ଦେଇ ଗ୍ରୁବାକ୍ କହିଲା ।

'ଯାହା କହିଲ କଅଣ ସତ ବୋଲି ଭାବୁଛ ?' କେ' ପଚାରିଲା ।

'ନିଶ୍ଚୟ' ମୃଦୁ ସ୍ୱରରେ ସେ କହିଲା । ଅବଶ୍ୟ ଏହା ବିଷୟରେ ଅତିବେଶୀ ଭାବିବା ଉଚିତ ନୁହେଁ । ଏ ପୃଥିବୀରେ ଅନେକ ଘଟଣା ଘଟେ । ତୁମେ ଯେତେ-

Digitized by srujanika@gmail.com

ବେଳେ ମୋତେ ସବୁକଥା ଏତେ ଖୋଲି ଖୋଲି ଭାବରେ କହୁଛ ମୁଁ ମଧ୍ୟ ସ୍ୱୀକାର କରୁଛି ଯେ କବାଟ ପଛରୁ ମୁଁ ମଧ୍ୟ କିଛି ଶୁଣିଛି ଆଉ ସେ ଦୁଇଜଣ ଓ୍ୱାର୍ଡ଼ର ମଧ୍ୟ ମୋତେ ସାମାନ୍ୟ କିଛି କଥା କହିଛନ୍ତି । ଏଥିରେ ତୁମର ଖୁସି ହେବା କଥା, ମୁଁ ମଧ୍ୟ ବହୁତ ଖୁସି । ଅବଶ୍ୟ ମୋର ଏତେ ଖୁସି ନ ହେବାରକଥା କାରଣ ମୁଁ ତୁମର ଖାଲି ଭଡ଼ାବାଲି । ହଁ ମୁଁ ଅବଶ୍ୟ କିଛିକଥା ଶୁଣିଛି ଏବଂ ସେଗୁଡ଼ିକ ଏତେ ଖରାପ ବୋଲି ମୁଁ ଭାବୁନି । ହଁ ତୁମେ ନିଶ୍ଚିତ ଭାବେ ଗିରଫ ହୋଇଛ । କିନ୍ତୁ ଜେଲ୍‌ର ଯେମିତି ଗିରଫ୍ ହୁଏ ସେମିତି ନୁହେଁ, ସେପରି ଗିରଫ୍ ହେବା ବଡ଼ ଖରାପ । କିନ୍ତୁ ତୁମେ ଯେମିତି ଗିରଫ୍ ହୋଇଛନା ତା ପଛରେ କେମିତି ଗୋଟିଏ ଉଦ୍ଦେଶ୍ୟତତ୍ତ୍ୱ ଭାବ ରହିଛି । ମୋତେ କ୍ଷମା କରିବେ । ମୁଁ ଯାହା କହୁଛି ନିହାତି ବୋକାଙ୍କ ଭଳିଆ କହୁଛି । କାହିଁକିନା ଏସବୁ କେମିତି ବଡ଼ ବଡ଼ କଥା ପରି ମୋତେ ଲାଗୁଛି । ମୋ ଟିକିବୁଦ୍ଧିର ବାହାରେ ଯେମିତି । ତାକୁ କେବେ ବୁଝିପାରିବନି ବା ବୁଝିବା ଦରକାର ନାହିଁ ।'

'ବର୍ତ୍ତମାନ ତୁମେ ଯାହା କହିଲ ତା' କେବେହେଲେ ବାଜେ କଥା ନୁହେଁ । ଅନ୍ତତ ମୋର ଚିନ୍ତା ବି ଅନେକଟା ଏଇମିତି । ଖାଲି ପାର୍ଥକ୍ୟଟା ହେଉଛି ସାରା ଘଟଣାଟିକୁ ମୁଁ ଟିକେ ଅଧିକ ଗମ୍ଭୀର ଭାବେ ଚିନ୍ତା କରୁଛି । ଏହା ପଛରେ କିଛି ବଡ଼କଥା ନାହିଁ । ଏହା ସମ୍ପୂର୍ଣ୍ଣ ଅର୍ଥହୀନ । ଏହା ଖାଲି ଯାହା ଅକସ୍ମାତ୍ ଆସି ଆମକୁ ଆଚମ୍ବିତ କରିଥିଲି ବାସ୍ ଏତିକି । ଆଜିର ଅନୁପସ୍ଥିତି ବିଷୟରେ ଯଥା ମୁଣ୍ଡ ନ ଖେଳାଇ, ଉଠିବା ମାତ୍ରେ ମୁଁ ଯଦି ସିଧା ସଳଖ ତୁମ ପାଖକୁ ଆସିଥାଆନ୍ତି ଅଉ ବାଟରେ ମୋତେ କିଏ ବାଧା ଦେଇ ସେ ବିଷୟରେ ଚିନ୍ତାକରି ନ ଥାନ୍ତି ତେବେ ଆରାମ୍‌ରେ ରୋଷେଇ ଘରେ ମୋର ସକାଳ ଜଳଖିଆ ଟିକ ଖାଇପାରିଥା'ନ୍ତି । ଏପରି ଖାଇଥିଲେ ଟିକିଏ ବ୍ୟତିକ୍ରମ ବି ଘଟିଥାଆନ୍ତା । ଆଉ ମୋ ଘରୁ ମୋର ପୋଷାକ ପତ୍ରକୁ ତୁମଦ୍ୱାରା ଅଣାଇ ପାରିଥାଆନ୍ତି । ଅଳ୍ପରେ କହିବାକୁ ଗଲେ ଯଦି ସାମାନ୍ୟ ବୁଝିବା ସୁଝିବା ଲୋକ ପରି ବ୍ୟବହାର କରିଥାଆନ୍ତି ତେବେ ଏବେ କିଛି ହୋଇ ନ ଥାଆନ୍ତା । ସବୁକିଛି ମୂଳରୁ ହିଁ ଶେଷ ହୋଇଥାଆନ୍ତା । କିନ୍ତୁ ମୁଁ ପୁରା ଅପ୍ରସ୍ତୁତ । ଉଦାହରଣ ସ୍ୱରୂପ ଏଇ ବେଳ କଥା ନିଅ । ସେଠି ମୁଁ ସବୁବେଳେ ପ୍ରସ୍ତୁତ ଥାଏ । ଏମିତି କୌଣସି ଘଟଣା ଘଟିବା ସେଠି ଆଉ ସମ୍ଭବ ନୁହେଁ । ସେଠି ମୋର ପିଅନ ଅଛନ୍ତି । ମୋ ଟେବୁଲରେ ଅଫିସ ଟେଲିଫୋନ ଆଉ ସାଧାରଣ ଟେଲିଫୋନ ଥୁଆହୋଇଛି । ମୋ' ସହ ଦେଖା କରିବା ପାଇଁ ସବୁବେଳେ କିରାଣୀ ଅଉ ମହକିଲଙ୍କ ଯିବା ଆସିବା ଲାଗିଛି । ପରିଶେଷରେ ସବୁବେଳେ କାମରେ ବ୍ୟସ୍ତ ଥିବାରୁ ମୁଁ ସତର୍କ । ତେଣୁ ବ୍ୟାଙ୍କରେ ଯଦି ଏମିତି

Digitized by srujanika@gmail.com

ଘଟଣାଟିଏ ଘଟିଥାଆନ୍ତା ତାହେଲେ ପ୍ରକୃତରେ ମଜା ହୋଇଥାଆନ୍ତା । ସେ ଯା'ହେଉ ଏବେ ସବୁକଥା ସଜଡ଼ି, ପୁରୁଣା ହୋଇଛି, ତା ବିଷୟରେ ଆଉ ଘଣ୍ଟାଘଣ୍ଟା ଚର୍ଚ୍ଚା କରିବାର ଇଚ୍ଛା ମୋର ନାହିଁ । ଖାଲି ତୁମପରି ଜଣେ ବୁଦ୍ଧିମନ୍ତ ବହିରଚନ୍ଦ୍ର ସ୍ତ୍ରୀ ଲୋକର ଏ ବିଷୟରେ ମତାମତ ଜାଣିବାରେ ଯାହା ମୋର ଆଗ୍ରହ । ଆଉ ମୁଁ ବହୁତ ଖୁସି ଯେ ଏ ଘଟଣାରେ ତୁମେ ଆଉ ମୁଁ ଦୁହିଁଙ୍କର ମତ ସମାନ । କିନ୍ତୁ ବର୍ତ୍ତମାନ ଆମ ଦୁହିଁଙ୍କର ଏଇ ଏକମତକୁ ତୁମେ ମୋ ସଙ୍ଗେ କରମର୍ଦ୍ଦନ କରି ନିଶ୍ଚିତ ଭାବରେ ସୁଦୃଢ଼ କରିବ ।'

'ସେ କଅଣ ମୋ ସହ କରମର୍ଦ୍ଦନ କରିବ ? ଇନ୍‌ସପେକ୍ଟର ତ କରି ନଥିଲା ।' କେ' ଭାବିଲା ଆଉ ଅର୍ଥପୂର୍ଣ୍ଣ ଭାବରେ ତାକୁ ଚାହିଁଲା ।

ଗ୍ରୁବାକ୍ ଠିଆ ହୋଇପଡ଼ିଲା କାରଣ କେ' ଠିଆହୋଇ ସାରିଥିଲା । ସେ ସାମାନ୍ୟ ଅପ୍ରସ୍ତୁତ ହୋଇପଡ଼ିଲା କାହିଁକି ନା କେ' ଯାହାକହିଲା ସେ ସବୁକୁ ସେ କିଛି ବୁଝିନଥିଲା । ଏବଂ ଏଇ ତାର ଅପ୍ରସ୍ତୁତ ପାଇଁ ସେ ଏକ ସମ୍ପୂର୍ଣ୍ଣଭାବେ ଅପ୍ରାସଙ୍ଗିକ କଥାଟିଏ କହିଥିଲା ଯାହା କହିବାକୁ ସେ ଆଦୌ ଚାହୁଁ ନ ଥିଲା ।

'ତୁମେ ମୋ କଥାରେ ଏତେବେଶୀ ଜୋର୍ ଦିଅନି ।' କାନ୍ଦକାନ୍ଦ ହୋଇ ଗ୍ରୁବାକ୍ କହିଲା । ଆଉ କେ' ସହ ସେ ହାତ ମିଳାଇବାକୁ ପୁରା ଭୁଲିଗଲା ।

'ତୁମ କଥା ଉପରେ ମୁଁ ଏତେ ଜୋର୍ ଦେଇଚ ବୋଲି ମୋର ଆଦୌ ଧାରଣା ନାହିଁ । ସେ କଥା ମୁଁ ଆଦୌ ଚିନ୍ତା ବି କରିନି ।' ବିରକ୍ତ ସହ କେ' ଏତିକି କହି ମନେ ମନେ ଭାବିଲା ସେ ତା ସହ ଗ୍ରୁବାକ୍‌ର ମତ ମିଳିଲେ କେତେ ନମିଳିଲେ କେତେ । ସେଥିରେ କିଛି ଯାଏଆସେ ନାହିଁ । ଦ୍ୱାର ପାଖରେ ପଚାରିଲି 'ଫ୍ରଲେନ୍ ବାର୍ଷନାର କଅଣ ଘରେ ଅଛନ୍ତି ?

'ନା'—ଫ୍ର ଗ୍ରୁବାକ୍ ଉତ୍ତର ଦେଲା, ଆଉ ଏହି ନିରସ ଖବରଟି ଦେଇ ବିଳମ୍ବ ହେଲେବି କିଛିପର ଭାବରେ ସହାନୁଭୂତ ଜଣାଇଥିବାରୁ ସାମାନ୍ୟ ହସିଲା । 'ସେ ଥିଏଟର ଦେଖିବାକୁ ଯାଇଚନ୍ତି । କିଛି ପଚାରିବାର ଅଛି ? ତାଙ୍କୁ କଅଣ ଖବର ଦେବ ?'

'ଖାଲି ପଦେଦୁଇପଦ କଥା ବୁଝିବାର ଥିଲା ।

'ସେ କେତେବେଳେ ଫେରିବେ ମୁଁ କହିପାରୁନି । ଥିଏଟର ଗଲେ ସେ ପ୍ରାୟ ବିଳମ୍ବରେ ଫେରନ୍ତି ।'

Digitized by srujanika@gmail.com

ଛାତ ଉପରକୁ ମୁଣ୍ଡ ଝୁଲାଇ ଦ୍ୱାରଆଡ଼କୁ ଗଲାବେଳେ କେ' କହିଲା—'କିଛି ଦରକାର ନାହିଁ । ଆଜି ଦିନକପାଇଁ ତାଙ୍କ କୋଠରୀକୁ ଦେଇଥିବାରୁ ତାଙ୍କ ପାଖରେ ଖାଲି କୃତଜ୍ଞତା ଜଣାଇବାକୁ ଇଚ୍ଛାକରୁଥିଲି ।'

'କିଛି ଦରକାର ନାହିଁ । କେ' ତୁମେ ଖୁବ୍‌ବେଶୀ ଗ୍ରେପାଛଡ଼ା । ଫ୍ରୁଲେନ ଏ ବିଷୟରେ କିଛି ଜାଣେନି ! ଆଜି ସକାଳ ପାଖରୁ ସେ ଫେରିନି । ସବୁ ଜିନିଷକୁ ତାର ଠିକ୍ ଠିକ୍ ଜାଗାରେ ପୁଣି ଥୁଆ ସରିଛି । ତୁମେ ନିଜେ ଦେଖିଯାଅ ।' ଏହା କହି ଫ୍ରୁ ଗ୍ରୁବାକ୍ ଫ୍ରୁଲେନ କୋଠରୀର ଦ୍ୱାର ଖୋଲିଦେଲା ।

'ଧନ୍ୟବାଦ୍ ! ମୁଁ ତୁମକୁ ବିଶ୍ୱାସ କରେ ।' ଏହାକହି ମଧ୍ୟ ସେ ଖୋଲାଦ୍ୱାର ଦେଇ ଘର ଭିତରକୁ ପଶିଗଲା । ଅନ୍ଧାର କୋଠରୀ ଭିତରେ ଅସ୍ପଷ୍ଟ ଭାବରେ ଜହ୍ନ ପଡ଼ିଥିଲା । ସେଇ ଆଲୁଅରେ ଜଣେ ଚାହିଁଲେ ଦେଖି ପାରିବ ଯେ ସବୁ ଜିନିଷ ଠିକ୍ ଜାଗାରେ ଅଛି । ଆଉ ଝରକାର ଛିଟ୍‌କଣିରୁ ବ୍ଲାଉଜଟି ଝୁଲୁନି, ବିଛଣା ଉପରେ ତକିଆଗୁଡ଼ାକ ଅସମ୍ଭବ ଭାବେ ଉଚ୍ଚା ଦେଖାଯାଉଛନ୍ତି । ସେଗୁଡ଼ିକ ଉପରେ ଜହ୍ନଆଲୁଅ ଅଧା ପଡ଼ିଚି ।

'ସେ ସାଧାରଣତଃ ବିଳମ୍ବରେ ଘରକୁ ଫେରନ୍ତି ।' ଫ୍ରୁ ଗ୍ରୁବାକ୍ ଆଡ଼କୁ ଚାହିଁ କେ' କହିଲା ଯେମିତିକି ଏଥିପାଇଁ ତାକୁ ଦୋଷଦେବା ଉଚିତ ।

'ଅଳ୍ପବୟସ୍କାମାନେ ସାଧାରଣତଃ ଏମିତି ।' ବଡ଼ ବିନୟ ଭାବରେ ଗ୍ରୁବାକ୍ ଉତ୍ତର ଦେଲା ।

'ଠିକ୍ କଥା, ଠିକ୍ କଥା, କିନ୍ତୁ ଏହାତ ବଢ଼ି ବଢ଼ି ଅନେକଦୂର ଯାଇ-ପାରେ ।' କେ' କହିଲା ।'

'ହଁ ତ ଅନେକଦୂର ଯାଇପାରେ । ତୁମେ ଠିକ୍ କହୁଛ । ବିଶେଷତଃ ଏଇ କ୍ଷେତ୍ରରେ । ଫ୍ରୁଲିନ୍ ବିରୁଦ୍ଧରେ କିଛି କହିବା ମୋର ଇଚ୍ଛା ନୁହେଁ । ସେ ଭାରି ଭଲ ଝିଅଟେ । ସ୍ନେହୀ, ରୁଚିପୂର୍ଣ୍ଣ, ନିୟମିତ ପୁଣି ଭାରି କାମିକା । ତାର ଏସବୁ ଗୁଣକୁ ମୁଁ ପ୍ରଶଂସା କରେ । କିନ୍ତୁ ଗୋଟେ କଥା ମାନିବାକୁ ପଡ଼ିବ । ନିଜ ବିଷୟରେ ତାକୁ ଟିକେ ସଚେତନ ହେବା ଉଚିତ୍ । ଏଇ ମାସ ଦୁଇଥର ତାକୁ ବାହାରେ ରାସ୍ତାରେ ଭେଟିଲିଣି । ପ୍ରତ୍ୟେକ ଥର ଅଲଗା ଅଲଗା ଲୋକଙ୍କ ସାଥିରେ । ଏଇ କଥା ଯୋଗୁଁ ସବୁବେଳେ ମୋ ମନ ଘାରିହେଉଛି । ଏକଥା ସତ, ଏଇଠି ଠିଆ ହେଲାଭଳି ସତ—ତୁମ ଛଡ଼ା କାହାକୁ ଏକଥା କହିନି । କିନ୍ତୁ ମୋର ଭୟ ହେଉଛି ମୁଁ ନିରୁପାୟ । ଏ ବିଷୟରେ ମୋତେ ତାକୁ କହିବାକୁ ହିଁ

Digitized by srujanika@gmail.com

ପଡ଼ିବ । ଏହା ବ୍ୟତୀତ କେବଳ ଏହି ଗୋଟିଏ କଥା ଯେ ତା' ବିଷୟରେ ମୋର ସନ୍ଦେହ ବଢ଼ାଉଛି ତା' ନୁହେଁ ।'

'ତୁମେ ପୁରା ଭୁଲବାଟରେ ଯାଉଛ । ଆଉ ତା' ବିଷୟରେ ମୋର ମନ୍ତବ୍ୟକୁ ପୁରା ଭୁଲ୍ ବୁଝିଛ । ମୁଁ ଯାହା କହୁଥିଲି ତାର ଅର୍ଥ ଏସବୁ ନୁହେଁ ।'

ରାଗରେ କେ'ର ବ୍ରହ୍ମ ଜଳିଗଲା । ଆଉ ତାର ଗଳା ଏମିତି ଚଡ଼ା ହୋଇଗଲା ଯେ ତାକୁ ଅର୍ଦ୍ଧେ ଲୁଚାଇ ପାରିଲା ନାହିଁ ।

'ପ୍ରକୃତରେ ତାକୁ କିଛି ନକହିବା ପାଇଁ ମୁଁ ତୁମକୁ ଚେତାଇ ଦେଉଥିଲି । ତୁମେ କିନ୍ତୁ ଭୁଲ୍ ବୁଝିଲ । ମୁଁ ଫ୍ରଲେନ୍‌କୁ ଖୁବ୍ ଭଲଭାବରେ ଜାଣେ । ତୁମେ ଯାହା କହିଲ ସେଥିରେ ଗୋଟିଏ ପଦବି ସତ ନୁହେଁ । ହୁଏତ ମୁଁ ନିଜେ ସୀମା ଟପିଯାଉଛି । ମୁଁ କାହାକୁ କିଛି ବାଧା ଦେବାକୁ ଚାହୁଁନା । ତା' ବିଷୟରେ ତୁମେ ଯାହା ଖୁସି କହିପାର । ଶୁଭରାତ୍ରି ।'

ସେତେବେଳକୁ ଦ୍ୱାର ଖୋଲି ସାରିଥିବା କେ' ପଛେ ପଛେ ଧାଇଁ ଯାଉଯାଉ ଗ୍ରୁବାକ୍ ବଡ଼ ନରମ ଗଳାରେ କହିଲା—'ଶୁଭରାତ୍ରି । ପ୍ରକୃତରେ ଏବେବି ମୁଁ ତାକୁ କିଛି କହିବି ବୋଲି ଭାବିନି । ଅବଶ୍ୟ କିଛି କହିବା ପୂର୍ବରୁ କେଉଁ ପାଣି କେଉଁ ଆଡ଼କୁ ଗଡ଼ୁଛି ତାକୁ ଲକ୍ଷ୍ୟ କରିବି । ତୁମକୁ ହିଁ ମୁଁ କେବଳ ବିଶ୍ୱାସରେ ଏକଥା କହୁଛି । ଯେତେବେଳେ ବି ମୋର ସବୁ ଭଡ଼ାଟିଆଙ୍କ ସ୍ୱାର୍ଥ ପାଇଁ ମୁଁ ମୋର ଘରର ସମ୍ମାନ ରଖିବି । ଆଉ ଏଇଥିପାଇଁ ଏ ବିଷୟରେ ମୁଁ ଏତେ ବେଶୀ ଚିନ୍ତିତ ।'

'ସମ୍ମାନ'—କବାଟ ଫାଙ୍କରେ କେ' ପାଟି କରି ଉଠିଲା । 'ତୁମେ ଯଦି ତୁମ ଘରର ସମ୍ମାନ ଚାହଁ ତେବେ ତ ପ୍ରଥମେ ମୋତେ ନୋଟିସ ଦେବାରୁ ତୁମକୁ ଆରମ୍ଭ କରିବାକୁ ପଡ଼ିବ ।' ତା'ପରେ ସେ କବାଟ ବନ୍ଦ କରି ଦେଲା ପରେ କବାଟରେ ହେଉଥିବା ମୃଦୁ କରାଘାତ ଉପରେ କୌଣସି ନଜର ଦେଲା ନାହିଁ ।

ଅନ୍ୟ ଦାଗରେ, ଶୋଇବାକୁ ଇଚ୍ଛା ନ ହେବାରୁ ସେ ଠିକ୍ କଲା ଫ୍ରଲେନ୍ ଠିକ୍ କେତେଟାବେଳେ ଫେରୁଛି ନ ଶୋଇ ତାକୁ ଜଗିବ । ସେ ଯେତେବେଳେ ଫେରିବ ତା' ସାଙ୍ଗରେ ଟିକିଏ କଥାବାର୍ତ୍ତା ହେବା ସମ୍ଭବ । ଯଦିଓ ଏପରି କଥାବାର୍ତ୍ତା ହେବା ପାଇଁ ଏହା ଏକ୍‌ବାରେ ଅସମୟ । ଝର୍କା ପାଖରେ କେ' ବସି ପଡ଼ିଲା । ତା' କ୍ଳାନ୍ତ ଆଖିପତା ବୁଜି ହୋଇ ଆସୁଥିଲା । କେବଳ ସେ କ୍ଷଣିକ

Digitized by srujanika@gmail.com

ପାଇଁ ଭାବିଲା ଯେ ଡ୍ରାଇଭର୍‌କୁ ପଇସା ଦେଇ ସେ ପ୍ରବର୍ତ୍ତାଇବ ଯେ ତା'ସହ ଫ୍ରେଲେନ୍‌କୁ ବି ସେ ନୋଟିସ୍ ଦେଇ । କିନ୍ତୁ ସାଙ୍ଗେ ସାଙ୍ଗେ ସେ ଅନୁଭବ କଲା ଏହା ଏକ ମାତ୍ରାଧିକ ପ୍ରତିହିଂସା । ସେ ନିଜକୁ ସନ୍ଦେହ କରିବାକୁ ଲାଗିଲା । ତାକୁ ଲାଗିଲା ଯେମିତି କେବଳ ଆଜି ସକାଳର ଘଟଣା ପାଇଁ ସେ ନିଜେ ଏ ଘରୁ ଚାଲିଯିବାକୁ ଚାହୁଁଛି । ଏହାକୁ ଘୃଣ୍ୟ ବା ଉଦ୍ଦେଶ୍ୟହୀନ ନ କହିଲେ ବି ଏହାଠାରୁ ଆଉ ଅଧିକ ପାଗଳା କଥା କଣ ଥାଇପାରେ ?

ନିର୍ଜନ ସନ୍ଧ୍ୟାକୁ ଗୁହାରିଛି କ୍ଲାନ୍ତ ହୋଇ ପଡ଼ିବାରୁ ସେ ସୋଫା ଉପରେ ଆଉଜି ପଡ଼ିଲା । ବାଟ ହଲ୍ ପାଖ ଦ୍ୱାରକୁ ସାମାନ୍ୟ ଖୋଲି ରଖିଲା ଯେମିତିକି କେହି ଜଣେ ଭିତରକୁ ଆସିବା ମାତ୍ରେ ସେ ତା' ଶୋଇବା ଜାଗାରୁ ତାକୁ ଦେଖି ପାରିବ । ଏଗାରଟା ପର୍ଯ୍ୟନ୍ତ ଚଉରିଶ୍‌ଟିଏ ଟାଣିଟାଣି ଚୁପ୍‌ଚାପ୍ ସୋଫା ଉପରେ ଶୋଇ ରହିଲା । କିନ୍ତୁ ତାପରେ ଆଉ ଅଧିକ ଶୋଇ ରହିପାରିଲାନି । ହଲ୍ ଭିତରକୁ ପାଦେ ଦୁଇପାଦ ଚାଲିଗଲା । ଏମିତି ଚାଲିଗଲେ ସତେ ଯେମିତି ଫ୍ରେଲେନ୍ ଶୀଘ୍ର ଫେରିଆସିବ । ତାକୁ ଦେଖିବା ପାଇଁ ଯେ ତାର ଟିକେ ଅଧିକା ଆଗ୍ରହ ହେଉଥିଲା ତା' ନୁହେଁ । ଏମିତିକି ସେ କେମିତି ଦେଖିବାକୁ ତା'ବି ତାର ମନେ ପଡ଼ିଲାନି । ତଥାପି ବର୍ତ୍ତମାନ ତା ସାଙ୍ଗରେ କଥା କହିବାକୁ ଇଚ୍ଛା । ଆଉ ବର୍ତ୍ତମାନ ସୁଦ୍ଧା ତାର ନ ଆସିବା ହୁଏତ ଆଜି ଦିନର ଶେଷ ମୁହୂର୍ତ୍ତିକୁ ଆହୁରି ଅଶାନ୍ତ ଆଉ ବିପର୍ଯ୍ୟସ୍ତ କରି ଦେବ । ଏହି ଚିନ୍ତା ତାକୁ ଖୁବ୍ ବିରକ୍ତ କରିଦେଲା । ପୁଣି ଆଜି ଯେ ସେ ତାର ରାତ୍ରିଭୋଜନ ଖାଇ ନାହିଁ, ପୁଣି ଏଲ୍‌ସା ପାଖକୁ ଆଜି ସନ୍ଧ୍ୟାରେ ଯିବାର ପ୍ରୋଗ୍ରାମ୍‌କୁ ବାତିଲ୍ କରିଛି, ଏସବୁ ପାଇଁ ଫ୍ରେଲେନ୍ ହିଁ ଦାୟୀ । ଏଲ୍‌ସା ଯେଉଁଠି କାମ କରୁଛି ସେଇ ପାନଶାଳାକୁ ସିଧାଯାଇ ଏହି ଦୁଇଟିଯାକ ଅଭାବକୁ ସୁଧାରି ଦେବ । ଫ୍ରେଲେନ୍ ସହ କଥାବାର୍ତ୍ତା ପରେ ହିଁ ଯାଇ ସବୁହେବ । ସେ ଭାବିଲା ।

ସାଢ଼େ ଏଗାରଟାର କିଛି ସମୟ ପରେ ଯାଇ ସିଡ଼ିରେ କାହାର ପାଦଶବ୍ଦ ଶୁଣିଲା । ନିଜ ଚିନ୍ତାରେ ମଗ୍ନ ରହି ସେ ସେଇ ହଲ୍‌ଘର ଭିତରେ ଏପାଖ ସେପାଖ ଟହଲୁଥିଲା ଯେମିତିକି ସେଟା ତା' ନିଜ କୋଠରୀ । ବର୍ତ୍ତମାନ ଶୋଇବା ଘର ପଛଦ୍ୱାର ଦେଇ ଦୌଡ଼ି ପଳାଇଲା । ଫ୍ରେଲେନ୍ ଘରକୁ ଫେରୁଥାଏ । ସାମ୍ନା ଦ୍ୱାର ବନ୍ଦ କଲାବେଳେ ସେ ଶୀତରେ ଥରିଯାଇ ତାର ସାଲ୍‌ଟିକୁ ତା ପତଳା କାନ୍ଧ ଉପରକୁ ଟାଣିଆଣିଲା । ଗୋଟେ ମିନଟ୍ ଭିତରେ ସେ ତାର ଘର ଭିତରେ ପଶିବ । ଏମିତି ଅସମୟରେ କେ' ନିଶ୍ଚିତ ଭାବେ ତା' ଘର ଭିତରକୁ ଅନଧିକାର ପ୍ରବେଶ କରି ପାରିବନି । ତେଣୁ ତାକୁ ବର୍ତ୍ତମାନ ତା' ସହ କଥା ହେବାକୁ ପଡ଼ିବ । କିନ୍ତୁ

Digitized by srujanika@gmail.com

ଦୁର୍ଭାଗ୍ୟବଶତଃ ତା' ନିଜ ଘରେ ଆଲୁଅ ଜାଳିବାକୁ ସେ ଭୁଲିଗଲା । ଫଳରେ ଅନ୍ଧାର ଭିତରୁ ହଠାତ୍ ବାହାରି ପଡ଼ିଲେ ଜଣାପଡ଼ିବ ଯେମିତିକି ସେ ଫ୍ରାଲେନ୍‌କୁ ବାଧା ଦେବାକୁ ବସିଛି । ଯାହା ହେଲେବି ଏପରି କଲେ ଯେ କେହି ଡରିଯିବ । ମୁହୂର୍ତ୍ତଟିଏ ବି ନଷ୍ଟ କରିବାର ନୁହେଁ । ତେଣୁ ଦୋଦୋପାଞ୍ଚ ହୋଇ ଦ୍ୱାରର ଫାଙ୍କ ଦେଇ ସେ ଧୀର ଗଳାରେ ଡାକିଲା—'ଫ୍ରାଲେନ୍ ବ୍ରାଷ୍ଟନାର' । ଏ ଶବ୍ଦ ପ୍ରାର୍ଥନା ପରି ଶୁଭିଲା, ଡାକିବା ପରି ନୁହେଁ । ବଡ଼ ବଡ଼ ବିସ୍ମାରିତ ଆଖିରେ ଚାରିଆଡ଼କୁ ଅନାଇ ଫ୍ରାଲେନ୍ ପଚାରିଲା—'ଭିତରେ କିଏ ?'

'ମୁଁ'—ସାମ୍ନାକୁ ଅସୁଆସୁ କେ' କହିଲା ।

ମୃଦୁହସି ଫ୍ରାଲେନ୍ କହିଲା 'ଓ କେ' ତୁମେ ? ଶୁଭସନ୍ଧ୍ୟା ।' ଆଉ କରମର୍ଦ୍ଦନ ପାଇଁ ତା' ହାତକୁ ବଢ଼ାଇ ଦେଲା ।

'ଆପଣଙ୍କ ସହ ପଦେ ଦୁଇ ପଦ କଥାବାର୍ତ୍ତା ହେବାକୁ ବର୍ତ୍ତମାନ ମୁଁ ଚାହେଁ । ଦୟାକରି ଅନୁମତି ଦେବେ କି ?'

'ବର୍ତ୍ତମାନ ?' ବର୍ତ୍ତମାନ ନହେଲେ କ'ଣ ହେବନି ? ଟିକିଏ ଅସମୟ ହୋଇ ଯାଉନି କି ?' ଫ୍ରାଲେନ୍ ପଚାରିଲା ।

'ନ ଟା ବେଳୁ ତୁମ ପାଇଁ ଅପେକ୍ଷା କରି ବସିଛି ।'

'ତୁମେ ଜାଣ ମୁଁ ଥିଏଟର ଯାଇଥିଲି । ପୁଣି ତୁମେ ଯେ ଅପେକ୍ଷା କରିଛ ଏ ବିଷୟରେ ମୋର ଆଦୌ ଧାରଣା ନାହିଁ ।'

'ତୁମ ସାଙ୍ଗରେ ଯେଉଁ ବିଷୟରେ କଥାବାର୍ତ୍ତା ହେବାକୁ ଚାହୁଁଛି ତା କେବଳ ଆଜି ଘଟିଲା । ଆଗରୁ କେବେ ଘଟିନଥିଲା ।'

'ଆଚ୍ଛା, ବର୍ତ୍ତମାନ କଥା ହେବାରେ ମୋର ସେମିତି କିଛି ବାଧାନାହିଁ । ଯା' ଖାଲି ମୁଁ ବଡ଼ କ୍ଳାନ୍ତ । ଏତେ କ୍ଳାନ୍ତ ଯେ ଠିଆ ହେବା ସମ୍ଭବ ନୁହେଁ । ତେଣୁ ଅଳ୍ପ ସମୟ ପାଇଁ ମୋ' ଘରକୁ ଆସ । କାରଣ ଏଠାରେ କଥାବାର୍ତ୍ତା ହେବା ସମ୍ଭବ ନୁହେଁ । ସମସ୍ତଙ୍କ ନିଦ ଭାଙ୍ଗିବ । ଆମ ପାଇଁ ପୁଣି ସେମାନଙ୍କର ଅସୁବିଧା ଏହା କରିବାକୁ ମୁଁ ପସନ୍ଦ କରେ ନାହିଁ । ମୁଁ ମୋ' ଘରେ ଆଲୁଅ ଜାଳିବା ପର୍ଯ୍ୟନ୍ତ ତୁମେ ଏଠାରେ ଟିକିଏ ଅପେକ୍ଷା କର । ମୁଁ ଆଲୁଅ ଜାଳିଲେ ତୁମେ ଏଠାରେ ଆଲୁଅ ଲିଭାଇ ଦେବ ।'

କେ' ସେଇଆ କଲା । କିନ୍ତୁ ଫ୍ରାଲେନ୍ ଆଉ ଥରେ ଡାକିବା ପର୍ଯ୍ୟନ୍ତ ସେଇଠାରେ ଅପେକ୍ଷା କରି ରହିଲା । ଫ୍ରାଲେନ୍ ଅତି ଧୀର ଗଳାରେ ତାକୁ

Digitized by srujanika@gmail.com

ଭିତରକୁ ଯିବା ପାଇଁ ଡାକିଲା । ସୋଫା ଆଡ଼କୁ ହାତ ଦେଖାଇ କହିଲା 'ବସ' । ତାର କ୍ଳାନ୍ତ ସତ୍ତ୍ୱେ ଫ୍ରଲେନ୍ କିନ୍ତୁ ତା ଖଟ ବାଡ଼ାରେ ଆଉଜି ଠିଆହେଲା । ଏମିତକି ସେ ତା'ର ଗ୍ଲୋଭ କିନ୍ତୁ ଅତବେଶୀ ଫୁଲରେ ସଜ୍ଜିତ ଟୋପିଟିକୁ ବି ମଥାରୁ କାଢ଼ିଲାନି ।

'ହଁ କ'ଣ କହିବ ପଲ ? କହନା, ଶୁଣିବାକୁ ଭାରି ଇଚ୍ଛା ହେଲାଣି ।' ସେ ତାର ଆଣ୍ଠୁ ଭାଙ୍ଗି ଠିଆ ହେଲା ।

'ତୁମେ ହୁଏତ କହିବ ଯେ ବର୍ତ୍ତମାନ ଏସବୁ କହିବା ଏବେ କିଛି ଜରୁରୀ ନୁହେଁ । କିନ୍ତୁ...'

'ମୋତେ ଗୌର ଚନ୍ଦ୍ରିକା ଭଲ ଲାଗେନି ।' ଫ୍ରଲେନ୍ କହିଲା ।

'କିନ୍ତୁ ତାହାହିଁ ମୋ' କାମକୁ ସହଜ କରିଦେବ । ଆଜି ସକାଳେ ତୁମ କୋଠରୀର ଜିନିଷସବୁ ସାମାନ୍ୟ ଏପାଖ ସେପାଖ ହୋଇଥିଲା ଏବଂ ଗୋଟିଏ ଦଗରୁ ବାହାର କଲେ ଏଥିପାଇଁ ମୁଁ ନିଶ୍ଚିତ ଭାବେ ଦାୟୀ । ଏସବୁ କିନ୍ତୁ ମୋ' ଅନିଚ୍ଛା ସତ୍ତ୍ୱେ କେତେକ ଅଜଣା ଲୋକଙ୍କ ଦ୍ୱାରା ଘଟିଲା । ତଥାପି ଯେହେତୁ ମୁଁ କହୁଛି ଏଥିପାଇଁ ମୁଁ ଦାୟୀ ତେଣୁ ତୁମ ପାଖରୁ କ୍ଷମା ମାଗିବାକୁ ଚାହେଁ ।'

'ମୋ' କୋଠରୀ' ଫ୍ରଲେନ୍ ପଚାରିଲା । ଆଉ କେ' ଆଡ଼କୁ ନ ଚାହିଁ କୋଠରୀର ଚାରିଆଡ଼େ ତୀକ୍ଷ୍ଣ ଦୃଷ୍ଟି ବୁଲାଇ ଆଣିଲା ।

'ହଁ ସେଇଆଡ଼ ।' କେ' କହିଲା ଏବଂ ପ୍ରଥମ ଥରପାଇଁ ଦୁହେଁ ଦୁହିଁଙ୍କୁ ଚାହିଁଲେ ।

'ଯେମିତି ଭାବେ ଏସବୁ ଘଟିଲା ସେସବୁ କହିବାର କିଛି ମୂଲ୍ୟ ନାହିଁ ।'

'କିନ୍ତୁ ସେଇଟାହିଁ ନିଶ୍ଚିତ ଭାବେ ସବୁଠୁ ମଜାକଥା ।' ଫ୍ରଲେନ୍ କହିଲା ।

'ନା'—କେ' କହିଲା ।

'ହେଲେ ମୁଁ ତୁମ ଗୁପ୍ତକଥା ଜାଣିବାକୁ ଆଦୌ ଇଚ୍ଛା କରୁନାହିଁ । ତୁମେ ଯେତେବେଳେ କହୁଛ ସେଥିରେ କିଛି ମଜା ନାହିଁ ମୁଁ ଆଉ ଯୁକ୍ତି କରିବିନି । ତୁମେ କ୍ଷମା ଚାହିଁଥିଲ ମୁଁ ଖୁସିରେ କ୍ଷମା ଦେଉଛି । କାରଣ ମୁଁ କୌଣସି ଜିନିଷ ଏପାଖ ସେପାଖ ହେବାର ଲକ୍ଷଣ ବି ଦେଖି ପାରୁନାହିଁ ।' ନିଜ ଖୋଲା ହାତକୁ

Digitized by srujanika@gmail.com

ଅଣ୍ଟା ଉପରେ ରଖି ସେ ଘର ସାରା ବୁଲିବାକୁ ଲାଗିଲା । ଫଟୋଗୁଡ଼ିକ ଲାଗିଥିବା ଗାଲେରୀ ପାଖରେ ସେ ଠିଆ ହୋଇଗଲା ।

'ହେଇ ଦେଖ, ମୋ' ଫଟୋଗୁଡ଼ାକୁ କିଏ ଏପାଖ ସେପାଖ କରିଛି । ଏହା ତ ପ୍ରକୃତରେ ବଡ଼ ଖରାପ କଥା । ତା'ହେଲେ ପ୍ରକୃତରେ କେହି ମୋ' ଘରେ ପଶିଥିଲା ଯା'ର ଏଘରେ ପଶିବାର କୌଣସି ଅଧିକାର ନାହିଁ ।'

କେ' ମୁଣ୍ଡ ହଲାଇଲା ଆଉ ନୀରବରେ ସେ କିରାଣୀ କାମିନର୍‌କୁ ଅଭିଶାପ ଦେବାକୁ ଲାଗିଲା । ସିଏ ତ ତାର ସେଇ ଅର୍ଥହୀନ ଦେହ ହଲକୁ ଆଦୌ ସଂଯତ କରିପାରିଲା ନାହିଁ ।

'ମୁଁ ଏବେ ବାଧ୍ୟ ହେବି ମନା କରିବାକୁ । ଅବଶ୍ୟ ଆପେ ଆପେ ତୁମର ଏହା କରିବା ଉଚିତ ଥିଲା । ମୋ' ଅନୁପସ୍ଥିତିରେ ତୁମେ ଆଉ ମୋ' ଘର ଭିତରକୁ ପଶିବ ନାହିଁ ।'

ଫଟୋଗ୍ରାଫ୍‌ଗୁଡ଼ାକ ପାଖକୁ ଯାଇ କେ' କହିଲା— 'କିନ୍ତୁ ମୁଁ ତୁମକୁ ବୁଝାଇ ଦେଇଛି ଯେ ମୁଁ ଏ ଫଟୋଗୁଡ଼ିକ ଦେହରେ ଲାଗିନାହିଁ । ମୁଁ ଜାଣେ ତୁମେ ବିଶ୍ୱାସ କରିବ ନାହିଁ । ତଥାପି ମୁଁ ସତ କହୁଛି । ଆଜି ଏଠାରେ ଗୋଟିଏ ତଦନ୍ତ କାମ ଚାଲିଥିଲା, ଆଉ ସେଇଥିପାଇଁ ତିନିଜଣ ବ୍ୟାଙ୍କ କିରାଣୀ ଏଠାକୁ ଆସିଥିଲେ । ସେଇମାନଙ୍କ ଭିତରୁ ଜଣେ ଏହି ଫଟୋଗୁଡ଼ିକୁ ଏପାଖ ସେପାଖ କରିଛି । ସୁଯୋଗ ପାଇବା ମାତ୍ରେ ତାକୁ ମୁଁ ଚାକିରିରୁ ବରଖାସ୍ତ କରିବ ।'

ଫ୍ରଲେନ୍‌ର କୌତୂହଳୀ ଚାହାଣିକୁ ସନ୍ତୁଷ୍ଟ କରିବା ପାଇଁ କେ' ପୁଣି କହିଲା—'ହଁ ଆଜି ଏଇଠି ଗୋଟିଏ ତଦନ୍ତ କାମ ଚାଲିଥିଲା ।'

'ତୁମ ବିଷୟରେ ?' ଫ୍ରଲେନ୍ ପଚାରିଲା ।

'ହଁ' ।

'ନା, ନା'—ହସିହସି ଝିଅଟି ପାଟିକରି ଉଠିଲା ।

'ହଁ, ସତ ।' କେ' କହିଲା । 'ତୁମେ ଭାବୁଛ କି ଯେ ମୁଁ ନିର୍ଦ୍ଦୋଷ ।' 'ହଁ ନିର୍ଦ୍ଦୋଷ । ହଜାରେ ଅର୍ଥ ବାହାରୁଥିବା କୌଣସି କଥାଟିକୁ ମୁଁ ସାଙ୍ଗେ ସାଙ୍ଗେ ମାନିନେବାକୁ ଚାହେଁ ନାହିଁ । ଏହା ବ୍ୟତୀତ ମୁଁ ପ୍ରକୃତରେ ତୁମକୁ ଜାଣେ ନାହିଁ । ପୁଣି ନିଶ୍ଚିତ ଭାବେ ଗୋଟିଏ ବିରାଟ ଦୋଷ ନ କରିଥିଲେ ଜଣେ ଲୋକ ଉପରେ ଏପରି ଅନୁସନ୍ଧାନ ହୁଅନ୍ତା ନାହିଁ । ତଥାପି ତୁମେ ଯେହେତୁ ମୁକ୍ତ, ଅତି କମ୍‌ରେ

Digitized by srujanika@gmail.com

ତୁମ ଆଖିରୁ ମୁଁ ଯାହା ଜାଣୁଛି ତୁମେ ଜେଲ୍‌ରୁ ପଳାଇ ଆସିବ । ତେଣୁ ତୁମେ କେବେ ଗୋଟେ ଖୁବ୍ ବଡ଼ ଦୋଷ କରିନଥିବ ।'

'ତା ସତ ହୋଇପାରେ । କିନ୍ତୁ ତଦନ୍ତ କମିଟି ଆବିଷ୍କାର କରିପାରେ ଯେ ମୁଁ ନିର୍ଦ୍ଦୋଷ ନୁହେଁ । କିନ୍ତୁ ସେମାନେ ଯେତେ ସନ୍ଦେହ କରୁଥିଲେ ସେତେ ବଡ଼ ଦୋଷ ମୁଁ କରିନାହିଁ ।'

'ହଁ, ନିଶ୍ଚିତଭାବେ ତା' ସମ୍ଭବ ।' ଖୁବ୍ ସତର୍କତା ସହ ଫ୍ରଲେନ୍ କହିଲା ।

'ଦେଖ, ଆଇନ୍ ଫାଇନ୍ ବିଷୟରେ ତୁମର ଖୁବ୍ ବେଶୀ ଅଭିଜ୍ଞତା ନାହିଁ ।'

'ହଁ ସତକଥା ମୋର ନାହିଁ । ସେଥିପାଇଁ ମୁଁ ଦୁଃଖ ପ୍ରକାଶ କରୁଛି । କାରଣ ଆଇନ ସମ୍ପର୍କରେ ଯେତେ ଯାହା ଜାଣିବାର ଅଛି ସବୁକିଛି ଜାଣିବାକୁ ମୁଁ ଚାହେଁ । ବିଶେଷ କରି ଏଇ ଆଇନ୍ ଅଦାଲତ ବିଷୟରେ ମୋର ବେଶୀ ଆଗ୍ରହ । ଏଇ ଅଦାଲତର ଗୋଟିଏ ବିଶେଷ ଆକର୍ଷଣ ନାହିଁ କି ? ଖୁବ୍ ଶୀଘ୍ର ଏ ବିଷୟରେ ଥିବା ମୋର ସବୁ ଅଜ୍ଞତାକୁ ଦୂର କରି ଦେବ । କାରଣ ଆର ମାସରୁ ମୁଁ ଜଣେ ଓକିଲଙ୍କ ଦପ୍ତରରେ କିରାଣୀ ହୋଇ ଯୋଗଦେଇଛି ।'

'ଖୁବ୍ ଭଲ କଥା । ତା'ହେଲେତ ତୁମେ ମୋ' ମକଦ୍ଦମାରେ ମୋତେ ସାମାନ୍ୟ ସହଯୋଗ କରିପାରିବ ।'

'ହଁ ତା' ହୋଇପାରେ । କାରଣ ମୋ' ମନରେ ସହଯୋଗ କରିବାକୁ ମୁଁ ଚାହେଁ ।' ଫ୍ରଲେନ୍ କହିଲା ।

'ମୁଁ କିନ୍ତୁ ଅଚ୍ଛା କରୁନାହିଁ । ଅନ୍ତତଃ ତୁମେ ଯେମିତି କଥାଟିକୁ ହାଲୁକା ଭାବେ ଧରିଛ ସେମିତିଭାବେ କହିଲେବି ମୋ ମକଦ୍ଦମାଟି ଏତେବେଶୀ ଜଟିଳ ନୁହେଁ ଯେ ଜଣେ ଓକିଲର ପ୍ରୟୋଜନ ହେବ । ଜଣଙ୍କର ଖାଲି ଟିକିଏ ଉପଦେଶ ଦ୍ୱାରା ଏ ମକଦ୍ଦମାଟିକୁ ଚଳାଇ ନେଇ ହେବ ।'

'ହଁ, ମୁଁ ଯଦି ତୁମକୁ ଏ ବିଷୟରେ ଉପଦେଶ ଦେବି ତା'ହେଲେ ତୁମ ମକଦ୍ଦମାଟିକୁ ଅନ୍ତତଃ ଭଲଭାବେ ମୋର ଜାଣିବା ଉଚିତ ।' ଫ୍ରଲେନ୍ କହିଲା ।

'ସେଇଠିତ ସବୁ ଅସୁବିଧା । ମୁଁ ତ ନିଜେ ତାହା ଜାଣିନାହିଁ ।'

'ତା'ହେଲେ ତୁମେ ମୋ ସାଙ୍ଗରେ ଅଚ୍ଛା କରୁଛ ।' ଖୁବ୍ ବେଶୀ ହତାଶ ହୋଇ ଫ୍ରଲେନ୍ ପୁଣି କହିଲା—'ଏବଂ ଏଇ ଅଚ୍ଛା ପାଇଁ ରାତିର ଏଇ ଅସମୟକୁ

Digitized by srujanika@gmail.com

ବାଛିନେବା ତୁମର ଦରକାର ନଥିଲା ।' ଏହା କହି ସେ ସେଇ ଫଟୋଗୁଡ଼ିକ ପାଖରୁ ଚାଲିଗଲା । ଏତେବେଳଯାଏ ତ ସେମାନେ ସେଇଠି ଠିଆ ହୋଇଥିଲେ ।

'କିନ୍ତୁ ଫ୍ରାଲେନ୍ ! ମୁଁ ତୁମ ସାଙ୍ଗରେ ଥଟ୍ଟା କରୁନାହିଁ । ତୁମେ ମୋତେ ବିଶ୍ୱାସ କର । ମୁଁ ଯାହା ଜାଣିଥିଲି ତୁମକୁ ସବୁ କହିଲି । ପ୍ରକୃତରେ ଏହାଠୁ ବେଶୀ ଯାହା ଜାଣିଛ ତା' ହେଉଛି ଆଜି ଯାହାହେଲା ତା' ତଦନ୍ତ ନୁହେଁ । ମୁଁ ଏମିତି କହିଲି କାରଣ ତାକୁ ଆଉ କ'ଣ କୁହାଯାଇପାରେ ମୁଁ ଜାଣେନାହିଁ । ମୋତେ ଆଦୌ କିଛି ପ୍ରଶ୍ନ ପଚରା ଯାଇନାହିଁ । ଆଜି ଯାହା ମୋତେ ଗିରଫ୍ କରାଗଲା ଏବଂ ଏହା ଗୋଟିଏ କମିସନ୍ ଦ୍ୱାରା କରାଯାଇଥିଲା ।'

ଫ୍ରାଲେନ୍ ସୋଫା ଉପରେ ବସିପଡ଼ି ଆଉଥରେ ହସିଉଠିଲା । 'ତେବେ ଏଇଟା କଅଣ ?' ସେ ପଚାରିଲା ।

'ଭୟଙ୍କର'—କେ' କହିଲା । କିନ୍ତୁ କେ' କ'ଣ କହୁଥିଲା ସେ ବିଷୟରେ ତାର କିଛି ଧାରଣା ନଥିଲା । କାହିଁକି ନା ଫ୍ରାଲେନ୍‌କୁ ଦେଖିବାରେ ସେ ପୁରା ମଜ୍ଜି ଯାଇଥିଲା । ସୋଫାର ଗଦିଉପରେ ଗୋଟିଏ କହୁଣି ରଖି ସେହି ହାତପାଖରେ ସେ ତାର ମଥାକୁ ଢଳାଇ ଦେଉଥିଲା । ଆଉ ଆରହାତଟିରେ ତାର ଉରୁକୁ ଧୀରେ ଧୀରେ ଆଉଁସୁଥିଲା ।

'ତା' ଖୁବ୍ ସାଧାରଣ ।'

'କ'ଣ ଖୁବ୍ ସାଧାରଣ ? କେ' ପଚାରିଲା ଏବଂ ସଙ୍ଗେ ସଙ୍ଗେ ପ୍ରକୃତିସ୍ଥ ହୋଇ ପଚାରିଲା—'ଏସବୁ କେମିତି ହେଲା ତୁମକୁ ଦେଖାଇ ଦେବି କି ?' ସେହି ଘରସାରା ବୁଲି ବୁଲି ଦେଖାଇବାକୁ ତାର ଇଚ୍ଛା ଥିଲେବି ତା ସ୍ଥାନ ଛାଡ଼ିବାକୁ ଇଚ୍ଛା ହେଉନାହିଁ ।

'ମୁଁ ଥକି ଯାଇଛି ।' ଫ୍ରାଲେନ୍ କହିଲା ।

'ଏତେ ଡେରିରେ ଘରକୁ ଫେରିଲ !' କେ କହିଲା ।

'ତାହେଲେ ତୁମେ ମୋତେ ଗାଳିଦେବା ପର୍ଯ୍ୟନ୍ତ ଆଗେଇ ଗଲଣି । ମୁଁ ମଧ୍ୟ ଏଥିପାଇଁ ହକ୍‌ଦାର । ତୁମକୁ ଭିତରକୁ ଆସିବାପାଇଁ ଅନୁମତି ଦେବା ଉଚିତ୍ ନଥିଲା । ଏ କଥା ସତ ଯେ ତାର କିଛି ଦରକାର ମଧ୍ୟ ନଥିଲା ।'

'ତାର ଦରକାର ଥିଲା । ମିନିଟିଏ ଭିତରେ ମୁଁ ତୁମକୁ ଦେଖାଇ ଦେଉଛି ।' କେ' କହିଲା । 'ତୁମ ଶେଯ ପାଖରୁ ଏଇ ଟେବୁଲ୍‌ଟିକୁ ଘୁଞ୍ଚାଇ ପାରେ କି ?

Digitized by srujanika@gmail.com

'ବାଃ, କି ଅଦ୍ଭୁତ ଚିନ୍ତା ! କେବେ ନୁହେଁ ।' ଫ୍ରାଲେନ୍ ଚିତ୍କାର କରି ଉଠିଲା ।

'ତା'ହେଲେ କେମିତି ସବୁ ହେଲା ମୁଁ ଦେଖାଇ ପାରିବନାହିଁ ।' ବିରକ୍ତ ହୋଇ କେ' କହିଲା ଯେମିତିକି ଅମାପ ଭୁଲ୍‌ର ସେ ଶିକାର ହୋଇଛି ।

'ଓଃ; ତୁମେ ଯଦି ଦେଖାଇବା ପାଇଁ ଚାହଁ ତେବେ ନିଶ୍ଚିତଭାବେ ଟେବୁଲକୁ ଘୁଞ୍ଚାଇପାର ।' ଟିକେ ନୀରବ ରହି ସେ ମୃଦୁସ୍ୱରରେ କହିଲା—'ମୁଁ ଏତେବେଶୀ ଠକି ଯାଇଛି ଯେ ତୁମକୁ ଖୁବ୍ ବେଶୀ ସ୍ୱାଧୀନତା ଦେଇ-ଦେଇଛି ।"

କେ' ଟେବୁଲଟିକୁ କୋଠରୀର ଠିକ୍ ମଝିରେ ରଖି ତା ପଛରେ ବସି ପଡ଼ିଲା । 'ତୁମେ ମନେ ମନେ ଭାବନିଅ ବିଭିନ୍ନ ଲୋକମାନେ କେଉଁଠି ସବୁ ଥିଲେ । ଭାରି ମଜା ଲାଗିବ । ମୁଁ ଇନ୍‌ସପେକ୍ଟର; ସେଠାରେ ସେଇ ସିନ୍ଦୁକ ଉପରେ ଦୁଇ-ଜଣ ଓ୍ୱାର୍ଡ଼ର ବସିଥିଲେ । ସେଇ ଫଟୋଗ୍ରାଫଗୁଡ଼ିକ ପାଖରେ ତିନିଜଣ ଟୋକା ଛିଡ଼ା ହୋଇଥିଲେ । ସେଇ ଝରକାର ଛିଟକିଣିରୁ ଗୋଟିଏ ଧଳା ବ୍ଲାଉଜ୍ ଝୁଲୁ-ଥିଲା । ବର୍ତ୍ତମାନ ଆରମ୍ଭ କରିପାରିବା ।'

'ଆରେ ମୁଁ ତ ଏ ନାଟକର ସବୁଠାରୁ ପ୍ରଧାନ ବ୍ୟକ୍ତି । ମୋ ନିଜକଥା ପୁରା ଭୁଲିଯାଇଛି । ହଁ ମୁଁ ସେଇ ଟେବୁଲ ସାମ୍ନାରେ ଠିଆ ହୋଇଥିଲି । ଇନ୍‌ସପେକ୍ଟର ଆରାମରେ ତା' ଗୋଡ଼କୁ ଛନ୍ଦି ସେଇଠି ବସିଥିଲା । ତା' ହାତ ଚୌକି ପଛପଟେ ଏମିତି ଝୁଲୁଥିଲା, ସେ ଦିଶୁଥିଲା ପୁରା ଜଙ୍ଗଲିଟାଏ ଯେମିତି । ବର୍ତ୍ତମାନ ଆମେ ପ୍ରକୃତରେ ଆରମ୍ଭ କରିବା । ଇନ୍‌ସପେକ୍ଟର ପାଟି କରୁଥିଲେ ଯେମିତିକି ମୋତେ ନିଦରୁ ଉଠାଇବେ । ପ୍ରକୃତରେ ସେ ରଡ଼ି ଛାଡ଼ୁଥିଲେ । ତୁମକୁ ଠିକ୍ ବୁଝିବାକୁ ହେଲେ ମୋତେ ମଧ୍ୟ ସେମିତି ରଡ଼ି ଛାଡ଼ିବାକୁ ପଡ଼ିବ । ସେ କିନ୍ତୁ ଖାଲି ମୋ ନାମକୁ ପାଟିକରି ଡାକୁଥିଲେ ।'

ଫ୍ରାଲେନ୍ ଆଗ୍ରହସହ ସବୁ ଶୁଣୁଥିଲା । କେ'କୁ ପାଟି ନ କରିବାକୁ ନିଜ ଓଠରେ ଆଙ୍ଗୁଳି ଚାପି ସଙ୍କେତ ଦେଲା । କିନ୍ତୁ ସେତେବେଳକୁ ବିଳମ୍ବ ହୋଇ ଯାଇଥିଲା । କେ' ନିଜ ଅଭିନୟରେ ଏତେବେଶୀ ମଜ୍ଜି ଯାଇଥିଲା ଯେ ସେ ଦୀର୍ଘ ଡାକଟିଏ ଛାଡ଼ିଲା—'ଜୋସେଫ୍ କେ' । ଅବଶ୍ୟ ଯେତେ ଜୋର୍‌ରେ ଡାକିବ ବୋଲି ଭୟ ହେଉଥିଲା ତା'ଠାରୁ କମ୍ ଜୋରରେ ଡାକିଲା । କିନ୍ତୁ ତା'ଡାକରେ ଏମିତି ଶକ୍ତି ଥିଲା ଯେ ଅଳ୍ପ ସମୟ ପାଇଁ ସେ ଡାକ ପବନରେ ଝୁଲି ରହି ଧୀରେ ଧୀରେ ସାରା କୋଠରୀ ଭିତରେ ଖେଳିଗଲା ।

Digitized by srujanika@gmail.com

ତା'ପରେ ପାଖଘର କବାଟରେ ହେଲା ଏକାଧ ଥରେ ଠକ୍‌ଠକ୍ ଶବ୍ଦ । ଖୁବ୍ ଜୋର୍, ତୀବ୍ର । ପୁରା ଯୁଦ୍ଧ ନାଗରା ଯେମିତି । ଫ୍ରାଲେନ୍ ଶେତା ପଡ଼ିଗଲା । କେ' ଖୁବ୍ ଜୋର୍‌ରେ ଚମକି ପଡ଼ିଲା । କ୍ଷଣକ ପାଇଁ ସେ ସକାଳର ଘଟଣାଠାରୁ ଏବଂ ଯେଉଁ ସ୍ଥିତି ଆଗରେ ସେସବୁର ଅଭିନୟ କରୁଥିଲା ତା' ପାଖରୁ ତା ମନକୁ ଟାଣି ଆଣିଲା । ନିଜ ଚୈତନ୍ୟକୁ ଫେରି ଆସିଲା ମାତ୍ରେ ସେ ଫ୍ରାଲେନ୍ ପାଖକୁ ଧାଇଁଯାଇ ତା ହାତକୁ ଧରି ପକାଇଲା । 'ତୁମେ ଡରନା । ମୁଁ ସବୁ ଠିକ୍ କରି ଦେଉଛି । ହୋଇପାରେ ? ସେ ମାରିଲେ ତ ଖାଲି ବସା ଉଠା କରିବାର ଘର । ସେ ଘରେ ତ କେହି ଶୁଅନ୍ତି ନାହିଁ ।' କେ' ଫିସ୍ ଫିସ୍ କରି ପଚାରିଲା ।

'ନା' ଫ୍ରାଲେନ୍ କେ' କାନ ପାଖରେ ଚୁପ୍‌ଚୁପ୍ କରି କହିଲା । 'କିନ୍ତୁ କାଲିଠାରୁ ସେ ଘରେ ଫ୍ରା ଗ୍ରୁବାକ୍‌ର ଜଣେ ପୁତୁରା ଶୋଉଛି । ସେ ଜଣେ କ୍ୟାପ୍‌ଟେନ୍ । ତା' ପାଇଁତ ଅନ୍ୟ ଘର ନାହିଁ । ମୁଁ ତ ଏକଥା ପୁରା ଭୁଲି ଯାଇଥିଲି । ଏମିତି ପାଟି କରିବାର କ'ଣ ଦରକାର ଥିଲା ?'

'ମୋର ସବୁ ଗୋଳମାଳ ହୋଇଗଲା ।'

ଏହାର କିଛି ଦରକାର ନଥିଲା । ତାର ଚୌକି ଉପରେ ବସି ପଡୁପଡୁ ସେ ଫ୍ରାଲେନ୍‌ର କପାଳରେ ଚୁମ୍ବନ କଲା ।

'ପଳାଅ ପଳାଅ' ତରତରରେ ବସି ପଡୁପଡୁ ଫ୍ରାଲେନ୍ ଚିତ୍କାର କରି ଉଠିଲା । 'ତୁମେ ଚାଲିଯାଅ, ଶୀଘ୍ର ଚାଲିଯାଅ । ତୁମେ କ'ଣ ଭାବୁଛକି ? ସେ ପରା କବାଟ ପାଖରେ ସବୁ ଶୁଣୁଛି । ତୁମେ ଭଲ ! ମୋତେ କେତେ ହଇରାଣ କରୁଛ ?'

'ମୁଁ ଯିବିନାହିଁ । ଅନ୍ତତଃ ତୁମେ ଟିକେ ଶାନ୍ତ ନ ପଡ଼ିବାଯାଏ ମୁଁ ଯିବି ନାହିଁ । ଚାଲ ଘରର ସେ କୋଣକୁ ଚାଲିଯିବା । ସେଠାରୁ ଆମକୁ ଆଉ ସେ ଶୁଣି ପାରିବ ନାହିଁ ।' ସେ କେ' ସହିତ ଘରର ଗୋଟିଏ କୋଣକୁ ଗଲା ।

'ତୁମେ ଭୁଲି ଯାଉଛ ଯେ ଏ ଘଟଣା ବିରକ୍ତିକର ହେଲେବି କେବେ ହେଲେ ତୁମପାଇଁ ବିପଦଜନକ ନୁହେଁ । ତୁମେ ଜାଣ ଏ ଘଟଣାରେ ଗ୍ରୁବାକ୍‌ର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ ବିଶେଷ କରି ଯେତେବେଳେ ତାର ପୁତୁରା ଜଣେ କ୍ୟାପ୍‌ଟେନ୍ । ତୁମେ ଜାଣ ସେ ମୋତେ କେତେ ସମ୍ମାନ କରେ ଏବଂ ମୁଁ ଯାହା କହେ ସବୁ ବିଶ୍ୱାସ କରେ । ମୁଁ କହିପାରେ ସେ ମଧ୍ୟ ମୋ' ଉପରେ ନିର୍ଭରଶୀଳ କାରଣ ମୋ' ପାଖରୁ ସେ ବେଶ୍ ମୋଟା ଦରର ଧାର କରିଛି । ଆମ ଦୁଇଜଣଙ୍କର ଏକା ସାଙ୍ଗରେ ରହିବା କଥା ପାଇଁ ଯେ କୌଣସି କୈଫିୟତ୍ ତୁମେ ଉଦ୍ଭାବନ

Digitized by srujanika@gmail.com

କରନା କାହିଁକି ମୁଁ ଜୋର୍ ଦେଇ କହୁଛି ତା' ପାଖରେ ସେସବୁ କିଛି ପ୍ରସ୍ତାବ ପକାଇବ ନାହିଁ । ତାର କିଛି ବିଶ୍ୱାସଯୋଗ୍ୟ ହେବ ନାହିଁ । ଏହା ଖୁବ୍ ଅବାସ୍ତବ ହେଲେବି ତାକୁ ସର୍ବସାଧାରଣରେ ଗ୍ରୁବାକ୍ ଗ୍ରହଣ କରିବ ନାହିଁ; ସତ୍ୟ ବୋଲି ନିଷ୍ଠାର ସହ ବିଶ୍ୱାସ କରିବ । ଏହା ମୁଁ ଶପଥ କରି କହିପାରେ । ତୁମେ ମୋ' କଥା ବିଚାର କରନାହିଁ । ତୁମର ଯଦି କହିବାର ଇଚ୍ଛାଥାଏ ଯେ ମୁଁ ତୁମକୁ ଆଘାତ କରିଛି ତେବେ ଗ୍ରୁବାକ୍‌କୁ ତା' ଜଣାଇ ଦିଅ । ମୋ' ଉପରୁ ତାର ଆସ୍ଥା ନ ହଟିଲେ ସେ ତାକୁ ବିଶ୍ୱାସ କରିବ । କାରଣ ମୋ' ପାଖରେ ସେ ଖୁବ୍ ବେଶୀ ଅନୁରକ୍ତ ।'

ଫ୍ରଲେନ୍ ବୁର୍ଷ୍ଟନ । କେମିତି ଝାଉଁଳି ପଡ଼ିଲା ପରି ଦିଶୁଥିଲା ଓ ସେ ଚଟାଣକୁ ଚାହିଁଥିଲା ।

'ଗ୍ରୁବାକ୍ କାହିଁକି ବିଶ୍ୱାସ କରିବ ନାହିଁ ଯେ ମୁଁ ତୁମକୁ ଆକ୍ରମଣ କରିଛି ବୋଲି ?' କେ' ତା' କଥା ଆରମ୍ଭ କଲା । କେ' ତାର ମଥାର ବାଳକୁ ଚାହିଁଥିଲା । ନାଲି, କହରା ବାଳ ସୁନ୍ଦର ଭାବେ କୁଣ୍ଡାହୋଇଛି । ମଝିରେ ସିନ୍ଥା ପଡ଼ି ପଛରେ ସୁନ୍ଦର ଜୁଡ଼ାଟିଏ ପଡ଼ିଛି । କେ' ଭାବିଲା ସେ ତା' ଆଡ଼କୁ ଅନାଇବ । ମାତ୍ର ସେ ତାର ଭଙ୍ଗୀ ନ ବଦଳାଇ କହିଲା—'ମୋତେ କ୍ଷମାକର । ହଠାତ୍ ଏତେ ଜୋର୍ ଠକ୍‌ଠକ୍ ଶବ୍ଦରେ ମୁଁ ଡରି ଯାଇଥିଲି । କ୍ୟାପ୍‌ଟେନ୍‌ର ଉପସ୍ଥିତି ଓ ତାର ଫଳାଫଳ ପାଇଁ ନୁହେଁ । ତୁମ ଚିତ୍କାର ପରେ ବି ସବୁ କେତେ ଚୁପ୍‌ଚାପ୍ ଥିଲା । କିନ୍ତୁ ତା'ପରେ ହଠାତ୍ ସେ ଶବ୍ଦ । ସେଇଥିପାଇଁ ମୁଁ ଏତେ ଡରି ଯାଇଥିଲି । ମୁଁ ପୁଣି କବାଟର ଖୁବ୍ ପାଖରେ ବସିଥିଲି । ଯେମିତି ଜଣାଗଲା ଠିକ୍ ମୋରି ପାଖରେ ସେ ଠକ୍‌ଠକ୍ ଶବ୍ଦ ହେଉଛି । ତୁମର ପ୍ରସ୍ତାବ ପାଇଁ ଧନ୍ୟବାଦ । ମୁଁ କିନ୍ତୁ ତାକୁ ଗ୍ରହଣ କରୁନାହିଁ । ମୋ କୋଠରୀରେ ଯାହା ହେବ ତାର ଦାୟିତ୍ୱ ମୋର । ସେସବୁ ମୁଁ ସମ୍ଭାଳିବି । ଯେ କେହି ଏ ବିଷୟରେ ପଚାରନ୍ତୁନା କାହିଁକି ସେଥିରେ ମୋର କିଛି ଯାଏ ଆସେ ନାହିଁ । ତୁମ ପ୍ରସ୍ତାବ ମୋତେ ଅପମାନିତ କରିବ ଏକଥା କେମିତି ବୁଝିପାରୁନ ! ଏହିକଥା ମୋତେ ଅଡୁଆ ଲାଗୁଛି । ଅବଶ୍ୟ ଏପରି ପ୍ରସ୍ତାବରେ ତୁମର ଭଲ ଉଦ୍ଦେଶ୍ୟ ଅଛି ଏବଂ ମୁଁ ତାକୁ ନିଶ୍ଚିତ ଭାବେ ପସନ୍ଦ କରୁଛି । କିନ୍ତୁ ବର୍ତ୍ତମାନ ତୁମେ ଯାଅ । ମୋତେ ଏକୁଟିଆ ରହିବାକୁ ଦିଅ । ବର୍ତ୍ତମାନ ଟିକେ ଶାନ୍ତିରେ ରହିବା ମୋର ସବୁଠାରୁ ବେଶୀ ପ୍ରୟୋଜନ । ତୁମେ କେତେ ମିନିଟ୍ ସମୟ ମାଗିଥିଲ । ତାହା ବର୍ତ୍ତମାନ ଅଧଘଣ୍ଟାଏରୁ ଅଧିକ ହେଲଣି ।'

କେ' ପ୍ରଥମେ ତାର ହାତ ଏବଂ ପରେ ତାର ମଣିବନ୍ଧକୁ ଧରି କହିଲା— 'ତୁମେ କିନ୍ତୁ ମୋ ଉପରେ ରାଗିନ ତ ?'

Digitized by srujanika@gmail.com

ସେ ତାର ହାତକୁ ଖସାଇ ନେଇ କହିଲା—'ମୁଁ କେବେ କାହାର ଉପରେ ରାଗେନା ।' କେ' ଆଉଥରେ ତାର ମଣିବନ୍ଧକୁ ଧରିବାକୁ ଚାହିଁଲା । ଏଥର ସେ ଧରିବାକୁ ଦେଲା ଆଉ ଦ୍ୱାର ଆଡ଼କୁ ତାକୁ ନେଇ ଆସିଲା । ଚାଲିଆସିବାକୁ ସେ ବଡ଼ ପରିକର ହୋଇ ସାରିଥିଲା । ମାତ୍ର ଦୁଆର ପାଖରେ କେ' ଅଟକିଗଲା ଯେମିତିକି ସେଠାରେ ଦ୍ୱାରଟିଏ ପାଇବାର ଆଶା ନାହିଁ । ଏହି ମୁହୂର୍ତ୍ତରେ ଫ୍ରଲେନ୍ ତା'ଠାରୁ ହାତକୁ ମୁକୁଳାଇ ଆଣିଲା । ଦ୍ୱାର ଖୋଲି ଦେଲା ଆଉ ପ୍ରବେଶ ହଲ୍‌କୁ ଚାଲିଯାଇ ସେଠାରେ ଚୁପଚୁପ କହିଲା—'ବର୍ତ୍ତମାନ ଦୟାକରି ଆସ । କ୍ୟାପ୍‌ଟେନ୍‌ର ଘରର ଦ୍ୱାର ଆଡ଼କୁ ହାତ ଦେଖାଇ କହିଲା—ଦେଖ, ଭିତରେ ଆଲୁଅ ଦିଶୁଛି···। ଦେଖ ସେ ତାର ଅଲୁଅ ଜାଳି ଆମକୁ ନେଇ ମଜ୍ଜା କରୁଛି ।'

'ହେଇ ଆସୁଛି ।' ଏତକ କହି କେ' ଧାଇଁଆସି ତାକୁ ଧରି ପକାଇଲା । ପ୍ରଥମେ ଓଠରେ ଏବଂ ପରେ ତାର ମୁହଁ ସାରା ଚୁମାରେ ଭରିଇ ଦେଲା । ସତେ ଯେମିତି ଥିଏ ଶୋଷିଲା ପଶୁଟିଏ । ବହୁ ଆକାଂକ୍ଷୀତ ସ୍ୱଚ୍ଛ ପାଣିକୁ ପାଇ ଆତୁର ହୋଇ ଚକୁଚକୁ ପିଇଯାଉଛି । ଶେଷରେ ତା ବେକରେ, ଠିକ୍ ଗଳା ତଳେ ଚୁମା ଦେଲା । ଏବଂ ସେଇଠି ତା' ଓଠକୁ ଅନେକ ସମୟ ଧରି ଚାପି ଧରିଲା । କ୍ୟାପ୍‌ଟେନ୍ ଘରୁ ସାମାନ୍ୟ ଶବ୍ଦ ଶୁଣି ସେ ମୁଣ୍ଡ ଟେକିଲା ।

'ମୁଁ ଏବେ ଯାଉଛି ।' ସେ କହିଲା । ସେ ଫ୍ରଲେନ୍‌ର ଡାକ ନାମରେ ତାକୁ ଡାକିବାକୁ ଇଚ୍ଛାକଲା । ମାତ୍ର ସେ ନାମ ତାକୁ ଜଣା ନଥିଲା । ଫ୍ରଲେନ୍ କ୍ଳାନ୍ତହୋଇ ମୁଣ୍ଡ ଝୁଙ୍କାଇଲା । ଚୁମା ଦେବା ପାଇଁ ତାର ହାତ ଦେଖାଇ ଦେଲା । ଅଧା ଭୁଲି ପଡ଼ିଲା । ଯେମିତି କି ସେ ଜଣେ କରୁଛି ସେ ବିଷୟରେ ତାର ଖିଆଲ ନାହିଁ ଏବଂ ଶେଷରେ ମୁଣ୍ଡ ତଳକୁ କରି ତା' କୋଠରୀକୁ ଚାଲିଗଲା । ଠିକ୍ ତା ପରେ ପରେ କେ' ତା' ବିଛଣାରେ ଶୋଇଥିଲା । ସାଙ୍ଗେ ସାଙ୍ଗେ ସେ ଶୋଇପଡ଼ିଲା । କିନ୍ତୁ ଶୋଇବା ଆଗରୁ ତା' ବ୍ୟବହାର ବିଷୟରେ ସାମାନ୍ୟ ଭାବି ଖୁବ୍ ଖୁସି ହେଲା । ତଥାପି ସେ ଆଶ୍ଚର୍ଯ୍ୟ ହେଲା ଯେ ସେ ସେତେବେଶୀ ଖୁସି ହୋଇନି । କାରଣ କ୍ୟାପ୍‌ଟେନ୍ ଯୋଗୁଁହିଁ ସେ ଫ୍ରଲେନ୍ ବିଷୟରେ ଏତେ ବେଶୀ ଗମ୍ଭୀର ଭାବେ ଚିନ୍ତାକରୁଛି ।



Digitized by srujanika@gmail.com

# ଦ୍ୱିତୀୟ ପରିଚ୍ଛେଦ

# ପ୍ରଥମଥର ପଚରା ଉଚରା

ଆସନ୍ତା ରବିବାର ଦିନ ମକଦ୍ଦମାର ଗୋଟିଏ ସଂକ୍ଷିପ୍ତ ତଦନ୍ତ କାର୍ଯ୍ୟ କରାଯିବ ବୋଲି କେ'ଙ୍କୁ ଟେଲିଫୋନ୍ ଦ୍ୱାରା ଜଣାଇ ଦିଆଗଲା । ଏମିତି ତଦନ୍ତ ଏଣିକି ଥରକୁଥର ଚାଲିବ । ବୋଧହୁଏ ସବୁ ସପ୍ତାହରେ ନୁହେଁ କିନ୍ତୁ ସମୟ ଯେତେ ଯାଉଥିବ ଗୁଡ଼ଗୁଡ଼ିକା ଅଧିକ ଥର ସେହିପରି ତଦନ୍ତ ହେଉଥିବ । ଏହି କଥା ପ୍ରତି ଦୃଷ୍ଟି ଆକର୍ଷଣ କରାଗଲା । ପାଖ ସର୍ବସାଧାରଣଙ୍କ ହିତ ଦୃଷ୍ଟିରୁ ମକଦ୍ଦମାଟି ଚଞ୍ଚଳ ଫଇସଲା ହୋଇଯିବା ଦରକାର । ଆଉପାଖେ ଏଇଟା ବି ଦରକାର ଯେ ତଦନ୍ତବେଳେ ପଚରା ଉଚରା ଯେମିତି ପ୍ରତ୍ୟେକ ବିଷୟରେ ଟିକିନିଖି ଭାବରେ ହେବ, ଯଦିଚ ତାହା ଫଳରେ ଶରୀର ଓ ମନ ଉପରେ ଚାପ ପଡ଼ିବ ବୋଲି ତାହା ପ୍ରତିଥର ବେଶୀବେଳ ଜାକେ ଚାଲିବା ଉଚିତ୍ ହେବନାହିଁ । ସେଥି ତଦନ୍ତ କାର୍ଯ୍ୟ ଲାଗି ସେହି ଉପାୟ ଧାର୍ଯ୍ୟ କରାଯାଇଛି ଯେ ପଚରା ଉଚରା ଥରକୁ ଥର ହୋଇ ତା ଉପରୁ ତା ଉପରୁ ବାରମ୍ବାର ହେଉଥିବ ଅଥଚ ପ୍ରତିଥର ଅଳ୍ପ ସମୟପାଇଁ ଚାଲିବ । ସପ୍ତାହର ପ୍ରତି ରବିବାର ଦିନ ତଦନ୍ତ କାର୍ଯ୍ୟ କରାଯିବ ବୋଲି ସ୍ଥିର କରାଯାଇଛି । ତାହା ହେଲେ କେ'ର ନିଜର ବୃତ୍ତି ସଂପର୍କୀୟ ଧନ୍ଦାରେ କିଛି ବ୍ୟାଘାତ ହେବନାହିଁ । ବିଶ୍ୱାସ କରାଯାଉଛି ଯେ ଏ ବ୍ୟବସ୍ଥାରେ କେ' ରାଜି ହେବ । କିନ୍ତୁ ଯଦି କେ' ରବିବାର ପରିବର୍ତ୍ତେ ଅନ୍ୟ ବାର ତାକୁ ସୁବିଧା ହେବ ବୋଲି କହିବ ସେମାନେ ତା ଇଚ୍ଛା ପୂରଣ କରିବାକୁ ତାଙ୍କର ଯଥାସାଧ୍ୟ ଚେଷ୍ଟା କରିବେ । ଉଦାହରଣ ସ୍ୱରୂପ ତଦନ୍ତ କାର୍ଯ୍ୟ ପ୍ରତିଥର ରାତିରେ ବି କରିବା ସମ୍ଭବ । ଯଦିଚ ସେତେବେଳକୁ କେ'କୁ ସତେଜ ଲାଗୁନଥିବ । ଯାହାହେଉ ରବିବାର ଦିନ ସେ ହାଜର ହେବ ବୋଲି ସେମାନେ ତାକୁ ପ୍ରତୀକ୍ଷା କରିଥିବେ, ଅବଶ୍ୟ କେ'ର ଯଦି ତାଙ୍କ ପ୍ରସ୍ତାବରେ ଆପତ୍ତି ନଥାଏ । ଅବଶ୍ୟ ଏତେକଥା କହିବାର ତାତ୍ପର୍ଯ୍ୟ ହେଲା ଯେ ତାକୁ ନିଶ୍ଚୟ ଯାଇ ହାଜର ହେବାକୁ

Digitized by srujanika@gmail.com

ପଡ଼ିବ, ହେଲା କରିବ ନାହିଁ ଓ ଏକଥା ଆଉଥରେ ସ୍ମରଣ କରାଇ ଦେବା ଆବଶ୍ୟକ ନାହିଁ । ସେ କେଉଁ ଘରେ ଯାଇ ହାଜର ହେବ ସେ ଘରର ନମ୍ବର ତାକୁ ଜଣାଇ ଦିଆଗଲା । ସେ ଘରଟା ଦୂରରେ, ସହରର ତଳ ଶେଷ ମୁଣ୍ଡିଆ ରାସ୍ତା ଉପରେ ସେଠିକି ଆଗରୁ କେବେ ସେ ଯାଇନଥିଲା ।

ଏଇ ଖବର ପାଇ କେ' କିଛି ଉତ୍ତର ନଦେଇ ଟେଲିଫୋନ୍‌ର ରିସିଭରକୁ ଯଥା ସ୍ଥାନରେ ଥୋଇ ଦେଲା । ରବିବାର ଦିନ ଯିବ ବୋଲି ସେ ମନସ୍ଥ କରି-ନେଲା । ଏପରି ଯିବା ନିହାତି ଦରକାରୀ । କାରଣ ମକଦ୍ଦମା କାମ ଆରମ୍ଭ ହୋଇଛି । ତାକୁ ଲଢ଼ିବାକୁ ପଡ଼ିବ । ଏହି ପ୍ରଥମ ପରସ୍ର ଉପରସ୍ର ହୁଏତ ଶେଷ ପରସ୍ର ଉପରସ୍ର ହେଇପାରେ । ଟେଲିଫୋନ୍ ପାଖରେ ଚିନ୍ତାଶୀଳ ହୋଇ ସେ ତଥାପି ଠିଆ ହୋଇଥାଏ । ଏତିକବେଳେ ସେ ଡେପୁଟି ମ୍ୟାନେଜର୍‌ର ସ୍ୱର ଶୁଣିଲା । ସିଏ ଟେଲିଫୋନ୍ କରିବାକୁ ସ୍ୱହସ୍ତ ଥିଲେ ମାତ୍ର କେ' ବାଟ ଓଗାଳି ଠିଆ ହୋଇଥିଲା ।

'କଣ' କିଛି ଖରାପ ଖବର ?' ଉପରଠାଉରିଆ ସ୍ୱରରେ ମାନେଜର ପଚାରି ଦେଲେ, ତାଙ୍କର କିଛି ଜାଣିବାର ଇଚ୍ଛା ନଥିଲା । ଖାଲି ଟେଲିଫୋନ୍ ପାଖରୁ କେ'କୁ ହଟାଇବା ପାଇଁ ତାଙ୍କର ଯାହା ବ୍ୟାକୁଳତା ।

'ନାଁ ନାଁ' କେ' କହିଲା । ସେ ଟିକେ କଡେଇଗଲା ମାତ୍ର ସେଠାରୁ ଚାଲି-ଆସିଲାନି ।

ଡେପୁଟି ମାନେଜର ଫୋନ୍ ଉଠାଇ ନେଲେ ଏବଂ ଫୋନ୍‌ରେ କଥା କହିବା ପୂର୍ବରୁ କହିଲେ—'କେ' ତୁମ ସାଥିରେ ଗୋଟିଏ କଥା ଥିଲା । ମୋତେ ଟିକେ ଦୟା କରିବେ କି ? ରବିବାର ସକାଳେ ମୋ ନୌକାରେ ଗୋଟିଏ ପାର୍ଟିରେ ଯୋଗଦେବେ ? ଏହା ନିଶ୍ଚିତଭାବେ ଗୋଟେ ଖୁବ୍ ବଡ଼ ପାର୍ଟି । ଆପଣଙ୍କର—ଅନେକ ବନ୍ଧୁ ନିଶ୍ଚୟ ଏଥିରେ ଯୋଗଦେବେ । ଓକିଲ ହାରହସ୍ଥାରର ମଧ୍ୟ ସେମାନଙ୍କ ଭିତରେ ଜଣେ । ଆପଣ ଆସିବେତ ? ନିଶ୍ଚୟ ଆସିବେ ।'

ଡେପୁଟି ମାନେଜର କଅଣ କହୁଛନ୍ତି ଶୁଣିବାକୁ କେ' ଚେଷ୍ଟାକଲା । ଏହା ତା ପାଖରେ କମ୍ ଗୁରୁତ୍ୱପୂର୍ଣ୍ଣ ନଥିଲା । କାରଣ ଏ ନିମନ୍ତ୍ରଣ ଯାହାପାଖରୁ ଆସିଲା ତା'ସହ ତାର କେବେ ବନ୍ଧୁତ୍ୱପୂର୍ଣ୍ଣ ଆଳାପ ହୋଇନଥିଲା । ସେଥିପାଇଁତ ଏ ନିମନ୍ତ୍ରଣ ସୂଚାଇ ଦେଉଛି—ବ୍ୟାଙ୍କ୍‌ରେ ତାର କେତେ ପ୍ରାଧାନ୍ୟ । ପୁଣି ତାର ବନ୍ଧୁତା, ବିଶେଷତ ତାର ନିରପେକ୍ଷତା ବ୍ୟାଙ୍କ୍‌ର ଏଇ ଦ୍ୱିତୀୟ ବଡ଼ ଅଫିସରଙ୍କ

Digitized by srujanika@gmail.com

ପାଖରେ କେତେ ମୂଲ୍ୟବାନ ହୋଇପଡ଼ୁଛି । ଏପରି ନିମନ୍ତ୍ରଣ କରିବେଳେ ଏଇ ଡେପୁଟି ମାନେଜର ନିଶ୍ଚିତ ଭାବେ ନିଜକୁ ବିନମ୍ରୀ କରି ଦେଇଛନ୍ତି, ଯଦିଓ-- ଟେଲିଫୋନରେ ଲାଇନ୍ ପାଇବାକୁ ଅପେକ୍ଷା କରିଥିଲାବେଳେ ସେ ନିହାତି ଖାମ୍-ଖିଆଲି ଭାବେ ଏହା କହିଥିଲେ । ତଥାପି କେ' ସେ ଭଦ୍ରଲୋକଙ୍କ ଦ୍ୱିତୀୟଥରପାଇଁ ବିନମ୍ର ହେବାପାଇଁ ବାଧ୍ୟକଲା, ସେ କହିଲା—'ବହୁତ ଧନ୍ୟବାଦ । କିନ୍ତୁ ମୁଁ ଦୁଃଖିତ । ରବିବାର ଦିନ ମୋର ସମୟ ହେବନି । ମୋର କାମ ଅଛି ।' ଦୁର୍ଭାଗ୍ୟ, ସଙ୍ଗେ ସଙ୍ଗେ ଲାଇନ୍ ପାଇଥିବା ଫୋନ୍‌ରେ କଥା କହିବାକୁ ଯାଇଁ ଯାଇଁ ଡେପୁଟି ମ୍ୟାନେଜର କହିଲେ । ଅନେକ ସମୟ ଧରି ସେ କଥାବାର୍ତ୍ତା ହେବାକୁ ଲାଗିଲା । କଣ କରିବ କିଛି ଠିକ୍ କରି ନପାରି ଅଗତ୍ୟା ତାଙ୍କ କଥା ସରିବା ପର୍ଯ୍ୟନ୍ତ କେ' ସେଠାରେ ଠିଆ ହୋଇରହିଲା ।

ମ୍ୟାନେଜର ଟେଲିଫୋନ ଥୋଇଲା ପରେ ଯାଇ କେ'ର ଅନ୍ୟମନସ୍କତା ଭାଙ୍ଗିଲା ଆଉ ତାର ଅର୍ଥହୀନ ଭାବରେ ଏପାଖ ସେପାଖ ହେବାକୁ କ୍ଷମାଦେବା ପାଇଁ ଅନୁରୋଧ କଲା । 'ଏଇମାତ୍ର ଫୋନକରି ସେମାନେ ମୋତେ ଗୋଟେ ଜାଗାକୁ ଯିବା ପାଇଁ କହିଲେ, ଅଥଚ କେତେବେଳେ ଯିବାକୁ ପଡ଼ିବ ସେକଥା ଜଣାଇଲେନି ।'

'ଆରେ ତୁମେ ଫୋନ୍‌କରି ପଚାରି ଦେଉନ ?'

'ତା ଏତେ ଜରୁରୀ ନୁହେଁ ।' କେ' କହିଲା । ଯଦିଓ ଏପରି କରିବା ଦ୍ୱାରା ପ୍ରଥମେ ଦେଖାଇଥିବା ସବୁ କାରଣଗୁଡ଼ିକୁ ସେ ଆହୁରି ଦୁର୍ବଳ କରିଦେଲା । ଡେପୁଟି ମାନେଜର ଯିବାକୁ ବାହାରିଲେ । ଆଉ ଗଲାବେଳେ ବିଭିନ୍ନ ବିଷୟରେ ତାଙ୍କ ମନ୍ତବ୍ୟ ଦେଇଗଲେ ।

କେ' ବାଧ୍ୟ ହୋଇ ଉତ୍ତର ଦେଇଥିଲା ସେତେବେଳେ । ପ୍ରକୃତରେ ସେ ଭାବୁଥିଲା ଯେ, ତାକୁ ଦିଆଯାଇଥିବା ଠିକଣା ସ୍ଥାନକୁ ରବିବାର ଦିନ ୯ଟା ବେଳେ ଯିବା ତା ପାଖରେ ସବୁଠାରୁ ଭଲ ହେବ । କାରଣ ସପ୍ତାହର ଅନ୍ୟଦିନମାନଙ୍କରେ କୋର୍ଟର କାମ ଆରମ୍ଭ କରିବାର ବେଳ ସେଇଟା ।

ରବିବାରଟା ନିରସ । କେ' ବଡ଼ କ୍ଳାନ୍ତ । କାରଣ ପୂର୍ବରାତିରେ ଗୋଟିଏ ଉତ୍ସବ ଯୋଗୁଁ ସେ ରେସ୍ତୋରାଁରେ ଅନେକ ବେଳ ପର୍ଯ୍ୟନ୍ତ ରହିଯାଇଥିଲା । ତେଣୁ ଖୁବ୍ ବେଶୀ ଶୋଇ ପଡ଼ିଥିଲା । ତେଣୁ ତରତରରେ କୌଣସି କଥା ଭାବିବାକୁ ତାର ବେଳ ହେଲାନି । ପୂର୍ବର କରିଥିବା ସବୁ ପ୍ରୋଗ୍ରାମ୍‌କୁ ସେ ଭୁଲି-ଗଲା । ଚଟାପଟ୍ ପୋଷାକ ପିନ୍ଧି ଜଳଖିଆ ନ ଖାଇ ସେ ଚାଲିଲା ସହରର ତଳ ସେ

Digitized by srujanika@gmail.com

ଘରଟିକୁ, ଯାହାର ଠିକଣା ତାକୁ ଆଗରୁ ଦିଆଯାଇଥିଲା । ତରତରରେ କୌଣସି ଲୋକଙ୍କୁ ଦେଖିବା ପାଇଁ ତାର ବେଳ ନଥିଲେ ବି ବଡ଼ ଆଶ୍ଚର୍ଯ୍ୟର କଥା ତା କେସ୍‌ରେ ଜଡ଼ିତ ତିନିଜଣ କାରଣୀଙ୍କ ଉପରେ ତାର ନଜର ପଡ଼ିଗଲା । ସେ ତିନିଜଣ ହେଲେ ରେବେନ ସେଟ୍‌ନାର, କୁଲିଚ୍ ଓ କେମିନାର । ପ୍ରଥମ ଦୁଇଜଣ ଟ୍ରାମ୍‌ରେ ଯାଉଥିଲେ, ଯେଉଁ ଟ୍ରାମ୍‌ଟି ତା ଆଗଦେଇ ଚାଲିଗଲା । କେମିନାର ଗୋଟିଏ ଚା ଦୋକାନର ଆଗରେ ବସି ବଡ଼ ଅଶ୍ରଦ୍ଧ ସହକାରରେ ରେଲିଂ ଦେଇ ତାକୁ ଚାହିଁଥିଲା । ଏଇ ତିନିଜଣଯାକ ଯେମିତି ତାକୁ ଦେଖୁଥିଲେ ଆଉ ତାଙ୍କ ମାଲିକ କୁଆଡ଼େ ଧାଇଁଛନ୍ତି ଭାବି ଆଶ୍ଚର୍ଯ୍ୟ ହେଉଥିଲେ । ଏକପ୍ରକାର ଗର୍ବ, ଅହମିକା, ଦେଖାଉର ଭାବ କେ' ମନକୁ ଆସିଲା । ତେଣୁ କୌଣସି ଗୋଟିଏ ଯାନରେ ତାର ଗନ୍ତବ୍ୟ ଜାଗାକୁ ଯିବାକୁ ତାର ଇଚ୍ଛା ହେଲାନି । ସେ ତା କେସ ପାଇଁ କାହାର ସାହାଯ୍ୟ ନେବ—ଏମିତିକି ଅତି ଅପରିଚିତ ଲୋକର, ଏପରି ଚିନ୍ତାକୁ ସେ ଘୃଣା କରିବାରେ ଲାଗିଲା । ଏମିତିକି ଏ ପ୍ରଶଂସାରେ କେହି ଅତି ଉପରଠାଉରିଆ ଭାବରେ ଟିକିଏ ଆଗ୍ରହ ପ୍ରକାଶ କରୁ ଏହାବି ପସନ୍ଦ କଲାନି । ଏବଂ ଶେଷରେ ଅତି ସମୟାନୁବର୍ତ୍ତିତା ଦେଖାଇ ତଦନ୍ତ କୋର୍ଟ ଆଗରେ ଠିକ୍ କଣ୍ଟେ କଣ୍ଟେ ପହଁଚି ନିଜକୁ ଅତି ଛୋଟକରି ଦେବାକୁ ଇଚ୍ଛା କଲାନି । ତେବେବି ସେ ଖୁବ୍ ଶୀଘ୍ର, ଶୀଘ୍ର ଚାଲିଥିଲା । ଯେମିତିକି ସମ୍ଭବ ହେଲେ ୯ଟା ବେଳେ ପହଁଚି ପାରିବ । ଯଦିଓ ଠିକ୍ କେତେବେଳେ ତାକୁ ପହଁଚିବାକୁ ପଡ଼ିବ ସେ ବିଷୟରେ ନିର୍ଦ୍ଦିଷ୍ଟ କରି ତାକୁ କୁହାଯାଇନଥିଲା ।

ସେ ଭାବିଥିଲା ଯେ ସେ ଘରଟା ଏମିତିକି ଦୂରରୁ ଚିହ୍ନା ପଡ଼ିଯିବ । କେଉଁ ଚିହ୍ନଦ୍ୱାରା ଚିହ୍ନା ପଡ଼ିବ ସେ ବିଷୟରେ ଅବଶ୍ୟ ତାର ଧାରଣା ଅସ୍ପଷ୍ଟ ଥିଲା । ସେ ପୁଣି ଭାବିଥିଲା ଯେ ସେ ଘର ଆଗରେ ଗୋଟେ ହଇଚଇ ହେଉଥିବ । କିନ୍ତୁ ଜୁଲିଆ ଷ୍ଟ୍ରିଟ୍ ଯେଉଁଠି ସେଇ ଘରଟି ଅବସ୍ଥିତ ତାହାର ଗୋଟିଏ ମୁଣ୍ଡରେ କେ' ଅଟକିଲା । ସେଠି ରାସ୍ତାର ଦୁଇକଡ଼ରେ ପ୍ରାୟ ଏକା ରକମର ବଡ଼ବଡ଼ ଧୂସର ଘରର ଧାଡ଼ି । ସେ ଘରଗୁଡ଼ିକରେ ଗରିବ ଲୋକମାନେ ରହୁଛନ୍ତି । ରବିବାର ହୋଇଥିବାରୁ ଘରଗୁଡ଼ିକରେ ଲୋକ ଭର୍ତ୍ତି । ଅଧିକାଂଶ ଝର୍କା ପାଖରେ ଲୋକସବୁ ଠିଆ ହୋଇଛନ୍ତି । କିଏ ସାର୍ଟ ପିନ୍ଧି ନାହିଁ ପତ୍ର ସିଗାରେଟ ଟାଣୁଛି, କିଏବା ଗ୍ରେଟପିଲାକୁ ହୁସିଆରରେ ଧରି ଝରକା ଧାରରେ ଠିଆ କରାଇଛି । କେଉଁ କେଉଁ ଝରକାରେ ବେଡ଼ିଂପଟା ସବୁ ଗଦା ହୋଇଛି ଏବଂ ସେଇ ଗଦା ଉପରୁ ଜଣେ ଜଣେ ସ୍ତ୍ରୀଲୋକର ଅଲରା ଅସନା ମଥା କ୍ଷଣକ ପାଇଁ ଦିଶିଯାଉଛି । ରାସ୍ତାର ଏକଡ଼ୁ ସେକଡ଼ ଲୋକମାନେ ନିଜ ନିଜ ଭିତରେ ଡକାଡକି ହେଉଛନ୍ତି । ଠିକ୍ କେ'ର

Digitized by srujanika@gmail.com

ମୁଣ୍ଡ ଉପରେ ଏମିତି ଗୋଟିଏ ଚକ୍ରାକାର ଗୁଡ଼ାଏ ବହଳ ସୃଷ୍ଟି କରିଥାଏ । ରାସ୍ତାସାରା, ଛୋଟ ଛୋଟ ଗୁଡ଼ାଏ ଭୁଷା ଦୋକାନ । ଦୋକାନ ଉପରକୁ ପାହାଚ ସବୁ ଲମ୍ବି ଯାଇଛି । ସ୍ତ୍ରୀଲୋକ ସବୁ ଏଇ ଦୋକାନମାନଙ୍କୁ ଯାଉଥିଲେ ଆଉ ଆସୁଥିଲେ । କେହି କେହି ବାହାରେ ପାହାଚ ଉପରେ ଠିଆହୋଇ ଗପ କରୁଥିଲେ । ପାଟି କରି, କରି ତା ଫଳ ବିକୁଥିବା ଫଳ ବିକାଳୀଟିଏ ଅନ୍ୟମନସ୍କ ଭାବେ ତା ଗାଡ଼ିକୁ ଠେଲି ଠେଲି ଆଣି, ଅନ୍ୟମନସ୍କ କେ' ଦେହରେ ପ୍ରାୟ ଧକ୍କା ଲଗାଏ ନ ଲଗାଏ । ସମ୍ଭବତଃ କୌଣସି ଦୂର ଅଞ୍ଚଳରେ ଅନେକ ଦିନ ବାଜିନଥିବା ଗୋଟିଏ ବହୁପୁରୁଣା ଗ୍ରାମ୍‌ଫୋନର ଘଷରା ମୋଟା ସ୍ୱରକୁ ଯେମିତି କେହି ବେକମୋଡ଼ି ମାରି ଦେଉଥିଲା ।

ଧୀରେ ଧୀରେ କେ' ଅନ୍ଦର ଭିତରକୁ ପଶିଲା । ଯେମିତିକି ତା ହାତରେ ଅନେକ ସମୟ ଜମା । ଯେମିତିକି ତଦନ୍ତ କରିବା ମାଜିଷ୍ଟ୍ରେଟ୍ ଗୋଟିଏ ଚଉକି ଉପରୁ ନଇଁପଡ଼ି ରାସ୍ତାକୁ ତାର ଆସିବା ବେଳକୁ ଚାହିଁ ରହିଛନ୍ତି । ୯ଟା ବାଜି ଅଳ୍ପ ସମୟ ହୋଇଥାଏ । ରାସ୍ତାରେ ଗୁଡ଼ାଏ ବାଙ୍କ ଗଲେ ଯାଇ ସେ ଘରଟି ପଡ଼ିବ । ଏହା ଅତିବଡ଼ ବିଶେଷତ୍ୱ ତାର ପ୍ରଧାନ ପ୍ରବେଶ ଦ୍ୱାରଟି ଖୁବ୍ ଉଚ୍ଚ ଆଉ ଓସାରିଆ । ଏହା ପ୍ରକୃତରେ ଟ୍ରକ୍‌ମାନଙ୍କ ପାଇଁ ଯିବା ରାସ୍ତା । ଖୁବ ପଡ଼ିଥିବା କରିନ୍ ଗୋଦାମ ଘରଗୁଡ଼ିକ ଅଗଣାକୁ ଘେରି ରହିଛନ୍ତି । ସେ ଘରଗୁଡ଼ିକ ଆଗରେ କମ୍ପାନୀର ନାମଫଳକ ସବୁ ରହିଥିଲା । ଏଇ କମ୍ପାନୀମାନଙ୍କୁ କେ' ତା ବ୍ୟାଙ୍କ୍ ଲେଜର ଖାତାରୁ ଜାଣିଥିଲା । ତା ପ୍ରକୃତିବିରୁଦ୍ଧ ହେଲେବି କେ' ସେଗୁଡ଼ିକର ବାହାର ଚେହେରାକୁ ଖୁବ୍ ମନ ଦେଇ ନିରୀକ୍ଷଣ କରିବାକୁ ଲାଗିଲା । ସେଥିପାଇଁ ଅଗଣାକୁ ଯିବା ଦ୍ୱାର ପାଖରେ ବେଶ୍ କିଛି ସମୟ ପାଇଁ ଠିଆହୋଇ ରହିଲା । ତା ପାଖରେ ଜଣେ ଲୋକ ଖାଲି ପାଦରେ ଗୋଟିଏ କାଠ ବାକ୍ସ ଉପରେ ବସି ଖବରକାଗଜ ପଢୁଥିଲା । ଦୁଇଟିପିଲା ଗୋଟିଏ ଠେଲା ଗାଡ଼ିରେ ବସି ଉପର ତଳ ହେଉଥିଲେ । ଗୋଟିଏ ରୋଗୀଣା ଝିଅଟେ ଜ୍ୟାକେଟ୍ ପିନ୍ଧି ପାଣିକଳ ପାଖରେ ଛିଡ଼ା ହୋଇଥିଲା ତା ବାଲ୍‌ଟିରେ ପାଣି ପଡୁଥିଲା ବେଳେ ସେ କେ' ଆଡ଼କୁ ଚାହିଁଥିଲା । ଅଗଣାର ଗୋଟିଏ କୋଣରେ ଦୁଇଟି ଚଉକି ମଝିରେ ଦଉଡ଼ିଟିଏ ଟଣାହୋଇ ଓଦାଲୁଗା ଶୁଖୁଥିଲା । ତଳେ ଜଣେ ଲୋକ ଠିଆହୋଇ ଲୋକଙ୍କର କାମକୁ ତଦାରଖ କରୁଥିଲା । ଆଉ ମଝିରେ ମଝିରେ ଡାକଟିଏ ମାରି ଦେଉଥିଲା ।

କେ' ସିଡ଼ି ଆଡ଼କୁ ଗଲା ଉଦ୍ଦେଶ୍ୟ, ତଦନ୍ତ କୋର୍ଟ ବସୁଥିବା କୋଠରୀକୁ ଯିବ । କିନ୍ତୁ ହଠାତ୍ ଠିଆହୋଇଗଲା, କାରଣ ଏଇ ସିଡ଼ିଭଳି ଆହୁରି ଅଲଗା ୩ଟି

Digitized by srujanika@gmail.com

ସିଡ଼ିଥିବାର ସେ ଦେଖିଲା । ପୁଣି ତା ଛଡ଼ା ଅଗଣାର ଆରପଟରେ ଗୋଟିଏ ଛୋଟ ଗଳି ରାସ୍ତା ଦ୍ୱିତୀୟ ଅଗଣାକୁ ଅଛି । କେଉଁ କୋଠରୀକୁ ଯିବ ସେ ବିଷୟରେ ସଠିକ୍ କିଛି ବୁଝାହୋଇନଥିବାରୁ ସେ ମନେ, ମନେ ରାଗିଗଲା । ଏଇ ଲୋକଗୁଡ଼ାକ ତା ପ୍ରତି ଅଭଦ୍ର ଅବହେଳା ଓ ଉଦାସୀନତା ଦେଖାଉଛନ୍ତି । ଏକଥା ତାଙ୍କୁ ସିଧା ସିଧା କହିଦେବ ବୋଲି ମନେ ମନେ ଠିକ୍ କଲା । ଯା' ହେଉ ସେ ଶେଷରେ ପ୍ରଥମ ସିଡ଼ିରେ ଉଠିଲା ଓ ଓ୍ୱାଡ଼ର ଉଇଲେ କହିଥିବା କଥା ତାର ମନେ ପଡ଼ିଗଲା । ସେ କହିଥିଲା ଯେ ଦୋଷ ଆଉ ଆଇନ ଭିତରେ ଗୋଟିଏ କେମିତି ଆକର୍ଷଣ ଅଛି । ଏଇଥିରୁ ଏତିକି ଧରି ନିଆଯାଇ ପାରେ ଯେ ଯେକୌଣସି ପାହାଚକୁ ବାଛିଲେ ବି ତଦନ୍ତ କୋର୍ଟ ପାଖରେ ପହଁଚିହେବ ।

ବାଟରେ ଯାଉ ଯାଉ ସିଡ଼ିରେ ଖେଳୁଥିବା ଅନେକ ଛୁଆଙ୍କ ଖେଳରେ ବାଧା ସୃଷ୍ଟିକଲା । ସେମାନେ ସଜାଇଥିବା ବାଟି ମଝିରେ ତରତରରେ ପଶି ତାଙ୍କ ଖେଳ ଭାଙ୍ଗିଦେବାରୁ ପିଲମାନେ ତାକୁ ରାଗିକରି ଚାହିଁଲେ । ସେ ମନେ ମନେ ଭାବିଲା 'ଆଉ ଯଦି କେବେ ଆସେ ତେବେ ପିଲାଙ୍କୁ ଭୁଲାଇବା ପାଇଁ ସାଥିରେ ଟଫି ଆଣିବ କମ୍ବା ପିଟିବା ପାଇଁ ବାଡ଼ିଟିଏ ଆଣିବ । ପ୍ରଥମ ମହଲାରେ ପହଁଚିବା ଠିକ୍ ପୂର୍ବରୁ କେ' ଦେଖିଲା ବାଟିଟିଏ ଗଡ଼ିଗଡ଼ି ଆସୁଛି । ବାଟିଟି ସ୍ଥିର ହେବା ପର୍ଯ୍ୟନ୍ତ ତାକୁ ଅପେକ୍ଷା କରିବାକୁ ପଡ଼ିଲା । ଦୁଇଟି ପିଲା ତା ପେଣ୍ଟକୁ ଟାଣିଧରିଲେ । ସେମାନଙ୍କ ମୁହଁ ଲଫଙ୍ଗା । ପିଲମାନଙ୍କ ପରି ନାନାପ୍ରକାର ଦାଗପଡ଼ି ରୁକ୍ଷ ଦିଶୁଥିଲା । ସେ ଯଦି ସେମାନଙ୍କୁ ଜୋରକରି ଛଡ଼ାଇ ଦେଉଛି ତେବେ ସେମାନଙ୍କ ଦେହରେ ଆଘାତ ଲାଗିବ । ପୁଣି ସେମାନଙ୍କର ବଡ଼ ପାଟି ଶୁଣି ସେ ଡରିଗଲା । ତେଣୁ ବାଧ୍ୟହୋଇ ଠିଆହେଲା । ପ୍ରକୃତ ଖୋଜିବା କାମ ତାର ଆରମ୍ଭ ହେଲା, ଏହି ପ୍ରଥମ ମହଲାରେ । ତଦନ୍ତ କୋର୍ଟ କେଉଁ କୋଠରୀରେ ବସିଛି ସେକଥା ସିଏ ପଚାରି ପାରିବନି । ତେଣୁ ସେ ଗୋଟେ ନୂଆ ଉପାୟ ପାଞ୍ଚିଲା । ମିଛିମିଛିକା ଲେନ୍‌ଜ ନାମରେ ଗୋଟେ କାଠ ମିସ୍ତ୍ରୀକୁ ଖୋଜିଲା । ଫ୍ରାଉ ଗ୍ରୁବାକ୍‌ର ପୁତୁରା, କ୍ୟାପ୍‌ଟେନ୍‌ର ନାମ ଥିଲା ଲେନ୍‌ଜ ସେଇଠୁ ସେ ନାମଟି ପାଇଲା । ବର୍ତ୍ତମାନ ସେ ପ୍ରତ୍ୟେକ କୋଠରୀକୁ ଯାଇ ଲେନ୍‌ଜ କେଉଁଠି ରହେ ପଚାରିବାକୁ ଲାଗିଲା । ଏହି ଅବସରରେ କୋଠରୀ ଭିତରଟା ଦେଖିବାର ସୁଯୋଗ ପାଇଲା । ଏହା ଠିକ୍ କାମ କଲା । କାହାରି ଦୃଷ୍ଟି ଆକର୍ଷଣ ନକରି ମଧ୍ୟ ସବୁ ଘରଭିତରକୁ ଚାହିଁବା ଏହାଦ୍ୱାରା ସମ୍ଭବ ହେଲା । କାହିଁକି ନା ସବୁ ଘରଗୁଡ଼ିକ ପ୍ରାୟ ଖୋଲା । ପିଲା-ମାନେ ଧାଁ ଦୌଡ଼ କରୁଥାଆନ୍ତି । ସବୁଘରେ ଗୋଟିଏ ଗୋଟିଏ ଛୋଟ କୋଠରୀ ଯେଉଁଠି ରନ୍ଧା ଚୁଲିଥାଏ । ଅନେକ ସ୍ତ୍ରୀଲୋକ ଗୋଟାଏ ହାତରେ ଛୁଆଧରି ଆରହାତରେ ରନ୍ଧାରନ୍ଧି କରୁଥାଆନ୍ତି । ଖାଲି ଫ୍ରକ୍ ବ୍ୟତୀତ ଆଉ କିଛି ପିନ୍ଧିଥିଲା

Digitized by srujanika@gmail.com

ପର ଜଣାପଡୁ ନଥିଲା । ଗାଡ ଅଠବର୍ଷର ଝିଅମାନେ ବୃଥାଟାରେ ବ୍ୟସ୍ତ ହେଲପର ହେଉଥିଲେ । ପ୍ରତ୍ୟେକ କୋଠରୀରେଥିବା ବିଛଣାଗୁଡ଼ିକ ଖାଲି ନଥିଲା । ରୋଗୀମାନେ କିମ୍ବା ଏବେ ବି ଉଠିନଥିବା ଲୋକମାନେ ଶୋଇଥିଲେ, କିମ୍ବା ଅନେକେ ଲୁଗାପଟା ପିନ୍ଧି ଗଡ଼ାଗଡ଼ି କରୁଥିଲେ । ବନ୍ଦଥିବା ଗୋଟେ ଦ୍ୱାରରେ କେ' ହାତ ମାରିବାରୁ ସ୍ୱାଭାବିକ ଭାବରେ ଗୋଟିଏ ସ୍ତ୍ରୀଲୋକ କବାଟ ଖୋଲିଲେ । 'ଲେନ୍‌ଜ ବୋଲି ବଢ଼େଇ ଏଠାରେ ରହେକି ?' ପଚାରିବାରୁ ସ୍ତ୍ରୀ ଲୋକଟି ଆଉ ଜଣକୁ ଡାକଦେଲା । ଲୋକଟା ବିଛଣାରୁ ଉଠିଲା । 'ଭଦ୍ରଲୋକ ଲେଂଜ୍ ବୋଲି କେହି ବଢ଼େଇ ଏଠି ରହୁଛନ୍ତି କି ବୋଲି ପଚାରୁଛନ୍ତି ।'

'ଲେଂଜ୍ ବୋଲି ବଢ଼େଇ ?' ଲୋକଟି ବିଛଣାରୁ ପଚାରିଲା ।

'ହଁ'—କେ' କହିଲା । ଏହା ନିଶ୍ଚିତ ଯେ ତଦନ୍ତ କୋର୍ଟ ଏ କୋଠରୀରେ ବସିନାହିଁ । ତେଣୁ ତାର ପଚାରିବା ଅର୍ଥ ଉପରଠାଉରିଆ । ଅନେକ କିନ୍ତୁ ଭାବୁଥିଲେ ଯେ, ଲେଂଜ୍‌କୁ ପାଇବା କେ' ପାଇଁ ଖୁବ୍ ଦରକାରୀ । ତେଣୁ ତା ପ୍ରଶ୍ନ ଶୁଣି ସେମାନେ ଏଡ଼ାଇ ନ ଯାଇ ମନେ ମନେ ବହୁତ ଖୋଜୁଥିଲେ । କେତେବେଳେ ଆଉ କେଉଁ ବଢ଼େଇ କଥା କହୁଥିଲେ । ଅବଶ୍ୟ ତାର ନାମ ଲେଂଜ୍ ନୁହେଁ କିମ୍ବା କେତେବେଳେ ଗୋଟିଏ ନାମ କହୁଥିଲେ ଯାହାର ନାମ ଲେଂଜ୍ ସହିତ ସାମାନ୍ୟ ମିଳୁଥିଲା ଆଉ କେତେବେଳେ ପଡ଼ଶୀ କାଳେ ଜାଣିଥିବେ ତାକୁ ପଚାରି ବୁଝୁଥିଲେ । କିମ୍ବା କେ'କୁ ଧରି ବେଶ୍ କିଛି ଦୂରରେ ଥିବା କୌଣସି ଘରକୁ ଆସୁଥିଲେ । ସେମାନେ ଭାବୁଥିଲେ ଲେଂଜ୍ ଭଡ଼ାନେଇ ଥାଇପାରେ । କିମ୍ବା ସେଠାରେ କେହି ଥାଇପାରେ ଯିଏକି ଲେଂଜ୍ ବିଷୟରେ ସେମାନଙ୍କ ଅପେକ୍ଷା ସଠିକ୍ ଖବର ଦେଇପାରିବ । ଶେଷରେ କେ'କୁ ଆଉ ପଚାରିବାକୁ ପଡ଼ିଲା ନାହିଁ । କାରଣ ଏହିପରି ସେ ସାରା ମହଲଟା ବୁଲିସାରିଲାଣି ଯଦିଓ ତାର ଏପରି ଉପାୟ ପ୍ରଥମ ବେଶ୍ କାମର ବୋଲି ମନେ ହେଉଥିଲା । ଶେଷରେ ଏଥିପାଇଁ ସେ ଦୁଃଖ ପ୍ରକାଶ କଲା । ଏମିତି ଖୋଜି ଖୋଜି ଯେତେବେଳେ ପାଞ୍ଚ ମହଲରେ ପହଞ୍ଚିଲା ସେ ଭାବିଲା ଆଉ ଖୋଜିବନି । ତେଣୁ ତାକୁ ସାହାଯ୍ୟ କରିବାକୁ ଆସିଥିବା ଲୋକଟିକୁ ଧନ୍ୟବାଦ ଦେଇ ବିଦାୟ ଦେଲା, ଆଉ ନିଜେ ତଳକୁ ଓହ୍ଲାଇଲା । କିନ୍ତୁ ଏଇ ଖୋଜିବା ଅଭିଯାନଟି ବେକାର ହୋଇଯିବାରୁ ରାଗରେ ତା ଦେହ ଜଳିଗଲା । ସେ ଆଉଥରେ ସିଡ଼ିଚଢ଼ି ପାଞ୍ଚ ମହଲାର ପ୍ରଥମ ଦ୍ୱାରରେ ଠକ୍ ଠକ୍ କଲା । ଏଇ ଘରେ ସେ ପ୍ରଥମେ ଯାହା ଦେଖିଲା ତା ହେଉଛି ଗୋଟିଏ ବଡ଼ କାନ୍ଥ ଘଣ୍ଟା ଯେଉଁଠି ୧୦ଟା ବାଜିବାକୁ ଯାଉଛି । 'ଲେଂଜ୍ ନାମରେ ବଢ଼େଇ ଏଠାରେ ରହେ କି ? ସେ ପଚାରିଲା ।

Digitized by srujanika@gmail.com

'ଭିତରେ ଯାଇ ଦେଖନ୍ତୁ ।' ପିଲଙ୍କର ଜାମା ଧୋଉଥିବା ଗୋଟିଏ ତରୁଣୀ ଚକ୍ ଚକ୍ ଆଖିରେ ତା ଆଡ଼କୁ ଚାହିଁ କହିଲା । ଆଉ ଖୋଲାଥିବା ପାଖ କୋଠରୀର ଦ୍ୱାରଆଡ଼କୁ ତା ଓଦାହାତ ଦେଖାଇ ଦେଲା ।

କେ' ଅନୁଭବ କଲା ଯେମିତି ସେ ଗୋଟିଏ ବଡ଼ ହଲ୍ ଭିତରେ ପଶୁଛି । ନାନା କସମର ଲୋକଙ୍କ ଭିଡ଼ । କେହି ଏହି ନୂଆ ଆଗନ୍ତୁକଟି ପ୍ରତି ଦୃଷ୍ଟି ଦେଲେ ନାହିଁ । ସେ ଘରଟି ମଧ୍ୟମ ଧରଣର ଅତି ବଡ଼ ନୁହେଁ କି ଶ୍ରେଷ୍ଠ ନୁହେଁ । ଦୁଇଟି ଝରକା, ଠିକ୍ ଛାତ ତଳେ ଘେରି ରହିଛି ଗୋଟିଏ ଗେଲେରି । ସେଠି ବି ଲୋକଙ୍କ ଭିଡ଼ । ସେଠାରେ ଲୋକମାନେ ସିଧା ଠିଆ ହୋଇପାରୁ ନାହାନ୍ତି । ସିଧା ଠିଆ ହେଲେ ମୁଣ୍ଡ ଆଉ ପିଠି ଛାତରେ ବାଜିବ ତେଣୁ ସେମାନେ ସବୁ ନଇଁ କରି ଛିଡ଼ା ହୋଇଚନ୍ତି । ସେଠାରେ ସେ ଅବାକ୍ ହୋଇଗଲା, ସାଙ୍ଗେ ସାଙ୍ଗେ ବାହାରିଆସି ସେ ସ୍ତ୍ରୀ ଲୋକକୁ କହିଲା—'ମୁଁ ବଢ଼େଇ ଲେଂଜ୍ କଥା ପଚାରୁଥିଲି ।' ସ୍ତ୍ରୀ ଲୋକଟି କିନ୍ତୁ ଭୁଲ୍ ବୁଝିଥିବାପରି ମନେହେଲା । ସେ କହିଲା 'ମୁଁ ଜାଣେ, ତୁମେ ସିଧା ଭିତରକୁ ପଶିଯାଉନ ।'

କେ' ତା କଥା ମାନି ନ ଥାଆନ୍ତା, ଯଦି ସିଏ ତା ପାଖକୁ ଆସି ଦ୍ୱାରର ହେଣ୍ଡେଲ୍ ଧରି କହି ନଥାନ୍ତା 'ତୁମେ ଗଲାପରେ ମୁଁ ଏ କବାଟ ବନ୍ଦ କରିଦେବି । ତୁମ ପରେ ଯେମିତି କେହି ନ ଆସନ୍ତି ।'

'ଆଚ୍ଛା ଠିକ୍ କଥା'—କେ' କହିଲା; କିନ୍ତୁ ଘରଟା ପୁରା ଭର୍ତ୍ତିହୋଇଗଲାଣି । ଯାହାହେଉ ସେ ଆଉଥରେ ଘର ଭିତରକୁ ପଶିଲା ।

ଠିକ୍ ଦୁଆର ପାଖରେ ଠିଆହୋଇ ଦୁଇଜଣ କଥା ହେଉଥିଲେ । ସେମାନଙ୍କ ଭିତରେ ଜଣେ ଦୁଇହାତ ହଲାଇ ଏମିତି ଭାବ ଭଙ୍ଗି ଦେଖାଉଥିଲା ଯେମିତି ସେ ଟଙ୍କା ଦେଉଛି । ଅନ୍ୟ ଜଣକେ ତାକୁ ଖୁବ୍ ତୀକ୍ଷ୍ଣ ଭାବରେ ନିରେଖି ଦେଖୁଥାଏ । ହଠାତ୍ ଗୋଟିଏ ହାତ କେ'କୁ ଜାବୁଡ଼ି ଧଇଲା । ସେ ହାତଟି ଥିଲା ଗୋଟିଏ ନାଲି ମୁହାଁ ଟୋକାର । 'ଆସ ଆସ' କହି ସେ ତାକୁ ଟାଣିନେଲା । କେ' ମଧ୍ୟ ବାଧା ଦେଲାନି । ସେ ଭିତରକୁ ଟାଣି ହୋଇଗଲା । ତାକୁ ଲାଗିଲା ସେ ଗଣ୍ଡଗୋଳିଆ ଭିଡ଼ ଭିତରେ ବି ସରୁ ବାଟଟିଏ ଅଛି । ସମ୍ଭବତଃ ଦୁଇ ଦଳକୁ ଅଲଗା ରଖିବାପାଇଁ । ଏହି ଧାରଣାର ସପକ୍ଷରେ ସେ ଦେଖିଲା ତାର ଡାହାଣ ଓ ବାଁ ଆଡୁ କୌଣସି ଗୋଟିଏ ହେଲେ ଲୋକ ତା ଆଡ଼କୁ ଚାହୁଁ ନାହାନ୍ତି । ସେ ଖାଲି ଲୋକଙ୍କୁ ଦେଖିଲା ଯେଉଁମାନେ ନିଜ ନିଜ ଦଳ ଭିତରେ ହାତ ହଲାଇ ଆଲୋଚନା କରିବାରେ ବ୍ୟସ୍ତ ଥିଲେ । ଅଧିକାଂଶ କଳାପୋଷାକ ପିନ୍ଧିଥିଲେ ।

Digitized by srujanika@gmail.com

ସେଇ ପୁରୁଣା ଢ଼ିଲା ଋବବାର୍ଅ କୋର୍ଟ । ସେ କୋର୍ଟଗୁଡ଼ିକ କେବଳ କେ'କୁ ବିଚଳିତ କରିଦେଲା । ତା' ନହୋଇଥିଲେ ସେ ଏହି ସମାଗମକୁ ଗୋଟିଏ ଅଞ୍ଚଳିକ ରାଜନୈତିକ ଅଧିବେଶନ ବୋଲି ଧରିନେଇଥାଆନ୍ତା ।

ହଲ୍‌ର ଆର କୋଣରେ ଯେଉଁ ଆଡ଼କୁ କେ'କୁ ନିଆଯାଉଥିଲା ସେଠାରେ ଗୋଟିଏ ନିଚା କିନ୍ତୁ ଗହଳ ମଞ୍ଚ ଉପରେ ଗ୍ରେଟିଆ ଟେବୁଲଟିଏ ଗଡ଼ାଣିଆ ହୋଇ ପଡ଼ିଥାଏ । ତା ପଛକୁ ମଞ୍ଚର ଠିକ୍ ଧାରକୁ ଲାଗି ଗୋଟିଏ ହଁ ହଁ ନିଶ୍ୱାସ ଛାଡ଼ୁଥିବା ମୋଟା ବାଙ୍ଗରା ଲୋକ ବସିଥାଏ । ତା ପଛରେ ଆଉଜଣେ ବଡ଼ ଖୁସ୍ ମିଜାଜରେ ଠିଆହୋଇଥାଏ । ସେ ତାର କହୁଣିକୁ ଚୌକି ପଛରେ ଲମ୍ବ ଗୋଡ଼କୁ ଛନ୍ଦି ଦେଇ ଥାଏ । ପ୍ରଥମ ବାଙ୍ଗରା ଲୋକଟା ଏହା ସାଙ୍ଗରେ ବଡ଼ ଖୁସିରେ ଅଣନିଶ୍ୱାସୀ ହୋଇ ଗପିବାରେ ଲାଗିଥାଏ । ମଝିରେ ମଝିରେ ସେ ତାର ହାତକୁ ଶୂନ୍ୟରେ ଏମିତି ଛାଟୁଥାଏ ଯେମିତି କି ସେ କାହାକୁ ଅନୁକରଣ କରି ପରିହାସ କରୁଚି । କେ'କୁ ନେଇ ଆସିଥିବା ଟୋକାଟି ତାର ଆସିବା ବିଷୟ ଜଣାଇବାର ସୁଯୋଗ ପାଉ ନଥାଏ । ଦୁଇଥର ସେ ଗୋଡ଼ ଆଙ୍ଗୁଳିରେ ଠିଆହୋଇ କିଛି କହିବାକୁ ଚେଷ୍ଟା କଲା । କିନ୍ତୁ ଉପରେ ଥିବା ଲୋକଙ୍କ ନଜର ତା ଉପରେ ପଡ଼ିଲା ନାହିଁ । କେତେବେଳେ ମଞ୍ଚରେ ଥିବା ଲୋକମାନଙ୍କ ଭିତରୁ ସେ ଟୋକାକୁ ଦେଖାଇ ଦେବାରୁ ସେ ଲୋକଟି ତା ଆଡ଼କୁ ଅନାଇଲା ଓ ତା ଖନ୍‌ଖନିଆ କଥାକୁ ଶୁଣିବାକୁ ନଇଁପଡ଼ିଲା । ତତ୍‌କ୍ଷଣାତ୍ ସେ ତାର ଘଡ଼ି କାଢ଼ି ତୀକ୍ଷ୍ଣଦୃଷ୍ଟିଟିରେ ଚାହିଁ କେ'କୁ କହିଲା 'ଘଣ୍ଟେ ୫ମିନିଟ ପୂର୍ବରୁ ତୁମର ଏଠାରେ ପହଞ୍ଚିବା ଉଚିତ୍ ଥିଲା ।' କେ' ଜବାବ୍ ଦେବାକୁ ଯାଉଥିଲା ମାତ୍ର ସମୟ ପାଇଲାନି କାରଣ ସେ ଲୋକଟି କହିଚୁକି ନାହିଁ ଅସମ୍ମତିର ଭୟଙ୍କର ଚୁପା ଶବ୍ଦ ହଲ୍‌ର ଡାହାଣ ପଟରୁ ଶୁଣାଗଲା ।

'ଘଣ୍ଟେ ପାଞ୍ଚମିନିଟ୍ ପୂର୍ବରୁ ତୁମର ଏଠାରେ ପହଞ୍ଚିବା ଉଚିତ୍ ଥିଲା ।' ହଲରେ ଥିବା ଲୋକଙ୍କୁ ଆଉ ଥରେ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ ଲୋକଟି ଟିକିଏ ଚଢ଼ା ଗଳାରେ କହିଲା । ସାଙ୍ଗେ ସାଙ୍ଗେ ହଲରେ ହେଉଥିବା ଚୁପା ଶବ୍ଦ ବଢ଼ିଗଲା ଏବଂ ନୀରବ ହେବାକୁ କିଛି ସମୟ ଲାଗିଲା । ସେ ଲୋକଟି ଆଉ କିଛି କହିନଥିଲା । କେ' ପଶିବା ବେଳ ଅପେକ୍ଷା ହଲ ଅନେକ ଶାନ୍ତ ପଡ଼ିଗଲା । କେବଳ ଗ୍ୟାଲେରି ଉପରେ ଥିବା ଲୋକମାନେ ତାଙ୍କର ମତାମତ ଦେଉଥିଲେ । ଧୂଆଁ ଧୂଳି ଆଉ ସେ ଅନ୍ଧାରିଆ ଘରେ ଯେତେ ଦୂର ଜଣେ ଦେଖିପାରେ ସେ ଦେଖିବ ଯେ ମଞ୍ଚ ତଳେ ଥିବା ଉପର ଲୋକମାନଙ୍କ ଅପେକ୍ଷା ଉପରେ ତଳେଥିବା ଲୋକମାନଙ୍କର ପୋଷାକ ଆହୁରି ପରିଷ୍କାର ପରିଚ୍ଛନ୍ନ ଥିଲା ସେମାନଙ୍କ ଭିତରୁ ଅନେକେ ତାଙ୍କ

Digitized by srujanika@gmail.com

ହାତରେ ଗଢ ଆଣିଥିଲେ । ତାଙ୍କ ମୁଣ୍ଡ ଆଉ ଗୁଡ ମଝିରେ ସେସବୁ ରଖିଥିଲେ । ଯେମିତ କ ତାଙ୍କ ମଥା ଗୁଡରେ ବାଜ ଫାଟି ନଯାଏ ।

କଛୁ କହବା ବଦଳରେ ଝାଲ ଅନୁଧ୍ୟାନ କରବ ବୋଲ୍ କେ' ମନସ୍ଥ କର ନେଲ୍ । ଫଳରେ ବଳମ୍ବ କରଛୁ ବୋଲ ଅଭିଯୋଗ ବକୁଛରେ ତା ତରଫରୁ କଛୁ ସଫେଇ ଦେଲନ । ସେ କେବଳ ଏତକ କହଲ୍ 'ମୋର ଡେର ହୋଇଥାଉ ବା ନ ହୋଇଥାଉ ମୁଁ ତ ଶେଷରେ ଏଠାକୁ ଆସିଲ୍ ।' ହଲର ଡ଼ାହାଣପଟୁ ଗୋଟିଏ ଉଲ୍ଲସିତ ଧ୍ୱନ ଭସି ଆସିଲ୍ । କେ' ଭବଲ୍ ଏଇ ଲୋକଗୁଡ଼ିକ ସହଜରେ ପଟେଇ ନେଇ ହେବ । ସେ କନ୍ତୁ ବାଁପଟ ଲୋକଙ୍କ ନୀରବତା ପାଇଁ ଚନ୍ତିତ ହେଲ୍ । କାରଣ ତାର ପଛ ବାଁ ପଟରେ ବସିଥିବା ଲୋକମାନଙ୍କ ଭିତରୁ କେବଳ ଗୋଟିଏ ଦୁଇଟି ବଗୁଚିଆ ହାତତାଳ ଶବ୍ଦ ଶୁଭଲ୍ । ସେ ଭବବାକୁ ଲଗିଲ୍ କ'ଣ କହଲେ ସେଠି ବସି ଶୁଣୁଥିବା ସବୁ ଲୋକଙ୍କ ମନକୁ ସବୁ ସମସ୍ୟା ପାଇଁ ତା ନଜ ସପକ୍ଷରେ ଟଳେଇ ନେଇ ହେବ । ଯଦ ତାହା କରବା ସମ୍ଭବ ନହୁଏ, ତେବେ କ'ଣ କଲେ ସେଠାରେ ଥିବା ଅଧିକାଂଶ ଲୋକଙ୍କ ମତକୁ ଅନ୍ତତଃ ସେହ ସମସ୍ୟା ପାଇଁ ନଜ ପଟକୁ ଆଉଥାଇ ଆଣିପାରବ ।

'ହଁ କନ୍ତୁ ତୁମ କଥା ଶୁଣିବାକୁ ମୁଁ ବାଧ୍ୟ ନୁହେଁ ।' ସେ ଲୋକଟି କହଲା । ପୁଣିଥରେ ସେ ହଲଘରେ ଗୁଞ୍ଜରଣ ଖେଳଗଲା । ଏଥର ସେ ଗୁଞ୍ଜନର ତାତ୍ପର୍ଯ୍ୟ ବିଷୟରେ ଆଉ ସନ୍ଦେହ ନଥିଲା । କାରଣ ହାତ ହଲାଇ ପାଟିବନ୍ଦ କରବାକୁ ଲୋକଟି କହୁଥିଲା । 'ଏଇଥରକର ଡେର ପାଇଁ ଛୁଟି ମୁଁ ଛାଡ଼ି ଦେଲ୍, ଖବର୍ଦାର ଏମିତ ଏପର ଆଉ ଯେମିତ ନହୁଏ, ଏଥର ଆଗକୁ ଆସ ।'

କେହ ଜଣେ କେ'କୁ ସ୍ଥାନ ଦେବାପାଇଁ ମଞ୍ଚ ଉପରୁ ତଳକୁ ଡେଇଁ ପଡ଼ଲା । କେ' ଉପରକୁ ଉଠିଲ । ଟେବୁଲ୍ ଦେହରେ ଚପିଚୁପି ହୋଇ କେ'କୁ ଛିଡ଼ା ହେବାକୁ ପଡଲା ପଛଆଡ଼ୁ ତା' ଉପରେ ଭିଡର ଚାପ ଏତେ ବେଶୀ ହେଉଥିଲା ଯେ ମାଜଷ୍ଟ୍ରେଟ୍‌ଙ୍କ ଟେବୁଲ କମ୍ବା ମାଜଷ୍ଟ୍ରେଟ୍‌ଙ୍କ ଉପରେ ଯେମିତ ସେ ଅଜାଡ଼ି ହୋଇ ନ ପଡ଼େ ସେଥିପାଇଁ ତାକୁ ପ୍ରାଣପଣେ ନଜ ଦେହକୁ ସମ୍ଭାଳ ନଜ ପାଦକୁ ଦମ୍ଭ ରଖି ଠିଆ ହେବାକୁ ପଡ଼ୁଥିଲା ନହେଲେ ମାଜଷ୍ଟ୍ରେଟ୍ ନଜେ ହୁଏତ ତା ଦେହ ଧକ୍କାରେ ମଞ୍ଚ ତଳକୁ ଖସି ପଡ଼ନ୍ତେ । କନ୍ତୁ ପ୍ରଶ୍ନକର୍ତ୍ତା ମାଜଷ୍ଟ୍ରେଟ୍ ସେଥିପାଇଁ ଚନ୍ତିତ ଥିଲାଭଳ ଜଣାପଡ଼ୁନଥିଲେ । ସେ ତାଙ୍କ ଚୌକରେ ଖୁବ୍ ଆରାମ୍‌ରେ ବସିଥିଲେ । ତାଙ୍କ ପଛରେ ଥିବା ଲୋକଟିକୁ ଶେଷକଥା କେତେ ପଦ କହ ଟେବୁଲ୍ ଉପରେ ଥିବା କେବଳ ଗୋଟିଏ ଗ୍ରେଟ ଛିପା ଖାତାକୁ ସେ ଉଠାଇ ନେଲେ । ଖାତାଟି ପିଲାଙ୍କ ପୁରୁଣା ସ୍କୁଲ୍ ଖାତା ପର ଦଶୁଥିଲା । ତା ପୃଷ୍ଠାସବୁ

Digitized by srujanika@gmail.com

ବାରମ୍ବାର ଅଙ୍ଗୁଳରେ ଓଲଟାଇ ଓଲଟାଇ ପୃଷ୍ଠାଗୁଡ଼ାକର ଅଗ ଭାଙ୍ଗିଯାଇଥିଲା । ସେ ଖାତାର ପୃଷ୍ଠା ଉପରେ ଆଖି ବୁଲାଇ ନେଲେ । ତା'ପରେ କେ' ଆଡ଼କୁ ଚାହିଁ ହାକମୀ ଗଳାରେ ପଚାରିଲେ—'ତୁମ ବୃତ୍ତି ହେଲା ଘର ରଙ୍ଗ କରିବା ତ ?'

'ନା'—ମୁଁ ଗୋଟିଏ ବଡ଼ ବ୍ୟାଙ୍କ୍‌ର ଅଧସ୍ତନ ମ୍ୟାନେଜର ।' ପ୍ରଶ୍ନୋତ୍ତର ଶୁଣି ଡାହାଣ ପଟ ଲୋକଙ୍କ ଭିତରୁ ଏପରି ପ୍ରଚଣ୍ଡ ହସ ଶୁଭିଲା ଯେ କେ' ମଧ୍ୟ ନ ହସି ରହିପାରିଲା ନାହିଁ । ଲୋକ ହସି ହସି ବଙ୍କା ହୋଇଯାଇ ଆଣ୍ଠୁ ଉପରେ ହାତ ମାଡ଼ୁଥିଲେ, ଯେତେ ଯେମିତି ସେମାନଙ୍କର ଧଇଁକାଶ ଉଠିଛି । ଗ୍ୟାଲେରୀରୁ ମଧ୍ୟ ବଡ଼ ପାଟିରେ କେତେଟା ହସ ଶୁଣାଗଲା । ପ୍ରଶ୍ନକାରୀ ମାଜିଷ୍ଟ୍ରେଟ୍ ରାଗିଗଲେ । ଜଣାଯାଉଥାଏ ଭିତର ଲୋକଙ୍କ ଉପରେ ତାଙ୍କର କିଛି ଅଖ୍ତିଆର ନଥିଲା । ତେଣୁ ଗ୍ୟାଲେରୀର ଲୋକଙ୍କ ଉପରେ ତାଙ୍କର ସବୁ ରାଗ ଝେଡ଼ିବାକୁ ବସିଲେ । ରାଗରେ ଫଁ ଫଁ ହୋଇ ସେ କୁଦା ମାରିଲା ପରି ଠିଆହୋଇପଡ଼ିଲେ । ଭୃକୁଟୀ କୁଞ୍ଚନ କରି ସେମାନଙ୍କ ଆଡ଼କୁ ଚାହିଁଲେ । ରାଗରେ ସେ ତାଙ୍କ ଭ୍ରୂଲତାକୁ ଏମିତି ଯାକିଲେ ଯେ ଆଗେ ତାଙ୍କ ଭ୍ରୂଲତା ସିନା ନଦାରେ ପଡୁନଥିଲା । ଏବେ ଯାକି ହୋଇ ଏତେ ବେଶି ଯାକିଗଲା ଯେ ଆଖି ଉପରେ ଦୁଇଟା କଳା ବୁଦାପରି ଦିଶିଲା । ହଲ୍‌ର ବାଁପଟ ପୂଟପରି ଚୁପ୍‌ଚାପ୍ ଥିଲା । ସେଠି ଲୋକମାନେ ମଞ୍ଚ ଆଡ଼କୁ ଚାହିଁ ଧାଡ଼ି ହୋଇ ଠିଆ ହୋଇଥିଲେ ଓ ସେଠାରେ କ'ଣ ହେଉଛି ଓ ହଲ୍‌ର ଅନ୍ୟ ପଟେ କ'ଣ ସବୁ ଗଣ୍ଡଗୋଳ ଚାଲିଛି ତାକୁ ମନ ଧ୍ୟାନ ଦେଇ ଶୁଣୁ-ଥିଲେ । ପ୍ରକୃତରେ ସେମାନଙ୍କ ମଧ୍ୟରୁ କେତେଜଣ ଅନ୍ୟ ଦଳର ଲୋକଙ୍କ ସହ କଥାବାର୍ତ୍ତା କରିବାକୁ ଯାଇ ହଇରାଣ ହୋଇଥିଲେ । ବାମପଟ ଲୋକଙ୍କ ସଂଖ୍ୟା ଏତେବେଶୀ ନୁହେଁ । ବାସ୍ତବରେ ସେମାନେ ଏତେ ମୁଖ୍ୟ ନୁହଁନ୍ତି କିନ୍ତୁ ସେମାନଙ୍କ ଚେହେରାରେ ଥିବା ଗମ୍ଭୀରତା ସେମାନଙ୍କୁ ବେଶ୍ ପ୍ରଭାବଶାଳୀ କରି ତୋଳୁଥିଲା । ଯେତେବେଳେ କେ' ତାର କଥା କହିବା ଆରମ୍ଭ କଲା ସେ ନିଶ୍ଚିତ ଥିଲା ଯେ ଏଇ ଲୋକମାନଙ୍କ ମତକୁ ପ୍ରତିନିଧିତ୍ୱ କରୁଛି ।

'ମହାଶୟ ମୁଁ ଜଣେ ଘର ରଙ୍ଗ ଦିଆ ବାଲାକି ?' ଆପଣଙ୍କର ଏହି ପ୍ରଶ୍ନଟି ଆଦୌ ପ୍ରଶ୍ନ ନୁହେଁ । ଏହା ଆପଣଙ୍କର ଗୋଟିଏ ବକ୍ତବ୍ୟ ମାତ୍ର । କିନ୍ତୁ ମୋ ଉପରେ ମିଛଟାରେ ଲଦି ଦିଆଯାଉଥିବା ବିଚାରର ପ୍ରକୃତ ସ୍ୱରୂପର ଏହା ପ୍ରତିନିଧିତ୍ୱ କରୁଛି । ଆପଣ ଅସ୍ୱୀକାର କରିପାରନ୍ତି ଯେ ଏହା ଗୋଟେ ବିଚାର ନୁହେଁ । ହୁଏତ ଆପଣ ଠିକ୍ ହୋଇପାରନ୍ତି କାରଣ ମୁଁ ଏହାକୁ ବିଚାର ବୋଲି ସ୍ୱୀକାର କଲେ ଯାଇ ଏହା ସେହି ପଦବାଚ୍ୟ ହେବ । ଏହି ମୁହୂର୍ତ୍ତରେ ମୁଁ ଏହାକୁ

Digitized by srujanika@gmail.com

ଦସ୍ତ୍ୟା ପରବଶ ହୋଇ ନିଶ୍ଚିତ ଭାବେ ସ୍ୱୀକାର କରୁଛି । କେବଳ ଦସ୍ୟା ବ୍ୟତୀତ ଆଉ କୌଣସି ଉପାୟରେ ଏହାକୁ ଜଣେ ସ୍ୱୀକାର କରିପାରେନା । ଆପଣଙ୍କର ଏଠି ଯାହା ସବୁ ଚାଲିଛି ଏବଂ ଯେଉଁ ଭାବେ ସେସବୁ ଚାଲିଛି ମୁଁ କହୁନି ସେସବୁକୁ ଘୃଣ୍ୟ ବୋଲି । କିନ୍ତୁ କେବଳ ଆପଣଙ୍କ ପାଇଁ ମୁଁ ଏହି ଶବ୍ଦଟିକୁ ବ୍ୟବହାର କରିପାରେ ।

କେ' ନୀରବ ହେଲା ଏବଂ ହଲ୍ ସାରା ଆଖି ବୁଲାଇଆଣିଲା । ସେ ଖୁବ୍ ତୀକ୍ଷ୍ଣ ଭାବରେ କହିଗଲା । ଯେତେ ଭାବିଥିଲା ତାଠାରୁ ଅଧିକ ତୀବ୍ର ହୋଇଗଲା । ତଥାପି ତା କହିବାରେ ଯୁକ୍ତିଥିଲା । ତାର ଏକଥା ଯେମିତିହେଲେ ପ୍ରଶଂସିତ ହେବା ଉଚିତ ଥିଲା—ସ୍ୱାଗତଯୋଗ୍ୟ ଥିଲା । କିନ୍ତୁ ସବୁ ଚୁପ୍‌ଚାପ୍ । ଦେଖଣାହାରୀମାନେ କଣ କହିବାକୁ ଯାଉଛି ତାକୁ ଦେଖିବାପାଇଁ ବଡ଼ ଉକ୍ରଣ୍ଠାସହ ଅପେକ୍ଷା କରିଥିଲେ । ଏବଂ ଏହି ନୀରବତା ଭିତରେ କିଛି ଗୋଟେ ଧାନ୍ଦା ବାନ୍ଧୁଥିଲେ । ଯାହାକି ଏସବୁ ଘଟଣାରେ ପୂର୍ଣ୍ଣଚ୍ଛେଦ ଟାଣିଦେବାପାଇଁ ପ୍ରସ୍ତୁତ ହୋଇଥିଲା । ଠିକ୍ ସେହି ମୁହୂର୍ତ୍ତରେ ହଲ୍‌ର ପଛଦ୍ୱାରଟି ଖୋଲାଗଲା । ଆଉ ଘରଭିତରକୁ ପଶିଆସିଲା ଲୁଗା ଧୋଉ-ଥିବା ସେଇ ସ୍ତ୍ରୀଲୋକଟି । ହୁଏତ ତାର ଲୁଗାଧୂଆ ସରିଗଲା ଏବଂ ଯେତେ ସତର୍କତାର ସହ ସିଏ ଆସିଥିଲେବି ଅନେକ ଲୋକଙ୍କର ଦୃଷ୍ଟି ଆକର୍ଷଣ କଲା । ଏପରି ବାଧାପାଇଁ କେ' ଭାଷଣ ସରିଗଲା ମାତ୍ର ମାଜିଷ୍ଟ୍ରେଟ୍‌ଙ୍କ ବ୍ୟବହାର ତାକୁ ଖୁବ୍ ଆନନ୍ଦ ଦେଲା । ତାର କଥାରେ ମାଜିଷ୍ଟ୍ରେଟ୍ ଖୁବ୍ ଭୟଭୀତ ଓ ହତୋତ୍ସାହ ହୋଇ ପଡ଼ିଥିଲେ । ବର୍ତ୍ତମାନସୁଦ୍ଧା ମାଜିଷ୍ଟ୍ରେଟ୍ ଠିଆ ହୋଇଥିଲେ । କାରଣ ସେ କେ'ର ଭାଷଣରେ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ଏବଂ ଉଠିପଡ଼ି ଗେଲେରୀର ଲୋକଙ୍କ ଉପରେ କ୍ଷୋଭ ପ୍ରକାଶ କରୁଥିଲେ । କିନ୍ତୁ ବର୍ତ୍ତମାନ ଏହି ସାମାନ୍ୟ ଗଣ୍ଡଗୋଳର ସୁଯୋଗ ନେଇ ସେ ଖୁବ୍ ଧୀରେ ସତର୍କତାରସହ ବସିପଡ଼ିଲେ । ଯେମିତିକି ତାଙ୍କର ଏପରି କରିବା କାହାର ଦୃଷ୍ଟି ଆକର୍ଷଣ ନକରୁ । କିଛି ମତ ପ୍ରକାଶ ନହେଉ । ତାଙ୍କର ମନକୁ ସ୍ଥିର କରିବା ପାଇଁ ସେ ପୁଣିଥରେ ତାଙ୍କ ନୋଟ୍ ଖାତା ଓଲଟାଇବାରେ ଲାଗିଲେ । 'ଆପଣଙ୍କର ସେ ଟୀପାଖାତା ଆପଙ୍କୁ ଖୁବ୍ ବେଶୀ ସାହାଯ୍ୟ କରିବନାହିଁ । ମୁଁ ଯା' କହୁଛି ସେଠିତ ସେଇଆ ଅଛି ।' କେ' କହିବାରେ ଲାଗିଲା । ନିଜର ଆବେଗପୂର୍ଣ୍ଣ ବାକ୍ୟଦ୍ୱାରା ଅଧିକ ଉତ୍ସାହିତ ହୋଇ କେ' ମାଜିଷ୍ଟ୍ରେଟ୍‌ଙ୍କ ହାତରୁ ସେ ଟୀପାଖାତା ଛଡ଼ାଇ ନେଲା ଏବଂ ଗୋଟିଏ ମଝି ପୃଷ୍ଠାକୁ ଆଙ୍ଗୁଳି ଅଗରେ ଟେକି ଧରିଲା, ଯେମିତିକି ସେ ଖାତା ଧରିଲେ ହାତ ଅସନା ହୋଇଯିବ । ମଝିପୃଷ୍ଠାକୁ ଟେକି ଧରିବାରୁ ଖାତାରେ ଖୁନ୍ଦି ଖାଦି ଲେଖାହୋଇଥିବା ପୁରୁଣା ମସିଆ ହଳଦିଆ ପୃଷ୍ଠାଗୁଡ଼ିକ ଦୁଇଆଡ଼କୁ ଝୁଲି-ପଡ଼ିଲା ।

Digitized by srujanika@gmail.com

'ଏଗୁଡ଼ିକ ହେଉଛି ତଦନ୍ତ କରୁଥିବା ମାଜିଷ୍ଟ୍ରେଟ୍‌ଙ୍କର କାଗଜପତ୍ର ।' ଏହାକହି ଖାତାଟିକୁ ଅଳ୍ପଥରେ ଟେବୁଲ ଉପରେ ପକାଇ ଦେଲା ।

'ଆପଣଙ୍କ ଖୁସି ଅନୁସାରେ ଏହାକୁ ପଢ଼ିପାରନ୍ତି । ମାଜିଷ୍ଟ୍ରେଟ୍ ମହାଶୟ, କିନ୍ତୁ ଆପଣଙ୍କର ଏ ଟୀପ ଖାତାକୁ ଡ଼ରେ ନାହିଁ । ମୋ ପାଖରେ ଏହାର କିଛି ଅର୍ଥ ନାହିଁ । ଏହା ଗୋଟିଏ ମୂଦା ବହି ମାତ୍ର । ତେଣୁ ହାତରେ ଧରବାତ ଦୂରର କଥା ଏଥିରେ ଆଙ୍ଗୁଳି ଟିପ ଦେବାକୁବି ଘୃଣାକରେ ।' ମାଜିଷ୍ଟ୍ରେଟ୍ ଜଣକ ଟେବୁଲ ଉପରେ ପଡ଼ିଥିବା କୋର୍ଟ ବହିଟିକୁ ଟେକିନେଲେ, ଆଉ ସଜଡ଼ା ସଜଡ଼ି କରି ପୁଣି ଥରେ ଚୁପ୍‌ଚାପ୍ ପଢ଼ିବାକୁ ଲାଗିଲେ । ତାଙ୍କର ଏପରି ବ୍ୟବହାର ଗଭୀର ଲଜ୍ଜା ଆଉ ଅପମାନର ପ୍ରଭାବ ବୋଲି ଧରି ନିଆଯାଇପାରେ ।

ପ୍ରଥମ ଧାଡ଼ିରେ ବସିଥିବା ଲୋକମାନଙ୍କ ଦୃଷ୍ଟି ଏମିତି ଗଭୀର ଆଉ ତୀକ୍ଷ୍ଣ ଭାବେ ତାଉପରେ ନିବଦ୍ଧ ହେଲା ଯେ କେ' କିଛିକ୍ଷଣ ପାଇଁ ନୀରବରେ ତାଙ୍କ ଆଡ଼କୁ ଚାହିଁ ଠିଆହୋଇରହିଲା । ସେମାନେ ସମସ୍ତେ ବୟସ୍କ ଲୋକ । ସେମାନଙ୍କ ମଧ୍ୟରୁ ଅନେକଙ୍କର ଡାଢ଼ି ପାଚି ଧଳା ହୋଇଗଲାଣି । ସେମାନେ କ'ଣ ସବୁ ପ୍ରଭାବଶାଳୀ ଲୋକ ? ସେମାନେ କ'ଣ ଏଠାରେ ସମସ୍ତଙ୍କୁ ପ୍ରଭାବିତ କରିପାରନ୍ତି ? ସେମାନଙ୍କୁ କେମିତି ଆବେଗହୀନତା ଘାରିଯାଇଛି । ଯାହା ଫଳରେ କି କେ' ତାର କଥା ଆରମ୍ଭ କଲାବେଳଠୁ ଏମିତିକି ମାଜିଷ୍ଟ୍ରେଟ୍‌ଙ୍କୁ ସର୍ବ-ସାଧାରଣରେ ଅପମାନିତ କରାଗଲେବି ସେମାନେ ଆଦୌ ପ୍ରଭାବିତ ହେଲାପରି ମନେ ହେଉନାହିଁ । ସେମାନେ କଅଣ କୌଣସି ଅବସ୍ଥାରେ ଆବେଗ ପ୍ରକାଶ କରିବାକୁ ମନାକରି······ଦେଇଛନ୍ତି ?

'ମୋର କ'ଣ ହୋଇଛି !' ପୂର୍ବାପେକ୍ଷା ଅଧିକ ଧୀରସ୍ଥିର ଭାବରେ କେ' କହିବାକୁ ଲାଗିଲା । ଏପରି କହୁଥିଲା ବେଳେ ଆଗଧାଡ଼ିରେ ବସିଥିବା ଲୋକମାନଙ୍କ ମୁହଁକୁ ନିରେଖି ଦେଖିବାକୁ ଲାଗିଲା ! ଯାହାଫଳରେ ତା କହିବା କେମିତି ଖାପ୍-ଛଡ଼ା ଧରିଲା । 'ମୋର ଯାହା ହୋଇଛି ତା କେବଳ ଗୋଟିଏ ଏକକ ଘଟଣା ମାତ୍ର ଯେହେତୁ ମୁଁ ଏହା ଉପରେ ଖୁବ୍ ବେଶୀ ଗୁରୁତ୍ୱ ଦେଉନାହିଁ । ତେଣୁ ଏହାର ଗୁରୁତ୍ୱ ବେଶୀ ନୁହେଁ ମାତ୍ର ଗୋଟିଏ ତ୍ରୁଟିପୂର୍ଣ୍ଣ ନୀତିର ଏହା ଉଦାହରଣ । ଏହି ଭୁଲ୍ ନୀତିଟି ହୁଏତ ଆହୁରି ଅନେକଙ୍କ ପ୍ରତି ପ୍ରୟୋଗ କରାଯାଇପାରେ । ତେଣୁ ଏଥିପାଇଁ ମୁଁ ଏଠାରେ ଠିଆ ହୋଇଛି । ଏହି ତ୍ରୁଟି ବିରୁଦ୍ଧରେ ସ୍ୱର ଉତ୍ତୋଳୁଛି, ମୋ ପାଇଁ ନୁହେଁ ।' ସେ ଆପେ ଆପେ ତା ଗଳାକୁ ଚଢ଼ାକରି ଦେଲା ଲୋକଙ୍କ ଭିତରୁ କେହି ଜଣେ ତାଳିମାରି ପାଟିକରି ଉଠିଲା—'ସାବାସ୍' କାହିଁକି କରିବନି ? ସାବାସ୍—ସାବାସ' ଆଗଧାଡ଼ିରେ ବସିଥିବା କେତେଜଣ ତାଙ୍କ ଦାଢ଼ି ସାଉଁଳିଲେ,

Digitized by srujanika@gmail.com

ମାତ୍ର କେତେ ଗଣ୍ଡଗୋଳ ପାଇଁ ପଛକୁ ଫେରି ଯାଉଥିଲେ । କେ' ମଧ୍ୟ ଏହା ଉପରେ କିଛି ଜୋର୍ ଦେଲେନି ସିନା କିନ୍ତୁ ଭିତରେ ଭିତରେ ଖୁବ୍ ଉତ୍ସାହିତ ହୋଇଉଠିଲେ । କାହାପାଖରୁ ଟିକିଏ ବାହାବା ପାଇବାର ପ୍ରୟୋଜନୀୟତା ନଥିଲା । ସେ ଯାହା କହୁଛି ସେ କଥାର ଯଦି କିଛି ପ୍ରଭାବ ଏ ଲୋକଙ୍କ ଉପରେ ପଡ଼ନ୍ତା ସେ ବିଷୟରେ ଯଦି ଏମାନଙ୍କ ମନରେ ସାମାନ୍ୟ ଆଲୋଡ଼ନ ସୃଷ୍ଟି କରି ପାରନ୍ତା, ତାଙ୍କ ମନକୁ ଯଦି ଜୟ କରିପାରନ୍ତା ସେ ଖୁବ୍ ଖୁସି ହୁଅନ୍ତା ।

'ବଡ଼ ବକ୍ତା ହେବାର ଇଚ୍ଛା ମୋର ନାହିଁ କିମ୍ବା ଇଚ୍ଛା କଲେବି ମୁଁ ହୋଇପାରିବିନି । 'ଶେଷରେ କେ' କହିଲେ । ଆମ ତଦନ୍ତ କରୁଥିବା ମାଜିଷ୍ଟ୍ରେଟ୍ ଜଣେ ଖୁବ୍ ଭଲ ବ୍ୟକ୍ତି ଏଥିରେ ସନ୍ଦେହ ନାହିଁ । ଏହାତ ତାଙ୍କର କାମ । ମୁଁ ଖାଲି ଚାହେଁ ଗୋଟିଏ ସର୍ବସାଧାରଣର ଆପତ୍ତିକୁ ସର୍ବସାଧାରଣରେ ପ୍ରକାଶ କରିବାକୁ । 'ମୋ କଥା ଶୁଣନ୍ତୁ । ପ୍ରାୟ ଦଶଦିନତଳେ ମୁଁ ଗିରଫ୍ ହୋଇଥିଲି । ମୁଁ ଯେଉଁଭାବେ ଗିରଫ୍ ହୋଇଥିଲି ତାହା ନିହାତି ହାସ୍ୟାସ୍ପଦ । ଅନ୍ତତଃ ମୋତେ ଏହା ଖୁବ୍ ହାସ୍ୟାସ୍ପଦ ଜଣାପଡ଼ିଲା । ଯଦିଓ ମୋତେ ମୋର ବ୍ୟକ୍ତିଗତ ଅନୁଭୂତିର କିଛି ଅର୍ଥ ନାହିଁ । ବିଛଣାରେ ଶୋଇଥିବା ବେଳେ ମୁଁ ଧରା ହୋଇଛି । ହୁଏତ ମାଜିଷ୍ଟ୍ରେଟ୍‌ଙ୍କ ମନ୍ତବ୍ୟକୁ ବିଶ୍ୱାସ କଲେ ଏହା ସମ୍ଭବ ନୁହେଁ । ହୁଏତ ଜଣେ ଘର ରଙ୍ଗଦେବା ଲୋକକୁ ଗିରଫ୍ କରିବାପାଇଁ ସେମାନଙ୍କୁ ଆଦେଶ ଦିଆଯାଇ ଥିଲା । ସେହି ରଙ୍ଗଦେବା ଲୋକ ହୁଏତ ମୋପରି ନିର୍ଦ୍ଦୋଷ । ସେମାନେ ମୋତେ ଧରିଲେ, ମୋ' ପାଖ କୋଠରୀଟି ଦୁଇଜଣ ଦୁର୍ଦ୍ଧର୍ଷ ଓ୍ୱାର୍ଡର ଦ୍ୱାରା ବ୍ୟବହୃତ ହୋଇଥିଲା । ମୁଁ ଯଦି ଜଣେ ବିପଦଜନକ ଡକାୟତ ହୋଇଥା'ନ୍ତି ତେବେ ସେମାନେ ଏହାଠାରୁ ଅଧିକ ସତର୍କତାମୂଳକ ବ୍ୟବସ୍ଥା ହୁଏତ କରିନଥା'ନ୍ତେ । ଏହି ଓ୍ୱାର୍ଡରମାନେ ନିହାତି ଦୁର୍ଦ୍ଧର୍ଷ ଗୁଣ୍ଡାଜାତୀୟ ଲୋକ । ସେମାନେ ତାଙ୍କର ବକର୍ ବକର୍ ପାଟିଦ୍ୱାରା ମୋ' କାନକୁ ତତା କରିଦେଲେ । ତାଙ୍କୁ ଲାଞ୍ଚ ଦେବାପାଇଁ ସେମାନେ ମୋତେ ପ୍ରବର୍ତ୍ତାଉଥିଲେ । ଭୁଲ କାରଣ ଦର୍ଶାଇ ସେମାନେ ମୋର ଲୁଗାପଟା ନେଇଯିବା ପାଇଁ ଚେଷ୍ଟା କରିଥିଲେ । ମୋର ପ୍ରାତଃଭୋଜନ ଆଣିଦେବେ ବୋଲି ମିଛଟାରେ ମୋତେ ପଇସା ମାଗୁଥିଲେ ଅଥଚ ମୋର ଆଗରେ ମୋର ପ୍ରାତଃଭୋଜନକୁ ନିର୍ଲଜ ଭାବେ ଖାଇଗଲେ । ମାତ୍ର ଏଇଠାରେ ସବୁ ଶେଷ ହେଲାନି । ଇନ୍‌ସପେକ୍ଟରଙ୍କ ସହିତ ଦେଖାକରିବାକୁ ମୋତେ ଆଉ ଗୋଟିଏ କୋଠରୀକୁ ନିଆଗଲା । ଏହି କୋଠରୀଟି ଜଣେ ଭଦ୍ରମହିଳାଙ୍କର । ଏ ଭଦ୍ରମହିଳାଙ୍କୁ ମୁଁ ଖୁବ୍ ସମ୍ମାନ କରେ । ମୋରି ସାମ୍ନାରେ ଏ ଘରଟିକୁ ନଷ୍ଟ କରିଦିଆଗଲା । ଏ ସବୁ ମୋପାଇଁ ହେଲା ସତ କିନ୍ତୁ ମୋର କୌଣସି ତ୍ରୁଟିପାଇଁ ନୁହେଁ । ଧୀରସ୍ଥିର ହୋଇ ରହିବା ମୋ' ପକ୍ଷରେ ସମ୍ଭବ ହେଲାନି । ଶେଷରେ ମୁଁ ସଫଳ ହେଲି । ଅତି ଧୀର

Digitized by srujanika@gmail.com

ସ୍ଥିର ଭାବରେ ମୁଁ ଇନ୍‌ସପେକ୍ଟରଙ୍କୁ ଶେଷରେ ପଚାରିଲି ମୁଁ କାହିଁକି ଗିରଫ୍ ହେଲି ? ଆଉ ଏ ପ୍ରଶ୍ନର ଉତ୍ତର ସେ କ'ଣ ଦେଲେ ଜାଣନ୍ତି ? ମୁଁ ଯେଉଁ ଭଦ୍ରମହିଳାଙ୍କ କଥା କହୁଥିଲି, ତାଙ୍କର ଗୋଟିଏ ଚୌକିକୁ ଟାଣି ତା' ଉପରେ ଗୋଟିଏ ବିରାଟ ଅହମିକାର ପ୍ରତିମୂର୍ତ୍ତି ପରି ବସିରହିଲେ ଆଉ ମୋ ପ୍ରଶ୍ନର କିଛି ଉତ୍ତର ଦେଲେ ନାହିଁ । ବୋଧହୁଏ ସେ ନିଜେ କିଛି ଜାଣିନଥିଲେ । ସେ ମୋତେ ଖାଲି ଯାହା ଗିରଫ୍ କରିଥିଲେ । ବାସ୍, ସେଇ ତାଙ୍କପାଇଁ ଯଥେଷ୍ଟ । କିନ୍ତୁ ଏଇଠି କଥାର ଶେଷ ହେଲିନି । ସେ ତାଙ୍କ ସାଙ୍ଗରେ ତିନିଜଣ ତଳିଆ କର୍ମଚାରୀଙ୍କୁ ଆଣିଥିଲେ ଯେଉଁମାନେ କି ସେଠାରେ ଥିବା ଫଟୋଗୁଡିକ ଦେହରେ ହାତମାରି, ସେଗୁଡିକୁ ଏଣେତେଣେ କରି ଆନନ୍ଦ ପାଉଥିଲେ । ସେହିସବୁ ଫଟୋ-ଗୁଡ଼ିକ ସେ ଭଦ୍ରମହିଳାଙ୍କ ସମ୍ପତ୍ତି ଥିଲି । ସେ ତିନିଜଣଙ୍କର ଉପସ୍ଥିତିର ଅବଶ୍ୟ ଅନ୍ୟ ଏକ ଲକ୍ଷ୍ୟ ଥିଲା । ମୋ ଘରବାଲି ଓ ତାର ସୁକର୍ଣ୍ଣୀ ପରି ଏମାନଙ୍କ ପାଖରୁ ମଧ୍ୟ ତା ଆଶା କରାଯାଉଥିଲା । ତାଙ୍କର ଉଦ୍ଦେଶ୍ୟ ଥିଲା ମୋର ଗିରଫ୍ ହେବା କଥାକୁ ଗୁରୁଆଡ଼େ ପ୍ରଚାର କରିବା । ବାହାରେ ଥିବା ମୋର ସମ୍ମାନକୁ ନଷ୍ଟ କରିବା ଏବଂ ନିର୍ଦ୍ଦିଷ୍ଟ ଭାବରେ ବ୍ୟାଙ୍କ୍‌ରେ ଥିବା ମୋର ସ୍ଥାନକୁ ଦୋହଲାଇ ଦେବା । କିନ୍ତୁ ଏ ଆଶା ସମ୍ପୂର୍ଣ୍ଣ ବିଫଳ ହେଲା । ଏମିତିକି ମୋ ଘରବାଲି ଅତି ଦୁଷ୍ଟ ଟିଏ—ତାର ମାନ-ସମ୍ମାନକୁ ପୂରା ଜଗି ତା ନାମକୁ ମୁଁ ଉଚ୍ଚାରଣ କରୁଛି—'ଫ୍ରଉ ଗ୍ରୁବକ୍' । ଏମିତିକି ତାପରି ଦୁଷ୍ଟ ମଧ୍ୟ ବୁଝିପାରିଥିଲା ଯେ ଏମିତିକା ଗିରଫ୍-ଦାରୀର କିଛି ମୂଲ୍ୟ ନାହିଁ । ଏହା ରାସ୍ତାକଡ଼ର ଅର୍ବାଚୀନ ପିଲାଙ୍କର ଦୁଷ୍ଟାମିଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ନୁହେଁ । ମୁଁ ଆଉଥରେ କହୁଛି, ଏ ସମସ୍ତ ଘଟଣା କିଛି ଅପ୍ରୀତି-କରତା ପୁଣି କିଛି ବିରକ୍ତି ବ୍ୟତୀତ ଆଉ ଅଧିକ କିଛି ଦେଇନି । ମାତ୍ର ଏହାଠାରୁ ଆଉକିଛି ଅଧିକ ହେବନିତ ?'

ଠିକ୍ ଏତିକି କହି କେ' ଚୁପ୍ ହେଲା । ଚୁପ୍‌ଚାପ୍ ବସିଥିବା ତଦନ୍ତକାରୀ ମାଜିଷ୍ଟ୍ରେଟ୍‌ଙ୍କୁ ଚାହିଁବାରୁ ତାର ମନେ ହେଲା ଯେମିତିକି ସେ ଲୋକମାନଙ୍କ ଭିତରୁ କାହାକୁ ଗୁପ୍ତ କଣ ଇସାରା ଦେଉଛନ୍ତି । ଏହା ଦେଖି କେ' ହସିଲା ଓ କହିଲା—'ନମା' ପାଖରେ ବସିଥିବା ମାଜିଷ୍ଟ୍ରେଟ୍ ବର୍ତ୍ତମାନ ଆପଣଙ୍କ ଭିତରୁ କାହାରିକୁ କଣ ଗୁପ୍ତ ଇସାରା ଦେଉଛନ୍ତି । ତେଣୁ ଆପଣମାନଙ୍କ ଭିତରୁ କେହିଜଣେ ତାଙ୍କ ପାଖରୁ ଆଦେଶ ପାଉଛନ୍ତି । ମୁଁ କହିପାରିବି ନାହିଁ ଏହା ତାଳି ମାରିବାପାଇଁ ନା ଭୁଗି ମାରିବା ପାଇଁ । ଅସମୟରେ ଯେତେବେଳେ ଆଗରୁସ ଏ କଥା ଜଣାଇଦେଲି ପ୍ରକୃତ ଘଟଣାଟା ଜାଣିବାର ଆଶା ଆଉ ମୁଁ ରଖୁନାହିଁ । ଏହା ପ୍ରତି ମୁଁ ପୂରା ଉଦାସୀନ । ସର୍ବସାଧାରଣରେ ମୁଁ ମୋର ତଦନ୍ତକାରୀ ମାଜିଷ୍ଟ୍ରେଟ୍‌ଙ୍କୁ କ୍ଷମତା

Digitized by srujanika@gmail.com

ଦେଉଛୁ ସେ ତାଙ୍କର ଉକ୍ତିଆମାନଙ୍କୁ ସମ୍ଭାଷଣଟିଏ ଦଅନ୍ତୁ । ଠିକ୍ ସମୟରେ 'ତାଳମାର', ପାଟିକର ଆଜ୍ଞ କହିବାପାଇଁ ଆଉ ଗୁପ୍ତ ଇସାରା ଦଅନ୍ତୁ ନାହିଁ ।

ଲଜ୍ଜିତ ଅବା ଅଧୈର୍ଯ୍ୟ ହୋଇ ମାଜିଷ୍ଟ୍ରେଟ୍ ଜଣକ ତାଙ୍କ ଚୌକି ଉପରେ ଅସ୍ଥିର ହୋଇପଡ଼ିଥିଲେ । ତାଙ୍କ ପଛରେ ଠିଆ ହୋଇଥିବା ଲୋକ ଜଣକ, ଯାହା ସାଙ୍ଗରେ ସେ ଆଗରୁ କଥା ହେଉଥିଲେ, ତାଙ୍କ ଉପରକୁ ଆଉଥରେ ନଇଁପଡ଼ିଲା । ହୁଏତ ତାଙ୍କୁ ଉତ୍ସାହିତ କରିବା ପାଇଁ କିମ୍ବା କୌଣସି ନିର୍ଦ୍ଦିଷ୍ଟ ଉପଦେଶ ଦେବା ପାଇଁ ସେ ଏପରି କରିଥିଲା । ତଳେ ଦର୍ଶକମାନେ ଦବିଲା ସ୍ୱରରେ କଥାବାର୍ତ୍ତା ହେଉଥିଲେ । ମାତ୍ର ସେମାନଙ୍କ କଥାରେ ପ୍ରାଣପ୍ରାଚୂର୍ଯ୍ୟ ଥିଲା । ସେମାନଙ୍କ ଭିତରେ ଥିବା ଦୁଇଟି ଦଳ, ପୂର୍ବରୁ କେବେ ମିଶିପାରିବେ ନାହିଁ ବୋଲି ଯାହା ଜଣାପଡ଼ୁଥିଲା, ଏବେ ମିଶିଗଲେଣି । କେହି କେହି କେ' ଆଡ଼କୁ ଆଉ ବା କେହି କେହି ସେ ମାଜିଷ୍ଟ୍ରେଟ୍‌ଙ୍କ ଆଡ଼କୁ ସେମାନଙ୍କ ଆଙ୍ଗୁଳି ଦେଖାଉଥିଲେ । କୋଠରି ଭିତରର ରୁନ୍ଧା ବାତାବରଣ ଅସହ୍ୟ ହୋଇ ଉଠୁଥିଲା । ଏହା ଯୋଗୁଁ ଗୋଟିଏ କୋଣରୁ ଆର କୋଣରେ ବସିଥିବା ଲୋକଙ୍କୁ ଦେଖିବା ଅସମ୍ଭବ ହୋଇପଡ଼ୁଥିଲା । ଗ୍ୟାଲେରୀରେ ବସିଥିବା ଲୋକଙ୍କୁ ଏହା ନିଶ୍ଚିତଭାବରେ ବେଶୀ ବାଧୁଥିବ । ତେଣୁ କ'ଣ ହୋଇଛି ବୋଲି ଜାଣିବାପାଇଁ ସେମାନେ ବାଧ ହୋଇ ତଳେ ବସିଥିବା ଲୋକଙ୍କୁ ଦବିଲା ସ୍ୱରରେ ପଚାରୁଥିଲେ ଓ ଡ଼ରି ଡରି ମାଜିଷ୍ଟ୍ରେଟ୍‌ଙ୍କ ଅଡ଼କୁ ଚାହୁଁଥିଲେ । ଉତ୍ତର ମଧ୍ୟ ଆସୁଥିଲା ବଡ଼ ଗୁପ୍ତରେ । କଥା କହିବାବାଲା ତା ପାଟିରେ ହାତ ଦେଇ ତା ସ୍ୱରକୁ ଢାଙ୍କିବାପାଇଁ ଆପ୍ରାଣ ଚେଷ୍ଟା କରୁଥିଲେ । 'ମୋର ପ୍ରାୟ ସରିଗଲା' ଯେହେତୁ ସେଠାରେ ଘଣ୍ଟା ନଥିଲା, କେ' ଟେବୁଲ ଉପରେ ହାତ ବାଡେଇ କହିଲା । ଏହାର ଚମକରେ ମାଜିଷ୍ଟ୍ରେଟ୍ ଆଉ ତାଙ୍କ ଉପଦେଷ୍ଟାଙ୍କ ମଥା ଉଭୟଙ୍କ ପାଖରୁ କ୍ଷଣକପାଇଁ ଦୂରେଇଗଲା ।'ଏ ଘଟଣାଠାରୁ ମୁଁ ପୂରା ଅଲଗା । ଏହା ସହ ମୋର କିଛି ସମ୍ପର୍କ ନାହିଁ । ତେଣୁ ଧୀରସ୍ଥିର ଭାବରେ ମୁଁ ବିଚାର କରିପାରେ । ଏସବୁ କହିବାପରେ ବି ଆପଣମାନେ ଯଦି ଏହି ତଥା-କଥିତ ନ୍ୟାୟାଳୟ ଉପରେ ଗୁରୁତ୍ୱଆରୋପ କରୁଛନ୍ତି ତେବେ ମୋ କଥା ଶୁଣିଲେ ଆପଣମାନଙ୍କର ବହୁତ ଲାଭ ହେବ । ମୁଁ କିନ୍ତୁ ପ୍ରାର୍ଥନା କରୁଛି ଯେ ମୁଁ ଯାହା କହୁଛି ତା ଉପରେ ଯଦି ଆପଣ କିଛି ମନ୍ତବ୍ୟ ଦେବାକୁ ଚାହାନ୍ତି ତେବେ ତାକୁ ବର୍ତ୍ତମାନ ଏଇଠି ଶୁଣାଇ ଦଅନ୍ତୁ କାରଣ 'ମୋ'ପାଖରେ ସମୟ ମୂଲ୍ୟବାନ । ସମୟ ଆଦୌ ନାହିଁ । ମୁଁ ଶୀଘ୍ର ଯିବି ।'

ସାଙ୍ଗେ ସାଙ୍ଗେ ଘରଅଡ଼ ଚୁପ୍‌ଚାପ୍ ହୋଇଗଲା । ଏ ସଭାରେ ତେବେ କେ' ସମ୍ପୂର୍ଣ୍ଣଭାବେ ପ୍ରାଧାନ୍ୟ ବିସ୍ତାର କରି ପାରିଥିଲା । ଆରମ୍ଭରେ ଲୋକମାନେ

Digitized by srujanika@gmail.com

ଯେମିତ ପାଟିତୁଣ୍ଡ କରୁଥିଲେ ସେମିତ ଆଉ କଲେନାହିଁ । ଏମିତକ ତାଳି ମଧ ମାରଲେ ନାହିଁ । ଜଣାପଡୁଥିଲା ଯେମିତକ ସେମାନେ ଜନଷଟିକୁ ପୁରୁ ଉପଲବ୍ଧି କରିପାରିଛନ୍ତି ଅବା ଉପଲବ୍ଧି କରିବା ଉପରେ ।

'ଏଥିରେ ଆଉ ସନ୍ଦେହ ନାହିଁ'—ଖୁବ୍ ଧୀରେ କେ' କହିଲା । କାହିଁକିନା ତା କଥାକୁ ଲୋକମାନେ ଯେମିତ ଭାବରେ ମନଯୋଗ ସହ ଶୁଣୁଥିଲେ ସେଥିରେ ସେ ଉତ୍ସାହିତ ହୋଇ ଉଠିଥିଲା । ସେଇ ନୀରବତା ଭିତରେ ଗୋଟିଏ ନୀରବ ଗୁଞ୍ଜରଣ ଶୁଣା ଯାଉଥିଲା । ଯାହାକି ଖୁବ୍ ବେଶୀ ପାଟିତୁଣ୍ଡ ଅପେକ୍ଷା ଅଧିକ ଉନ୍ମାଦନାପୂର୍ଣ୍ଣ ।

'ଏଥିରେ ଆଉ ସନ୍ଦେହ ନାହିଁ ଯେ ଏହି ନ୍ୟାୟାଳୟର ସବୁ କାମ ପର୍ଦ୍ଦା ପଛରେ ଗୁପ୍ତରେ ହୁଏ । ଅର୍ଥାତ୍ ମୋ' କଥା ଧରାଯାଉ । ମୋର ଆରେଷ୍ଟ ହେବା ପୁଣି ଆଜିର ଏ ଜେରା ସବୁ ପଛରେ ଗୋଟିଏ ବିରାଟ ସଂଗଠନ କାମ କରୁଛି । ଏ ସଂଗଠନ ଯାହାକି ଖାଲି ଦୁର୍ନୀତିଗ୍ରସ୍ତ ଓ୍ୱାର୍ଡ଼ର, ଦୁର୍ବ୍ୟବହାର କରୁଥିବା ଇନ୍‌ସ-ପେକ୍ଟର ନିଯୁକ୍ତ କରେ ନାହିଁ ବରଂ ଜେରା କରୁଥିବା ମାଜିଷ୍ଟ୍ରେଟ୍‌ମାନଙ୍କ ବିଷୟରେ ଏତିକି କୁହାଯାଇପାରେ ଯେ ସେମାନେ ତାଙ୍କ ଦୌଡ଼ କେତେ ସେ ବିଷୟରେ ଜାଣନ୍ତି । ପୁଣି ସେମାନେବି ଜାଣନ୍ତି ଯେ ତାଙ୍କ ପଛରେ ଅଛି ଗୋଟିଏ ନ୍ୟାୟାଳୟ । ସେ ନ୍ୟାୟାଳୟର ଅଧୀନରେ ଅଛନ୍ତି ତଳିଆ କର୍ମଚାରୀଙ୍କ ଠାରୁ ଆରମ୍ଭ କରି ଉପରକୁ ପାହାଚ ପାହାଚ କେତେ କ୍ଷମତାପନ୍ନ କର୍ମଚାରୀ । ସେମାନଙ୍କ ହାତରେ ଅଛନ୍ତି ପିଅନ, କିରାଣି, ପୋଲିସ୍ ଆଉ ଏମିତି କେତେ ସଦରକାରୀ କର୍ମଚାରୀ । ଏମିତକି ହତ୍ୟାକାରୀ ମଧ ଅଛନ୍ତି । ହତ୍ୟାକାରୀ ଶବ୍ଦ ବ୍ୟବହାର କଲାବେଳକୁ ମୁଁ ଆଦୌ ପଛାଇଯାଉନ । କାରଣ ସମସ୍ତେ ଏ ସଂଗଠନ ପଛରେ ଅଛନ୍ତି । ଆଉ ମହାଶୟ ! ସଂଗଠନର ଅର୍ଥ ଆଉ ଉଦ୍ଦେଶ୍ୟ କ'ଣ କହିପାରିବେ କି ? ଏହାର କାମ ହେଉଛି ସରଳ ନିର୍ଦ୍ଦୋଷୀମାନଙ୍କୁ କୌଣସି ଦୋଷରେ ଅଭିଯୁକ୍ତ କରିବା ଏବଂ ତାଙ୍କ ବିରୁଦ୍ଧରେ ଅର୍ଥହୀନ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା । ଅବଶ୍ୟ ଏହା ସତ ଯେ ଏ ସବୁର ଫଳ କିଛି ନାହିଁ । ଉଦାହରଣସ୍ୱରୂପ ମୋ ମକଦ୍ଦମା କଥା ନିଆଯାଇ ପାରେ । ମାତ୍ର ଏ ସମସ୍ତ ବିଭାଗ ଏବଂ ତା କାର୍ଯ୍ୟକାରିତା ଦୁର୍ବଳତାକୁ ବିଚାର କରି ଦେଖିଲେ ଜଣାଯିବ ଯେ ଉପର ପାହ୍ୟାରେ ଥିବା କର୍ମଚାରୀମାନେ କେମିତି ବା ତାଙ୍କ ଏଜେଣ୍ଟମାନଙ୍କୁ ଦୁର୍ବଳତା ପାଖରୁ ଦୂରେଇ ରଖିପାରିବେ ? ଏହା ଅସମ୍ଭବ । ଏହି ସଂଗଠନର ସର୍ବୋଚ୍ଚ ବିଚାରପତି ମଧ ଏହାକୁ ବାଧା ଦେଇପାରିବେନି ତେଣୁ ଓ୍ୱାର୍ଡ଼ରମାନେ ଆରେଷ୍ଟ କରୁଥିବା ଲୋକଙ୍କ ଦେହରୁ ପୋଷାକ ଚୋରି କରିବାକୁ ଚେଷ୍ଟା କରନ୍ତି ।

Digitized by srujanika@gmail.com

ଅଚହ୍ନା ଘରେ ଜବରଦସ୍ତ ପଶନ୍ତି ଏବଂ ନିରୀହ ଲୋକମାନଙ୍କୁ ଯେମିତି ଜେର୍ କରିବା କଥା ସେମିତି କରି ସମସ୍ତଙ୍କ ଆଗରେ ଲାଞ୍ଛିତ କରନ୍ତି । ଓ୍ୱାର୍ଡ଼ର ମାନେ ମୋତେ କେତେକ ଗୋଦାମ କଥା କହୁଥିଲେ । ଯେଉଁଠିକି ବନ୍ଦୀମାନଙ୍କର ଜିନିଷପତ୍ର ରଖାଯାଏ । ସେ ସବୁ ଗୋଦାମ ଦେଖିବାକୁ ମୋର ଖୁବ ଇଚ୍ଛା ହେଉଚି ଯେଉଁଠି ବନ୍ଦୀମାନଙ୍କର ବହୁ କଷ୍ଟ ଅର୍ଜିତ ଧନ ସବୁ ନଷ୍ଟ ହେବାପାଇଁ ରଖାଯାଏ । ଜିମ୍ମା କର୍ମଚାରୀମାନେ ସବୁ ନେଇସାରିଲା ପରେ ଯାହା ରହେ ତାକୁ ରଖାଯାଏ । ଏତିକିବେଳେ ହଲ ପଛଆଡୁ ଗୋଟିଏ ଚିତ୍କାର ଦ୍ୱାରା କେ'ର କହିବା ବାଧା ପାଇଲା । କଅଣ ହେଉଛି ବୋଲି ସେ ତା ହାତ ତଳ ଦେଇ ନିରେଖି ଦେଖିବାକୁ ଚେଷ୍ଟା କଲା । କାରଣ ଘର ଭିତରର ବୁଜ ପବନ ଆଉ ମଳିନ ଆଲୁଅ ମିଶି କେମିତି ଗୋଟିଏ ଧୂଆଁଳିଆ କୁହୁଡ଼ି ସୃଷ୍ଟି କରୁଥିଲେ । ଏହା ସେହି ଧୋବଣୀ । ସେ ଆସିବାବେଳୁ କେ' ବୁଝିଥିଲା ଯେ ସେ କିଛି ବାଧା ସୃଷ୍ଟି କରିବ । ବର୍ତ୍ତମାନ ଏଇ ମୁହୂର୍ତ୍ତରେ ତାର କିଛି ଭୁଲ ଅଛି କି ନାହିଁ କେହି କହିପାରିବେନି । ଯେମିତି କେ' ଦେଖିଲା ତାହେଉଛି ଜଣେ ଲୋକ ତାକୁ ଘରର ଗୋଟିଏ କୋଣକୁ ଟାଣି-ନେଇ ନିଜ ହାତରେ ତାକୁ ଜାବୁଡ଼ି ଧରୁଛି । କିନ୍ତୁ ତଥାପି ସେ ସ୍ତ୍ରୀ ଲୋକଟି ପାଟି କରୁନି । ପାଟିକରୁଚି ତାକୁ ଧରିଥିବା ପୁରୁଷ ଲୋକଟି । ଲୋକଟିର ପାଟି ମେଲା ଆଉ ସେ ଗ୍ରୁତକୁ ଡ଼ବ ଡ଼ବ କରି ଝୁଣ୍ଟିଛି । ତାକୁ ଘେରି ଲୋକ ଜମିଗଲେଣି । ଗ୍ୟାଲେରୀରେ ଥିବା ଲୋକମାନେ ମନେ ମନେ ଖୁସି ହେଲାପରି ଜଣାପଡ଼ୁଛି । କାରଣ କେ' ଆଜିର କାର୍ଯ୍ୟକ୍ରମରେ ଯେଉଁ ଗମ୍ଭୀରତା ଆଉ ଗୁରୁତ୍ୱ ଆଣି ଦେଇଥିଲା ତା ଏହାଦ୍ୱାରା ନଷ୍ଟ ହୋଇଯିବ । କେ'ର ପ୍ରଥମ ପ୍ରତିକ୍ରିୟା ହେଲା ସେ ସେଠାକୁ ଧାଇଁଯିବ । ପରେ ଶାନ୍ତିଶୃଙ୍ଖଳା ପୁଣି ଫେରିଆସୁ ବୋଲି ସମସ୍ତେ ଚାହାନ୍ତି ବୋଲି ସେ ଭାବିବା ସ୍ୱାଭାବିକ୍ । ସମସ୍ତେ ଚାହାନ୍ତି ଯେ ସେଇ ଅପ୍ରୀତିକର ଦୁଇଜଣଙ୍କୁ ଜୋର୍ ଜବରଦସ୍ତ ସେ ସଭାରୁ ବାହାରକରି ଦିଆଯାଉ ।

ମାତ୍ର ପ୍ରଥମ ଧାଡ଼ିରେ ବସିଥିବା ଲୋକମାନେ ପଥର ପରି ଚୁପ୍‌ଚାପ୍ ବସିଥିଲେ । ତାଙ୍କ ପାଖରେ କୌଣସି ପ୍ରତିକ୍ରିୟା ନଥିଲା । ସେମାନେ କେହି ହଲିଲେନି କି କେହି ତାକୁ ଯିବାକୁ ଦେଲେନି । ଅନ୍ୟ ଢଙ୍ଗରେ ସେମାନେ ବରଂ ତାକୁ ବାଧା ଦେଲେ । ଜଣକର ହାତ ତାର କଲାରକୁ ପଛପଟୁ ଭିଡ଼ି ଧରିଲା । କାହାର ସେ ହାତ ଫେରି ଦେଖିବାକୁ କେ'ର ବେଳ ନଥିଲା । ବୁଢ଼ା ଲୋକମାନେ ତାକୁ ବାଧା ଦେବା ପାଇଁ ତାଙ୍କ ହାତକୁ ବଢ଼ାଇ ଦେଲେ । ବର୍ତ୍ତମାନ କେ' ଆଉ ସେ ଦୁଇଜଣଙ୍କ କଥା ଭାବୁ ନଥିଲା । ସେ ଅନୁଭବ କରୁଥିଲା ଯେମିତି ତାର ସ୍ୱାଧୀନତା ବିପଦାପନ୍ନ । ତାକୁ ଜଣାଯାଉଥିଲା ଯେମିତି ପ୍ରକୃତରେ ତାକୁ ଗିରଫ୍

Digitized by srujanika@gmail.com

କରିଯାଇଛି । ସେ ଆଉ କିଛି ଭାବି ପାରିଲାନି । କାହାକୁ ଖାତିର୍ ନକରି ମଞ୍ଚ ଉପରୁ ତଳକୁ ତେଇଁ ପଡ଼ିଲା । ବର୍ତ୍ତମାନ ସେସବୁ ଲୋକଙ୍କ ଆଗରେ ସାମ୍ନାସାମ୍ନି ଛିଡ଼ା ହେଲା । ସେ ତେବେ କଅଣ ଏ ଲୋକଙ୍କୁ ଭୁଲ୍ ବୁଝିଥିଲା । ତା' ଭାଷଣରେ ପ୍ରଭାବ ସମ୍ପର୍କରେ ତାର ଧାରଣା କ'ଣ ଖୁବ୍ ଆଶାବାଦୀ ଥିଲା ? ସେ କହି ଚାଲିଥିଲା ବେଳେ ସେମାନେ କ'ଣ ସେମାନଙ୍କ ମତାମତକୁ କେବଳ ଢ଼ାଙ୍କି ରଖିଥିଲେ ? ଆଉ ବର୍ତ୍ତମାନ ଯେତେବେଳେ ସେ ତାର ଭାଷଣ ଶେଷ କରିବାକୁ ଯାଉଛି ସେମାନେ କ'ଣ ଛଳନା କରି କ୍ଲାନ୍ତ ହୋଇଗଲେ ? ଚାରିଆଡ଼ୁ ତାକୁ ଘେରି ରହିଥିବା ଏ ମୁହଁ ସବୁ କି ମୁହଁ ? କୋରଡ଼ ଭିତରେ ଗ୍ଲେଟ ଗ୍ଲେଟ କଳାଆଖି ସବୁ ଖରପର ଏପାଖ ସେପାଖ କନକନ ହେଉଛି । ସେମାନଙ୍କର ଝିଙ୍କ କାଠିଆ ଦାଢ଼ିସବୁ ଠିଆ ଠିଆ । ତାକୁ ଧରି ପକାଇଲେ ମନେ ହେବ ଯେମିତି ଦାଢ଼ି ନୁହେଁ ତ ମୁଠେ ମୁନିଆ ନଖକୁ ଧରି ପକାଉଛି । କିନ୍ତୁ ଏଇସବୁ ଟାଆଁସା ଦାଢ଼ି ତଳେ କେ' ଦେଖିପାରିଲା ବିଭିନ୍ନ ଆକାର ଆଉ ରଙ୍ଗର ବ୍ୟାଜ୍ ସବୁ କୋଟ୍ କଲର୍ ଉପରେ ଚକ୍‌ଚକ୍ କରୁଛି । ଏହାହିଁ କେ'ର ପ୍ରକୃତ ଆବିଷ୍କାର । ସେ ଯେତେ ଦୂର ଦେଖିଲା ସେମାନେ ସମସ୍ତେ ଏହି ବ୍ୟାଜ୍ ସବୁ ମାରିଛନ୍ତି । ସେମାନେ ସମସ୍ତେ ସହକର୍ମୀ, ଆଉ ବାରି ହୋଇ ପାରିଲା ପରି ଏହି ଡାହାଣ ଆଉ ବାମଦଳ । ପୁଣି ସେ ଯେତେବେଳେ ହଠାତ୍ ପଛକୁ ବୁଲି ପଡ଼ିଲା ସେ ଦେଖିଲା ଯେ ସେହି ଏକା ବ୍ୟାଜ୍ ମାଜିଷ୍ଟ୍ରେଟ୍‌ଙ୍କ କୋଟ୍ କଲର୍‌ରେ ମରିହୋଇଛି । ସେ ଆଣ୍ଠୁ ଉପରେ ହାତ-ରଖି ଚୁପ୍‌ଚାପ୍ ଏହି ଦୃଶ୍ୟକୁ ଏକ ଲକ୍ଷ୍ୟରେ ଦେଖୁଅଛି । 'ତେବେ ତୁମେ ସମସ୍ତେ ଗୋଟିଏ ଗୋଷ୍ଠୀର ?' ଶୂନ୍ୟରେ ହାତକୁ ଟେକିଧରି କେ' ଚିତ୍କାର କରି ଉଠିଲା । ସେ ଯେଉଁ ସତ୍ୟକୁ ପାଇଛି ତାକୁ ପ୍ରକାଶ କରିବାକୁ ପଡ଼ିବ । ତେଣୁ ଚିତ୍କାର କରି ଡାକ ଉଠିଲା । 'ତୁମେ ସବୁ ରମା, ଦାମା, ଶାମା, ସବୁ ଗୋଟିଏ ଗୋଟିଏ ଚାକରିଆ-କର୍ମଚାରୀ । ତୁମେ ସବୁ ସେଇ ଦୁର୍ନୀତିଗ୍ରସ୍ତ ଏଜେଣ୍ଟ ଯାହା ବିରୁଦ୍ଧରେ ମୁଁ ଏ ପର୍ଯ୍ୟନ୍ତ କହୁଥିଲି । ତୁମେ ସବୁ ଏଠାକୁ ଧାଇଁ ଆସିଥିଲ ମୁଁ କ'ଣ କହୁଛି ଶୁଣିବା ପାଇଁ ଆଉ ମୋ' ବିରୁଦ୍ଧରେ ଜାଣିବା ପାଇଁ । ସେଇଥି ପାଇଁ ତୁମର ଏ ଛଳନା । ଦୁଇଟି ଦଳରେ ବସିବା ଖାଲି ଗୋଟେ ମିଛ ବାହାନା ମୋତେ ଦେଖେଇହେବା ପାଇଁ । ତାଳି ମାରି ଦଳେ ମୋତେ ଉତ୍ସାହିତ କରୁଥିଲେ ଖାଲି ମୋ'ପାଖରୁ କଥା ଆଦାୟ କରିବା ଉଦ୍ଦେଶ୍ୟରେ । ଜଣେ ନିରୀହ ଲୋକକୁ ପ୍ରତାରିତ କରିବାର ଏ ହେଉଛି ଗୋଟିଏ ଉପାୟ । ମୁଁ ଭାବୁଛି ଏହା ତୁମର ଖୁବ୍ ଉପକାର କରିଛି । କାରଣ ତୁମେ ହୁଏତ ମୋର ଏପରି ବ୍ୟବହାରରୁ ଆନନ୍ଦ ପାଇଥିବ । କାରଣ ମୁଁ ଆଶା କରିଥିଲି ତୁମେମାନେ ଜଣେ ନିରୀହକୁ ରକ୍ଷା କରିବା ପାଇଁ ଚେଷ୍ଟା କରିବ । ବର୍ତ୍ତମାନ ତୁମେ ମୋ' ପାଖରୁ ଦୂରେଇ ଯାଅ, ନ' ହେଲେ

Digitized by srujanika@gmail.com

ମୁଁ ତୁମକୁ ଆଘାତ କରିବି ।’ ଗୋଟିଏ ଥୁରୁଥୁରୁ ବୁଢ଼ା ଯିଏକି କେ’ର ଖୁବ୍ ପାଖକୁ ଭିଡ଼ି ଆସିଥିଲା ତାକୁଇ ଚାହିଁ କେ’ ଏମିତିକି ପାଟି କରି ଉଠିଲା । କହିଲା— ‘ପଳାଅ ତୁମେ ତ ଗୋଟେ ଦୁଇଟା ନୂଆ କଥା ଶିଖିଲ ତୁମର ଏପରି କାମ ପାଇଁ ଶୁଭ ମନାଉଛ ।’

କେ’ ତରତରରେ ଟେବୁଲ ଧାରରେ ଥିବା ତା ଟୋପିଟାକୁ ଟେକିନେଲା ଆଉ ନୀରବତା ଭିତରେ ଦ୍ୱାର ଆଡ଼କୁ ଆଗେଇ ଚାଲିଲା । ଏ ନୀରବତା ସାଙ୍ଗଜନମାନ ଆଉ କିଛି ନକହିଲେ ବି ସମ୍ପୂର୍ଣ୍ଣ ଜଡ଼ତାର ପ୍ରକାଶ । କିନ୍ତୁ ତଦନ୍ତକାରୀ ମାଜିଷ୍ଟ୍ରେଟ୍ ଯେ କେ’ଠାରୁ ଅଧିକ କ୍ଷିପ୍ର ତାହା ସେତେବେଳେ ଜଣାଗଲା । ସେ ଦ୍ୱାର ପାଖରେ ଆଗରୁ ଅପେକ୍ଷା କରି ରହିଥିଲେ ।

‘ଟିକିଏ ରହିବେ ।’ ମାଜିଷ୍ଟ୍ରେଟ୍ କହିଲେ ।

କେ’ ଠିଆ ହୋଇଗଲା । ମାଜିଷ୍ଟ୍ରେଟ୍‌କୁ ସେ ଚାହିଁଲା । ତା ଆଖି ଦ୍ୱାର ଉପରେ, ହାତ ସେତେବେଳେ ଦ୍ୱାରର ଛିଟ୍‌କିଣି ଉପରେ ।

‘ମୁଁ ଖାଲି ଏତିକି କହି ଦେଉଛି ଯେ ତୁମେ ଏବେ ବି ପରିସ୍ଥିତିକୁ ଠିକ୍ ଜାଣିନ । ଏପରି ତଦନ୍ତ ଦ୍ୱାରା ଜଣେ ବିଚାରାଧୀନ ଲୋକ ସାଧାରଣତଃ ଯାହା ସୁବିଧା ସୁଯୋଗ ପାଇଥାଏ ତୁମେ ଆଜି ତାହା ନିଜ ହାତରେ ଆଡ଼େଇ ଦେଇଛ ।’

ସେଇ ଦ୍ୱାର ଆଡ଼କୁ ଚାହିଁରହି କେ’ ହସିଲା ।

‘ପ୍ରତାରକ, ଠକ ସର୍ଦ୍ଦାର ସବୁ । ଆଉ ଥରେ ଭବିଷ୍ୟତରେ ପୁଣି ଜେରା କରିବାକୁ ମୁଁ ସମୟ ଦେବି ?’ କେ’ ପାଟିକରି ଉଠିଲା ଆଉ କବାଟ ଖୋଲି ପାହାଚ ଦେଇ ତରତରରେ ଓହ୍ଲାଇଗଲା । ତା ପଛରେ ଆଲୋଚନାର ଏକ ସଜୀବ ଗୁଞ୍ଜରଣ ଖେଳିଗଲା । ଦେଖଣାହାରୀମାନେ ପୁଣି ଥରେ ଯେମିତି ଚଞ୍ଚଳ ହୋଇ ଉଠିଲେ ଏବଂ ଆଜିର ଘଟଣାକୁ ବିଚକ୍ଷଣ ଛାତ୍ର ଭଳି ବିଶ୍ଳେଷଣ କରିବାକୁ ଲାଗିଲେ ।



Digitized by srujanika@gmail.com

# ତୃତୀୟ ପରିଚ୍ଛେଦ

# ଫାଙ୍କା ବିଚାରାଳୟରେ-ଛାତ୍ର-ଅଫିସ୍

ପରବର୍ତ୍ତୀ ସପ୍ତାହରେ କେ’ ଦିନ ଦିନ ଧରି ନୂଆ ସମନ୍ ପାଇଁ ଅପେକ୍ଷା କରି ରହିଲା । ତାକୁ କିଛି ପଚରା ପଚରି କରିବାକୁ ସେ ଯେ ମନାକରିଥିଲା ସେକଥାକୁ ଯେ ସେମାନେ ଅକ୍ଷରେ ଅକ୍ଷରେ ମାନି ନେବେ ଏକଥା ସେ ବିଶ୍ୱାସ କରି ପାରିଲା ନାହିଁ । ତେଣୁ ସେ ଧରିନେଲା ଯେ ଯେହେତୁ ଶନିବାର ସନ୍ଧ୍ୟା ସୁଦ୍ଧା ତାକୁ ଅନ୍ୟ କେବେ ବା କେଉଁଠି ହାଜର ହେବାକୁ କିଛି କୁହା ଯାଇନାହିଁ, ତେଣୁ ପୂର୍ବପରି ସେଇ ପୁରୁଣା ଠିକଣାରେ ଓ ସେତିକି ବେଳେ ତାକୁ ଯାଇ ହାଜିରା ଦେବାକୁ ପଡ଼ିବ । ତେଣୁ ସେ ରବିବାର ସକାଳେ ସେଠାରେ ପହଞ୍ଚିଲା । ଏଥର ସିଧା ସରୁ ସିଡ଼ି ଚଢ଼ି ଚଢ଼ି ବାଟେ ବାଟେ ଯାଇ ଉପରେ ପହଞ୍ଚିଗଲା । ତାକୁ ମନେ ରଖିଥିବା ଅନ୍ତତଃ କେତେ ଜଣ ଲୋକ ନିଜ ନିଜ ଘର ଦୁଆର ମୁହଁ ପାଖରୁ ସ୍ୱାଗତ ଜଣାଇଲେ । କିନ୍ତୁ ଏଥର ତାର କାହାରିକୁ କିଛି ପଚାରି ବୁଝିବାର ନଥିଲା । ସେ ସିଧା ଠିକଣା ଦ୍ୱାର ମୁହଁରେ ପହଞ୍ଚିଗଲା । ସେ କବାଟରେ ଠକ୍‌ଠକ୍ କରିବା ମାତ୍ରେ ଦ୍ୱାର ଖୋଲିଗଲା । ଆଉ କୁଆଡ଼କୁ ମୁହଁ ନ ବୁଲାଇ ଏମିତିକି ଦୁଆର ମୁହଁ ପାଖରେ ଯେଉଁ ସ୍ତ୍ରୀ ଲୋକଟି ଠିଆହୋଇ ରହିଥାଏ ତା ଆଡ଼କୁ ବି, କେ’ ସିଧା ଯେ ବଖରାକୁ ଲାଗିଥିବା ବଖରା ଆଡ଼କୁ ଚାଲିଲା । ‘ଆଜି ତ ଅଦାଲତ ବସିବାର ନାହିଁ ।’ ସ୍ତ୍ରୀ ଲୋକଟି କହିଲା ।

‘କାହିଁକି ବସିବ ନାହିଁ ?’ କେ’ ପଚାରିଲା । ଆଜି କୋର୍ଟ ହେବ ନାହିଁ ସେ ବିଶ୍ୱାସ କରି ପାରିଲା ନାହିଁ । କିନ୍ତୁ ସ୍ତ୍ରୀ ଲୋକଟି ଆର ବଖରାର କବାଟକୁ ନିଜେ ଖୋଲି ଦେଇ ସେ ବିଷୟରେ ତାର ବିଶ୍ୱାସ ଜନ୍ମାଇ ଦେଲା । ବଖରାଟା ପ୍ରକୃତରେ ଫାଙ୍କା ପଡ଼ିଥାଏ, କେହି ନଥାନ୍ତି ଓ ସେମିତି ଫାଙ୍କା ଥାଇ ପୂର୍ବ ରବିବାର ଅପେକ୍ଷା ବରଂ ଆହୁରି ଅଧିକ କୁତ୍ସିତ ଦିଶୁଥାଏ । ଏବେବି ମଞ୍ଚ ଉପରେ ଆଗଭଳି ଟେବୁଲ୍‌ଟା ପଡ଼ିଥାଏ ଓ ତା ଉପରେ କେତେ ଖଣ୍ଡ ବହି ପଡ଼ି ରହିଥାଏ ।

Digitized by srujanika@gmail.com

‘ସେ ବନ୍ଦୀଗୁଡ଼ିକୁ ଟିକିଏ ଖାଲି ଦେଖନ୍ତି ?’ କେ’ ପଚାରିଲା । ଏପରି କୌଣସି ନିର୍ଦ୍ଦିଷ୍ଟ ବିଷୟରେ ତାର କିଛି କୌତୂହଳ ଥିଲା ଓ ତାହା ମେଣ୍ଟାଇବି ବୋଲି ସେ ଏପରି ପଚାରିଲା ତାହା ନୁହେଁ, ଖାଲି ଏଥିପାଇଁ ପଚାରିଦେଲା ଯେପରି କି ତାର ଆଜି ଆସିବାଟା ଉଦ୍ଦେଶ୍ୟହୀନ ବୋଲି ଜଣା ନ ପଡ଼େ । ସେ ବଖରାର କବାଟକୁ ବନ୍ଦ କରି ଦେଉଁ ଦେଉଁ ସ୍ତ୍ରୀ ଲୋକଟି କହିଲା—‘ନା, ସେଥିପାଇଁ ଅନୁମତି ଦିଆଯାଏ ନାହିଁ । ସେ ବନ୍ଦୀଗୁଡ଼ିକ ପ୍ରଶ୍ନକାଷ୍ଠ ମାଜିଷ୍ଟ୍ରେଟ୍‌ଙ୍କ ବନ୍ଦୀ ।’

‘ବୁଝିଲି’-କେ’ ମୁଣ୍ଡ ହଲେଇ କହିଲା । ‘ସେଗୁଡ଼ିକ ବୋଧହୁଏ ଆଇନ୍ ବନ୍ଦୀ । ଆଉ ଏଠାରେ ଦିଆଯାଉଥିବା ନ୍ୟାୟର ଗୋଟିଏ ପ୍ରଧାନ ଅଙ୍ଗ ହେଲା ଜଣେ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ବୋଲି ଏଠି ଦଣ୍ଡ ପାଇବ ଖାଲି ସେତିକି ନୁହେଁ, ତାର ନିର୍ଦ୍ଦୋଷତା ସହିତ ସେ ଆଇନ୍ ଜାଣେ ନାହିଁ ବୋଲି ମଧ୍ୟ ଦଣ୍ଡ ପାଇବ ।’

‘ହଁ, ସେଇଆ ନିଶ୍ଚୟ ହୋଇଥିବ ।’ କଥାର ଅର୍ଥକୁ ପୂରା ନବୁଝି ସ୍ତ୍ରୀ ଲୋକଟି କହିଲା ।

‘ହଉ, ତାହେଲେ ମୁଁ ଆଜି ମଧ୍ୟ ଚାଲିଯିବା ଭଲ ।’ କେ’ କହିଲା ।

‘ପ୍ରଶ୍ନକାଷ୍ଠ ମାଜିଷ୍ଟ୍ରେଟ୍‌ଙ୍କୁ ଦେଇ ଦେବାକୁ ଆପଣ ମୋ’ ହାତରେ କିଛି ଖବର ଦେଇଯିବେକ ?’ ସ୍ତ୍ରୀ ଲୋକଟି ପଚାରିଲା ।

‘ଆପଣଙ୍କର କଣ ତାଙ୍କ ସଙ୍ଗେ ଜଣାଶୁଣା ଅଛି ?’ କେ’ ପଚାରିଲା ।

‘ନିଶ୍ଚୟ, ମୋର ସ୍ୱାମୀ ପରା ଏ କୋର୍ଟରେ ଜଣେ ଅଟେଣ୍ଡେଣ୍ଟ ।’

ଏତେବେଳେ ଯାଇ କେ’ ନଜରକଲା ଯେ କୋର୍ଟ ଘରକୁ ଲାଗି ଯେଉଁ ପାଖ ବଖୁରା ଭିତରେ ଗତ ରବିବାର ଦିନ କେବଳ ଗାଧୁଆ କୁଣ୍ଡଟିଏ ଥିଲା ସେଠି ଆଜି ଆସବାବ ପତ୍ର ଥାଇ ସେ ପୂରା ସଜା ହୋଇ ଗୋଟିଏ ରହିବା ଘର ହୋଇ ଯାଇଛି । ସ୍ତ୍ରୀ ଲୋକଟି ଲକ୍ଷ୍ୟ କଲା ଯେ ତାହା ଦେଖି କେ’କୁ ଆଶ୍ଚର୍ଯ୍ୟ ଲାଗୁଛି । ସେ କହିଲା—‘ହଁ, ଏଘରେ ଆମକୁ ବିନା ଭଡ଼ାରେ ରହିବା ପାଇଁ ଦିଆଯାଇଛି । ମାତ୍ର ଯେଉଁଦିନ କୋର୍ଟ ବସିବାର ଥାଏ ସେଦିନ ଆମକୁ ଏଘର ଖାଲି କରି ଦେବାକୁ ପଡ଼େ । ମୋ ସ୍ୱାମୀଙ୍କ ଚାକିରିରେ ବହୁତ ଅସୁବିଧା ।’

‘ଏ ଘର ଦେଖି ମୁଁ ସେତେ ଆଶ୍ଚର୍ଯ୍ୟ ହେଉନି । ମତେ ଆଶ୍ଚର୍ଯ୍ୟ ଲାଗୁଛି ଯେ ଆପଣମାନେ ଦୁହେଁ ବିବାହିତ ହୋଇ ଏଠି ରହୁଛନ୍ତି ।’ କେ’ତା ମୁହଁକୁ କଠୋର ଦୃଷ୍ଟିରେ ଚାହିଁରହିଲା ।

Digitized by srujanika@gmail.com

'ଓ, ଗତଥର କୋର୍ଟ ବସିଥିଲା ବେଳେ ଯାହା ହେଲା ବୋଧହୁଏ ଆପଣ ସେଇ କଥାକୁ କହୁଛନ୍ତି । ଆପଣ କୋର୍ଟରେ କଥା କହୁଥିଲା ବେଳେ ମୋ' ପାଟି ଶବ୍ଦରେ ଗୋଳମାଳ ହୋଇଥିଲା ।'

'ନିଶ୍ଚୟ'—କେ କହିଲା ।

'ବର୍ତ୍ତମାନ ସେକଥା ପୁରୁଣା ହୋଇଗଲାଣି ଓ ପ୍ରାୟ ଭୁଲି ହୋଇଗଲାଣି । ସେତେବେଳେ ମୁଁ ଖୁବ୍ ରାଗିଯାଇଥିଲି । ଆଉ ବର୍ତ୍ତମାନ ଆପଣ ନିଜେ କହୁଛନ୍ତି ଯେ ଆପଣ ବିବାହିତା ।'

'ଆପଣଙ୍କ କଥା ମଝିରେ ବାଧା ସୃଷ୍ଟି ହେଲା ବୋଲି ଯେ ଆପଣଙ୍କର କ୍ଷତି ହେଲା ନାହିଁ । ଆପଣ କହି ସାରିବା ପରେ ସେ ବିଷୟରେ ଯାହା ଆଲୋଚନା ହେଲା ତହିଁରୁ ଜଣାଗଲା ଯେ ଆପଣ ଯାହା କହିଲେ ତହିଁରୁ ଆପଣଙ୍କ ବିଷୟରେ ବହୁତ ଖରାପ ଧାରଣା ହୋଇଥିଲା ।'

'ହୁଏତ ତା' ହୋଇପାରେ । ମାତ୍ର ଏଥିପାଇଁ ଆପଣଙ୍କୁ କ୍ଷମା ଦିଆଯାଇ ପାରିବନାହିଁ ।'

'ମୋତେ କିନ୍ତୁ ଯେଉଁମାନେ ଜାଣନ୍ତି ସେମାନଙ୍କ ପାଖରେ ମୁଁ ନିର୍ଦ୍ଦୋଷ । କ୍ଷମାର ପାତ୍ରୀ । ମୋତେ ଜାବୁଡ଼ି ଧରିଥିବା ଯେଉଁ ଲୋକଟିକୁ ଆପଣ ସେଦିନ ଦେଖିଲେ ବହୁତ ଦିନରୁ ସେ ମୋ' ପଛରେ ଲାଗିଛି । ମୋତେ ଉତ୍ତେଜିତ ଥୋଇ ଦେଉନି । ଅଧିକାଂଶ ଲୋକଙ୍କ ପାଖରେ ମୁଁ ଆକର୍ଷଣୀୟ ନହୋଇ ପାରେ କିନ୍ତୁ ତା' ପାଖରେ ମୁଁ ଖୁବ୍ ଲୋଭନୀୟ । ତାକୁ ଦୂରେଇ ଦେବାର ଉପାୟ ନାହିଁ । ଏହା ମୋ' ସ୍ୱାମୀଙ୍କ ପାଖରେ କେମିତି ସବୁ ଦେହସୁହା ହୋଇଗଲାଣି । ଯଦି ତାଙ୍କ ଚାକିରି ପାଇଁ ତାଙ୍କର କିଛିଏ ମମତା ଥାଏ ତେବେ ଏସବୁ ଗ୍ରହଣ କରି ନେବାକୁ ପଡ଼ିବ । କାରଣ ଯେଉଁ ଲୋକଟିକୁ ତୁମେ ଦେଖିଲ ସେ ଜଣେ ଛାତ୍ର ଆଉ ଦିନେ ହୁଏତ କ୍ଷମତାର ବହୁତ ଉପରକୁ ଉଠିପାରେ । ସେ ସବୁବେଳେ ମୋ' ପଛରେ ଲାଗିଛି । ଅଜବ ଠିକ୍ ତୁମ ଆସିବା ଆଗରୁ ସେ ଏଠାରେ ଥିଲା ।'

'ସବୁ ସମାନ । ମୋତେ କିଛିଏବି ଆଶ୍ଚର୍ଯ୍ୟ ଲାଗୁନି । ମୁଁ ଭାବୁଛି ଏଠିକାର ଅବସ୍ଥାର ଉନ୍ନତି କରିବା ପାଇଁ ତୁମେ ଖୁବ୍ ବ୍ୟଗ୍ର ।' ସବୁଆଡ଼କୁ ନଜର କରି ଖୁବ୍ ଧୀରେ ଧୀରେ ସ୍ତ୍ରୀ ଲୋକଟି କହିବାକୁ ଲାଗିଲା । ତାର କହିବାରୁ ଜଣାପଡୁଥିଲା ଯେମିତି ସେ ଯାହା କହୁଛି ତା ଉଭୟ କେ' ଏବଂ ତା ନିଜପ୍ରତି ବିପଦ । 'ମୁଁ ଏଇ କଥା ତୁମ ଭାଷଣ ଶୁଣି ଅନୁମାନ କରିଥିଲି । କାରଣ ତୁମ କଥା ମୋତେ ଖୁବ୍ ଭଲ ଲାଗିଥିଲା । ଯଦିଓ ମୁଁ ପୂରା ଭାଷଣଟି ଶୁଣି ନଥିଲି; ତାର ଆରମ୍ଭ ଶୁଣିପାରି ନଥିଲି

Digitized by srujanika@gmail.com

ଆଉ ତୁମେ ଯେତେବେଳେ ତୁମ ଭାଷଣ ସାରିବାକୁ ବସିଥିଲ ସେତେବେଳେ ମୁଁ ସେ ଗୁଳିଟି ସବୁ ଚଟାଣରେ ଗଡୁଥିଲି । ଏଠାରେ ସମସ୍ତେ ଏଇପରି ଏତେ ଭୟଙ୍କର !' କିଛି ସମୟ ରହି କେ'ର ହାତଟିକୁ ଧରିନେଇ ସେ କହିଲା—'ତୁମେ କଣ ଭାବୁଛ ଏଠିକାର ଏଅବସ୍ଥାକୁ ଟିକଏ ସୁଧାରି ପାରିବ । ଟିକେ ଭଲ କରିପାରିବ ?' ତାର ନରମ ହାତଟିକୁ ଆଉଁସୁ ଆଉଁସୁ କେ' କେବଳ ହସିଲା ।

'ପ୍ରକୃତରେ ତୁମେ ଯେମିତି ଏଠିକାର ଚିତ୍ର ଦେଲ ତାକୁ ଭଲକରିବାପାଇଁ ମୋର ସ୍ଥାନ ନାହିଁ । ପୁଣି ତୁମେ ଯଦି ସେ ଜଜ୍‌କୁ ଏକଥା କୁହ ସେ ହୁଏତ ତୁମ କଥାକୁ ହସି ଉଡ଼େଇ ଦେବେ । ନଚେତ୍ ତୁମକୁ ଦଣ୍ଡ ଦେବେ । ପ୍ରକୃତପକ୍ଷେ ମୁଁ ଯେ କେବେ ମୋ ସ୍ୱାଧୀନ ଚିନ୍ତାରେ ହସ୍ତକ୍ଷେପ କରିବି ଏକଥା କେବେ ଭାବିବା ଉଚିତ୍ ହେବନି । ପୁଣି ଏଠାକାର ନ୍ୟାୟର କଳଙ୍କ ଉପରି ଉନ୍ନତ କରିବାକୁ ହେବ ସେଇ ଚିନ୍ତାରେ ମୁଁ ଯେ ନିଜକୁ ହଜାଇ ଦେବି ଏକଥା ଭାବିବା ଠିକ୍ ହେବନି । କିନ୍ତୁ ଅସଲ କଥା ହେଉଛି ଯେହେତୁ ମୁଁ ଗିରଫ୍ ହୋଇଛି ତେଣୁ ଏଥିରେ ବାଧ ହୋଇ ମୋତେ ପଶିବାକୁ ପଡ଼ିବ । କାରଣ ତୁମେ ଜାଣ ମୁଁ ମୋର ଅଧିକାରକୁ ରକ୍ଷା କରିବାକୁ ଯାଇ ଆଜି ଗିରଫ୍ ହୋଇଛି । କିନ୍ତୁ ଏ କ୍ଷେତ୍ରରେ ଯଦି କୌଣସି ଉପାୟରେ ତୁମକୁ ସାହାଯ୍ୟ କରିପାରେ ତେବେ ମୁଁ ନିଶ୍ଚିତ ଭାବେ ଖୁବ୍ ଖୁସିହେବି । ଏବଂ ଏପରି ସାହାଯ୍ୟ ଖାଲି ଆଦର୍ଶ ପାଇଁ ନୁହେଁ ବା ନିସ୍ୱାର୍ଥପର ଭାବରେ ନୁହେଁ । ତୁମକୁ ଯଦି ମୁଁ ସାହାଯ୍ୟ କରିଥାଏ ତେବେ ଦରକାର ବେଳେ ତୁମେ ମଧ୍ୟ ମୋତେ ସାହାଯ୍ୟ କରିବ ।'

'ମୁଁ ତୁମକୁ କେମିତି ସାହାଯ୍ୟ କରିପାରେ ?' ସ୍ତ୍ରୀ ଲୋକଟି ପଚାରିଲା ।

'ଏଇଧର ଯେମିତି ଟେବୁଲ୍ ଉପରେ ଥିବା ବହିଗୁଡ଼ିକୁ ଟିକେ ଦେଖିବାକୁ ଦେଇ ।'

'ନିଶ୍ଚୟ ।' ସ୍ତ୍ରୀ ଲୋକଟି କେ'ର ହାତଧରି ଶୀଘ୍ର ଶୀଘ୍ର ତାକୁ ଟାଣି ନେଇ ନେଇ କହିଲା—'ସେଗୁଡ଼ିକ ଅତି ପୁରୁଣା ବହି । ତା' ପୃଷ୍ଠାଗୁଡ଼ିକ ମୋଡ଼ି ମୋଡ଼ି ଛିଡ଼ି ଗଲାଣି । ଗୋଟାକର ମଲାଟ ମଝିରୁ ପ୍ରାୟ ଫାଟିଗଲାଣି । ଚିରା ପୃଷ୍ଠାଗୁଡ଼ିକୁ ସୂତାରେ ବନ୍ଧା ହୋଇ କୌଣସିମତେ ଯାହା ରଖାହୋଇଛି ।'

'ଏଠି ସବୁ କେମିତି ବଡ଼ ଅପରିଷ୍କାର ।' କେ' ମୁଣ୍ଡହଲାଇ କହିଲା । ବହିଗୁଡ଼ିକରେ କେ' ହାତମାରିବା ପୂର୍ବରୁ ସ୍ତ୍ରୀ ଲୋକଟି ତା' ଲୁଗାରେ ବହିରେ ଜମିଥିବା ଧୂଳିଗୁଡ଼ିକୁ ଝାଡ଼ିଦେବାକୁ ଲାଗିଲା ।

Digitized by srujanika@gmail.com

କେ' ପ୍ରଥମେ ବହିଟିରେ ଗୋଟିଏ ବଡ଼ କଦର୍ଯ୍ୟ ଛବିଟିଏ ଦେଖିଲା। ପୁରୁଷଟିଏ ଓ ସ୍ତ୍ରୀଟିଏ ଲଗଲା ହୋଇ ସୋଫା ଉପରେ ବସିଛନ୍ତି। ଚିତ୍ରକରର ଅଶ୍ଳୀଳ ଉଦ୍ଦେଶ୍ୟଟି ପରିଷ୍କାର ବାରି ହୋଇ ପଡୁଥିଲେବି ତାର ହାତ ଏତେ କଂଗ୍ଳ ଆଉ ଦକ୍ଷ ଯେ ସେ ଛବିରୁ କେବଳ ପାଖାପାଖି ବସିଥିବା ପୁରୁଷ ଓ ସ୍ତ୍ରୀର ସ୍ଥୂଳ ଦେହ ବ୍ୟତୀତ ଆଉ କିଛିର ସୂଚନା ମିଳୁନଥିଲା। କେ' ଅନ୍ୟ କୌଣସି ପୃଷ୍ଠାକୁ ଦେଖିଲା ନାହିଁ। ସେ କେବଳ ଦ୍ୱିତୀୟ ବହିଟିର ନାମ ଉପରେ ଦୃଷ୍ଟି ପକାଇଲା। ବହିଟି ଗୋଟିଏ ଉପନ୍ୟାସ। ତାର ନାମ ହେଉଛି 'ଗ୍ରୀଟ୍ କେମିତି ତା ସ୍ୱାମୀ ହାନ୍‌ସ ଦ୍ୱାରା ଅସୁବିଧାରେ ପଡ଼ିଥିଲା।'

'ତା'ହେଲେ ଏହିଗୁଡ଼ିକ ଏଠାରେ ପଢାଯାଉଥିବା ଆଇନ୍ ବହି। ଏମାନେ ସେହି ଲୋକ ଯେଉଁମାନେ ମୋର ବିଚାର ପାଇଁ ଏଠାରେ ବସୁଛନ୍ତି।' କେ' କହିଲା।

'ମୁଁ ତୁମକୁ ସାହାଯ୍ୟ କରେ, ଏହା ତୁମେ ଚାହଁ କି ?' ସ୍ତ୍ରୀଲୋକଟି ପଚାରିଲା 'ନିଜେ ଅସୁବିଧାରେ ନପଡି ତୁମେ କ'ଣ ତା' କରିପାରିବ ? ଏଇ ଅଳ୍ପ ସମୟ ଆଗରୁ କହୁଥିଲନା ତୁମ ସ୍ୱାମୀ ଜଣେ ବଡ଼ ହାକିମଙ୍କ ଦୟାର ପାତ୍ର ?'

'ତଥାପି ମୁଁ ତୁମକୁ ସାହାଯ୍ୟ କରିବାକୁ ଚାହେଁ। ଆସ ସେ ବିଷୟରେ ଆଲୋଚନା କରିବା। ମୋ ବିପଦ ବିଷୟରେ ଚିନ୍ତାକରନି। ଯେତେବେଳେ ବିପଦକୁ ଭୟ କରିବାକୁ ମୁଁ ଇଚ୍ଛାକରେ ସେତେବେଳେ ମୁଁ ତାକୁ ଭୟକରେ; ଆସ।'

ସ୍ତ୍ରୀ ଲୋକଟି ମଞ୍ଚ କଡ଼ରେ ବସିପଡ଼ିଲା। ଆଉ ତାପାଖରେ କେ'ର ବସିବା ପାଇଁ ଜାଗା କରିଦେଲା। ସେମାନେ ବସିଲାପରେ କେ'ର ମୁହଁକୁ ଚାହିଁ ସେ କହିଲା—

'ତୁମ କଳା ଆଖିଗୁଡ଼ିକ ଖୁବ ସୁନ୍ଦର। ମୋତେ ସମସ୍ତେ କହନ୍ତି ଯେ ମୋର ଆଖିଗୁଡ଼ିକ ସୁନ୍ଦର କିନ୍ତୁ ତୁମ ଆଖିଗୁଡ଼ିକ ମୋଠାରୁ ବି ଅଧିକ ସୁନ୍ଦର। ପ୍ରଥମେ ଯେଉଁଦିନ ତୁମେ ଆସିଲ ତୁମକୁ ଦେଖିଲାମାତ୍ରେ, ସେଇ ପ୍ରଥମ ଦେଖାରେ ମୁଁ ତୁମଦ୍ୱାରା ଆକର୍ଷିତ ହୋଇଥିଲି। କେବଳ ତୁମରି ପାଇଁ କୋର୍ଟରୁମ୍ ଭିତରକୁ ମୁଁ ପଶିଥିଲି। ମୁଁ ଏପରି କେବେ କରେ ନାହିଁ। ଏବଂ କହିବାକୁ ଗଲେ ଏମିତି କରିବା ମୋତେ ମନା।'

କେ' ଭାବିଲା--ଓଃ ଏସବୁର ମତଲବ୍ ତା'ହେଲେ ଏଇଆ। ସେ ମୋ' ପାଖରେ ନିଜକୁ ସମର୍ପି ଦେଉଛି। ସିଏବି ଅନ୍ୟମାନଙ୍କ ପରି ଖରାପ ଓ ଦୁର୍ନୀତି-

Digitized by srujanika@gmail.com

ଗ୍ରସ୍ତ । ଠିକ୍ ବୁଝିହେଉଛି ଯେ ଏଠିକାର ବାବୁମାନଙ୍କ ଉପରେ ବିରକ୍ତ ହୋଇ ତାକୁ ଭଲ ଲଗୁଥିବା ନୂଆ ଲୋକର ଅଧିକ ପ୍ରଶଂସା କରି ସ୍ୱାଗତ ଜଣାଉଛି । କେ' ଠିଆ ହେଲା । ଯେମିତିକି ସେ ତାର ଶଯ୍ୟାକୁ ପାଟିକରି କହୁଛି ଆଉ ତାର ଅବସ୍ଥାକୁ ଯଥା ସମ୍ଭବ ବୁଝାଇ ପାରୁଛି । ଠିଆହୋଇ ସେ କହିଲା—'ଏହା ମୋତେ ସାହାଯ୍ୟ କରିପାରିବ ବୋଲି ମୁଁ ଭାବୁଛି । ମୋତେ ସାହାଯ୍ୟ କରିବାକୁ ହେଲେ ବଡ଼ ବଡ଼ ହାକିମଙ୍କ ସହ ସମ୍ପର୍କ ରଖିବା ଦରକାର । କିନ୍ତୁ ମୁଁ ଠିକ୍ ଜାଣିଛି ଯେ ତୁମର ସମ୍ପର୍କ ଖାଲି ଏଇଠି ଘୂରିବୁଲୁଥିବା ତଳତଳିଆଙ୍କ ସାଙ୍ଗରେ । ତୁମେ ଏମାନଙ୍କୁ ଖୁବ୍ ଭଲଭାବେ ଜାଣ ଏବଂ ତାଙ୍କ ଦ୍ୱାରା ଅନେକ କିଛି କରେଇ ପାରିବ ଏଥିରେ ସନ୍ଦେହ ନାହିଁ । କିନ୍ତୁ ସେମାନଙ୍କ ଦ୍ୱାରା ଯାହା ହୋଇପାରିବ ସେଥିରେ ମୋର କିଛି ଲାଭ ହେବନାହିଁ । ପୁଣି ଏହାଦ୍ୱାରା ତୁମେ ତୁମର କେତେକ ବନ୍ଧୁଙ୍କୁ ହରେଇ ଦେବ । ମୁଁ ଏହା ଚାହେଁ ନାହିଁ । ତୁମେ ଏମାନଙ୍କ ସାଙ୍ଗରେ ତୁମର ବନ୍ଧୁତା ରଖିଥାଅ । କାରଣ ମୋ' ମତରେ ତୁମ ପାଖରେ ତାର ପ୍ରୟୋଜନ ଅଛି । କି ଦୁଃଖର ସହିତ ଏକଥା ମୁଁ କହୁଛି । କାରଣ ତୁମେ ମୋର ଯେଉଁ ପ୍ରଶଂସା କରିଛ ତାର ପ୍ରତିଦାନରେ ମୁଁ ଏତିକି ସ୍ୱୀକାର କରିବି ଯେ ତୁମେ ମଧ୍ୟ ମୋତେ ଖୁବ୍ ଭଲ ଲାଗ । ବିଶେଷତଃ ଯେତେବେଳେ ତୁମେ ମୋତେ ତୁମର ସେ ଶୋକାଚ୍ଛନ୍ନ ଆଖିରେ ଅନାଅ । ଯେମିତିକି ଏଇ ବର୍ତ୍ତମାନ ମୋତେ ଅନାଇଛ । ତଥାପି ମୁଁ କହିବି ଯେ ଏମିତି ଚାହିଁବାରେ କୌଣସି ଯଥାର୍ଥତା ନାହିଁ । ତୁମର ସ୍ଥାନ ସେମାନଙ୍କ ଭିତରେ ଯେଉଁମାନଙ୍କ ସହ ମୋତେ ଲଢ଼ିବାକୁ ପଡ଼ିବ । କିନ୍ତୁ ତୁମେ ସେମାନଙ୍କ ସାଥିରେ ଖୁବ୍ ସହଜରେ ମିଶିପାର । ତୁମେ ଏଇ ଛାତ୍ରଟିକୁ ଭଲପାଅ ଏଥିରେ ସନ୍ଦେହ ନାହିଁ । ଭଲନପାଉଥିଲେବି ଅନ୍ତତଃ ତୁମ ସ୍ୱାମୀଙ୍କଠାରୁ ତାକୁ ଅଧିକ ପସନ୍ଦ କର । ତୁମେ ଯାହା କହିଲ ସେଥିରୁ ଏହା ସହଜରେ ଅନୁମାନ କରାଯାଇପାରେ ।'

'ନାଁ ନାଁ' ସେ ଚିତ୍କାର କରି ଉଠିଲା । ସେ ତା ଜାଗାରୁ ନଉଠି କେବଳ କେ'ର ହାତକୁ ଧରି ବସି ରହିଲା । କେ' ମଧ୍ୟ ତା ନିଜ ହାତକୁ ଖୁବ୍ ଶୀଘ୍ର ଟାଣି ନେଇନଥିଲା ।

'ତୁମେ ନିଶ୍ଚୟ ଚାଲିଯାଉଛ । ମୋ ବିଷୟରେ ଏମିତି ଗୋଟିଏ ଭୁଲ୍ ଧାରଣା ତୁମେ ନେଇ ଯାଅନି । ତୁମେ କଣ ଏଇମିତି ଚାଲିଯିବା ପାଇଁ ଆସିଥିଲ ? ମୁଁ କ'ଣ ତୁମ ଆଖିରେ ଏତେ ଶ୍ରେଷ୍ଠ, ଏତେ ନଗଣ୍ୟ ଯେ ମୋ ପାଖରେ ଟିକିଏ ଅଧିକ ସମୟ ରହିବନାହିଁ । ଏତିକି ଟିକେ ଦୟା କରିବନି !'

Digitized by srujanika@gmail.com

ବସିରହି କେ' କହିଲା—'ତୁମେ ମୋତେ ଭୁଲ୍ ବୁଝୁଛ । ତୁମେ ଯଦି ପ୍ରକୃତରେ ମୋ' ରହିବାକୁ ଚାହୁଁଛ ତେବେ ଖୁବ୍ ଖୁସିରେ ମୁଁ ରହିବ । କାରଣ ମୋ' ହାତରେ ଅନେକ ସମୟ । କୋର୍ଟ ଚାଲିଥିବା ଆଶାକରି ମୁଁ ଆସିଥିଲି । ମୁଁ ଯାହା କହିଲି ତାର ଉଦ୍ଦେଶ୍ୟ ହେଲା ଯେ ମୋର ଏଇ କେଶ୍ ସଂକ୍ରାନ୍ତରେ ତୁମେ କିଛି କରନାହିଁ । ଏପରି କହିବା ତୁମକୁ ବାଧିବା ଉଚିତ୍ ନୁହେଁ । କାରଣ ଏପରି ବିଷୟରକୁ ମୁଁ ଆଦୌ ଖାତିର୍ କରେ ନାହିଁ । ଆଉ ଯଦି ଏଥିରେ ମୁଁ ଦଣ୍ଡିତ ହୁଏ ତେବେ ମୁଁ ତାକୁ ହସିହସି ଉଡ଼ାଇ ଦେବି । କାରଣ ମୋର ସନ୍ଦେହ ହୁଏ ଯେ ଏପରି କେଶ୍ ଶେଷ ହେବ । ପ୍ରକୃତରେ ମୁଁ ଭାବୁଛି ଯେ ଏ କେଶ୍ ବନ୍ଦ କରି ଦିଆଗଲାଣି କିମ୍ବା ଯଦି ବନ୍ଦ ହୋଇନଥିବ ତେବେ ଅଳ୍ପ ଦିନ ଭିତରେ ବନ୍ଦହୋଇ ଯିବ । ଯେଉଁମାନେ ଏଥିପାଇଁ ଦାୟୀ ସେଇମାନଙ୍କର ଅଳସୁଆମି, ଭୁଲମନ ବା ଭୟ ଦ୍ୱାରା ଏହା ଦିନେ ବନ୍ଦ ହେବ । ଅବଶ୍ୟ ଏହା ସମ୍ଭବ ଯେ କେଶ୍ ଚାଲିଛି ବୋଲି ସେମାନେ ଦେଖେଇ ହେବେ । ଉଦ୍ଦେଶ୍ୟ ମୋ ପାଖରୁ କିଛି ପଇସା ଝଡ଼ାଇବା । କିନ୍ତୁ ମୁଁ ତୁମକୁ ଜବାବ୍ ଦେଉଛି ଏଥିରେ ତାଙ୍କର କିଛି ଲାଭ ହେବ ନାହିଁ । କାରଣ ମୁଁ କେବେ କାହାରିକୁ ଲାଞ୍ଚ ଦେବିନାହିଁ । ତୁମେ ମୋର ଏତିକି ଉପକାର କରିପାର । ତୁମେ ସେଇ ଜେରା କରୁଥିବା ମାଜିଷ୍ଟ୍ରେଟ୍ କିମ୍ବା ତୁମ ବିଶ୍ୱାସୀ ଯେ କେହି ଲୋକଙ୍କୁ ଏହି ଖବରଟି ପ୍ରଚାର କରିଦେବା ପାଇଁ କହିବ । କହିବ ଯେ ଯାହା କିଛି କଲେବି ମୋ' ପାଖରୁ କେହି ଲାଞ୍ଚ ଝଡ଼ାଇ ପାରିବେନି । ଯେଉଁଥିରେ ସେମାନେ ସିଦ୍ଧହସ୍ତ, ସେ ପ୍ରକାର ଛଳ, ବଳ, କୌଶଳ ସବୁ ପ୍ରୟୋଗ କଲେ ମଧ୍ୟ ମୋ' ପାଖରୁ ପଇସାଟିଏ ଝଡ଼ାଇ ପାରିବେନି । ତୁମେ ପରିଷ୍କାର ତାଙ୍କୁ କହିଦେବ ଯେ ତାଙ୍କ ସବୁପ୍ରକାର ଚେଷ୍ଟା ବିଫଳ ହେବ । ହୁଏତ ସେମାନଙ୍କର ଏ ପ୍ରକାର ଧାରଣା ହୋଇସିରିଣି । ଯଦି ଏବେବି ହୋଇନଥାଏ ମୋର କିଛି ଯାଏ ଆସେନାହିଁ । ସେମାନେ ଏ ଖବର ପାଇଲେ ନପାଇଲେ ସେ ବିଷୟରେ ମୁଁ ମଥା ଖେଳାଏ ନାହିଁ । ମୁଁ ଖାଲି ଯାହା ତାଙ୍କୁ ଅଯଥା ଅସୁବିଧାରୁ ଆଉ ଏକ ଅକାରଣ ଅପ୍ରୀତିକର ପରିବେଶରୁ ମୋ ଜଜକୁ ରକ୍ଷାକରିବାକୁ ଚାହେଁ । କିନ୍ତୁ ହତୋତ୍ସାହ କରୁଥିବା ଯେକୌଣସି ଘଟଣା ମୋ'ପାଇଁ ଯେତେ ଅପ୍ରୀତିକର ହେଉନା କାହିଁକି ସେସବୁ ମୁଁ ସହିନେବା ପାଇଁ ପ୍ରସ୍ତୁତ । ପୁଣି ମୁଁ ମଧ୍ୟ ସବୁପ୍ରକାର ଚେଷ୍ଟା କରିବି ଯେମିତି ସେମାନେ ଅସୁବିଧାରେ ପଡ଼ନ୍ତୁ । ଆଚ୍ଛା ତୁମେ କ'ଣ ଜେରା କରୁଥିବା ସେ ମାଜିଷ୍ଟ୍ରେଟ୍‌ଙ୍କୁ ଜାଣିଛ ?'

'ନିଶ୍ଚୟ ।' ସ୍ତ୍ରୀ ଲୋକଟି କହିଲା । 'ତୁମକୁ ସାହାଯ୍ୟ କରିବା କଥା ଭାବିଲା ବେଳେ ସେଇତ ପ୍ରଥମ ଲୋକ ଯାହା କଥା ମୁଁ ଚିନ୍ତା କରୁଥିଲି । ମୁଁ ଜାଣିନଥିଲି ଯେ

Digitized by srujanika@gmail.com

ସେ ଜଣେ ଚଲଚଳିଆ କର୍ମବ୍ୟସ୍ତ ବୋଲି । ତୁମେ ଯେତେବେଳେ କହୁଛ ସେ ନିଶ୍ଚୟ ସେଇଆ ହୋଇଥିବେ । ତଥାପି ମୁଁ ଭାବୁଛି ଯେ ଉପରକୁ ସେ ଯେଉଁ ରିପୋର୍ଟ ପଠାଇଛନ୍ତି ତାର କିଛି ଗୁରୁତ୍ୱ ଅଛି । ସିଏତ ଅନେକ ରିପୋର୍ଟ ଲେଖନ୍ତି । ତୁମେ କହିଲ ଯେ ଏ ଅଫିସରମାନେ ସବୁ ଅଳସୁଆ । ଏକଥା କିନ୍ତୁ ସମସ୍ତଙ୍କ ପାଇଁ ପ୍ରଯୁଜ୍ୟ ନୁହେଁ । ବିଶେଷତଃ ଆମର ଏଇ କେସ୍ କରୁଥିବା ମାଜିଷ୍ଟ୍ରେଟ୍‌ଙ୍କ ପାଖରେ । ସିଏତ ସବୁବେଳେ ଲେଖୁଥା'ନ୍ତି । ଗଲା ରବିବାର କଥା ଧର । ସଂଧ୍ୟା ପର୍ଯ୍ୟନ୍ତ କୋର୍ଟ ଚାଲିଲା । ସମସ୍ତେ ଚାଲିଗଲେ, କିନ୍ତୁ ସେ ମାଜିଷ୍ଟ୍ରେଟ୍ କୋର୍ଟ ରୁମ୍‌ରେ ବସି ରହିଲେ । ତାଙ୍କ ପାଇଁ ମୋତେ ଗୋଟିଏ ବତି ଆଣିବାକୁ ପଡ଼ିଲା । ମୋର କେବଳ ରୋଷେଇ ଘରେ ବତିଟିଏ ଥିଲା । ସେଇଥିରେ କିନ୍ତୁ ତାଙ୍କର କାମ ଚଳିଗଲା । ଆଲୁଅ ଆଣିଲାକ୍ଷଣି ସେ ଲେଖା ଆରମ୍ଭ କରିଦେଲେ । ଏହା ଭିତରେ ମୋ' ସ୍ୱାମୀ ଘରକୁ ଫେରିଲେ । ସେଦିନ ରବିବାର ଦିନ ତାଙ୍କର ଡ଼ିଉଟି ନଥିଲା । ଆମେ ସବୁ ଆସବାବ ପତ୍ରଗୁଡ଼ିକୁ ସଜାଇ ରଖିଲୁ । କେତେଜଣ ପଡ଼ୋଶୀ ଘରକୁ ବୁଲି ଆସିଲେ । ମହମବତି ଜାଳି ଆମେ ଗପକଲୁ । ସତ କହିବାକୁ ଗଲେ ଆମେ ସେ ମାଜିଷ୍ଟ୍ରେଟ୍‌ଙ୍କ କଥା ପୁରା ଭୁଲିଯାଇଥିଲୁ ଏବଂ ଶେଷରେ ଶୋଇପଡ଼ିଲୁ । ହଠାତ୍ ରାତି ଅଧରେ ନିଶ୍ଚୟ ସେତେବେଳକୁ ରାତି ଖୁବ୍ ଅଧିକ ହୋଇଯାଇଥିବ —ମୋ ନିଦ ଭାଙ୍ଗିଲା । ମୁଁ ଦେଖିଲି ସେ ଆମ ବିଛଣା ପାଖରେ ଛିଡ଼ା ହୋଇଛନ୍ତି । ମୋ' ସ୍ୱାମୀଙ୍କ ଉପରେ ଆଲୁଅ ପଡ଼ିବ ବୋଲି ହାତରେ ଆଲୁଅଟିକୁ ଅଧା ଢାଙ୍କିଛନ୍ତି । କାରଣ ସେତେବେଳେ ମୋ ସ୍ୱାମୀ ଏତେ ଗାଢ଼ ନିଦରେ ଶୋଇଥାନ୍ତି ଯେ ଏମିତି କୌଣସି ଆଲୁଅ ନାହିଁ ତାଙ୍କ ନିଦକୁ ଭାଙ୍ଗିପାରିବ । ମୁଁ ଏତେ ଜୋର୍‌ରେ ଚମକିପଡ଼ିଲି ଯେ ପ୍ରାୟ କାନ୍ଦ ପକାଇଲି । ମାତ୍ର ସେ ମାଜିଷ୍ଟ୍ରେଟ୍ ଖୁବ ଦୟାଳୁ । ସତର୍କ ହେବାକୁ ମୋତେ ସେ ଚେତାଇ ଦେଲେ । ଚୁପ୍‌ଚାପ୍ କରି କହିଲେ ଯେ ଏପର୍ଯ୍ୟନ୍ତ ସେ ଲେଖୁଥିଲେ ଏବଂ ଏବେ ଆଲୁଅଟି ଫେରାଇଦେବାକୁ ଆସିଛନ୍ତି । ଧୀର ଗଳାରେ ସେ କହିଲେ ଯେ ଶୋଇଥିଲାବେଳେ ବିଛଣା ଉପରେ ମୁଁ ଯେଉଁ ଶୋଭା ସୃଷ୍ଟିକରିଥିଲି ତାକୁ ସେ କେବେ ଭୁଲି ପାରିବେନି । ମୁଁ ଏହା କହୁଛି କେବଳ ତୁମକୁ ବୁଝାଇ ଦେବାପାଇଁ ଯେ ମାଜିଷ୍ଟ୍ରେଟ୍ ତୁମରି ବିଷୟରେ ରିପୋର୍ଟ ଲେଖିବାରେ ବ୍ୟସ୍ତ ଥିଲେ କାହିଁକନା ସେଦିନ ତୁମକୁ କେସ କରିବାଟାହିଁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଘଟଣା ଥିଲା । ଏପରି ଏକ ବିରାଟ ରିପୋର୍ଟ ନିଶ୍ଚିତଭାବେ କେବେ ଅଦରକାରୀ ନୁହେଁ । ଏହାବ୍ୟତୀତ ଯାହା ଘଟିଗଲା ସେଥିରୁ ଆଉ ଗୋଟିଏ କଥା ତୁମେ ଅନୁମାନ କରିପାରିବ ସେ କଥାଟି ହେଉଛି ଏତେ ଶୀଘ୍ର ମୋ' ପାଖରେ ତାଙ୍କର ଆଗ୍ରହ ; କାରଣ ସେତେବେଳେ ମୋତେ ସେ ପ୍ରଥମଥର ପାଇଁ ଦେଖିଥିବେ । ତେଣୁ ଏପରି ଅବସ୍ଥାରେ ତାଙ୍କ ଉପରେ ନିଶ୍ଚୟ

Digitized by srujanika@gmail.com

ବେଶୀ ପ୍ରସ୍ତାବ ମୁଁ ପକାଇ ପାରିବି । ବର୍ତ୍ତମାନସୁଦ୍ଧା ମୋ' ପାଖରେ ଢେର ପ୍ରମାଣ ଅଛି ଯେଉଁଥିରୁ ମୁଁ ଜାଣେ ଯେ ସେ ମୋର ମନ ନେବାପାଇଁ ବ୍ୟାକୁଳ । ଗତକାଲି ସେଇ ଛାତ୍ର ହାତରେ ମୋ'ପାଇଁ ହଳେ ସିଲ୍କ ମୋଜା ପଠାଇଥିଲେ । ସେ ଛାତ୍ରଟି ତାଙ୍କର ସାଙ୍ଗରେ କାମ କରେ ଆଉ ସେମାନଙ୍କ ସମ୍ପର୍କ ବେଶ୍ ବନ୍ଧୁତ୍ୱପୂର୍ଣ୍ଣ । ତାହାର ହାତରେ ସେ କହିଥିଲେ ଯେ କୋର୍ଟ ଘର ସଫା କରିଥିବାରୁ ଏ ପୁରସ୍କାର । ମାତ୍ର ଏହା ଖାଲି ଗୋଟେ ବାହାନା । କାରଣ କୋର୍ଟ ଘର ସଫା କରିବା ମୋର ଏକମାତ୍ର କାମ ଆଉ ସେଇପାଇଁ ମୋ' ସ୍ୱାମୀ ଟଙ୍କା ପାଆନ୍ତି । ସେ ମୋଜା ହଳକ ଭାରି ସୁନ୍ଦର । ହେଇ ଦେଖୁନାହାନ୍ତି ।" ଏହା କହି ସେ ତାର ଗୋଡ ଲମ୍ବାଇ ଦେଲା । ତାର ଘାଗରାକୁ ଆଣ୍ଠୁ ଉପରକୁ ଟେକି ଦେଲା । ଆଉ ନିଜେ ମୋଜା ଗୁଡ଼ିକୁ ଚାହିଁ ରହିଲା । 'ଏଗୁଡିକ ଭାରି ସୁନ୍ଦର ହୋଇଛି କିନ୍ତୁ ଖୁବ୍ ପତଳା ତେଣୁ ମୋ'ପରି ସ୍ତ୍ରୀ ଲୋକମାନଙ୍କ ବ୍ୟବହାର ପାଇଁ ନୁହେଁ ।"

ହଠାତ୍ ସେ ଚୁପ ହୋଇଗଲା । କେ'ର ହାତ ଉପରେ ହାତକୁ ରଖିଲା, ଯେମିତି ତାକୁ ସଚେତନ କରି ଦେବ, ଆଉ କହିଲା—'ଚୁପ୍ ! ବାରଟୋଲ୍ଡ଼ ଆମକୁ ଦେଖୁଛି ।' କେ' ଧୀରେ ଧୀରେ ତା' ଆଖିକୁ ଟେକିଲା । କୋର୍ଟର ଦ୍ୱାର ପାଖରେ ଟୋକାଟିଏ ଠିଆ ହୋଇଥିଲା । ଲୋକଟି ବାଙ୍ଗରା, ଗୋଡ଼ ଦୁଇଟି ସାମାନ୍ୟ ବଙ୍କା । ସେ ତାର ଚେହେରାରେ ଗାମ୍ଭୀର୍ଯ୍ୟ ଆଣିବା ପାଇଁ ଅଳ୍ପ ନାଲିଆ ଦାଢ଼ି ରଖିଛି । ଆଉ ତାର ସେଇ ଅନାବନା ଦାଢ଼ିରେ ସବୁବେଳେ ହାତ ସାଉଁଳୁଛି । ଆଗ୍ରହ ସହକାରେ କେ' ତା' ଆଡ଼କୁ ଚାହିଁଲା । ରହସ୍ୟମୟ ଏହି ଆଇନ୍‌ର ପ୍ରଥମ ଛାତ୍ରଟିକୁ ସେ ଯେମିତି ମଣିଷର ମନ ନେଇ ଭେଟିଲା । ସେ ଯୁବକଟି ତ ଜଣେ ମଣିଷ ଯିଏକି ତା ଜୀବନରେ ଦିନେ ଉଚ୍ଚପଦସ୍ଥ ହାକିମଟିଏ ହେବ । ସେ ଛାତ୍ର ଜଣକ କିନ୍ତୁ ଟିକିଏ ହେଲେ କେ' ଆଡ଼କୁ ନଜର ଦେଲାନି । ସେ ଖାଲି କ୍ଷଣକ ପାଇଁ ଦାଢ଼ି ସାଉଁଳା ବନ୍ଦ କରି ଝିଅଟି ଆଡ଼କୁ ଟିକିଏ ସଙ୍କେତ ଦେଲା—ଆଉ ଝରକା ପାଖକୁ ଚାଲିଗଲା । ସ୍ତ୍ରୀ ଲୋକଟି କେ' ଆଡ଼କୁ ଝୁଙ୍କିପଡ଼ି ଚୁପିଚୁପି କହିଲା—'ମୋ ଉପରେ ରାଗିବନି । ଦୟାକରି ମୋତେ ଖରାପ ବି ଭାବନି । ମୁଁ ବର୍ତ୍ତମାନ ନିଶ୍ଚୟ ତା ପାଖକୁ ଯିବି । ସେ ବଡ଼ ଭୟଙ୍କର ଜୀବ । ତାର ସେ ବଙ୍କା ଗୋଡ଼କୁ ଦେଖୁନ ? ମୁଁ କିନ୍ତୁ ସାଙ୍ଗେ ସାଙ୍ଗେ ଫେରିଆସିବି । ଆଉ ସେତେବେଳେ ତୁମେ ଯଦି ମୋତେ ସାଙ୍ଗରେ ନିଅ ତା'ହେଲେ ମୁଁ ତୁମ ସାଙ୍ଗରେ ଯିବି । ତୁମେ ଯୁଆଡ଼କୁ ଇଚ୍ଛା ସେ ଆଡ଼କୁ ମୋତେ ନେଇଯିବ । ତୁମର ଯାହା ଖୁସି ମୋତେ କରିବ । ମୁଁ ଖାଲି ଚାହେଁ ଯେତେ ସମସ୍ତ ପାର ମୋତେ ଏଠୁ ନେଇଯାଅ । ଖୁବ୍ ଖୁସି ହେବି ଯଦି ସବୁଦିନ ପାଇଁ ମୋତେ ଏଠୁ ନେଇ ମୁକ୍ତ ଦିଅ ।' ଶେଷଥର

Digitized by srujanika@gmail.com

ପାଇଁ ସେ କେ'ର ହାତକୁ ଆଉଁସି ଦେଲା । ତା'ପରେ ଉଠି ପଡ଼ି ଝରକା ଆଡ଼କୁ ଧାଇଁଲା । ନିଜ ଇଚ୍ଛା ବିରୁଦ୍ଧରେ କେ'ର ହାତ ସ୍ତ୍ରୀ ଲୋକଟି ପଛେ ପଛେ ଶୂନ୍ୟକୁ ଲମ୍ବିଗଲା । ସେ ସ୍ତ୍ରୀ ଲୋକଟି ନିଶ୍ଚିତ ଭାବେ ତାକୁ ଆକର୍ଷିତ କରିଛି । ଆଉ ସେ ସେ କାହିଁକି ତା ପାଖରେ ଧରା ଦେବନି ଏକଥା ଗମ୍ଭୀର ଚିନ୍ତା କରି ସୁଦ୍ଧା ତାର କୌଣସି ଯୁକ୍ତିଯୁକ୍ତ କାରଣ ଖୋଜି ପାଇଲାନି । କୋର୍ଟର ଆଦେଶରେ ତାକୁ ଫାନ୍ଦରେ ପକାଇବା ପାଇଁ ସେ ଯେ ଚେଷ୍ଟା କରୁଛି ଏମିତି ଧାରଣାକୁ ସେ ଅତି ସହଜରେ ତା' ମନରୁ ଦୂରେଇ ଦେଲା । କେଉଁ ସ୍ୱବରେ ସିଏ ଅବା ତାକୁ ଫାନ୍ଦରେ ପକାଇପାରିବ ? ଏଇ କୋର୍ଟର ଅଯଥା ଅଧିକାରକୁ ଅକାମି କରି ଦେବା ପାଇଁ ସେ କ'ଣ ଏବେବି ଯଥେଷ୍ଟ ସ୍ୱାଧୀନ ନୁହେଁ କି ? ଅଧିକ କିଛି କରି ନ ପାରିଲେ ବି ଏପରି କ୍ଷମତା ଯଦି ତା' ବ୍ୟକ୍ତିଗତ ସ୍ୱାଧୀନତା ଉପରେ ଆଞ୍ଚ ଆଣେ ତାର ବିରୋଧ କ'ଣ ସେ କରି ପାରିବନି ? ଏହି ସାମାନ୍ୟ କଥା ପାଇଁ ତାର କ'ଣ ନିଜପ୍ରତି ବିଶ୍ୱାସ ନାହିଁ ? ପୁଣି ସେ ସ୍ତ୍ରୀ ଲୋକଟିର ସାହାଯ୍ୟ କରିବାର ଆଗ୍ରହ ମିଛ ବୋଲି ତ ମନେ ହୁଏ ନାହିଁ ଆଉ ହୁଏତ ଏ ସାହାଯ୍ୟ ଅର୍ଥହୀନ ନୁହେଁ । ଯଦି ମୁଁ ଏଇ ସ୍ତ୍ରୀ ଲୋକଟିକୁ ସେଇ ମାଜିଷ୍ଟ୍ରେଟ୍ ଆଉ ତା ପାଖ ମଲ୍ଲୀନାଥମାନଙ୍କ ପାଖରୁ ଜବରଦସ୍ତ ଛଡ଼ାଇ ନେଇ ନିଜେ ଗ୍ରହଣ କରେ ତା' ହେଲେ ତାହାହିଁ ହେବ ସେମାନଙ୍କ ଉପରେ ସବୁଠାରୁ ଉପଯୁକ୍ତ ପ୍ରତିଶୋଧ । ତେବେ ଯାଇ ସେ ମାଜିଷ୍ଟ୍ରେଟ୍, ରାତି ଅଧଯାଏ ଝାଳବୁହାଇ କେ' ବିରୁଦ୍ଧରେ ଯେତେସବୁ ମିଛ ରିପୋର୍ଟ ଲେଖିପାରେ ଯେତେବେଳେ ସ୍ତ୍ରୀଟିର ବିଛଣା ପାଖକୁ ଆସିବ ସେତେ-ବେଳେ ଦେଖିବ ଯେ ତା' ଫାଙ୍କା ପଡ଼ିଛି । ଫାଙ୍କା ପଡ଼ିଛି କାରଣ ସେ କେ' ସାଙ୍ଗରେ ଚାଲିଯାଇଛି । ଝର୍କା ପାଖରେ ବର୍ତ୍ତମାନ ଠିଆ ହୋଇଥିବା ସେଇ ନାରୀଟିର ଗୋଟିଏ ଗାଢ଼ ମୋଟା ପୋଷାକ ତଳେ ଲୁଚିଥିବା ପ୍ରାଣବନ୍ତ ଆକର୍ଷଣୀୟ ଉଷ୍ମ ଦେହଟି—କେ'ର ନିଜସ୍ୱ ହୋଇଛି । ସେ ଆଜି କେବଳ କେ'ର ଆଉ କାହାର ନୁହେଁ ।

ଏହିପରି ନିଜସହ ଅନେକ ଯୁକ୍ତି ତର୍କ କରି କେ' ସମସ୍ତ ସନ୍ଦେହରୁ ନିଜକୁ ମୁକ୍ତ କଲା । ସେ ଅନୁଭବ କଲା ଯେ ଝର୍କା ପାଖରେ ଚାଲିଥିବା ଚୁପି ଚୁପି କଥା ଅନେକ ଦୀର୍ଘ ହେଲାଣି । ସେ ଟେବୁଲ୍‌ରେ ଠକ୍‌ଠକ୍ କରିବାକୁ ଲାଗିଲା । ସ୍ତ୍ରୀଟିର କାନ୍ଧ ଉପର ଦେଇ ଛାତ୍ର କେ' ଆଡ଼କୁ ଟିକିଏ ଖାଲି ଚାହିଁଦେଲା କିନ୍ତୁ କଥା କହିବାରୁ ବିରତ ହେଲାନି । ବରଂ ସ୍ତ୍ରୀଟିର ଆହୁରି ପାଖକୁ ଲାଗିଗଲା । ଆଉ ତା ଚାରିପଟେ ନିଜ ହାତକୁ ବେଢ଼ି ଦେଲା । ସ୍ତ୍ରୀ ଲୋକଟି ତା ମଥାକୁ ଏମିତି ଢଳାଇ ଦେଇଥାଏ ଯେମିତିକି ସେ ଖୁବ୍ ମନଯୋଗ ଦେଇ ତା କଥାସବୁ ଶୁଣି ଯାଉଛି । ଏପରି ଅବସ୍ଥାରେ ଛାତ୍ରଟି-ସ୍ତ୍ରୀଲୋକଟିର ଗଳାରେ ଚୁମା ଦେଲା ।

Digitized by srujanika@gmail.com

ଆଉ ଚୁମା ଦେବା ବେଳେ ତା' ମତ ଦେବାରେ ଆଦୌ ବାଧା ସୃଷ୍ଟି କରୁନଥିଲା । ଯୁବତୀର ଏପରି ବ୍ୟବହାର ଯୋଗୁଁ ସ୍ୱୀଟି ଉପରେ ଚାଲିଥିବା ତାର ଅତ୍ୟାଚାର ବିଷୟରେ କେ' ମନରେ ଗୋଟିଏ ନିଶ୍ଚିତ ଧାରଣା ସୃଷ୍ଟି କଲା । ସ୍ତ୍ରୀଲୋକଟି ଯାହା ଅଭିଯୋଗ କରିଥିଲା ତାହା ଯେ ଅକ୍ଷରେ ଅକ୍ଷରେ ସତ ଏଥିରେ ଆଉ ତାର ସନ୍ଦେହ ରହିଲା ନାହିଁ । ତେଣୁ ସେ ହଠାତ୍ ଠିଆହୋଇପଡ଼ିଲା । ଆଉ କୋଠରିଟି ଭିତରେ ଏପାଖ ସେପାଖ ହେବାକୁ ଲାଗିଲା । ମଝିରେ ମଝିରେ ସେ ଯୁବତୀଟି ଆଡ଼କୁ କଟେଇ କଟେଇ ଚାହୁଁଥାଏ ଆଉ ଭାବୁଥାଏ କିପରି ଅତିଶୀଘ୍ର ତାକୁ ବିଦାୟ କରିବ । ତେଣୁ ତାର ପାଇଚ୍ୟୁଷ୍ଟ ଦ୍ୱାରା ( ଯାହାକି ସେତେବେଳକୁ ଉତ୍ୟକ୍ତ ପଦାଘାତରେ ପରିଣତ ହୋଇ ଯାଇଥାଏ ) ବିରକ୍ତ ହୋଇ ଯୁବତୀଟି ଯେତେବେଳେ କହିଲା—'ଯଦି ଧୈର୍ଯ୍ୟ ନାହିଁ ତେବେ ତୁମେ ଯାଇପାର, ତୁମକୁ ତ ଏଠାରେ କେହି ଅଟକାଉ ନାହାନ୍ତି । ବହୁତ ବେଳୁ ତୁମର ଯିବାର କଥା ଏଠାରେ କେହି ତୁମର ଅଭାବ ଅନୁଭବ କରିବେ ନାହିଁ । ପ୍ରକୃତରେ ଏଠାରୁ ତୁମର ଚାଲିଯିବାହିଁ ଏକମାତ୍ର କର୍ତ୍ତବ୍ୟ । ଯେଉଁ ମୁହୂର୍ତ୍ତରେ ମୁଁ ଏଠାକୁ ଆସିଲି ସେଇ ମୁହୂର୍ତ୍ତରୁ ଯେତେଶୀଘ୍ର ପାର ସେତେଶୀଘ୍ର ତୁମର ଚାଲିଯିବା ଉଚିତ୍ ଥିଲା ।' କେ' ତାକୁ ସ୍ୱାଗତ କଲା । ଏଇ କଥାରେ ଯେ ଖାଲି ଗର୍ବର ବିରକ୍ତି ପ୍ରକାଶ ପାଇଥିଲା ତା' ନୁହେଁ, ଏଥିରେ ଗୋଟିଏ ଅସନ୍ତୁଷ୍ଟ ବନ୍ଦୀ ପ୍ରତି ଜଣେ ଭବିଷ୍ୟତ କୋର୍ଟ କର୍ମଚାରୀର ସମସ୍ତ ତାଚ୍ଛଲ୍ୟ ମଧ୍ୟ ରୂପ ନେଇଥିଲା । କେ' ସେ ଯୁବତୀର ଖୁବ୍ ନିକଟକୁ ଆଗେଇ ଆସି ଅଳ୍ପ ହସି କହିଲା—'ସତକଥା ମୋର ଧୈର୍ଯ୍ୟ ନାହିଁ । କିନ୍ତୁ ମୋତେ ଏଥିରୁ ମୁକ୍ତ ଦେବାର ତୁମ ପାଇଁ ସବୁଠାରୁ ସହଜ ଉପାୟ ହେଉଛି ଆମ ଦୁହିଁଙ୍କୁ ଏଠାରେ ଛାଡ଼ିଦେଇ ତୁମର ଚାଲିଯିବା । ମୁଁ ଶୁଣିଛି ତୁମେ ଜଣେ ଛାତ୍ର ଆଉ ଯଦି ତୁମେ ଦୈବାତ୍ ଏଠାକୁ ପଢ଼ିବା ପାଇଁ ଆସିଥାଅ ତେବେ ଖୁବ୍ ଖୁସିରେ ମୁଁ ଏଘର ଛାଡ଼ି ଉକ୍ତ ସ୍ତ୍ରୀଲୋକଟି ସହ ଚାଲିଯିବି । ମୋର ଧାରଣା ଏବେବି ତୁମେ ଛାତ୍ର ଏବଂ ତୁମକୁ ଜଣେ ଜଜ୍ ହେବାକୁ ହେଲେ ବହୁତ ବାଟ ଯିବାକୁ ପଡ଼ିବ । ମୁଁ ମାନୁଛି ଏ ଆଇନ୍ କାନୁନ୍ ବିଷୟରେ ତୁମର ସଠିକ କେତେଦୂର ଦଉଡ଼ ସେ ବିଷୟରେ ମୋର କିଛି ଜ୍ଞାନ ନାହିଁ ମାତ୍ର ଏତିକି ବିଷୟରେ ମୁଁ ନିସନ୍ଦେହ ଯେ ଏ ଆଇନ୍ କେବେ ଅନ୍ୟ ପ୍ରତି କେବଳ କଠୋର ମନ୍ତବ୍ୟ ଦେବାପାଇଁ ଉଦ୍ଦିଷ୍ଟ ନୁହେଁ । କିନ୍ତୁ ତୁମେ ଏପରି କରିବାରେ ବଡ଼ ଲଜ୍ଜ୍ୟାହୀନ ଭାବେ ଦକ୍ଷତା ହାସଲ କରିଛ ।'

'ଏହାକୁ ଏମିତି ଖୋଲା ଚାଲିବା ପାଇଁ ଛାଡ଼ିଦେବା ଉଚିତ୍ ନଥିଲା ।' ଯୁବତୀଟି ଏତିକି କହିଲା । ସେ ଯେମିତି କେ'ର ରୁକ୍ଷ, ଲଜ୍ଜ୍ୟାକର କଥାକୁ ସେ ସ୍ତ୍ରୀ ଲୋକକୁ ବୁଝାଇବା ପାଇଁ ଚେଷ୍ଟା କରୁଥିଲା ।

Digitized by srujanika@gmail.com

ଏହା ଆମର ଭୁଲ ହୋଇଛି । ଏକଥା ମୁଁ ମାଜିଷ୍ଟ୍ରେଟ୍‌ଙ୍କୁ କହିଥିଲି । କେଉଁ ସମୟରେ ସେ ଅନ୍ତତଃ ତା ଘର ଭିତରେ ବନ୍ଦହୋଇ ରହିବା ଉଚିତ୍ । ଅନେକ ସମୟରେ ମୁଁ ଏ ମାଜିଷ୍ଟ୍ରେଟ୍‌ଙ୍କୁ ଠିକ୍ ବୁଝିପାରେ ନାହିଁ ।'

'ତା ସାଙ୍ଗରେ ଅଯଥା କଥା କହି କି ଲାଭ ? ଚାଲିଆସ ।' ସେ ସ୍ତ୍ରୀ ଲୋକଟି ଆଡ଼କୁ ହାତ ବଢ଼ାଇ ଜେ' କହିଲା ।

'ହଁ, ଏଇକଥାତ । ନା ନା ତୁମେ କିନ୍ତୁ ତାକୁ ପାଇପାରିବନି ।' ଏତିକି କହି ସେ ବୁଢ଼ଟି ସ୍ତ୍ରୀ ଲୋକଟିକୁ ଗୋଟିଏ ହାତରେ ଟେକି ନେଲା । ତା'ଦେହରେ ପୁଣି ଏତେ ବଳ ଥିଲି ଏହା ବିଶ୍ୱାସ କରିବା ସମ୍ଭବ ନୁହେଁ । ଗୋଟିଏ ହାତରେ ସ୍ତ୍ରୀ ଲୋକଟିକୁ ଟେକି କଅଁଳ ଆଖିରେ ତା' ଆଡ଼କୁ ଚାହିଁ ଦ୍ୱାର ଆଡ଼କୁ ଆଗେଇ ଚାଲିଲା । ସ୍ତ୍ରୀଟିର ଦେହ ଉପରେ ବୁଢ଼ଟି ସାମାନ୍ୟ ଆଗକୁ ଝୁଙ୍କି ପଡ଼ିଥାଏ । ଏପରି କରିବା ପଛରେ ଜେ' ପ୍ରତି କେମିତି ପ୍ରଚ୍ଛନ୍ନ ଉପହାସ ଲୁଚି ରହିଥିଲା । ତଥାପି ସେ ଜେ'କୁ ରଗାଇବା ପାଇଁ ଏପରି ଫାନ୍ଦଟିଏ କଲା । ପୁଣି ସ୍ତ୍ରୀଟିର ବାହୁକୁ ଖାଲି ହା'ତରେ ଆଉଁସିବା ଦ୍ୱାରା ଜେ'ର ରାଗକୁ ଦୁଇଗୁଣ ବଢ଼ାଇ ଦେଲା । ଜେ' ତାକୁ ଧରିବା ପାଇଁ ପୁଣି ଦରକାର ପଡ଼ିଲେ ତାର ତଣ୍ଟି ଚାପି ଦେବା ପାଇଁ ତା' ପଛରେ କିଛି ବାଟ ଧାଇଁଗଲା । ମାତ୍ର ସ୍ତ୍ରୀ ଲୋକଟି କହି ଉଠିଲା—

'କିଛି ଲାଭନାହିଁ । ମାଜିଷ୍ଟ୍ରେଟ୍ ମୋତେ ଡକାଇ ପଠାଇଛନ୍ତି । ତୁମ ପାଖରେ ମୁଁ ଯାଇ ପାରିବନି ।' ସେ ବୁଢ଼ଟିର ମୁହଁକୁ ଆପୁଡ଼ାଇ ଆପୁଡ଼ାଇ କହିଲା— 'ଇଏ ଗୋଟେ ଅସୁର, ଏଇ ଟିକେ ଅସୁର ମୋତେ ଛାଡ଼ିବନି ।'

'ଆଉ ତୁମେ ବି କ'ଣ ମୁକ୍ତିପାଇଁ ଛାଡ଼ି ଚାଲି ଆସିବାକୁ ଚାହୁଁନ ।' ବୁଢ଼ାର କାନ୍ଧରେ ଗୋଟିଏ ହାତରଖି ଜେ' ପଚାରିଲା । କିନ୍ତୁ ବୁଢ଼ଟି ହଠାତ୍ ତା ହାତକୁ ଦାନ୍ତରେ କାମୁଡ଼ି ଦେଲା ।

ଜେ'ର ହାତକୁ ନିଜ ଦୁଇ ହାତରେ ପେଲିଦେଇ ସ୍ତ୍ରୀ ଲୋକଟି ପାଟିକରି ଉଠିଲା—'ନା, ନା, ତୁମେ ସେମିତି କରି ପାରିବନି । ତୁମେ ନିଜକୁ କ'ଣ ଭାବୁଛ କି ? ତୁମ ସାଥିରେ ଗଲେତ ମୋର ଜୀବନ ନଷ୍ଟ ହୋଇଯିବ । ସେଇ ଏକା ମୋତେ ନେଇଯାଉ, ସେଇ ଏକା । ସେ ଖାଲି ମାଜିଷ୍ଟ୍ରେଟଙ୍କ ଆଦେଶ ମାନି ମୋତେ ତାଙ୍କ ପାଖକୁ ନେଇଯାଉଛି ।' ତା'ହେଲେ ସେ ଯାଉ । ତୁମ ମୁହଁ ଆଉ କେବେ ଦେଖିବାକୁ ଚାହେଁନାହିଁ । ହତାଶାର ଗ୍ଲାନିରେ ଜେ'ର ବ୍ରହ୍ମ ଜଳିଉଠିଲା । ସେ ବୁଢ଼ଟିକୁ ପଛରୁ ଏମିତି ଗୋଟେ ଧକ୍କା ମାରିଲା ଯେ, ସେ ହାମୁଡ଼ି ପଡ଼ିଲା । ମାତ୍ର ଠିକ୍ ପର ମୁହୂର୍ତ୍ତରେ ଯାହା ପଡ଼ିଯାଇନି ଏତିକିରେ ସନ୍ତୁଷ୍ଟ ହୋଇ ସେ

Digitized by srujanika@gmail.com

ଢେଉଁପଡ଼ ସ୍ୱଚ୍ଛନ୍ଦରେ ଆଗେଇ ଗଲା । କେ' ଧୀରେ ଧୀରେ ସେମାନଙ୍କ ପଛରେ ଚାଲିବାକୁ ଲାଗିଲା । ସେ ବୁଝିପାରିଲା ଯେ ଜୀବନରେ ପ୍ରଥମଥର ପାଇଁ ଏମାନଙ୍କ ପାଖରେ ତାକୁ ହାର ମାନିବାକୁ ପଡ଼ିଲା । ଅବଶ୍ୟ ଏଥିରେ କିଛି ଚିନ୍ତା କରିବାର ନାହିଁ । ସେ ହାରିଲା କାରଣ ସେ ଯୁଦ୍ଧ ପାଇଁ ଜିଦ୍ ଧରିଲା । ଯେତେବେଳେ ସେ ତାର ନିଜଘରେ ଚୁପ୍‌ଚାପ ରହି ତା' ନିତିଦିନିଆ କାମ କରୁଥିଲା ସେତେବେଳେ ସେ ଏମାନଙ୍କ ଠାରୁ ଉପରେ ଥିଲା ଆଉ ଯେକୌଣସି ମୁହୂର୍ତ୍ତରେ ତା ବାଟରୁ ଏମାନଙ୍କୁ ଗୋଇଠା ମାରି, ଖେଦାଇ ଦେଇ ପାରୁଥିଲା । କେ' ନିଜ ମନଭିତରେ କିଛି ମଜାଳିଆ ଘଟଣାର ଛବି ଆଙ୍କିବାକୁ ଲାଗିଲା । ସେ ଭାବିବାକୁ ଲାଗିଲା କେତେ ମଜା ହୁଅନ୍ତା ଯଦି ଏଇ ବଙ୍କାଗୋଡ଼ିଆ ଆଉ ଫୁଟାଣିଆ ଗ୍ରୁପଟି ଏଲ୍‌ସାର ବଇଠା ପାଖରେ ଆଣ୍ଠୁ ମାଡ଼ି ବସନ୍ତା ଆଉ ନିଜ ହାତ ମଳି ମଳି ଟିକିଏ ଦୟାପାଇଁ ପ୍ରାର୍ଥନା କରନ୍ତା । ଏଇପରି ଚିନ୍ତା ତାକୁ ଖୁବ୍ ଆନନ୍ଦ ଦେଲା । ସେ ଏତେ ଖୁସି ହେଲା ଯେ ଠିକ୍ କରିନେଲା ଯଦି କେବେ ସୁଯୋଗ ଆସେ ତେବେ ସେ ଏଇ ଗ୍ରୁପଟିକୁ ଏଲ୍‌ସା ପାଖକୁ ନେଇଯିବ ।

କୌତୂହଳବଶତଃ କେ' ଦ୍ୱାର ପାଖକୁ ଧାଇଁଗଲା । ସେ ଦେଖିବାକୁ ଚାହୁଁଥିଲା, ଯେ ସ୍ତ୍ରୀ ଲୋକଟିକୁ କେଉଁଠିକି ନିଆହେଉଛି । କାରଣ ଗ୍ରୁପଟି କେବେ ତାକୁ ସିଧା ଆରପାରିକି ଟେକି ନେଇ ପାରିବନି । କିନ୍ତୁ ସେମାନଙ୍କୁ ଖୁବ୍ କମ୍ ବାଟ ଯିବାର ଥିଲା । କାହିଁକିନା ଠିକ୍ ଦ୍ୱାର ସାମ୍ନାରେ ଗୋଟିଏ ଅଣଓସାରିଆ କାଠର ସିଢ଼ି ଛାତ ଉପର କୋଠରୀକୁ ଉଠି ଯାଇଥିଲା । ସେ ସିଢ଼ିଟି ଏମିତି ବାଙ୍କି-ଥିଲା ଯେ ଜଣେ ତା ଆର ମୁଣ୍ଡଟିକୁ ଦେଖି ପାରିବନି । ଗ୍ରୁପଟି ବର୍ତ୍ତମାନ ଧଇଁସଇଁ ହୋଇ ଏଇ ସିଢ଼ିବାଟେ ସ୍ତ୍ରୀ ଲୋକଟିକୁ ନେଉଥିଲା । ସ୍ତ୍ରୀ ଲୋକଟି କେ'ଙ୍କୁ ଚାହିଁ ତା ହାତ ଆଉ କାନ୍ଧ ହଲାଇଲା, ଯେମିତି କି ସେ ସୂଚନା ଦେଉଥିଲା କି ଏମିତି ଜବରଦସ୍ତି ପାଇଁ ସେ ଦାୟୀ ନୁହେଁ । ମାତ୍ର ତାର ଏଇସବୁ ମୂକ ଠାଣିରେ ଦୁଃଖ ଲେଶମାତ୍ର ନଥିଲା । କେ' ତାକୁ ଚାହିଁଲା । ତା' ଚାହାଣିରେ କୌଣସି ଭାବ ନଥିଲା । ତା ପାଖରେ ସେ ଯେମିତି ଜଣେ ଅପରିଚିତା, ସମ୍ପୂର୍ଣ୍ଣ ଅଜଣା । କେ ଠିକ୍ କଲା ସେ କେବେ ତାକୁ ଜଣାଇ ଦେବନି ଯେ ଏପରି ବ୍ୟବହାର ଦ୍ୱାରା ସେ ହତାଶ ହୋଇଛି । ପୁଣି ଏହାବି ଜଣାଇ ଦେବନି ଯେ ସେ ଖୁବ୍ ସହଜରେ ଯେକୌଣସି ହତାଶା ବା ଦୁଃଖକୁ ଜୟ କରିପାରେ ବୋଲି ।

ସେ ଦୁଇଜଣ ସିଢ଼ିରେ ସେତେବେଳକୁ ହଜି ଗଲେଣି । କିନ୍ତୁ ଦ୍ୱାର ପାଖରେ କେ' ତଥାପି ଠିଆ ହୋଇରହିଥିଲା । ସେ ନିଷ୍ପତ୍ତି ନେବାକୁ ବାଧ୍ୟ ହେଲା ଯେ ସେ ସ୍ତ୍ରୀ ଲୋକଟି କେବଳ ତାକୁ ପ୍ରତାରିତ କରିନାହିଁ । ବରଂ ତାକୁ ମାଜିଷ୍ଟ୍ରେଟ୍

Digitized by srujanika@gmail.com

ପାଖକୁ ଜବରଦସ୍ତ ନିଆ ହେଉଛୁ ବୋଲି କହି ସେ ମିଛ କହୁଛୁ । କେସ କରୁଥିବା ମାଜିଷ୍ଟ୍ରେଟ୍ କେବେ ସ୍ତ୍ରୀଟ ଉପରେ ଗୋଟିଏ ଗ୍ରେଟ କୋଠରିଟିରେ ତା' ପାଇଁ ଅପେକ୍ଷାକରି ବସି ନଥିବେ । ଜଣେ ଯେତେ ନିରେଖି ଚାହିଁଲେ ବି ଏହି ଗ୍ରେଟ କାଠ ସିଡ଼ିରେ କିଛି ଦେଖାଯାଉ ନାହିଁ । ସିଡ଼ି ଧାରରେ ଗୋଟିଏ ଗ୍ରେଟ କାର୍ଡ ମରାହୋଇଥିବା କେ'ର ନଜରରେ ପଡ଼ିଲା । ତା ପାଖକୁ ଯାଇ ଦେଖିଲା ଯେ ଅତି କୁଆଳିଆ ଅକ୍ଷରରେ ସେଥିରେ ଲେଖା ହୋଇଛୁ—'ଉପରେ କୋର୍ଟ ଅଫିସ୍ ।' ତା'ହେଲେ ଏଇ କୋର୍ଟର ଅଫିସ ସବୁ ସ୍ତ୍ରୀଟ ଉପର ଭଡ଼ାଘରେ ହେଉଛୁ ?" ଏପରି ଅବସ୍ଥା ତ କେବେ ଏ ଅନୁଷ୍ଠାନ ପ୍ରତି ସମ୍ମାନ ଆଣୁନାହିଁ । ତେଣୁ ଜଣେ ଅଭିଯୁକ୍ତ ବ୍ୟକ୍ତି ପାଖରେ ଭାବିବା ନିହାତି ସ୍ୱାଭାବିକ ଯେ ଏପରି କୋର୍ଟ ହାତରେ ବା କେତେ ଟଙ୍କା ଥିବ ? ଏହାର ଅଫିସ୍ ତ ଏମିତି ଗୋଟିଏ ଭଡ଼ାଘରେ ହେଉଛୁ ଯେଉଁଠି ଅତି ଗରିବ ଭଡ଼ାଟିଆମାନେ ତାଙ୍କର ଅଦରକାରୀ ଅଳିଆ ସବୁ ଏଣେ ତେଣେ ଫୋପାଡ଼ୁଛନ୍ତି । ଅବଶ୍ୟ ଏପରି ଭାବନାକୁ ଉଡ଼ାଇ ଦେଇ ହେବନାହିଁ । ଅର୍ଥାତ୍ ବହୁତ ଟଙ୍କା ଅଛୁ ମାତ୍ର କାମକରୁଥିବା ବାବୁମାନେ ବିଚାର ପାଇଁ ବ୍ୟବହାର ହେବା ପୂର୍ବରୁ ସେସବୁକୁ ପକେଟସ୍ଥ କରିଛନ୍ତି । କେ'ର ଅନୁଭୂତିରୁ ବିଚାରକଲେ ଏପରି ହେବା ସମ୍ଭବ ନୁହେଁ । ଯଦି ଏମିତି ହେଉଥାଏ ତେବେ ଏପରି କଦର୍ଯ୍ୟ ଅଭ୍ୟାସ ଯଦିଓ ଜଣେ ଅଭିଯୁକ୍ତ ପାଖରେ ଅପମାନଜନକ ତଥାପି ଏହା ନ୍ୟାୟାଳୟର ଦରିଦ୍ର ଅବସ୍ଥାକୁ ସୂଚାଇଥିଲା ବେଳେ ତା'ପାଇଁ ଅନେକ ଆଶା ସଂଚାର କରୁଅଛୁ । ବର୍ତ୍ତମାନ କେ' ଠିକ୍ ବୁଝିପାରିଲା କାହିଁକି ପ୍ରଥମେ ସେମାନେ ତାକୁ ଏଠାକୁ ସମନ କରି ଆଣିବାକୁ ଚାହୁଁଥିଲେ । ଅଥଚ ତା ବଦଳରେ ତା ନିଜ କୋଠରୀରେ ତାକୁ ହଇରାଣ କରିବାକୁ ଠିକ୍ କରିଥିଲେ । ଏ ମାଜିଷ୍ଟ୍ରେଟ୍ ତୁଳନାରେ କେ' କେତେ ଭାଗ୍ୟବାନ । ଏ ମାଜିଷ୍ଟ୍ରେଟ୍ ତ ବଡ଼ରସ୍ତା ଉପରେ ଗୋଟିଏ ଛୋଟିଆ କୋଠରୀରେ ପଡ଼ୁଛୁ । କିନ୍ତୁ ବ୍ୟାଙ୍କ୍‌ରେ ତ ତାପାଇଁ ଗୋଟିଏ ପ୍ରକାଣ୍ଡ କୋଠରୀ । ସେ କୋଠରୀକୁ ଲାଗିଛୁ ପ୍ରତୀକ୍ଷାଳୟ । ଆଉ ସେଇ କୋଠରୀର କାଚଲଗା ବଡ଼ବଡ଼ ଝରକା ଦେଇ ସିଏତ ସହରରେ ଚାଲିଥିବା ବ୍ୟସ୍ତ ମଣିଷର ଶୋଭାଯାତ୍ରାକୁ ଦେଖିପାରେ । ଏହା ସତ ଯେ ସେ ଲାଞ୍ଚରୁ ଅବା ଟଙ୍କାକୁ ଏପାଖ ସେପାଖ କରି ଅଧିକ ରୋଜଗାର କରିପାରେନାହିଁ ବା ତା' ଚପରାସୀ ଦ୍ୱାରା ମାଇକିନିଆମାନଙ୍କୁ ତା ନିଜ କୋଠରୀକୁ ଆଣିପାରେନି । କିନ୍ତୁ କେ' ଏସବୁ ସୁଯୋଗକୁ ତ୍ୟାଗ କରିବାପାଇଁ ପ୍ରସ୍ତୁତ ଅଛୁନ୍ତି, ଅନ୍ତତଃ ଏଇ ଜୀବନରେ ।

କେ' ତଥାପି ସେଇ କାର୍ଡପାଖରେ ଠିଆ ହୋଇ ରହିଥାଏ । ଜଣେ ଲୋକ ତଳୁ ଉପରକୁ ଉଠିଆସି ଖୋଲା ଦ୍ୱାର ଦେଇ ଘରଭିତରକୁ ଅନାଇଲା ।

Digitized by srujanika@gmail.com

ସେଇ ଘରଭିତରୁ ସେ କୋର୍ଟରୁମ୍‌କୁ ଦେଖିପାରୁଥିଲେ । କୌଣସି ସ୍ତ୍ରୀ ଲୋକକୁ ଏଇ ପାଖରେ କେଉଠି ଦେଖିଛନ୍ତି ବୋଲି ଲୋକଟି କେ'ଙ୍କୁ ପଚାରିଲା ।

'ତୁମେ ତା'ହେଲେ ଏଇଠି ଜଗୁଆଳି କାମ କର ?' କେ' ପଚାରିଲା । କେ'ର ପ୍ରଶ୍ନରେ ଲୋକଟି ହଁ ଭରିଲା ଆଉ କହିଲା 'ତା'ହେଲେ ତୁମେ ସେଇ ମୁଦାଲି କେ' । ଏତେବେଳେ ତୁମକୁ ଚିହ୍ନିଲି, ଆସ ।' ଏହା କହି ସେ କେ' ଆଡ଼କୁ ତା' ହାତ ବଢ଼ାଇ ଦେଲା । ମାତ୍ର କେ' ତାହା ଗ୍ରହଣ କଲାନାହିଁ । କିନ୍ତୁ ସେ ଲୋକଟି କହି ଚାଲିଲା—'ଆଜି କୌଣସି ବୈଠକ ବସିବ ବୋଲିତ କୁହାହୋଇନି ।' କିନ୍ତୁ କେ' ଚୁପ୍ ରହିଥାଏ । 'ମୁଁ ଜାଣେ ।' କେ' ସେଇ ଲୋକଟିର ସାଦା ପୋଷାକକୁ ଚାହିଁରହି କହିଲା । ଲୋକଟିର ଫତେଇରେ ଅଫିସ୍‌ର ଚିହ୍ନ ସ୍ୱରୂପ କେବଳ ଦୁଇଟି ସୁନାରଙ୍ଗର ବୋତାମ ଅନ୍ୟ ବୋତାମ ପାଖରେ ଜକଜକ ଦିଶୁଥାଏ । ସେଇ ଦୁଇଟି ସୁନେଲି ବୋତାମ ଯେମିତି କୌଣସି ପୁରୁଣା ଯୁଦ୍ଧ ପୋଷାକରୁ ଛିଣ୍ଡାଇ ଅଣାଯାଇଛି । 'କିଛି ସମୟ ପୂର୍ବରୁ ମୁଁ ତୁମ ସ୍ତ୍ରୀ ସାଙ୍ଗରେ କଥାବାର୍ତ୍ତା ହେଉଥିଲି । କିନ୍ତୁ ବର୍ତ୍ତମାନ ସେ ଏଠାରେ ନାହିଁ । ସେ ଛାତ୍ରଟି ତାକୁ ମାଜିଷ୍ଟ୍ରେଟ୍‌ଙ୍କ ପାଖକୁ ଟାଣି ନେଇଯାଇଛି ।'

ସେ ଲୋକଟି କହିଲା—'ଠିକ୍ କଥା କହୁଛ । ସେମାନେ ସବୁବେଳେ ତାକୁ ମୋ ପାଖରୁ ନେଇ ଯାଉଛନ୍ତି । ଆଜି ପୁଣି ରବିବାର । ମୋର କିଛି କାମନାହିଁ । ଖାଲି ଯାହା ଏଠାରୁ ଅନ୍ୟ ଜାଗାକୁ ଚାଲିଯିବାକୁ ହେବ । କୌଣସି ଗୋଟେ ବାଜେକାମ ବାହାନାରେ ସେମାନେ ମୋତେ ଏଠାରୁ ପଠାଇ ଦେବେ । କିନ୍ତୁ କେବେ ଖୁବ୍ ଦୂରକୁ ପଠାଇବେନି । ଦରକାର ପଡ଼ିଲେ ଯେମିତି ଶୀଘ୍ର ଏଠାକୁ ଫେରିଆସୁଥିବି । ହେଇ ଅଜି ଯେତେ ଶୀଘ୍ର ପାରେ ମୁଁ ଧାଇଁ ଧାଇଁ ଆସୁଛି । ଅଧାଖୋଲା ଅଫିସ୍ ଦ୍ୱାର ପାଖରେ ସେମାନେ ପଠାଇଥିବା ଖବର ଚିତ୍କାର କରି କହୁଛି । ଧଇଁସଇଁ ହୋଇ ପଡ଼ିବାରୁ ସେମାନେ ମୋ' କଥାର ଅର୍ଥ ଧରିପାରିବେନି । ତରବରରେ ସବୁ କାମ ସାରି ପୁଣି ଅନେକଶ୍ୱାସୀ ହୋଇ ଯେତେଶୀଘ୍ର ପାରେ ଫେରିଆସିଛି ତଥାପି ମୁଁ ପହଞ୍ଚିବା ଆଗରୁ ସେ ଛାତ୍ରଟି ଏଠାରେ ହାଜର । ତାର ତ ଏଠାକୁ ଆସିବାର ନଥିଲା । ଅବଶ୍ୟ ତା ଛାତଘର ସହ ଲାଗିଥିବା କାଠସିଡ଼ି ଦେଇ ଆସିଲେ ହେଲା । ମୋର ଚାକିରି ଉପରେ ଯଦି ଆଞ୍ଚ ନଆସନ୍ତା ନା ତେବେ ମୁଁ କେବେଠୁ ସେ ଟୋକାଟାକୁ କାନ୍ଥରେ ମସିହୋଇଥିବା ଏଇ କାର୍ଡ ପାଖରେ ପିଟି ଛତୁ କରି ସାରନ୍ତିଣି । ଏହା ମୋର ଗୋଟେ ବହୁଦିନର ସ୍ୱପ୍ନ । ମୁଁ ଦେଖେ ଯେମିତି ସେ ଏଇଠି ଚୁପିହୋଇ ଚଟାଣ ଉପରେ ପଡ଼ିଛି । ହାତ ଦୁଇଟା ମେଲା । ଅଙ୍ଗୁଳିଗୁଡ଼ିକ ଫରକଟା । ବଙ୍କା ଗୋଡଦୁଇଟି ଅଦ୍ଧର ବାଙ୍କି ଗୋଟାଏ ଚକୁଳିପିଠା

Digitized by srujanika@gmail.com

ହୋଇଯାଇଛୁ । ଆଉ ସୁଣଆଡେ ଛୁଟିକି ପଡ଼ୁଛୁ ଥଲ୍‌ଥଲ୍ ରକ୍ତ । କିନ୍ତୁ ବର୍ତ୍ତମାନସୁଦ୍ଧା ଏହା ଖାଲି ଗୋଟେ ସ୍ୱପ୍ନ । ଏହାର କଣ ଅନ୍ୟକିଛି ଉପାୟ ନାହିଁ ?' ମୁରୁକି ମୁରୁକି ହସି କେ' ପଚାରିଲା ।

'ନାଁ, ମୁଁ ଯାହା ଜାଣେ ଆଉ କିଛି ଉପାୟ ନାହିଁ । ଧୀରେ ଧୀରେ ବରଂ ଏହା ଆହୁରି ଖରାପ ଆଡ଼କୁ ଗତିକରୁଛି । ବର୍ତ୍ତମାନସୁଦ୍ଧା ସେ ଟୋକା ତାର ନିଜ ସୁଖପାଇଁ ତାକୁ ନେଇ ପଳାଉଥିଲା । କିନ୍ତୁ ବହୁଦିନରୁ ଯାହା ଆଶା କରୁଥିଲି ଏବେ ସେଇଆ ହେଉଛି । ଏବେ ସେ ତାକୁ କେବ୍‌ଲରସ ମାଜିଷ୍ଟ୍ରେଟ ପାଖକୁ ନେଇଯାଉଛି ।'

'କିନ୍ତୁ ଏଥିପାଇଁ କ'ଣ ତୁମ ସ୍ତ୍ରୀ ଦାୟୀ ନୁହେଁ ?' କେ' ପଚାରିଲା । ଏପରି ପଚାରିଲାବେଳେ ନିଜକୁ ଖୁବ୍ ସମ୍ଭାଳି ନେଲା କାରଣ ତାର ଖୁବ୍ ଈର୍ଷା ହେଉ-ଥାଏ । ତା'ପରେ ଜଗୁଆଳି କହିଲା—'ଅବଶ୍ୟ ସେ ସବୁ ମାଝାରେ ଦାୟୀ । ସେ ନିଜକୁ ତା'ପାଖରେ ଅଜାଣ୍ଡିଦିଏ । ଆଉ ସିଏତ ଯେତେ ଝିଅଦେଖେ ସମସ୍ତଙ୍କ ପଛରେ ଧାଏଁ । ଏଇ କୋଠାରେତ ସେ ପାଞ୍ଚଟି ଘରୁ ଧକ୍‌କା ଖାଇଲାଣି । ସବୁ ଘର ଭିତରକୁ ଛଳେ ବଳେ କୌଶଳେ ସେ ପଶିଥିଲା । ଏଇ ଭଡ଼ାଘରେ ମୋ' ସ୍ତ୍ରୀ ହିଁ ଦେଖିବାକୁ ସବୁଠାରୁ ସୁନ୍ଦର । ଆଉ ମୋର ଅବସ୍ଥା ଏମିତି ଯେ ମୁଁ ନିଜକୁ ରକ୍ଷା କରିପାରୁନାହିଁ ।'

କେ' କହିଲା—'ଏଇଆ ଯଦି ଅବସ୍ଥା ତା'ହେଲେ କୌଣସି ଉପାୟ ଥିଲା ଭଳି ମୁଁ ଦେଖୁନି ।'

'କାହିଁକି ନାହିଁ ?' ଜଗୁଆଳି ପଚାରିଲା ।

'ମୋ' ସ୍ତ୍ରୀ ପଛରେ ଧାଉଁଥିଲାବେଳେ କେହି ଯଦି ତାକୁ ପାନେ ଚଢ଼ାନ୍ତା ଠିକ୍ ହୁଅନ୍ତା । ସେଇଟା ମହାଡ଼ରୁଆ । ତେଣୁ ଆଉ ସେପରି କରିବାକୁ କେବେ ସାହସ କରନ୍ତାନାହିଁ । କିନ୍ତୁ ମୁଁ କିଛି କରିପାରିବିନାହିଁ । କେହି ମୋତେ ଏଥିରେ ସାହାଯ୍ୟ ବି କରିବେ ନାହିଁ । କାହିଁକି ନା ସେମାନେ ସମସ୍ତେ ତାକୁ ଡରନ୍ତି । ସେ ଖୁବ୍ ପ୍ରଭାବଶାଳୀ । ଉପର ମହଲରେ ତାର ବହୁତ ହାତ, କେବଳ ତୁମଭଳି ପରି ଜଣେ ଲୋକ ଏହା କରିପାରେ ।

କେ' ଆଶ୍ଚର୍ଯ୍ୟ ହୋଇ ପଚାରିଲା—'ମୋ' ପରି ଲୋକ କାହିଁକି ?'

'ତୁମେ ଗିରଫ୍ ହୋଇଛ, ନୁହେଁ କି ?' ଜଗୁଆଳି ପଚାରିଲା ।

Digitized by srujanika@gmail.com

'ହଁ'—କେ' କହିଲା । 'ଆଉ ସେଇଥିପାଇଁ ତ ତାଙ୍କୁ ମୋର ବେଶୀ ଡରିବାର କଥା । କାହିଁକି ନା ଯଦିଓ ସେ ଏ ବିଗ୍ରହର ଫଳାଫଳକୁ ପ୍ରଭାବିତ କରି ପାରିବେନି ତଥାପି ଏଇ ମୂଳ କେସ୍କୁ ତ ଏପାଖ ସେପାଖ କରି ଦେଇ ପାରିବେ ।'

'ହଁ ତା' ଅବଶ୍ୟ ଠିକ୍ ।' ଜଗୁଆଳିର ଉତ୍ତରରେ ଜଣା ପଡ଼ୁଥିଲା ଯେମିତି କେ'ର ମତ ତା' ନିଜ ମତପରି ପରିଷ୍କାର ।

'ଏଠିତ ଗୋଟିଏ ଧାରା । ସବୁ କେସ୍‌ର ପରିଣତି ଏଠି ଆଗରୁ ଜଣା ।'

'ମୋର କିନ୍ତୁ ଏକାମତ ନୁହେଁ । ଅବଶ୍ୟ ତା!' ବୋଲି ନୁହେଁ ଯେ ସେ ସ୍ଥିରପକ୍ଷ ମୁକାବିଲା କରିବାରେ ଏହା ବାଧା ଦେବ ।'

'ତା'ହେଲେ ତୁମ ପାଖରେ ମୁଁ ଚିରକୃତଜ୍ଞ ରହିବି ।' ଏମିତି ଖୋଲି ଦେଇ ହେବାକୁ ଜଗୁଆଳି କହିଲା । କାରଣ ସେ ବିଶ୍ୱାସ କରି ପାରିଲାନି ଯେ ତା' ମନର କାମନା ପୂରଣ ହୋଇପାରେ ।

କେ' କହିବାକୁ ଲାଗିଲା—'ଏମିତିବି ହୋଇପାରେ ତୁମ ଅଫିସ୍‌ର ଆହୁରି ଅନେକ ଅଫିସର, ଅନେକ କାହିଁକି ପ୍ରାୟ ସମସ୍ତେ, ଏଇମିତି ବ୍ୟବହାର ଦରକାର କରନ୍ତି ।'

'ହଁ ନିଶ୍ଚୟ, ନିଶ୍ଚୟ ।' ଲୋକଟି କହି ଉଠିଲା । ଯେମିତିକି ଅତି ସାଧାରଣ କଥାରେ ସେ ହଁ ଭରୁଛି । ତା'ପରେ ସେ କେ' ଆଡ଼କୁ କେମିତି ଗୁପ୍ତ ଚାହାଣିରେ ଚାହିଁଲା, ଯେମିତିକି ଏତେ ବେଶୀ ଆତ୍ମୀୟତା ପରେ ବି ସେ ଏମିତି ଚାହିଁବାକୁ ସାହସ କରି ନଥିଲା । ତା'ପରେ ସେ କହିଲା—'ପ୍ରତ୍ୟେକ ଲୋକ ସବୁବେଳେ ଜଣେ ଜଣେ ବିଦ୍ରୋହୀ ।' କିନ୍ତୁ ଏପରି କହିବା ତାକୁ ଅସ୍ୱସ୍ତିକର ଲାଗିଲା । 'ମୋତେ ବର୍ତ୍ତମାନ ଉପର ମହଲାକୁ ଯିବାକୁ ପଡ଼ିବ, ତୁମେ ଆସିବକି ?' ଏତିକି କହି ସେ କଥାବାର୍ତ୍ତା ବନ୍ଦ କରି ଦେଲା ।

'ମୋର ତ ସେଠାରେ କିଛି କାମ ନାହିଁ ।' କେ' କହିଲା ।

'ତୁମେ ଅଫିସ୍‌ଟିକୁ ଟିକେ ଦେଖି ଆସିପାର । କେହି ତୁମକୁ କିଛି କହିବେନି । କେହି ଚାହିଁବେ ବି ନାହିଁ ।'

'ସେମାନଙ୍କୁ ଦେଖିବା କ'ଣ ଦରକାର ?' ଇତସ୍ତତଃ ହୋଇ କେ' ପଚାରିଲା । କିନ୍ତୁ ତାର ସେଠାକୁ ଯିବା ପାଇଁ ଇଚ୍ଛା ପ୍ରବଳ ହୋଇ ସାରିଥିଲା ।

Digitized by srujanika@gmail.com

'ଆରେ ମୁଁ ଭାବଥିଲି ସେଠାକୁ ଯିବା ପାଇଁ ତୁମର ଆଗ୍ରହ ଥିବ ।'

ଶେଷରେ କେ' କହିଲା—'ଆଚ୍ଛା, ତୁମ ସାଙ୍ଗରେ ଯାଉଛୁ ଚାଲ ।' ଏହା କହି ସେ ଜଗୁଆଳି ଅପେକ୍ଷା ବରଂ ଆହୁରି ଶୀଘ୍ର ଶୀଘ୍ର ପାହାଚ ଉପରେ ଚଢ଼ିବାକୁ ଲାଗିଲା ।

ଘରେ ପଶୁ ନ ପଶୁ କେ' ପ୍ରାୟ ହାମୁଡ଼ି ପଡ଼ିଲା ଠିକ୍ ଦ୍ୱାର ପାଖରେ ଗୋଟିଏ ଅଧିକା ପାହାଚ । 'ଏମାନେ ସାଧାରଣ ଲୋକଙ୍କ କଥା ଟିକିଏ ବି ଭାବନ୍ତି ନାହିଁ ।' କେ' କହିଲା । 'ସେମାନେ କୌଣସି ପ୍ରକାର କଥା ବିଚାର କରନ୍ତି ନାହିଁ ।' ଜଗୁଆଳି କହିଲା । 'ପ୍ରତୀକ୍ଷାଳୟଟିକୁ ଟିକିଏ ଦେଖନା ।' ଏ ଘରଟି ଗୋଟିଏ ବଡ଼ ବାଟ ଘର । ଦଦରା କବାଟ ଦ୍ୱାରା ବିଭିନ୍ନ ଅଫିସ୍ ଘର ସହିତ ସଂଯୁକ୍ତ । ଆଲୁଅ ଆସିବା ପାଇଁ ଏଠି ଝର୍କା ନାହିଁ ତଥାପି ଏହା ପୂରା ଅନ୍ଧାର ନୁହେଁ । ଯଦିଓ କେତେଗୁଡ଼ିଏ ଅଫିସ୍ ଏହି ବାଟଘର ସହିତ ସଂଯୁକ୍ତ ନୁହେଁ ତଥାପି ସେମାନଙ୍କ ରେଲିଂ ଲଗା ସାମ୍ନାପଟ ଦ୍ୱାର ସବୁ ଗୁଡ଼ିକ ଆଡ଼କୁ ରହିଛି । ସେହି ବାଟ ଦେଇ ଯାହା ସାମାନ୍ୟ ଆଲୁଅ ଆସୁଛି । ସେହି ଆଲୁଅରେ ଯାହା ଦିଶୁଛି । ସେହି ଆଲୁଅରେ ଦେଖାଯାଉଛି ଯେ କେତେକ ଅଫିସର ତାଙ୍କ ଟେବୁଲ ପାଖରେ ବସି ଲେଖୁଛନ୍ତି । ଆଉ କେତେକ ରେଲିଂକୁ ଲାଗି ଛିଡ଼ାହୋଇ ସେଇ ବାଟଘରେ ଥିବା ଲୋକମାନଙ୍କୁ ରେଲିଂ ଫାଙ୍କ ଦେଇ ଚାହିଁଛନ୍ତି । ବାଟ ଘରେ ଖୁବ୍ କମ୍ ଲୋକ । ବୋଧହୁଏ ରବିବାର ବୋଲି । ସେମାନେ ଖୁବ୍ ସାଧାସିଧା । ବାଟ ଘରେ ଉଭୟ ପଟେ ପଡ଼ିଥିବା ବେଞ୍ଚ୍ ଉପରେ ଗୁଡ଼ି ଗୁଡ଼ି ହୋଇ ସେମାନେ ବସିଥିଲେ । ପୋଷାକରେ କାହାର କିଛି ଠିକ୍ ନଥିଲା । ପୋଷାକ ପ୍ରତି ସମସ୍ତେ ପ୍ରାୟ ଉଦାସୀନ ଥିଲେ । କିନ୍ତୁ ତାଙ୍କର ମୁହଁର ଭଙ୍ଗି, ଚାଲିଚଳନ, ବ୍ୟବହାର ଦାଢ଼ିକଟା ଆଉ ନଜରରେ ପଡ଼ୁନଥିବା ଅନେକ ଜିନିଷକୁ ଟିକିନିଖି କରି ଦେଖିଲେ ଜଣାଯିବ ଯେ ସେମାନେ ନିଶ୍ଚିତ ଭାବେ ଉଚ୍ଚଶ୍ରେଣୀର । ବାଟଘରେ ଟୋପି ରଖିବା ପାଇଁ ଆଲଣା ନଥିବାରୁ ସେମାନେ ତାଙ୍କ ଟୋପି ସବୁକୁ ବେଞ୍ଚ ତଳେ ରଖିଥିଲେ । ଏପରି କଲାବେଳେ ସେମାନେ ଜଣ ଜଣକର ଉଦାହରଣକୁ ଅନୁସରଣ କରୁଥିଲେ । ଦ୍ୱାର ପାଖରେ ବସିଥିବା ଲୋକମାନେ କେ' ଆଉ ଜଗୁଆଳିକୁ ଦେଖିବା ମାତ୍ରେ ଠିଆହୋଇ ପଡ଼ିଲେ । ସେମାନଙ୍କ ପରେ ପରେ ତାଙ୍କ ପାଖ ଲୋକମାନେ ଠିଆହେବା ଉଚିତ୍ ମନେକରି ଠିଆହୋଇପଡ଼ିଲେ । ସେମାନେ ପୂରା ସିଧା ହୋଇ ଠିଆ ହୋଇନଥିଲେ । ପିଠି ନୁଆଁଇ, ଆଣ୍ଠୁ ଭାଙ୍ଗି ବୁଲି ଭିକାରି ପରି ସେମାନେ ଠିଆ ହୋଇଥିଲେ । ଜଗୁଆଳିଟି ପାଇଁ କେ' ସାମାନ୍ୟ ଅପେକ୍ଷା କଲା । କାରଣ ସେ ଟିକିଏ ପଛରେ ଥିଲା ତା'ପରେ କେ' କହିଲା—'ସେମାନେ କେତେ ଦରିଦ୍ର ସତେ ?'

Digitized by srujanika@gmail.com

'ନିଶ୍ଚୟ । ଏମାନେ ସମସ୍ତେ ଅଭିଯୁକ୍ତ, ସମସ୍ତେ ମୁଦେଇର ଆସାମୀ ।'

କେ' କହିଲା—'ସତେ କି ! ତା'ହେଲେ ସେମାନେ ସମସ୍ତେ ତ ମୋର ବନ୍ଧୁ, ସହକର୍ମୀ ।' ଏହା କହି ପାଖରେ ଠିଆ ହୋଇଥିବା ଡେଙ୍ଗା, ପାତଳା, ପାଚିଲା ମୁଣ୍ଡିଆ ଲୋକଟି ଆଡ଼କୁ ଚାହିଁ ଅତି ଭଦ୍ର ଭାବରେ ପଚାରିଲା—'ଆପଣ କ'ଣ ପାଇଁ ଅପେକ୍ଷା କରିଛନ୍ତି ?' ମାତ୍ର ଏପରି ଅପ୍ରତ୍ୟାଶିତ ପ୍ରଶ୍ନ ଲୋକଟିକୁ ବିବ୍ରତ କରିଦେଲା । ଲୋକଙ୍କ ପାଇଁ ଏ ପ୍ରଶ୍ନ ବଡ଼ ଲଜ୍ଜ୍ୟାକର ମନେ ହେଲା କାରଣ ନିଶ୍ଚିତ ଭାବେ ସେ ଏଇ ଅଞ୍ଚଳର ଲୋକ । ଅନ୍ୟ ଯେ କୌଣସି ସ୍ଥାନରେ ସେ ନିଜକୁ ଚଳେଇ ନେବାର ଉପାୟ ସେ ଜାଣିଥାଆନ୍ତା ଆଉ ଏପରି ଭାବରେ ନିଜର ବଡ଼ପଣିଆକୁ ଜଳାଞ୍ଜଳି ଦିଅନ୍ତା ନାହିଁ । କିନ୍ତୁ ଏଠାରେ ଅତି ସାଧାରଣ ପ୍ରଶ୍ନଟିର ଉତ୍ତର ଦେବାକୁ କେମିତି ହେବ ଏକଥାଟା ବି ତାକୁ ଜଣାନଥିଲା । ତେଣୁ ସେ ଖାଲି ଅନ୍ୟମାନଙ୍କ ମୁହଁକୁ ବଲବଲ ହୋଇ ଚାହିଁରହିଲା । ଯେମିତିକି ତାକୁ ସାହାଯ୍ୟ କରିବା ସେମାନଙ୍କର କର୍ତ୍ତବ୍ୟ । ତାର ଅସହାୟ ଚାହାଣିରୁ ପୁଣି ଜଣାପଡୁଥିଲା ଯେମିତି ତା ପାଖରୁ କୌଣସି ଉତ୍ତର ଆଶା ନ କରିବାଟା ହିଁ ସ୍ୱାଭାବିକ । ଜଗୁଆଳି ତାକୁ ଟିକେ ସାହସ ଆଉ ଦମ୍ଭ ଦେବା ପାଇଁ ଆଗେଇ ଆସି କହିଲା—'ଏଇ ଭଦ୍ରଲୋକ ପଗ୍ ତୁମେ କ'ଣ ପାଇଁ ଅପେକ୍ଷା କରିଛ ବୋଲି ପଚାରୁଛନ୍ତି ? ତୁମେ ତାଙ୍କୁ କିଛି କହୁନ ?' ଜଗୁଆଳିର ପଜଚତ ସ୍ୱର କାମ କଲା । 'ମୁଁ ଅପେକ୍ଷା କରିଛି ।' ଲୋକଟି କହିବା ଆରମ୍ଭ କଲା । ମାତ୍ର ଅଧିକ କିଛି କହି ପାରିଲାନି । ନିଶ୍ଚିତ ଭାବରେ ଠିକ୍ ଉତ୍ତର ଦେବାକୁ ସେ ଇଚ୍ଛା କରିଥିଲା । ମାତ୍ର କେମିତି ଆଗେଇବ ଜାଣିପାରିଲାନି । ଅନ୍ୟ ମହକିଲମାନେ ସେ ଜାଗାରୁ ଦୂରେଇଯାଇ ଅନ୍ୟ ଜାଗାରେ ରୁଣ୍ଡ ହୋଇଥାଆନ୍ତି । ସେମାନଙ୍କୁ ଚାହିଁ ଜଗୁଆଳି କହିଲା—'ଆପଣମାନେ ଯାଆନ୍ତୁ, ବାଟ ଛାଡ଼ିଦିଅନ୍ତୁ ।' ସେମାନେ ଟିକିଏ ଘୁଞ୍ଚିଗଲେ, କିନ୍ତୁ ତାଙ୍କ ପୂର୍ବ ସ୍ଥାନକୁ ଫେରିଲେ ନାହିଁ । ଏଇ ଭିତରେ ସେ ଲୋକଟି ନିଜକୁ ସମ୍ଭାଳି ନେଇ ସାମାନ୍ୟ ହସି କେ'ର ପ୍ରଶ୍ନର ଉତ୍ତର ଦେବାକୁ ଆରମ୍ଭ କଲା—'ମାସକ ତଳେ ମୋ' କେଶ୍ ଫଜାନ୍ତ୍ରରେ ଅନେକଗୁଡ଼ିଏ ସତ୍ୟପାଠ ଦାଖଲ କରିଥିଲି । ତାର ଫଳାଫଳ ପାଇଁ ଅପେକ୍ଷା କରିଛି ।'

'ତୁମେ ବହୁତ ଅସୁବିଧାରେ ପଡ଼ିଯାଇଛ ବୋଲି ଜଣାପଡୁଛି ।' କେ' କହିଲା ।

'ହଁ, କାରଣ ଏହାତ ମୋ' ନିଜର କେଶ୍ ।' ଲୋକଟି କହିଲା ।

Digitized by srujanika@gmail.com

'ତମେ ଯେମିତ ଭାବୁଛ ସମସ୍ତେ ତ ସେମିତ ସ୍ୱବନ୍ତ ନାହିଁ । ଏଇ ମୋ' କଥା ଦେଖନ୍ତୁ । ମୁଁ ମଧ୍ୟ ଗିରଫ୍ ହୋଇଛି । କିନ୍ତୁ ମୁଁ କୌଣସି ସତ୍ୟପାଠ ଦାଖଲ କରି ନାହିଁ । କିମ୍ବା ସେମିତ କିଛି କରିବାର ଚେଷ୍ଟା ବି କରିନି ମୁଁ ଏଭଳି ଠିଆ ହେଲି ଭଳି, ଏକଥା ସତ । ତୁମେ କ'ଣ ଭାବୁଛ ଏପରି କରିବା ନିହାତି ଦରକାର ?' କେ' ପଚାରିଲା ।

'ମୁଁ ଠିକ୍ କହିପାରିବିନି ।' ପୁଣି ଥରେ ଲୋକଟି ସମସ୍ତ ବିଶ୍ୱାସ ହରାଇ ବସିଲା । ସେ ନିଶ୍ଚିତ ଭାବରେ ଭାବିଲା ଯେ କେ' ତା' ସହ ପରିହାସ କରୁଛି । ତେଣୁ ସେ ତାର ପୁରୁଣା ଉତ୍ତରକୁ ଆଉ ଥରେ ଦୋହରାଇବାକୁ ଚେଷ୍ଟା କଲା କାରଣ ସେ ଡରୁଥିଲା ଯେ କାଳେ ଆଉ ଗୋଟିଏ ନୂଆ ଭୁଲ କରିବ । କିନ୍ତୁ କେ'ର ଧୈର୍ଯ୍ୟହୀନ ଆଖି ଆଗରେ ସେ କେବଳ କହିଲା—'ଯାହା ହେଉ ମୁଁ ତ ମୋର ସତ୍ୟପାଠ ଦାଖଲ କରିଛି ।'

'ବୋଧହୁଏ ତୁମେ ବିଶ୍ୱାସ କରୁନ ଯେ ମୁଁ ଗିରଫ୍ ହୋଇଛି ?' କେ' କହିଲା ।

'ନିଶ୍ଚିତ ଭାବରେ ମୁଁ ବିଶ୍ୱାସ କରେ ।' ଟିକିଏ କଡ଼େଇ ଯାଇ ଲୋକଟି କହିଲା । ତା' କଥାରେ ବିଶ୍ୱାସ ନଥିଲା । ଭରି ରହିଥିଲା ଖାଲି ଗୁଡ଼ାଏ ଭୟ ଓ ଆଶଙ୍କା ।

'ତାହେଲେ ତୁମେ ମୋତେ ପ୍ରକୃତରେ ବିଶ୍ୱାସ କରନି ?' କେ' ପଚାରିଲା । ଆଉ ଲୋକଟିର ବିନମ୍ର ଭାବ ଯୋଗୁଁ ଅଜଣାତରେ ତାକୁ ଉତ୍ତେଜିତ କରିବାକୁ ଲାଗିଲା । ସେ ତାର ହାତକୁ ଧରି ପକାଇଲା ଯେମିତକି ତାକୁ ବିଶ୍ୱାସ କରିବାକୁ ବାଧ୍ୟ କରୁଛି । ତାକୁ ଆଘାତ କରିବା କେ'ର ଉଦ୍ଦେଶ୍ୟ ନଥିଲା । ପୁଣି ସେ ତାକୁ ଖୁବ୍ ଧୀରେ କରି ଧରିଥିଲା । ତଥାପି ସେ ଲୋକଟି ପାଟି କରି ଉଠିଲା ଯେମିତକି ଆଙ୍ଗୁଳି ବଦଳରେ କେ' ଦୁଇଟି ଚିମୁଟାରେ ତାକୁ ଚିପି ଧରିଛି । ସେଇ ହାସ୍ୟାସ୍ପଦ ଚିତ୍କାର କେ' ପାଇଁ ଖୁବ୍ ବେଶୀ ହୋଇଗଲା । ସେ ଗିରଫ୍ ହୋଇଛି ଏକଥା ଯଦି ସେ ଲୋକଟି ବିଶ୍ୱାସ ନକଲା ନକରୁ ସେଥିରେ କିଛି ଯାଏଆସେ ନାହିଁ । ବୋଧହୁଏ କେ' ସେଇ ଲୋକଟିକୁ ଜଣେ ଜଜ୍ ବୋଲି ଧରି ନେଇଥିଲା । ବିଦାୟ-କାଳୀନ ଭଙ୍ଗୀରେ କେ' ସେ ଲୋକକୁ ଖୁବ୍ ଜୋର୍‌ରେ ଭିଡ଼ିଧରିଲା ଆଉ ତା ବେଞ୍ଚ ଉପରକୁ ତାକୁ ପେଲିଦେଇ ନିଜ ବାଟରେ ଚାଲିଗଲା ।

'ଅଭିଯୁକ୍ତ ଅଧିକାଂଶ ଲୋକ ଏଇମିତ ଅତିବେଶୀ ଭାବପ୍ରବଣ ।' କିରାଣୀଜଣକ କହିଲା । ସେମାନେ ଗଲାପରେ ପ୍ରାୟ ସବୁ ମକ୍କେଲ ସେଇ ଲୋକଟି ପାଖରେ

Digitized by srujanika@gmail.com

ରୁଣ୍ଡ ହୋଇଥିଲେ । ସେତେବେଳକୁ ସେ ଲୋକଟିର ଚିତ୍କାର ବନ୍ଦ ହୋଇଗଲାଣି । ଅନ୍ୟ ଲୋକମାନେ କ'ଣ ହେଲା ବୋଲି ବଡ଼ ଆଗ୍ରହ ସହକାରେ ପଚାରିବାରେ ଲାଗିଥିଲେ । ଜଣେ ଦରୁଆନ କେ' ପାଖକୁ ଆସିଲା । ସେ ତାର ଖଣ୍ଡାଟା ଯୋଗୁଁହିଁ ଚିହ୍ନା ପଡ଼ୁଥିଲା । ତା' ରଙ୍ଗରୁ ଜଣା ପଡୁଥିଲା ଯେ ସେ ଖଣ୍ଡାର ଖୋଳ ସିଲ୍‌ଭର୍‌ରେ ତିଆରି । କେ' ସେ ଖଣ୍ଡା ଆଡ଼କୁ ଆଶ୍ଚର୍ଯ୍ୟ ହୋଇ ଚାହିଁରହିଲା । ତାକୁ ଅନୁଭବ କରିବାପାଇଁ ସେ ତାର ହାତ ବଢ଼ାଇ ଖଣ୍ଡାଟିକୁ ଟିକିଏ ଛୁଇଁ ଦେଲା । ଗଣ୍ଡଗୋଳ ବିଷୟରେ ଜାଣିବାପାଇଁ ଆସିଥିବା ଜଗୁଆଳି କ'ଣ ହେଲା ବୋଲି ପଚାରିଲା । ଏଣୁତେଣୁ କହି ତାକୁ ବିଦାୟ କରି ଦେବାକୁ ପୁରୁଣା ଜଗୁଆଳି ବସିଥିଲା । ମାତ୍ର ଦରୁଆନ କହିଲା ସେ ନିଜେ ଘଟଣାଟିକୁ ବୁଝିବ । ଏହା କହି ସେ ସଲାମ ମାରି ତରତରରେ ଗ୍ରେଟ ଗ୍ରେଟ ପାଦ ପକାଇ ଚାଲିଗଲା । ବାତ ଯୋଗୁଁ ବୋଧହୁଏ ସେ ଏମିତି ଚାଲୁଥିଲା ।

ସେଇ ଲୋକଟି ଆଉ ତା ସାଙ୍ଗରେ ବସିଥିବା ଅନ୍ୟ ଲୋକମାନଙ୍କ ବିଷୟରେ କେ' ଅଧିକ ମୁଣ୍ଡ ଖେଲାଇଲା ନାହିଁ । ଗଳିବାଟରେ ଅଧା ବାଟ ଯାଇଛି କି ନାହିଁ କେ' ଦେଖିଲା ଯେ ଡ଼ାହାଣ ପଟକୁ ଗୋଟିଏ ମୋଡ଼ ଅଛି । ସେଇଠୁ ବାଟଟିଏ, କବାଟ ନଥିବା ଗୋଟିଏ ଦ୍ୱାର ପାଖକୁ ଯାଇଛି । ପ୍ରକୃତରେ ତାହା ବାଟ କି ନୁହେଁ ଏ ବିଷୟରେ କେ' ଜଗୁଆଳିକୁ ପଚାରିଲା । ଜଗୁଆଳି କହିବାରୁ କେ' ତା ଭିତରକୁ ପଶିଲା । ସେ ସବୁବେଳେ ଜଗୁଆଳିଠାରୁ ପାଦେ ଦୁଇପାଦ ଆଗରେ ଚାଲୁଥିବାରୁ ତାକୁ ବଡ ଅସୁବିଧା ହେଉଥାଏ । କାରଣ ଏପରି ଜାଗାରେ ଏମିତି ଚାଲିଲେ ଜଗୁଆଳି ସାଙ୍ଗରେ ଚାଲିଥିବା ବନ୍ଦୀଟିଏ ପରି ତାକୁ ମନେ ହେଉଛି । ସେଇଥିପାଇଁ ଜଗୁଆଳି ସାଙ୍ଗେ ସାଙ୍ଗେ ଚାଲିବ ବୋଲି ସେ ଅନେକ ଥର ଠିଆ ହେଉଛି ମାତ୍ର ଜଗୁଆଳି ସବୁବେଳେ ପଛରେ ପଡ଼ିଯାଉଛି । ଏହି ଅସୁବିଧାକୁ ଦୂରେଇ ଦେବା ପାଇଁ ଶେଷରେ କେ' କହିଲା—'ମୁଁ ଜାଗାଟା ଦେଖିଗଲି, ଭାବୁଛି ଏଥର ଯିବ ।'

'ତୁମେ ଏବେବି ସବୁ ଦେଖି ସାରିନ ।' ବଡ଼ ନିର୍ବିକ ଭାବରେ ଜଗୁଆଳି କହିଲା ।

'ମୁଁ ତ ସବୁ ଦେଖିବାକୁ ଚାହୁଁନି ।' କେ' କହିଲା । ସେ ବଡ଼ ଥକି ପଡ଼ିଥିଲା ।

'ମୁଁ ବର୍ତ୍ତମାନ ଯିବାକୁ ଚାହେଁ । ବାହାରକୁ ବାଟ କେଉଁଟା ?'

Digitized by srujanika@gmail.com

'ତୁମେ କ'ଣ ବାଟ ଭୁଲିଛ ?' ଆଶ୍ଚର୍ଯ୍ୟ ହୋଇ ଜଗୁଆଳି ପଚାରିଲା । 'ସିଧା ଏଇବାଟେ ସେ କୋଣକୁ ଯାଇ ସେଠାରୁ ଡାହାଣକୁ ବାଙ୍କିବ । ତାପରେ ଗଳି ଦେଇ ସିଧା ବାହାର ଦ୍ୱାର ପାଖକୁ ଚାଲିଯିବ ।'

'ତୁମେ ବି ଆସ । ମୋତେ ବାଟ ଦେଖାଇ ଦେବ । ଏଠାରେ ତ ଅନେକ ଗଳି, ମୁଁ କେବେ ଏ ଭିତରେ ବାଟ ପାଇବିନି ।' କେ' କହିଲା ।

ଟିକିଏ ବିରକ୍ତି ମିଶା ସ୍ୱରରେ ଜଗୁଆଳି କହିଲା—'ଏଠି କେବଳ ଗୋଟିଏ ବାଟ । ମୁଁ ତୁମ ସାଙ୍ଗରେ ଯାଇ ପାରିବିନି । ମୋତେ ଖବର ଦେବାକୁ ହେବ । ତୁମ ସାଙ୍ଗରେ ଅନେକ ସମୟ ନଷ୍ଟ କରି ସାରିଲିଣି ।'

'ମୋ' ସାଙ୍ଗରେ ଆସ ।' କେ' ଟିକିଏ ଜୋର୍‌ରେ କହି ଉଠିଲା । ଯେମିତିକି ଠକାମି ପାଇଁ ସେ ଜଗୁଆଳିକୁ ଧରିଛି ।

'ସେମିତି ପାଟି କରନି ।' ଜଗୁଆଳି ଧୀରେ ଧୀରେ କହିଲା । 'ଏଠାରେ ଚାରିଆଡ଼େ ଅଫିସ । ତୁମେ ଯଦି ଏକା ଯିବାକୁ ଚାହୁଁନ ତେବେ ମୋ' ସାଥିରେ ଆଉ ଟିକିଏ ଆସ କିମ୍ବା ଏଠାରେ ଟିକିଏ ଅପେକ୍ଷା କର । ମୁଁ ଖାଲି ଖବରଟା ଦେଇ ଆସେ । ତା'ପରେ ଖୁସିରେ ମୁଁ ଯାଇ ତୁମକୁ ଛାଡ଼ିଦେଇ ଆସିବି ।'

'ନା, ନା, ତା' ହେବନି । ମୁଁ ଅପେକ୍ଷା କରି ପାରିବିନି । ତୁମକୁ ମୋ' ସାଙ୍ଗରେ ବର୍ତ୍ତମାନ ଯିବାକୁ ପଡ଼ିବ ।' କେ' କହିଲା । କେଉଁଠି ସେ ଅଛି ବର୍ତ୍ତମାନ ସୁଦ୍ଧା ସେ ତା ଚାରିପାଖକୁ ଚାହିଁବି ନଥିଲା । ଗୋଟିଏ କାଠ ଦ୍ୱାର ଖୋଲିଗଲାରୁ ସେ ଘୂରି ଚାହିଁଲା । ଗୋଟିଏ ଝିଅ (କେ'ର ପାଟି ନିଶ୍ଚୟ ତାର ଦୃଷ୍ଟି ଆକର୍ଷଣ କରିଥିବ) ବାହାରି ଆସି ପଚାରିଲା—'ଏ ଭଦ୍ରଲୋକ କ'ଣ ଚାହାନ୍ତି ?' ସେ ଝିଅଟିର ଟିକିଏ ପଛରେ ଗୋଟିଏ ପୁରୁଷ ଲୋକ ଅଧା ଆଲୁଅରେ ଆସୁଥିବାର କେ' ଦେଖି ପାରିଲା । କେ' ଜଗୁଆଳି ଆଡ଼କୁ ଚାହିଁଲା । ତା' ଉପରେ ଏଠି କେହି ଦୃଷ୍ଟି ଦେବେନି ବୋଲି ଭୟ କରୁଥିଲା । କିନ୍ତୁ ବର୍ତ୍ତମାନ ଦୁଇଜଣ ଲୋକ କ'ଣ ତାର ପିଛା କଲେଣି । ସବୁ ଅଫିସରମାନେ ଏଠାକୁ ଆସି ତାର ଉପସ୍ଥିତି ବିଷୟରେ ତାକୁ କୈଫିୟତ ମାଗିବା କିଛି ଅସମ୍ଭବ ନୁହେଁ । କେବଳ ଗୋଟିଏ ମାତ୍ର ଗ୍ରହଣଯୋଗ୍ୟ କୈଫିୟତ ହେଉଛି ଯେ ସେ ଜଣେ ଅଭିଯୁକ୍ତ ବ୍ୟକ୍ତି ତେଣୁ ସେ ଆସନ୍ତା କେସର ତାରିଖ ବିଷୟରେ ବୁଝିବାକୁ ଆସିଥିଲା । କିନ୍ତୁ ଏମିତି ଏକ କୈଫିୟତ ଦେବାକୁ ସେ ଆଦୌ ଇଚ୍ଛୁକ ନୁହେଁ । କାରଣ ଏହା ସତ ନୁହେଁ । ସେ ଖାଲି କୌତୂହଳୀ ହୋଇ ଆସିଥିଲା ଅବା ଏହି ଆଇନ୍ ପଦ୍ଧତିର ଭିତରଟା ମଧ୍ୟ ବାହାର ପରି ଘୃଣ୍ୟ ଏହି ବିଷୟ ନିଶ୍ଚିତ ହେବାକୁ ସେ ଏଠାକୁ ଆସିଥିଲା । ଏପରି

Digitized by srujanika@gmail.com

କୈଫିୟତ କେବେ ଯେ ଗୃହୀତ ହେବ ଏହା ଅସମ୍ଭବ । ତଥାପି ସେ ନିଶ୍ଚିତ ଯେ ତାର ଏହି ଧାରଣା ଏକାନ୍ତ ସତ ତେଣୁ ସେ ଏ ବିଷୟରେ ଆଉ ଅଧିକ ଅନୁସନ୍ଧାନ କରିବା ଦରକାର କରୁନ । କାରଣ ସେ ଯାହା ଦେଖିଲାଣି ସେଥିରେ ବିରକ୍ତ ହୋଇଗଲାଣି । ଯଦିଓ ତାର ଏ ଧାରଣା ଠିକ୍ ତଥାପି ଭଲ ଅଫିସରଙ୍କ ସହ ଏ ବିଷୟରେ ଯୁକ୍ତି କରିବା ଅବସ୍ଥାରେ ସେ ନଥିଲା । ତେଣୁ ଜଗୁଆଳି ସହ କଥା ଦରକାର ପଡ଼ିଲେ ଏକା ସେ ସ୍ଥାନ ଛାଡ଼ି ଚାଲିଯିବାକୁ ସେ ଚାହୁଁଥିଲା ।

କିନ୍ତୁ ତାର ସେ ମୂକ ସ୍ଥିରତା ଯୋଗୁଁ ହିଁ ସେ ଆଖିଦୃଶିଆ ହୋଇଗଲା । ସେ ଝିଅଟି ଓ ନିସ ଜଗୁଆଳିଟି ପ୍ରକୃତରେ ତାକୁ ଚାହିଁ ରହିଥିଲେ ଯେମିତିକି ସେମାନେ ଆଶା କରୁଥିଲେ କି ପରମୁହୂର୍ତ୍ତରେ ତାର ଗୋଟିଏ ବିରାଟ ପରିବର୍ତ୍ତନ ହେବ । ସେଇ ଦୃଶ୍ୟଟିକୁ ଦେଖିବାରୁ ବଞ୍ଚିତ ହେବାକୁ ସେମାନେ ଚାହୁଁ ନଥିଲେ । କେ’ ଦୂରରେ ଦେଖିଥିବା ଲୋକଟି ବର୍ତ୍ତମାନ ଗଳାବାଟର ଶେଷରେ ଠିଆ ହୋଇଥିଲା । ସେ ନୁଆଁଣିଆ ଦ୍ୱାରବନ୍ଧକୁ ହାତରେ ଧରିଥାଏ ଆଉ ଗୋଟିଏ ଉତ୍ସୁକ ଦର୍ଶକ ପରି ନିଜ ଗୋଡ଼ ଆଙ୍ଗୁଠି ଉପରେ ଠିଆହୋଇ ଦୋହଲୁଥାଏ । ମାତ୍ର ଝିଅଟି ପ୍ରଥମେ ଲକ୍ଷ୍ୟ କଲା ଯେ କେ’ର ବ୍ୟବହାର ତାର ମୂର୍ଚ୍ଛା ହେବାର ଲକ୍ଷଣ । ସେ ଗୋଟିଏ ଚୌକି ଆଣି କହିଲା--‘ଆପଣ ବସିବେ କି ?’

କେ’ ସାଙ୍ଗେ ସାଙ୍ଗେ ବସିପଡ଼ିଲା । ଚୌକିର ହାତ ବାଡ଼ାରେ ତାର କହୁଣୀ ଭର ଦେଇ ଏମିତି ବସିଲା ଯେମିତିକି ନିଜ ଭାରକୁ ଟିକିଏ ଭଲକରି ସମ୍ଭାଳି ପାରିବ ।

‘ଆପଣ ଟିକିଏ ବ୍ୟସ୍ତ ଜଣା ପଡ଼ୁଛନ୍ତି ?’ ଝିଅଟି ପଚାରିଲା ।

ଝିଅର ମୁହଁଟି କେ’ର ଖୁବ୍ ପାଖରୁ ଲଗି ଆସିଥିଲା । ସେ ମୁହଁରେ ଥିଲା ସେଇ ତୀକ୍ଷ୍ଣ ଚାହାଣି ଯାହା ପ୍ରଥମ ଯୌବନରେ ଅନେକ ସ୍ତ୍ରୀ ଲୋକଙ୍କର ଥାଏ । ଝିଅଟି କହିଲା—‘ବ୍ୟସ୍ତ ହୁଅନ୍ତୁନି । ଏଠି ସମସ୍ତେ ପ୍ରାୟ ଏମିତି ଆକ୍ରାନ୍ତ ହୋଇ ପଡ଼ିଥାନ୍ତି, ବିଶେଷ କରି ଯେଉଁମାନେ ନୂଆ ଆସିଥାଆନ୍ତି । ଏହା କ’ଣ ତୁମର ପ୍ରଥମ ଆସିବା ?’ ତା’ହେଲେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଛାତ ଉପରେ ସୂର୍ଯ୍ୟଙ୍କର ପ୍ରଖର କିରଣ । ଆଉ ଛାତ ତାତି ଏଠିକାର ବାତାବରଣକୁ ରୁନ୍ଧି ଦେଉଥାଏ । ତେଣୁ ଯଦିଓ ଅନେକଗୁଡ଼ିଏ ସୁବିଧା ଅଛି ତଥାପି ଏଇଥିପାଇଁ ଅଫିସ୍ ପାଇଁ ଏହା ଉପଯୁକ୍ତ ନୁହେଁ । ବିଶେଷତଃ ଯେଉଁଦିନ ଅନେକ ମହକିଲ ଆସିଯାଆନ୍ତି ସେଦିନ ତ ଲୋକ ଏଠି ଅଣନିଶ୍ୱାସୀ ହୋଇଯାଆନ୍ତି । ତୁମେ ଭାବୁଥିବ ଲୁଗାସବୁ ଏଠି ଶୁଖୁଛି । ସତକଥା ତୁମେ ତ ଏ ଘରର ଲୋକମାନଙ୍କୁ ତାଙ୍କ

Digitized by srujanika@gmail.com

ମଇଳା ଲୁଗା ସଫା କରିବାକୁ ମନା କରି ପାରିବନି । ତାଙ୍କୁ ଶୁଖାଇବାକୁ ବି ମନା କରି ପାରିବନି । ତେଣୁ ଏଠାରେ ଟିକିଏ ଅଣନିଶ୍ୱାସୀ ହୋଇ ଚେଙ୍ଗା ହୁରୁଇ ବସିଲେ ସେଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? କିନ୍ତୁ କିଛିଦିନ ପରେ ତୁମେ ଅଭ୍ୟସ୍ତ ହୋଇଯିବ । ଥରେ ଦୁଇଥର ଆସିଗଲେ ଏହା ଏତେ ଯେ ଖରାପ ତୁମେ ଜାଣିପାରିବନି । ତୁମେ କ'ଣ ପ୍ରକୃତରେ ଟିକିଏ ସୁସ୍ଥ ଅନୁଭବ କରୁଛ ?'

ଜେ' କିଛି କହିଲାନି । ତାର ହଠାତ୍ ଏ ଦୁର୍ବଳତା ପାଇଁ ସେ ଏପରି ଲୋକଙ୍କ ହାତରେ ନିଜକୁ ଅଜାଡ଼ି ଦେଇଛି । ଏପରି ଲଜ୍ଜ୍ୟାକୁ ସେ ବଡ଼ ଗମ୍ଭୀର ଭାବେ ଅନୁଭବ କଲା । ତାଛଡ଼ା ସେ ତାର ମୂର୍ଚ୍ଛା ହେବାର କାରଣ ଏବେବି ଜାଣେ । ତଥାପି ଏଥିରେ ତାର କିଛି ଭଲ ହେଲାନି । ବରଂ ବେଶୀ ଖରାପ ହେଲା । ସାଙ୍ଗେ ସାଙ୍ଗେ ଝିଅଟି ଏହା ନଜର କରି ପାରିଲା ଏବଂ ଜେ'କୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ପାଚେରୀରେ ତିଆରି ହୋଇଥିବା ଗୋଟିଏ ଆଙ୍କୁଡ଼ି ଆଣି ସ୍କାଇଲାଇଟ୍‌କୁ ଟାଣି ଖୋଲି ଦେଲା, ଉଦ୍ଦେଶ୍ୟ କିଛି ଖୋଲା ପବନ ଆସିବ । କିନ୍ତୁ ଏପରି କରିବା ଦ୍ୱାରା ଏତେ ଗୁଡ଼ିଏ ଅଳନ୍ଧୁ ଖସିଲା ଯେ ସେ ସାଙ୍ଗେ ସାଙ୍ଗେ ତାକୁ ପୁଣି ବନ୍ଦ କରି ଦେଲା । ନିଜର ରୁମାଲ୍‌ରେ ଜେ'ର ହାତକୁ ଝାଡ଼ିଦେଲା । କାରଣ ନିଜକୁ ସଫା କରିବା ଅବସ୍ଥାରେ ଜେ' ଆଉ ନଥିଲା । ଚାଲିଯିବା ପାଇଁ ଶକ୍ତି ଆସିବା ପର୍ଯ୍ୟନ୍ତ ଚୁପ୍‌ଚାପ ବସି ରହିବାକୁ ସେ ହୁଏତ ବେଶୀ ପସନ୍ଦ କରିଥାଆନ୍ତା । ଆଉ ଏ ଲୋକଙ୍କ ଦ୍ୱାରା ଯେତେ କମ୍ ବ୍ୟସ୍ତ ହେବ ସେତେ ଶୀଘ୍ର ସେ ତାର ଶକ୍ତି ଫେରି ପାଇବ । କିନ୍ତୁ ବର୍ତ୍ତମାନ ସେ ଝିଅଟି କହିଲା—'ତୁମେ ଏଠାରେ ରହି ପାରିବନି । ଆମ ଯୋଗୁଁ ତୁମର ବହୁତ ଅସୁବିଧା ସୃଷ୍ଟି ହେଉଛି ।' ଜେ' ଚାରିଆଡ଼କୁ ଜାଣିବା ଆଖିରେ ଚାହିଁଲା । ଜେ' ଦେଖିବାକୁ ଚାହୁଁଥିଲା ସେ କ'ଣ ଅସୁବିଧା ସୃଷ୍ଟି କରୁଛି ।

'ତୁମେ ଯଦି ଚାହଁ ତେବେ ମୁଁ ତୁମକୁ ରୋଗୀ ଘରକୁ ନେଇଯିବି ।' ଦୟା କରି ମୋତେ ଟିକିଏ ସାହାଯ୍ୟ କର ।' ଝିଅଟି ଦ୍ୱାର ପାଖରେ ଠିଆ ହୋଇଥିବା ଲୋକଟିକୁ ଚାହିଁ କହିଲା । ଲୋକଟି ମଧ୍ୟ ସାଙ୍ଗେ ସାଙ୍ଗେ ଆଗେଇ ଆସିଲା । ଜେ' କିନ୍ତୁ ରୋଗୀ ଘରକୁ ଯିବା ପାଇଁ ଚାହୁଁ ନଥିଲା । ସେ ମଧ୍ୟ ଆଉ ବେଶୀ ଆଗେଇବାକୁ ଚାହୁଁ ନଥିଲା କାରଣ ଯେତେ ବେଶୀ ଏଥିରେ ସେ ଆଗେଇବ ତା ପାଇଁ ସେତେ ଖରାପ ।

'ମୁଁ ବର୍ତ୍ତମାନ ଖୁସିରେ ଚାଲିଯାଇପାରିବି ।' ଏତିକି କହି ବସିଥିବା ଚୌକି ଉପରୁ ଜେ' ଉଠିପଡ଼ିଲା । ମାତ୍ର ଆରାମ୍‌ରେ ବସିଥିବା ଯୋଗୁଁ ଉଠିଲା ବେଳେ ତା' ଗୋଡ଼ ଥରି ଉଠିଲା । ସେ ବସି ପଡ଼ିଲା । କିନ୍ତୁ ସିଧା ହୋଇ ବସି

Digitized by srujanika@gmail.com

ପାରିଲା ନାହିଁ । ମୁଣ୍ଡ ହଲାଇ କହିଲା—'ମୁଁ ସମ୍ଭାଳି ପାରୁନି ।' ଆଉ ଉଠୁଉଠୁ ପୁଣି ଥରେ ପଡ଼ିଗଲା । କେ' ଜାଣୁଥିଲା କଥା ସରିନି । ସେହି ଏକା ତାକୁ ତାର ଅସୁସ୍ଥତା ସତ୍ତ୍ୱେ ନେଇଯାଇପାରିବ । ମାତ୍ର ସେ ସେଠାରେ ନଥିଲା କେତେବେଳୁ ସେ କେଉଁଆଡ଼େ ଅଦୃଶ୍ୟ ହୋଇଯାଇଥିଲା । ସେଇ ଝିଅ ଆଉ ସେ ଲୋକଟିର ନଜି ଦେଇ କେ' ଚାରିଆଡ଼କୁ ଚାହିଁଲା । କିନ୍ତୁ କେଉଁଠି ତାର ଚିହ୍ନବର୍ଣ୍ଣ ବି ପାଇଲାନି ।

ଆଖିଦୁଣିଆ ଧୂସରଆ କୋଟ୍‌ଟିଏ ପିନ୍ଧିଥିବା ସେ ଯୋବଧାବଳିଆ ପୁରୁଷ ଲୋକଟି କହିଲା—'ମୁଁ ଜାଣୁଛି ଭଦ୍ର ଲୋକଙ୍କର ମୂର୍ଚ୍ଛା ହେବା ଏଠାକାର ଏହି ବାତାବରଣ ପାଇଁ । ତେଣୁ ତାଙ୍କୁ ରୋଗୀ ଘରକୁ ନ ନେଇ ବରଂ ଅଫିସ୍ ଘରୁ ଦୂର ବାହାରକୁ ନେଇଯିବା ଭଲ ହେବ ।'

'ହଁ, ଠିକ୍ କଥା ।' କେ' ପାଟି କରି ଉଠିଲା । ଲୋକଟିର କଥାରେ କେ' ଏତେ ବେଶୀ ଖୁସି ହୋଇ ଯାଇଥିଲା ଯେ ସେ ପ୍ରାୟ ଲୋକଟିର ପାଟିରୁ କଥାକୁ ଛଡ଼ାଇ ନେଲା ଏବଂ ପାଟିକରି ଉଠିଲା—'ମୁଁ ସାଙ୍ଗେ ସାଙ୍ଗେ ସୁସ୍ଥ ଅନୁଭବ କରିବି । ମୁଁ ଏଥିରେ ନିଶ୍ଚିତ । ମୁଁ ବି ଏତେବେଶୀ ଦୁର୍ବଳ ହୋଇ ପଡ଼ିନି । ମୋ' ହାତକୁ ଖାଲି ଟିକିଏ ଧରିଲେ ହେଲା । ଏଥିରେ ମୁଁ ଆପଣଙ୍କୁ ବେଶୀ କଷ୍ଟ ଦେବିନି । ବେଶୀ ବାଟ ଆପଣଙ୍କୁ ଯିବାକୁ ହେବନି । ମୋତେ ଖାଲି ଦ୍ୱାର ପର୍ଯ୍ୟନ୍ତ ନେଇଯାଆନ୍ତୁ । ସେଠାରେ କିଛି ସମୟ ମୁଁ ପାହାଚରେ ବସିବି । ଆଉ ସାଙ୍ଗେ ସାଙ୍ଗେ ଭଲ ହୋଇଯିବ । ସାଧାରଣତଃ ଏମିତି ମୋର କେବେ ହୁଏନି । ମୁଁ ତ ନିଜେ ଏଥିରେ ଆଶ୍ଚର୍ଯ୍ୟ ହୋଇଯାଉଛି । ମୁଁ ବି ଜଣେ ଚାକିରିଆ ଆଉ ଅଫିସ୍‌ର ବାତାବରଣ ସହିତ ବେଶ୍ ପରିଚିତ । କିନ୍ତୁ ଏଠି ଅତି ବେଶୀ, ଜଣକର ସହିବାର ସୀମା ବାହାରେ । ଆପଣ ତ ନିଜେ ଏକଥା କହିଛନ୍ତି । ତେଣୁ ଦୟାକରି ମୋତେ ଟିକିଏ ସାହାଯ୍ୟ କରିବେନି ? ଯାହା ଫଳରେ ମୁଁ ଆପଣଙ୍କ ଉପରେ ଟିକିଏ ଭର ଦେଇ ଯାଆନ୍ତି କାହିଁକିନା ଠିଆ ହେଲା ବେଳକୁ ମୋ' ମୁଣ୍ଡଟା ଖାପଣ ବୁଲୁଛି । ମୁଁ ଆପେ ଠିଆ ହୋଇପାରୁନି ।' ଏତିକି କହି ସେ ତାର ହାତ ଟେକିଲା ଯାହା ଫଳରେ କି ସେ ଦୁହିଁଙ୍କ ଭିତରୁ ଜଣେ ତା' ହାତକୁ ଧରିବ ।

କିନ୍ତୁ ସେ ଲୋକଟି କେ'ର ଅନୁରୋଧକୁ ରକ୍ଷା କଲାନାହିଁ । ହାତ ବଢ଼ାଇବା ବଦଳରେ ପକେଟ୍ ଭିତରେ ହାତ ରଖି ହସିବାକୁ ଲାଗିଲା ଆଉ ସେ ଝିଅକୁ କହିଲା—'ଦେଖିଲ, ମୁଁ ଠିକ୍ ଜାଗାରେ ଆଘାତ କରିଛି । ଭଦ୍ରଲୋକ କେବଳ ଏଇଠି ଅସ୍ୱସ୍ତି ଅନୁଭବ କରନ୍ତି । ଆଉ କେଉଁଠି ନୁହେଁ ।' ଝିଅଟି ମଧ୍ୟ ହସିଲା । କିନ୍ତୁ ପୁରୁଷଟିର ବାହୁରେ ନିଜ ଆଙ୍ଗୁଳିରେ ସାମାନ୍ୟ ଚାପ ଦେଲା ।

Digitized by srujanika@gmail.com

ଯେମିତିକି ତାକୁ ସୁଯୋଗ ଦେବାକୁ ଚାହୁଁଥିଲା ଯେ କେ' ସହ ଅଷ୍ଟା କରିବାରେ ସେ ସୀମା ଟପିଯାଉଛି । ସେ ଲୋକଟି କିନ୍ତୁ ହସିହସି କହିଲା—'ତା' ହେଲେ ଠିକ୍ ଅଛି ।' ତାର ସୁନ୍ଦର ମଥାକୁ କ୍ଷଣକ ପାଇଁ ଝିଅଟି ଚାହିଁଲା ।

'ତାଙ୍କ ହସକୁ ଅତିବେଶୀ ଧରନି ।' ଝିଅଟି କେ'କୁ କହିଲା । କେ' ବିଷାଦରେ ବୁଡ଼ିଯାଇଥିଲା । ଆଉ କୌଣସି କୈଫିୟତ ଗ୍ରହଣ କରିବା ଅବସ୍ଥାରେ ନଥିଲା ।

'ଏ ଭଦ୍ରଲୋକଙ୍କ ସହ ତୁମକୁ ପରିଚୟ କରାଇଦିଏ (ଭଦ୍ରଲୋକ ଅନୁମତିସୂଚକ ହାତ ହଲାଇଲେ)—ଏ ଭଦ୍ରଲୋକ ହେଉଛନ୍ତି ଆମ ଖବର ସଂଗ୍ରହ ସଂସ୍ଥାର ପ୍ରତିନିଧି । ଜଣେ ମକ୍କେଲର ଦରକାର ହେଉଥିବା ଏ ଜାଗାର ସବୁ ଖବର ଏ ଭଦ୍ରଲୋକ ଦେଇଥାଆନ୍ତି । ଆଉ ଏଠାକାର ଆଦବ-କାଇଦା ଅଧିକାଂଶ ଲୋକଙ୍କୁ ଜଣାନାହିଁ । ସେମାନେ ଜାଣିନ୍ତିନି ଯେ ଏଠାରେ ଆମେ ଅନେକ ଖବର ଦରକାର କରୁ । ପ୍ରତ୍ୟେକ ପ୍ରଶ୍ନର ଉତ୍ତର ତାଙ୍କ ପାଖରେ ମିଳିପାରିବ । ତୁମେ ଇଚ୍ଛା କଲେ ପଚାରିପାର । ଏହା କେବଳ ତାଙ୍କର ଏକମାତ୍ର ବିଶେଷତ୍ୱ ନୁହେଁ । ଜଣାଶୁଣା ହେବା ତାଙ୍କର ଆଉ ଗୋଟିଏ କାରଣ ହେଉଛି ତା' ହେଉଛି ତାଙ୍କର ଫିଟ୍‌ଫାଟ ଭାବ । ଆମେ ଅର୍ଥାତ୍ ଏଇ ସଂସ୍ଥାର ଅନ୍ୟ କର୍ମଚାରୀମାନେ ଧରି ନେଇଛୁ ଯେ ଯେହେତୁ ଖବର ଯୋଗାଉଥିବା କର୍ମଚାରୀ ଜଣକ ସବୁବେଳେ ବିଭିନ୍ନ ମକ୍କେଲମାନଙ୍କ ସଂସ୍ପର୍ଶରେ ଆସୁଛି ତେଣୁ ତାର ପୋଷାକ ନିଶ୍ଚିତ ଭାବେ ଫିଟ୍‌ଫାଟ୍ ହେବା ଉଚିତ୍ । କାରଣ ଏହା ଦ୍ୱାରା ମକ୍କେଲମାନଙ୍କ ମନରେ ସୃଷ୍ଟି ହେଉଥିବା ପ୍ରଥମ ଧାରଣା ଭଲ ହେବ । କିନ୍ତୁ ଦୁଃଖର ସହିତ କହୁଛି ଯେ ବାକି ଅନ୍ୟମାନେ କଦର୍ଯ୍ୟ ମରହଟି ପୋଷାକ ବ୍ୟବହାର କରନ୍ତି । ମୋତେ ଦେଖି ଏହା ତୁମେ ଅନୁମାନ କରି ପାରୁଥିବ । ଆମମାନଙ୍କ ପାଇଁ ପୋଷାକ ପଛରେ ଅଧିକା ଖର୍ଚ୍ଚ କରିବାରେ କିଛି ଅର୍ଥ ହୁଏନା । କାରଣ ଆମେ ଅଫିସ ବାହାରକୁ ପ୍ରାୟ ଯାଉନା । ଏମିତିକି ଏଇ ଅଫିସ୍ ଘରେ ଶୋଇଥାଉ । କିନ୍ତୁ, ମୁଁ ଯାହା କହିଲି, ଏଇ ବାବୁଙ୍କ ପାଖରେ ଭଲ ପୋଷାକର ପ୍ରୟୋଜନୀୟତା ଆମେ ଅନୁଭବ କରୁ । ପରିଚାଳନା ସଂସ୍ଥାର ଦୃଷ୍ଟିକୋଣ କିନ୍ତୁ ଅଦ୍ଭୁତ । ଏପରି ପୋଷାକ ଯୋଗାଇ ଦେବାରେ ଏହା ମନା କରିଦେଇଛି । ତେଣୁ ଆମେ ନିଜ ନିଜ ଭିତରେ ଚାନ୍ଦା କରି, ଆଉ କେତେକ ମକ୍କେଲମାନଙ୍କ ପାଖରୁ କିଛିକିଛି ଆଣି ଆମେ ତାଙ୍କର ଏହି ସୁନ୍ଦର ସୁଟ୍‌ଟି ଓ ଅନ୍ୟାନ୍ୟ ପୋଷାକ ସବୁ ଦେଇଛୁ । ଗୋଟିଏ ଭଲ ଧାରଣା ସୃଷ୍ଟି କରିବାରେ ଆଉ ଅଧିକା କିଛି ଦରକାର ନାହିଁ । ମାତ୍ର ସେ ତାଙ୍କର ହସ ଦ୍ୱାରା ସବୁ ନଷ୍ଟ କରି ଦିଅନ୍ତି । ତାଙ୍କର ଏ ହସ ଲୋକଙ୍କୁ ପ୍ରଥମରୁ କେମିତି ଚମକାଇ ଦିଏ ।'

Digitized by srujanika@gmail.com

'ଓ ତା'ହେଲେ ଏଇଆ !' ଲୋକଟି ସାମାନ୍ୟ ବ୍ୟଙ୍ଗୋକ୍ତି କଲା । 'ତଥାପି ଫ୍ରାଙ୍କ୍ ମୁଁ ବୁଝିପାରୁନି ତୁମେ କାହିଁକି ଏଇ ଭଦ୍ରଲୋକଙ୍କ ପାଖରେ ଆମର ଗୁପ୍ତକଥା ସବୁ କହୁଛ । ତାଙ୍କ ଉପରେ ଜବରଦସ୍ତ ଏସବୁ ଲଦି ଦେଉଛ । ଏସବୁ ଶୁଣିବାକୁ ତ ତାଙ୍କର ମୋଟେ ଇଚ୍ଛା ନାହିଁ । ତାଙ୍କୁ ଦେଖୁନା ସେ କେମିତି ତାଙ୍କ ନିଜ ଚିନ୍ତାରେ ବୁଡ଼ି ରହିଛନ୍ତି ।' ଏପରି କଥାର ପ୍ରତିବାଦ କରିବାକୁ କେ'ର ଇଚ୍ଛା ହେଲା ନାହିଁ । ଝିଅଟିର ଉଦ୍ଦେଶ୍ୟ ନିର୍ଣ୍ଣିତ ଭାବେ ଭଲ । ସେ ହୁଏତ କେ'ର ମନକୁ ଅନ୍ୟ ଆଡ଼କୁ ଟିକିଏ ଟାଣିନେବାକୁ ଚାହୁଁଥିଲା । ତାକୁ ଟିକିଏ ଧୈର୍ଯ୍ୟ ଓ ସାହସ ଦେବା ପାଇଁ ଚେଷ୍ଟା କରୁଥିଲା । ଯେମିତିକି ସେ ନିଜକୁ ଟିକିଏ ସମ୍ଭାଳି ନେଇ ପାରେ । ମାତ୍ର ସେ ଠିକ୍ ବାଟରେ ଯାଇ ପାରିଲାନି ।

'ମୁଁ ତାଙ୍କୁ ତୁମ ହସକଥା ବୁଝାଉଥିଲି ।' ଝିଅଟି କହିଲା ।

'ମାତ୍ର ତା' କହିବାଟି ଲଜ୍ଜାକର ଜଣାଗଲା ।'

'ମୁଁ ଭାବୁଛି ଏହାଠାରୁ ଅଧିକ ଲଜ୍ଜାକର ଘଟଣାକୁ ସେ ଏଡ଼ିଦେଇପାରିବ ଯଦି ମୁଁ ତାକୁ ଏଠାରୁ ବାହାରକୁ ନେଇଯାଏ ।'

କେ' କିଛି କହିଲାନି । ଏମିତିକି ସେ ଟିକେ ଉପରକୁ ଚାହିଁଲାବି ନାହିଁ । ତାକୁ ଗୋଟେ କାଠ ବା ପଥର ଭାବି ସେ ଦୁଇ ଜଣ ତା ବିଷୟରେ ଏମିତି ଆଲୋଚନା କରିବା ତାକୁ ବଡ଼ ବାଧିଲା । ଅବଶ୍ୟ ସେ ଏମିତି ଗୋଟିଏ କାଠ କି ପଥର ହୋଇଯିବାକୁ ବେଶୀ ପସନ୍ଦ କରୁଥିଲା । ତା'ପରେ ହଠାତ୍ ସେ ଅନୁଭବ କଲା ସେ ଲୋକଟି ଆଉ ସେ ଝିଅଟି ତାର ଦୁଇଟି ହାତକୁ ଧରିଛନ୍ତି ।

'ଉଠ, ବେଗା, ନିର୍ବଳିଆ, ଠିଆ ହୁଅ ।' ଲୋକଟି କହିଲା ।

'ତୁମ ଦୁଇଜଣଙ୍କୁ ବହୁତ ଧନ୍ୟବାଦ ।' ଆନନ୍ଦ ଆଉ ଆଶ୍ଚର୍ଯ୍ୟ ହୋଇ କେ' କହିଲା । ଆଉ ଧୀରେ ଧୀରେ ଉଠି ସେ ଦୁଇଜଣଙ୍କ ହାତକୁ ଟାଣିନେଲା । ଯେଉଁଠି ତାର ସବୁଠାରୁ ବେଶୀ ସାହାଯ୍ୟର ପ୍ରୟୋଜନ ସେଇଠିକି ସେ ସେମାନଙ୍କ ହାତକୁ ଟାଣିନେଲା । କେ'ର କାନ ପାଖରେ ସେ ଝିଅଟି ଚୁପ୍‌ଚୁପ୍ କରି କହିଲା— ତୁମକୁ ଲାଗୁଥିବ ଯେମିତିକି ମୁଁ ଏଇ କିରାଣୀ ବିଷୟରେ ବେଶୀ କିଛି ଅଧିକା କହୁଥିଲି । ସେ ନିହାତି ନିଷ୍ଠୁର ଲୋକଟିଏ ନୁହେଁ । ଅସୁସ୍ଥ ଲୋକଙ୍କୁ ସାହାଯ୍ୟ କରିବା ପାଇଁ ସେ ବାଧ ନୁହେଁ । ତଥାପି ତୁମେ ତ ଦେଖିଲ ସେ କେମିତି ତୁମକୁ ସାହାଯ୍ୟ କଲା । ବୋଧହୁଏ ଆମେ କେହି ନିଷ୍ଠୁର ନୋହୁ । ଅନ୍ୟକୁ ସାହାଯ୍ୟ କରିବାରେ ଆମର ଖୁସି । କିନ୍ତୁ ଆଇନ୍ ଅଦାଲତର ଲୋକ ହିସାବରେ ଆମକୁ

Digitized by srujanika@gmail.com

ସମସ୍ତେ ଏମିତ ନଷ୍ଟୁର ବୋଲ ଧରନଅନ୍ତ । ଏହାହିଁ ମୋତେ ବେଶୀ ଚନ୍ତତ କରଥାଏ । ଏଠାରେ ଟିକଏ ବସିବାକୁ ତୁମର କଛ ଆପତ୍ତି ଅଛକ ?' କଗ୍ରଣୀଟି ପଗ୍ଚରଲା । ସେମାନେ ବର୍ତ୍ତମାନ ପ୍ରଧାନ ବସିବା ଘର ପାଖରେ ପହଞ୍ଚ ଯାଇଥିଲେ ଏବଂ ପ୍ରଥମେ କେ' ଯେଉଁ ମହକଲ ସାଙ୍ଗରେ କଥା କହୁଥିଲା ତାର ଠିକ୍ ସାମ୍ନାରେ ପହଞ୍ଚ ସାରଥିଲେ । ସେଇ ଲୋକଟି ଆଗରେ କେ'ଙ୍କୁ କେମିତ ଲାଜ ମାଡ଼ିଲା । ପ୍ରଥମେ ସେ ଏଇ ଲୋକଟି ଆଗରେ କେତେ ସିଧା ସଳଖ ହୋଇ ଠିଆହୋଇ ପାରୁଥିଲା । କନ୍ତୁ ବର୍ତ୍ତମାନ ତାକୁ ଦୁଇଜଣ ଟେକ ଧରଛନ୍ତ । କଗ୍ରଣୀଟି ତା' ନଜ ଆଙ୍ଗୁଳି ସାହାଯ୍ୟରେ ତା ଟୋପିକୁ ସମ୍ଭାଳ ଧରୁଛ । ତା' ବାଳସବୁ ବପର୍ଯ୍ୟସ୍ତ ହୋଇ ଝାଳୁଆ କପାଳ ଉପରେ ଝୁଲ ରହଛ । କନ୍ତୁ ସେ ମହକଲଟି ଯେମିତ ଏସବୁ କିଛ ଦେଖିଲାନ । ବଡ଼ ବନମ୍ର ଭାବରେ ତାକୁ ଗ୍ରହିଁଥିବା ସେ କିଗ୍ରଣୀଟି ଆଗରେ କେବଳ ଠିଆହୋଇ ତାର ଉପସ୍ଥିତ ପାଇଁ କ୍ଷମା ଗ୍ରହୁଁଥିଲା ।

'ମୁଁ ଜାଣେ ମୋ ସତ୍ୟପାଠ ଉପରେ ହୋଇଥିବା ବଗ୍ରରର ନକଲ ଆଜ ମିଳ ପାରବନ । କନ୍ତୁ ତଥାପି ମୁଁ ଆସିଥିଲ, ମୁଁ ଭାବଲ ଏଠାରେ ଅସି ଅପେକ୍ଷା କରେ । କାରଣ ଆଜ ରବବାର । ମୋ' ହାତରେ ଅନେକ ସମୟ । ପୁଣି ଏଠାରେ ମୁଁ ତ କାହାର ଅସୁବଧା ସୃଷ୍ଟି କରବନାହିଁ ।' ଲୋକଟି କହଲ ।

'ତୁମର ଏତେ ବେଶୀ ବନମ୍ରୀ ହେବାର ଦରକାର ନାହିଁ । ଅଯଥା ଚନ୍ତା ହିଁ ତୁମର ସବୁ ଦୋଷ । ତୁମେ ଅଯଥା ଆସି ଭିଡ଼ କରୁଛ । ତଥାପି ଯେପର୍ଯ୍ୟନ୍ତ ତୁମେ ମୋ' କାମରେ କଛ ଅସୁବଧା କରନାହିଁ ସେ ପର୍ଯ୍ୟନ୍ତ ତୁମ କେଶ୍ କେତେଦୂର ଗଲ ସେ ବଷୟରେ ବୁଝାବୁଝି କରପାର । ସେ ବଷୟରେ ତୁମକୁ ମୁଁ ବାଧା ଦେବନାହିଁ । ନଜ କର୍ତ୍ତବ୍ୟକୁ ହେଳା କରୁଥିବା ଶହ ଶହ ଲୋକଙ୍କୁ ଦେଖିଲ ପରେ ତୁମପର ଜଣେ ଲୋକପାଖରୁ ଧୈର୍ଯ୍ୟ ବଷୟରେ ଅନେକ କଥା ଶିଖିହୁଏ ।' ଆପତ୍ତିଜନକ ଭାବରେ କଗ୍ରଣୀଟି କହଲ ।

'ମହକଲମାନଙ୍କ ସାଙ୍ଗରେ କେମିତ କଥା କହବାକୁ ହୁଏ । ଏ ଲୋକଟି ଭଲଭାବେ ସେକଥା ଜାଣିଛ ।' ଝିଅଟି କେ'ର କାନ ପାଖରେ କହଲ ।

କେ' ମୁଣ୍ଡ ଟୁଙ୍ଗାରଲ ମାତ୍ର ଯେତେବେଳେ ସେ କଗ୍ରଣୀଟି 'ଏଠାରେ ବସିବାକୁ ଇଚ୍ଛା କରୁଛ କ ?' ବୋଲ କହଲ—କେ' ଭୟଙ୍କର ଭାବରେ ଚମକ ପଡ଼ କହ ଉଠିଲ 'ନା', ମୁଁ ବଶ୍ରାମ ନେବାକୁ ଗ୍ରହେଁ ନାହିଁ ।' ବଡ଼ ଜୋର ଦେଇ କେ' ଏତକ କହଦେଲ । କନ୍ତୁ ପ୍ରକୃତରେ ସେ ବସିବାକୁ ଗ୍ରହୁଁଥିଲ । ତାକୁ

Digitized by srujanika@gmail.com

ଲାଗିଲା ଯେମିତି ତାକୁ ସାମୁଦ୍ରିକ ଜ୍ୱର ହୋଇଛି । ଅଶାନ୍ତ ସମୁଦ୍ରରେ ସେ ଯେମିତି ଗୋଟିଏ ଜାହାଜରେ ଏପାଖ ସେପାଖ ଦୋହଲୁଛି । ଜାହାଜର କାଠ ଦେହରେ ଢେଉଗୁଡ଼ିକ ପିଟି ହେଉଛନ୍ତି । ବାଟର ଶେଷ ପ୍ରାନ୍ତରୁ ଢେଉର ଗର୍ଜ୍ଜନ ମାଡ଼ି ଆସୁଛି । ଏମିତି କି ସେ ବାଟ ଗଳିଟି ଆପେ ଆପେ ଦୋହଲି ଗଡ଼ିଯାଉଛି ଆଉ ତା ସାଙ୍ଗରେ ଅପେକ୍ଷା କରୁଥିବା ସମସ୍ତ ମହକିଲ ଏପାଖ ସେପାଖ ହେଉଛନ୍ତି । ତାକୁ ଧର ଧର ଆଣୁଥିବା ସେଇ ଝିଅ ଆଉ ସେ କିରାଣୀଟିର ମାନସିକ ଭାରସାମ୍ୟ କଥା ତା' ବିଶ୍ୱାସର ବାହାରେ । ସେମାନଙ୍କ ହାତରେ ତାକୁ ସମର୍ପି ଦିଆ ହୋଇଛି । ସେମାନେ ଯଦି ତାକୁ ଛାଡ଼ିଦଅନ୍ତି ତା'ହେଲେ କାଠ ଗଣ୍ଡିଭଳି ସେ ପଡ଼ିଯିବ । ସେମାନେ ତାଙ୍କ ତୀକ୍ଷ୍ଣ ଆଖିରେ ଚାରିଆଡ଼କୁ ଚାହୁଁଥାନ୍ତି । ତାଙ୍କର ଆଗେଇବା ବିଷୟରେ କେ' ଖୁବ୍ ସଚେତନ ଯଦିଓ ସିଏ ନିଜେ ସେଥିରେ ଭାଗ ନେଇ ପାରୁନଥାଏ । କାରଣ ସେ ବର୍ତ୍ତମାନ ପ୍ରାୟ ପ୍ରତ୍ୟେକ ପାଦ ବୁହାହୋଇ ଚାଲିଥାଏ । ଶେଷରେ ସେ ଲକ୍ଷ୍ୟ କଲା ଯେ ସେମାନେ ତା ସହ କଥା କହୁଛନ୍ତି । କିନ୍ତୁ କ'ଣ କହୁଛନ୍ତି ସେ କିଛି ବୁଝି ପାରିଲାନି । ସାରା ଜାଗାଟା ଯେଉଁ ଶବ୍ଦରେ ଭରି ଯାଇଥିଲା ତା' ବ୍ୟତୀତ ସେ ଆଉ କିଛି ଶୁଣିପାରିଲାନି । ଆଉ ସେଇ ଶବ୍ଦ ଭିତର ଦେଇ ସାଇରେନ୍‌ର ଚିତ୍କାର ପରି ଗୋଟିଏ ଅପରିବର୍ତ୍ତନୀୟ କର୍କଶ ସ୍ୱର ଚାରିଆଡ଼େ ପ୍ରତିଧ୍ୱନିତ ହେଉଥିଲା । ମୁଣ୍ଡକୁ ଝୁଲେଇ କେ' କହିଲା—'ଜୋର୍‌ରେ କହନ୍ତୁ ।' ମାତ୍ର ଏତିକି କହି ନିଜେ ଲଜ୍ଜିତ ହେଲା । କାରଣ ନିଜେ ନବୁଝି ପାରୁଥିଲେ ବି ସେ ଜାଣିଥିଲା ଯେ ସେମାନେ ବେଶ୍ ଜୋରରେ କଥା ହେଉଛନ୍ତି । ତା'ପରେ ତା' ସାମ୍ନାରେ ଥିବା କାନ୍ଥ ଯେମିତି ଦୁଇଭାଗ ହୋଇଗଲା ଝଲକାଏ ଶୀତଳ ପବନ ତା' ଆଡ଼କୁ ବୋହି ଆସିଲା ଆଉ ତା' ପାଖରେ ଗୋଟିଏ ସ୍ୱର କହୁଥିବାର ଶୁଣିଲା—'ପ୍ରଥମେ ସେ ଯିବ ବୋଲି କହୁଥିଲା, ତୁମେ ହଜାର ଥର କହିଲଣି ଯେ ଆଗରେ ଦ୍ୱାର ମାତ୍ର ସେ ତ ଯାଉନି ।' କେ' ଦେଖିଲା ଯେ ସେ ବାହାର ଦ୍ୱାର ପାଖରେ ଛିଡ଼ା ହୋଇଛି । ସେଇ ଝିଅଟି ଦ୍ୱାରଟିକୁ ଖୋଲି ଦେଇଛି । ଯେମିତି ହଠାତ୍ ସବୁଶକ୍ତି ତା'ପାଖକୁ ଏକା ଥରକେ ଫେରିଆସିଲା । ମୁକ୍ତିର ପୁରୁଣା ସ୍ୱାଦ ଚାଖିବା ପାଇଁ ସାଙ୍ଗେ ସାଙ୍ଗେ ସେ ଗୋଟିଏ ପାଦ ସିଡ଼ିର ପାହାଚରେ ଦେଇ ତାକୁ ଆଣିଥିବା ଲୋକମାନଙ୍କ ପାଖରୁ ବିଦାୟ ନେବା ପାଇଁ ବାରମ୍ବାର କହିବାକୁ ଲାଗିଲା—'ବହୁତ ଧନ୍ୟବାଦ ।' ତା'ପରେ ସେମାନଙ୍କ ସହ ବାରମ୍ବାର କରମର୍ଦ୍ଦନ କଲା । ସେ ଭାବିଲା, ଯେ ଅଫିସର ନିରୁଜ ପବନରେ ଅଭ୍ୟସ୍ତ ସେମାନେ ସିଡ଼ି ଦେଇ ବୋହି ଆସୁଥିବା ନିର୍ମଳ ପବନରେ ଅଣନିଶ୍ୱାସୀ ହୋଇ ଯାଉଛନ୍ତି । ତେଣୁ ସେତିକି ବେଳେ କେ' ସେମାନଙ୍କୁ ଛାଡ଼ିଆସିଲା ।

Digitized by srujanika@gmail.com

ସେମାନେ ତା' କଥାର ଜବାବ ଦେଇ ପାରିଲେନି । ଆଉ କେ' ଯଦି ତା ପଛରେ ସେ କବାଟକୁ ଖୁବ୍ ଶୀଘ୍ର ବନ୍ଦ କରି ଦେଇ ନଥାନ୍ତା ତେବେ ଝିଅଟି ନିଶ୍ଚୟ ପଡ଼ିଯାଇଥାଆନ୍ତା । କ୍ଷଣକ ପାଇଁ କେ' ଛିଡ଼ା ହେଲା । ପକେଟ୍ ଆଇନା ସାହାଯ୍ୟରେ ତାର ଅସଜଡ଼ା ବାଳକୁ ସଜାଡ଼ି ଦେଲା । ପାହାଚରେ ପଡ଼ିଯାଇଥିବା ଟୋପିଟିକୁ ଉଠାଇ ନେଲା, ସେଇ ଷୋଡ଼ଶୀଟି ନିଶ୍ଚୟ ଟୋପିଟିକୁ ସେଇଠି ପକାଇ ଦେଇଥିବ ଖୁସିରେ ତା' ଦେହ ଆଉ ମନ ହାଲୁକା ହୋଇ ଯାଇଥିଲା । ଟୋପିଟିକୁ ଧରି ବଡ଼ ବଡ଼ ପାଦପକାଇ ସେ ପାହାଚରେ ଏମିତି ଜୋର୍‌ରେ ଚାଲିବାକୁ ଲାଗିଲା ଯେ ସେ ନିଜ ବ୍ୟବହାରରେ ନିଜେ ଡରିଗଲା । ତା ନିଜର ସ୍ୱାସ୍ଥ୍ୟବାନ ଦେହର ବଳିଷ୍ଠ ଗଠନ ଆଗରୁ କେବେ ତାକୁ ଏତେ ବିସ୍ମିତ କରି ପାରିନଥିଲା । ତାର ଦେହ କଅଣ ଗୋଟିଏ ପରିବର୍ତ୍ତନର ସୂଚନା ଦେଉଛି ଆଉ କଅଣ ଗୋଟିଏ ନୂଆ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଛି । ସୁଯୋଗ ପାଇବା ମାତ୍ରେ ଜଣେ ଡାକ୍ତରଙ୍କ ପରାମର୍ଶର ଚିନ୍ତାକୁ ସେ ନିଜ ମନରୁ ପୁରା ବାଦ ଦେଇ ପାରିଲାନି । ସେ ମନେ ମନେ ନିଜକୁ ଉପଦେଶ ଦେବାରେ ଲାଗିଲା । ସେ ଠିକ୍ କରି ନେଲା ଯେ ଏହାପରେ ସବୁ ରବିବାର ସେ ଏମିତି ଅକାରଣରେ ନ କଟାଇ ଭଲ ଭାବରେ କଟାଇବ ।



Digitized by srujanika@gmail.com

## ଚତୁର୍ଥ ପରିଚ୍ଛେଦ

# ଫ୍ରେଲେନ୍ ବାର୍ସନାର୍‌ର ବନ୍ଧୁ

ଗତ କିଛିଦିନ ହେଲା ଫ୍ରେଲେନ ସହ ପଦଟିଏ କଥା ହେବା ପାଇଁ ବି କେ' ସୁଯୋଗ ପାଇଲାନି । ତା ସହ ଟିକିଏ ଦେଖା କରିବା ତା ପାଇଁ ଅସମ୍ଭବ, ସବୁ ପ୍ରକାର ଚେଷ୍ଟା ସେ କରିଚି । କିନ୍ତୁ ସବୁବେଳେ ଫ୍ରେଲେନ ତାକୁ ଠକିଦେଲା । କେ' ଅଫିସ୍‌ରୁ ସିଧା ଆସି ତା ଘର ସୋଫାରେ ବସେ । ଆଲୁଅ ଲିଭାଇ ଦେଇ, ଦ୍ୱାର ଖୋଲି ରଖି ବାହାର ହଲ ଘରକୁ ନିର୍ବିଷ୍ଟ ମନରେ ଅନାଇ ରହିଥାଏ । ଯିବା ବାଟରେ ଯଦି ଗୃହକରଣୀ ବାହାରକୁ ଖାଲି ଦିଶୁଥିବା ତା ଘରଟିକୁ ବନ୍ଦ କରି ଦେଇଯାଏ ତେବେ କେ' କିଛି ସମୟ ପରେ ଉଠିପଡ଼ି ପୁଣିଥରେ ଦ୍ୱାର ଖୋଲିଦିଏ । ତା କାମରେ ବାହାରିଯିବା ପୂର୍ବରୁ ଫ୍ରେଲେନ୍‌କୁ ଏକୁଟିଆ ଭେଟିବା ଆଶାରେ କେ' ପ୍ରତିଦିନ ସକାଳେ ଘଣ୍ଟାଏ ଆଗରୁ ଉଠେ । କିନ୍ତୁ ଏତେ ଚେଷ୍ଟା ଭିତରୁ ଗୋଟିଏ ହେଲେବି ସଫଳ ହେଲାନି । ଫଳରେ ତା ପାଖକୁ ସେ ଗୋଟିଏ ଚିଠି ଲେଖିଲା । ତା ଘର ଆଉ ଅଫିସ ଠିକଣାରେ ତାକୁ ପଠାଇଲା, ଏ ଚିଠିରେ ସେ ତାର ବ୍ୟବହାର ସପକ୍ଷରେ ଯୁକ୍ତି ବାଢ଼ିଥିଲା, ସବୁପ୍ରକାର କ୍ଷତିପୂରଣ ଦେବା ପାଇଁ ପ୍ରସ୍ତୁତ ଅଛି ବୋଲି ଜଣାଇଥିଲା । ପୁଣି ପ୍ରତିଜ୍ଞା କରିଥିଲା, ଫ୍ରେଲେନ୍ ତା ପାଇଁ ଯେଉଁ ସୀମା ଧାର୍ଯ୍ୟ କରିବ ତାକୁ ସେ କେବେ ଟପିଯିବନି । ପୁଣି ପ୍ରାର୍ଥନା କରିଥିଲା ଯେ ତା ସହ ଥରେ ଦେଖା କରିବାର ସୁଯୋଗ ଦେଉ, ଟିକିଏ କଥା କହିବାକୁ ଅନୁମତି ଦେଉ । ବିଶେଷତଃ ତା ସହ ପରାମର୍ଶ ନକରି ଯେତେବେଳେ ସେ ଫ୍ର ଗ୍ରୁବାକ୍ ସହ କିଛି ବନ୍ଦୋବସ୍ତ କରି ପାରିବନି । ଶେଷରେ ଚିଠିରେ ଜଣାଇଥିଲା ଯେ, ଆସନ୍ତା ରବିବାର ଦିନ ସେ ନିଜ କୋଠରୀରେ ତା ପାଇଁ ସାରାଦିନ ଅପେକ୍ଷା କରିବ । ଅନ୍ତତଃ ତା ପାଖରୁ କୌଣସି ଗୋଟିଏ ସୂଚନା ପାଇଁ ସେ ଅପେକ୍ଷା କରିବ । ଯେଉଁ ସୂଚନା ଦ୍ୱାରା କି ସେ ଜଣାଇଦେବ ଯେ, ତାର ଅନୁରୋଧ ରକ୍ଷା

Digitized by srujanika@gmail.com

କରେ ବା ଯଦି ରକ୍ଷା ନ କରେ ତାହେଲେ ତାର ସବୁକଥାକୁ ମାନିନେବା ପାଇଁ ଶପଥ କରି ସରେବ କାହିଁକି ରକ୍ଷା କରିବ ନାହିଁ ତାର କାରଣ ଜଣାଇଦେବ । ତାର ଚିଠି ବା ସେ ଚିଠିର ଉତ୍ତର କିଛି ହେଲେ ଟେଣିଲାନି । ତଥାପି ରବିବାର ଦିନ କିଛି ସୂଚନା ମିଳିଲା । ଯାହାର ଅର୍ଥ ବେଶ୍ ପରିଷ୍କାର । ବନ୍ତି ପକାଲେ ତାହାର ସ୍ବୀକୃତି ଦେଇ କେ' ହଲ ଘର ଭିତରେ ଏକ ଅସାଧାରଣ ଗଣ୍ଡଗୋଳ ଲକ୍ଷ୍ୟ କଲା । ସେଇ ଦୃଶ୍ୟ ତା ଆଗରେ ସବୁ ପରିଷ୍କାର କରି ଦେଲା । ଟଙ୍ଗସ୍ତୀ ଭଣ୍ଡାର ଜଣେ ଶିକ୍ଷୟିତ୍ରୀ ସେ ଜଣେ ଜର୍ମାନୀ ଝିଅ, ତାର ନାମ ମୋଣ୍ଟେଗ୍ । ଏ ଝିଅଟି ବଡ଼ ଟେଗା । ରଙ୍ଗ ଛେଚାଲିଆ ଆଉ ଟିକେ ଷ୍ଟୋଟେଇ ବୁଲେ । ବର୍ତ୍ତମାନ ପର୍ଯ୍ୟନ୍ତ ସେ ନିଜେ ଗୋଟିଏ କୋଠରୀ ନେଇ ରହୁଥିଲା । କିନ୍ତୁ ଆଜି ଏଇ ଝିଅଟି ଫ୍ରଲିନ୍ ବ୍ରାସ୍‌ନାର୍‌ର କୋଠରୀ ଭିତରକୁ ପଶି ଆସିଚି । ସେ ଘଣ୍ଟା ଘଣ୍ଟା ଧରି ହଲ୍ ଘରେ ଖୋଜା ଖୋଜିରେ ଲାଗି ରହିଛି । ଅନ୍ତର୍ବାସ, ବାହାରର ପୋଷାକ ପରି ଗୋଟେ ନା ଗୋଟେ ନିହାତି ଦରକାରୀ ଜିନିଷଗୁଡ଼ିକୁ ସେ ସେମିତି ହଲ୍‌ରେ ଛାଡ଼ି ଆସିଛି । ଆଉ ସେଇଥି ପାଇଁ ଘର ଭିତରକୁ ବାରମ୍ବାର ପଶିବାକୁ ବାଧ୍ୟ ହେଉଛି ।

ଯେତେବେଳେ ଫ୍ରୁ ଗ୍ରୁବାକ୍ ଘର ଭିତରକୁ କେ'ର ସକାଳ ଖାଇବା ନେଇ ଆସିଲା କେ' ବାଧ୍ୟ ହୋଇ ଦୁଇ ଜଣଙ୍କ ଭିତରେ ଥିବା ନୀରବତାକୁ ଭାଙ୍ଗିଲା ସେଇଦିନଠାରୁ ଗ୍ରୁବାକ୍ କେ'କୁ ରଗାଇ ଦେଇଥିଲା ତଥାପି ତା' ପାଇଁ ନିହାତି ଶ୍ରେଷ୍ଠ ଶ୍ରେଷ୍ଠ କାମ କରିବାରେ ବି ସେ ଲାଗିଥିଲା । କଫି ଢାଳୁଢାଳୁ କେ' ପଚାରିଲା—'ଆଜି ହଲ୍ ଘରେ ଏତେ ପାଟି ଗୋଳ କାହିଁକି ? ଆଉ କେତେ-ବେଳେ ପାଟି ଗୋଳ ହୋଇଥିଲେ ଚଳିନଥାନ୍ତା ? ଏଇ କାଗାଟା କଅଣ ରବିବାର ଦିନହିଁ ପରିଷ୍କାର ହେବା ନିହାତି ଦରକାର ?' ଯଦିଓ ଗ୍ରୁବାକ୍ ଆଡ଼କୁ ଚାହିଁ ନଥିଲା ତଥାପି ସେ ଲକ୍ଷ୍ୟ କଲା ଯେ ଗ୍ରୁବାକ୍ ଅସ୍ବସ୍ତିର ଗୋଟିଏ ନିଶ୍ବାସ ମାରିଲା । ଏଇ ପ୍ରଶ୍ନଗୁଡ଼ିକ ଯଦିଓ ବଡ଼ କଡ଼ା ତଥାପି ଗ୍ରୁବାକ୍ ବୁଝୁଥିଲା ଯେମିତି ତା' ପାଇଁ କ୍ଷମା ଥିଲା ବା କ୍ଷମା ମିଳିବାର କ୍ଷେତ୍ର ପରିଷ୍କାର କରି ଦେଇଥିଲା ।

ଗ୍ରୁବାକ୍ କହିଲା—'କାଗାଟା କେବେ ପରିଷ୍କାର ହୋଇନି । ଫ୍ରଲେନ୍ ମୋଣ୍ଟେଗ୍ ଫ୍ରଲେନ୍ ବ୍ରାସ୍‌ନାର୍ ସହିତ ଘର ଭିତରେ ଏଣେ ତେଣେ ବୁଲୁଛି ଏବଂ ତାର ଜିନିଷ ସବୁ ସଜାଡ଼ୁଛି ।' ଏତିକି କହି ସେ ଚୁପ ରହିଲା । ଆଉ କିଛି କହିଲାନି । କଥାଟାକୁ କେ' କେମିତି ନେଉଛି ଆଉ ତାକୁ ଅଣେଇ ଯିବାକୁ ସୁଯୋଗ ଦେଉଛି କି ନାହିଁ ପ୍ରଥମେ ସେ ତାକୁ ଲକ୍ଷ୍ୟ କଲା କିନ୍ତୁ କିଛି ନକହି କଫି ଗୋଳାଇବାରୁ ଫ୍ରୁ ଗ୍ରୁବାକ୍ ସେହିପରି ଅନିଶ୍ଚିତ ଅବସ୍ଥାରେ ପଡ଼ିରହିଲା । କିଛି

Digitized by srujanika@gmail.com

ସମସ୍ତ ପରେ କେ' ତା' ଆଡ଼କୁ ଅନାଇ ପଚାରିଲା—'ଫ୍ରଲିନ୍ ବ୍ରାସ୍ନାର୍ ଉପରେ ତୁମର ସେ ଆଗ ସନ୍ଦେହକୁ ଭୁଲିଲଣି ନା ନାହିଁ ?' ଫ୍ରୁ ଗ୍ରୁବାକ ଯେମିତି ଏହି ପ୍ରଶ୍ନଟିକୁ ହିଁ ଚାହିଁ ବସିଥିଲା । କେ' ଆଡ଼କୁ ସେ ତାର ହାତ ବଢ଼ାଇ କହିବାକୁ ଲାଗିଲା—'ଶୁଣିଲ କେ ! ତୁମେ ମୋର ଗୋଟିଏ ଅତି ସାମାନ୍ୟ କଥାକୁ ଖୁବ୍ ବେଶୀ ଧରିନେଇଛ । ମୁଁ ତୁମକୁ ବା ଆଉ କାହାକୁ ବାଧିବ ବୋଲି କେବେ ଭାବି ନଥିଲି । ତୁମେ ମୋତେ ବହୁତ ଦିନରୁ ଜାଣିଛ । ଏ ବିଷୟରେ ତୁମେ ନିଶ୍ଚିତ । ତୁମେ ଜାଣି ପାରିବନି ଏଇ କେତେଦିନ ହେଲା ମୁଁ କେତେ ଦହଗଞ୍ଜ ହେଉଛି । ମୁଁ ମୋର ଭଡ଼ାଟିଆଙ୍କ ବିରୁଦ୍ଧରେ କହିବି ଏକଥା କେ' ତୁମେ ବିଶ୍ୱାସ କଲ ? ଆଉ କହିଲ ତୁମକୁ ମୁଁ ନୋଟିସ୍ ଦେବି, ତୁମକୁ ନୋଟିସ୍ ଦେବି···।' ଶେଷକଥା ପଦକ କୋହରେ ପରିଣତ ହେଲା । ସେ ତାର ଏପ୍ରନ୍‌କୁ ଟେକି ମୁହଁ ପୋଛି ପୋଛି ଜୋରରେ କାନ୍ଦି ପକାଇଲା । 'ଗ୍ରୁବାକ୍ ତୁମେ କାନ୍ଦନି', କେ' ଝରକା ଆଡ଼କୁ ଚାହିଁ କହିଲା । ସେ ସେତେବେଳେ ପ୍ରକୃତରେ ଫ୍ରଲିନ୍ ବ୍ରାସ୍ନାର କଥା ଭାବୁଥିଲା । ଆଉ ଭାବୁଥିଲା ଯେ ସେ ଗୋଟିଏ ଅପରିଚିତ ଝିଅକୁ ତା ଘରକୁ ଆଣିଛି । କେ' ଯେତେବେଳେ ଝରକାଆଡୁ ଆଖି ଫେରାଇ ଦେଖିଲା ଯେ, ଗ୍ରୁବାକ୍ ତଥାପି କାନ୍ଦୁଚି ସେ ପୁଣିଥରେ କହିଲା—

'ଦୟାକରି ତୁମେ କାନ୍ଦନି, ମୁଁ ଯାହା କହିଲି ସେମିତି କିଛି ଭାବିନି । ମୁଁ ଆଦୌ କିଛି ନଭାବି କହିଚି । ଆମେ ଦୁହେଁ ଦୁହିଁଙ୍କୁ ଖାଲି ଭୁଲ୍ ବୁଝୁଁଛୁ । ଏମିତି ସାଧାରଣତଃ ପୁରୁଣା ବନ୍ଧୁମାନଙ୍କ ଭିତରେ ହୋଇଥାଏ ।' ଗ୍ରୁବାକ୍ ନିଜ ମୁହଁରୁ ଏପ୍ରନ କାଢ଼ି ଦେଖିଲା ପ୍ରକୃତରେ କେ' ଶାନ୍ତ ପଡ଼ିଛି କି ନାହିଁ ।

'ଛାଡ଼ ଯାହା ହେବାର ହେଲଣି' ଏହା ପରେ ସାହାସ କରି ପୁଣି କହିଲା—'ତୁମେ କ'ଣ ବିଶ୍ୱାସ କରିପାରିଲ ଯେ ଜଣେ ଅଚିହ୍ନା ଝିଅପାଇଁ ମୁଁ ତୁମ ବିରୁଦ୍ଧରେ ଯିବି ? ଏପରି କହିବାର ଉଦ୍ଦେଶ୍ୟ ହେଲା ସେ ଗ୍ରୁବାକ୍‌ର ମୁହଁରୁ ଜାଣିବାକୁ ଚାହୁଁଥିଲା ଯେ ତାର ପୂର୍ବରୁ କ୍ୟାପ୍‌ଟେନ୍ କିଛି କଥା ବାହାରେ କହିଚି କି ନାହିଁ । ଗ୍ରୁବାକ୍ ଟିକିଏ ଶାନ୍ତିରେ ନିଶ୍ୱାସ ମାରିଲା । ତାର ଗୋଟିଏ ଗୁଣ ହେଲା ମନ ଟିକିଏ ହାଲୁକା ହୋଇଗଲେ ସେ ବୋକାଙ୍କ ପରି କିଛି ଗୋଟେ କରିଦିଏ । ସେ କହି-ଉଠିଲା—'ଠିକ୍ ସେଇକଥା ଟା କେ', ଠିକ୍ ସେଇକଥାତ ମୁଁ ନିଜକୁ ପଚାରୁଛି । କାହିଁକି ଫ୍ରଲେନ୍ ବ୍ରାସ୍ନାର ପାଇଁ କେ'ର ମୁଣ୍ଡବ୍ୟଥା ? ତା'ପାଇଁ ସେ ମୋ ସାଥିରେ କାହିଁକି କଳି କରେ ? ସେତ ଜାଣେ ତା'ପାଖରୁ· ଟିକିଏ କଡ଼ାକଥା ଶୁଣିଲେ ମୋତେ ନିଦ ହୁଏନି । ମୁଁ ତ ନିଜଆଖିରେ ଯାହା ନଦେଖିଚି ସେମିତି କିଛି କଥା ସେ ଝିଅ ବିରୁଦ୍ଧରେ ତାକୁ କହିନି ।'

Digitized by srujanika@gmail.com

'କେ' କିଛି ଉତ୍ତର ଦେଲାନି । ପ୍ରଥମ ଶବ୍ଦଟି ତା'ପାଖରୁ ଶୁଣିବା ମାତ୍ରେ ତାକୁ ତାପରୁ ବାହାର କରିଦେବା ଉଚିତ୍‌ଥିଲା, ମାତ୍ର ସେମିତି କିଛି କରିବାକୁ ସେ ଚାହିଁଲାନି । ସେ ଖାଲି କଫି ପିଇବାରେ ବ୍ୟସ୍ତ ରହି ଜଣାଇ ଦେବାକୁ ଚାହୁଁଥିଲା ଯେ ଗ୍ରୁନାକ୍‌ର ଉପସ୍ଥିତି ତା'ପାଖରେ ବିରକ୍ତିକର । ବାହାରେ ଫ୍ରଲେନ୍ ମୋଣ୍ଟେଗ୍‌ର ଘୋଷରା ପାଦଶବ୍ଦ ସେ ଶୁଣୁଥିଲା । ହଲ୍‌ଘରେ ସେ ଏପାଖ ସେପାଖ ହେବାରେ ଲାଗିଥାଏ । ଦ୍ୱାର ଆଡ଼କୁ ଦେଖାଇ କେ' ପଚାରିଲା—'ଶୁଣୁଛ ତ ?' 'ହଁ' ଦୀର୍ଘଶ୍ୱାସ ଟିଏ ଛାଡ଼ି ଗ୍ରୁନାକ୍ କହିଲା । 'ମୁଁ ତ ତାକୁ ସାହାଯ୍ୟ କରିବି ବୋଲି କହୁଥିଲି । ଏମିତିକି ମୋ ସ୍ତ୍ରୀକଣ୍ଠୀକୁ—କହିଥିଲି ତାକୁ ସାହାଯ୍ୟ କରିବ । କିନ୍ତୁ ସେ ଏକଜିଦିଆ । ସେ ଜିଦିଧରିଲେ ଯେ କେହି ସବୁ ଅସବାବ ପତ୍ର ଉଠାଇବ । ପ୍ରକୃତରେ ଫ୍ରଲେନ୍ ବ୍ରାସ୍‌ନାର ପାଇଁ ମୁଁ ଆଶ୍ଚର୍ଯ୍ୟ ହେଉଛି । ମୁଁ ଏବେ ଅନୁତାପ କରୁଛି କାହିଁକି ମୋଣ୍ଟେଗ୍‌କୁ ମୋର ଭଡ଼ାଟିଆ କଲି । କିନ୍ତୁ ଏବେ ଦେଖୁଛି ଯେ ବ୍ରାସ୍‌ନାର ତାକୁ ନିଜ କୋଠରୀରେ ରଖୁଛି ।'

କପ୍‌ତଳେ ମିଳାଇ ନଥିବା ଚାମଚ କୁ ସ୍ମୁଚ୍‌ରେ ଫେଣ୍ଟୁ ଫେଣ୍ଟୁ କେ' କହିଲା—'ତୁମେ ସେଥିପାଇଁ ଚିନ୍ତା କରନା । ସେଥିରେ ତୁମର କିଛି କ୍ଷତି ହେଉଛି କି ?'

'ନା' ମୋର କିଛି କ୍ଷତି ହେଉନି । ବରଂ ଲାଭ ହେଉଛି । ମୋ' ହାତରେ ଗୋଟିଏ କୋଠରୀ ବଳୁଛି ଯେଉଁଠିକି ମୁଁ ମୋର ପୁତୁରା ସେ କେପ୍‌ଟେନ୍‌କୁ ରଖି-ପାରିବି । କାଳେ ସେ ତୁମର ଅସୁବିଧା କରିବ ତାହାହିଁ ମୋର ଚିନ୍ତା । କାରଣ ସେ ତ ତୁମ ପାଖଘରେ ରହିବ, ଆଉ ତାର ବିସ୍ମରଣକ୍ତ ବୋଲି କିଛି ନାହିଁ ।'

'କି ଆଶ୍ଚର୍ଯ୍ୟ କଥା'—ଠିଆ ହୋଇପଡ଼ି କେ' କହିଉଠିଲା ।

'ମୋର ଅସୁବିଧା ହେବାର ପ୍ରଶ୍ନ ଉଠୁନି । ତୁମେ ଭାବୁଛ ମୁଁ ଯେମିତି ଖୁବ୍ ସଚେତନ, କାରଣ ମୁଁ ମୋଣ୍ଟେଗ୍‌ର ଘୋଷରା ଚାଲିକୁ ଆଦୌ ସହ୍ୟକରି ପାରୁନି । ହେଇ ସେ ପୁଣି ଥରେ ଆସିଲାଣି—ଏଥର ସେଆଡ଼ୁ ଫେରିଆସୁଛି ।' ଗ୍ରୁନାକ୍ ବଡ଼ ଅସହାୟ ଅନୁଭବ କଲା । 'କେ' ତାକୁ କହିବକି ସେ ବର୍ତ୍ତମାନ ତାର ଜିନିଷ ପତ୍ର ଟଣାଟଣି ବନ୍ଦ କରିବ ? ତୁମେ ଯଦି ଚାହଁ ମୁଁ ତାକୁ ସାଙ୍ଗେ ସାଙ୍ଗେ କହିବି ।'

କେ' କହିଲା—'କିନ୍ତୁ ତାକୁ ତ ଫ୍ରଲେନ୍‌ର କୋଠରୀକୁ ଆସିବାକୁ ପଡ଼ିବ ।'

'ହଁ' ଗ୍ରୁନାକ୍ କହିଲା । କେ' କଣ କହିଲା ତାର ଅର୍ଥ ସେ ଠିକ୍‌ଭାବେ ଧରିପାରିଲାନି ।

Digitized by srujanika@gmail.com

'ଡାକ୍ତରଲେତ ତାଙ୍କୁ ତାର ଜିନିଷପତ୍ର ଆଣିବା ପାଇଁ ଅନୁମତି ଦେବାକୁ ପଡ଼ିବ।' କେ' କହିଲା ଏବଂ ଗ୍ରୁବାକ୍ କେବଳ ମାତ୍ର ମୁଣ୍ଡ ଝୁଙ୍କାଇଲା, ବାହାରକୁ ଜାହିର ହେଉଥିବା ତାର ମୂକ ଅସହାୟତା ଯାହାକି କେ'କୁ ଅସ୍ଥିର କରିଦେଲା। ସେ ଝରକା ପାଖରୁ ଦ୍ୱାର ପର୍ଯ୍ୟନ୍ତ ଏପାଖ ସେପାଖ ବୁଲିବାକୁ ଲାଗିଲା। ଏବଂ ଏମିତି କରିବା ଦ୍ୱାରା ଗ୍ରୁବାକ୍‌କୁ ଆଉ ଘର ଭିତରୁ ଖସିଯିବାର ସୁଯୋଗ ଦେଲାନି। ଯାହାକି ସେ ସୁଯୋଗ ପାଇଥିଲେ କରିଥାଆନ୍ତା।

କେ' ଠିକ୍ ଦ୍ୱାରପାଖରେ ପହଞ୍ଚିଛି ସେତେବେଳେ ବାହାରେ ଠକ୍‌ଠକ୍ ଶବ୍ଦ ହେଲା। ଷ୍ଟିକ୍‌ନାଇ ଠକ୍‌ଠକ୍ କରୁଥିଲା। ସେ ଆସି କହିଲା ଯେ ମଣ୍ଟାଗ୍, କେ' ସହ ପଦେ ଦୁଇପଦ କଥା କହିବାକୁ ଚାହେଁ, ଆଉ ସେଇଥିପାଇଁ ସେ ଖାଇବା ଘରେ ଅପେକ୍ଷା କରି ତାଙ୍କୁ ସେଠାକୁ ଡ଼ାକିଛନ୍ତି। କେ' ଟିକେ ଚିନ୍ତାଶୀଳ ଭାବରେ ଖବରଟାକୁ ଶୁଣିଲା ଏବଂ ଏକପ୍ରକାର ଅଟ୍ଟହାସ୍ୟ ଆଖିରେ ପୁରା ବିବ୍ରତ ହୋଇ ପଡ଼ିଥିବା ଗ୍ରୁବାକ୍ ଆଡ଼କୁ ଅନାଇଲା। ତା ଚାହାଣିରୁ ଜଣାପଡୁଥିଲା ଯେମିତି ଫ୍ରଲେନ୍ ମଣ୍ଟାଗ୍‌ର ଏ ନିମନ୍ତ୍ରଣ ବିଷୟରେ ସେ ବହୁତ ଆଗରୁ ଜାଣିପାରିଥିଲା ଏବଂ ଗ୍ରୁବାକ୍‌ର ଭଡ଼ାଟିଆମାନଙ୍କ ପାଖରୁ ସେ ରବିବାର ସକାଳେ ମିଳିଥିବା ସମସ୍ତ ଯନ୍ତ୍ରଣାଦାୟକ ବ୍ୟବହାର ସହିତ ଠିକ୍ ତାଳ ଦେଇଥିଲା। ସେ ଷ୍ଟିକ୍‌ନାଇ ହାତରେ ସାଙ୍ଗେ ସାଙ୍ଗେ ଯାଉଛି ବୋଲି ଖବର ପଠାଇଦେଇ କୋଟ୍‌ଟା ବଦଳାଇବା ପାଇଁ ଆଲମାରି ପାଖକୁ ଗଲା। ଫ୍ରଲେନ୍ ମଣ୍ଟାଗ୍‌ର ବ୍ୟବହାରରେ ଦୁଃଖ ପ୍ରକାଶ କରୁଥିବା ଗ୍ରୁବାକ୍ ପାଇଁ ତାର କିଛି କହିବାର ନଥିଲା—କେବଳ ସକାଳ ଖାଇବା ଟ୍ରେଟିକୁ ଉଠାଇ ନେବାକୁ ଅନୁରୋଧ କରିବା ବ୍ୟତୀତ।

'କାହିଁକି? ତୁମେତ କେଉଁଥିରେ ଟିକିଏ ହେଲେ ହାତମାରିବ।'

'ଓଃ, ଏହାକୁ ଉଠାଇନିଅ।' କେ' ପାଟିକରି ଉଠିଲା।

ତାକୁ ଜଣାଗଲା ଯେମିତି ଫ୍ରଲେନ୍ ମଣ୍ଟାଗ୍ ସେ ଖାଇବା ଜିନିଷ ସାଥିରେ ମିଶିଯାଇଛି ଆଉ ତାକୁ ଅଖାଦ୍ୟକରି ପକାଇଛି।

ପ୍ରବେଶ ହଲ୍ ଭିତର ଦେଇ ଗଲାବେଳେ ସେ ଫ୍ରଲେନ୍ ବ୍ରାସ୍‌ନାରର କୋଠରୀ ବନ୍ଦଥିବା ଦ୍ୱାର ଆଡ଼କୁ ଅନାଇଲା। ଏପର୍ଯ୍ୟନ୍ତ ସେଠାକୁ ସେ ନିମନ୍ତ୍ରିତ ହୋଇନାହିଁ। କେବଳ ଖାଇବା ଘରକୁ ଯାହା ଡ଼କାହୋଇଛି। ସେ ଖାଇବା-ଘରର ଦ୍ୱାରକୁ ଖୋଲି ଦେଲା। ଖୋଲିବା ଆଗରୁ ଠକ୍ ଠକ୍ ବି କଲାନି।

ଘରଟି ବଡ଼ ଅଣଓସାରିଆ ଆଉ ଦୀର୍ଘ। ଗୋଟିଏ ମାତ୍ର ବଡ଼ ଝରକା। ଘରଟିରେ ବେଶୀ ଆସବାବପତ୍ର ରଖିବା ପାଇଁ ଆଦୌ ଜାଗାନାହିଁ। କେବଳ

Digitized by srujanika@gmail.com

ଦୁଇଟି କପବୋର୍ଡ଼ ଦ୍ୱାରର ଦୁଇ କଡ଼ରେ ରହିପାରିବା ଭଳି ସ୍ଥାନ । ଘରର ବାକି ସ୍ଥାନଟି ଖାଇବା ଟେବୁଲ ମାଡ଼ିବସିଛି । ଫଳରେ ଘର ଭିତରେ ପଶିବା ଅସମ୍ଭବ । ଟେବୁଲ ସଜା ସରିଥାଏ । ଅନେକ ଲୋକଙ୍କ ପାଇଁ ସଜା ହୋଇଥିଲା, କାରଣ ରବିବାର ଦିନ ପ୍ରାୟ ସବୁ ଭଡ଼ାଟିଆ ତାଙ୍କର ମଧ୍ୟାହ୍ନ ଭୋଜନ ସେହିଠାରେହିଁ କରିଥାଆନ୍ତି ।

କେ' ଯେତେବେଳେ ପଶିଲା ଝରକାପାଖରୁ ମଣ୍ଟାଗ୍ ଟେବୁଲ୍‌ର ଗୋଟିଏ କଡ଼ ଦେଇ ଧୀରେ ଧୀରେ ତାକୁ ଭେଟିବା ପାଇଁ ଆଗେଇ ଆସିଲା । ଦୁହେଁ ଦୁହିଁଙ୍କୁ ନୀରବରେ ସ୍ୱାଗତ ଜଣାଇଲେ । ତାପରେ ସେ ସାଧାରଣ ସ୍ୱରରେ କହିଲା— 'ମୁଁ କିଏ ତୁମେ ଜାଣିଚ କି ନାହିଁ ମୁଁ ଜାଣେନା ।' କୁଞ୍ଚିତ କପାଳରେ କେ' ତା ଆଡ଼କୁ ଅନାଇଲା । 'ଅବଶ୍ୟ ମୁଁ ଜାଣେ । ତୁମେତ ଏଠାରେ ଗ୍ରୁବାକ୍ ସହିତ ଅନେକଦିନ ହେଲା ରହିଆସୁଛ, ନୁହେଁ କି ? ମୁଁ ଭାବୁଛି ତୁମେ ଅନ୍ୟ ଭଡ଼ାଟିଆଙ୍କ ବିଷୟରେ ଜାଣିବା ପାଇଁ ବେଶୀ ଆଗ୍ରହ ପ୍ରକାଶ କରିନାହଁ ।' ମଣ୍ଟାଗ୍ କହିଲା । କେ' କହିଲା 'ନା ନା' ।

'ଆପଣ କଅଣ ବସିବେ ନାହିଁ ?' ମଣ୍ଟାଗ୍ ପଚାରିଲା । ଚୁପ୍‌ଚାପ୍ ସେ ଦୁହେଁ ଦୁଇଟି ଚେୟାର ଟାଣି ଆଣି ଟେବୁଲ୍ ଶେଷରେ ସାମ୍ନା ସାମ୍ନି ବସିପଡ଼ିଲେ । କିନ୍ତୁ ମଣ୍ଟାଗ୍ ସାଙ୍ଗେ ସାଙ୍ଗେ ଠିଆ ହୋଇପଡ଼ିଲା କାରଣ ସେ ତାର ହାତବ୍ୟାଗ୍‌ଟି ଝରକା ପାଖରେ ଛାଡ଼ି ଆସିଥିଲା । ତେଣୁ ତାକୁ ଆଣିବା ପାଇଁ ସେ ଉଠିପଡ଼ିଲା । କୋଠରୀର ଏମୁଣ୍ଡରୁ ଆର ମୁଣ୍ଡଯାଏ ଗଲା । ହାତରେ ଥଳିଟିକୁ ହଲାଇ ହଲାଇ ଫେରିଆସି ସେ କହିଲା—'ତୁମକୁ କିଛି କହିବାପାଇଁ ମୋର ଜଣେ ବନ୍ଧୁ ମୋତେ କହିଛନ୍ତି । ବାପ୍ ଏତିକି । ସେ ନିଜେ ଆସିଥାଆନ୍ତେ ମାତ୍ର ଆଜି ଅସୁସ୍ଥ । ତାକୁ କ୍ଷମା କରିବାପାଇଁ ସେ ଆପଣଙ୍କୁ କହିଛନ୍ତି ଏବଂ ମୋ କଥା ଶୁଣିବାପାଇଁ ଆପଣଙ୍କୁ ଅନୁରୋଧ କରିଛନ୍ତି । ଆପଣଙ୍କୁ କିଛି ଅଧିକା କହିବା ତାର ଉଚିତ୍ ନୁହେଁ । ବରଂ ମୁଁ କିଛି ଅଧିକ କହିବି । କାହିଁକନା ମୁଁ ଅଧିକ ନିରପେକ୍ଷ । ଆପଣଙ୍କର କ'ଣ ସେମିତି ମନେ ହେଉନାହିଁ ?' 'ଆଚ୍ଛା ସେଥିରେ ବା କଅଣ କହିବାର ଅଛି ?' କେ' କହିଲା । ଫ୍ରଲେନ୍ ମୋଣ୍ଟାଗ୍ ତା ଓଠ ଆଡ଼କୁ ଏକ ଦୃଷ୍ଟିରେ ଚାହିଁରହି ଥିବାର ଦେଖି କେ' ବଡ଼ ଅସ୍ୱସ୍ତିବୋଧ କରୁଥାଏ । ସେ ଯେକୌଣସି ଶବ୍ଦ ଉଚ୍ଚାରଣ କରୁନା କାହିଁକି ସେସବୁ ଉପରେ ତା ସ୍ୱାଧୀନ ପ୍ରଭାବ ବିସ୍ତାର କରିବାକୁ ଚେଷ୍ଟାକଲାଣି । 'ତା'ସହ ବ୍ୟକ୍ତିଗତ ସାକ୍ଷାତକାର ପାଇଁ ଅନୁରୋଧ କଲେ ଫ୍ରଲେନ୍ ନିଶ୍ଚିତଭାବେ ମନା କରିଦିଏ । ତା' ଠିକ୍ ।' ମୋଣ୍ଟାଗ୍ କହିଲା । 'କିମ୍ବା ତା' ଆଦୌ ସତ ନୁହେଁ । ତୁମେ ବରଂ କଥାଟିକୁ ଟିକିଏ ବେଶୀ କଡ଼ାକରି

Digitized by srujanika@gmail.com

କହୁଛି । ସାଧାରଣତଃ ସାକ୍ଷାତକାରଗୁଡ଼ିକୁ ଜାଣିଶୁଣି ଗ୍ରହଣ କରାଯାଏନାହିଁ କିମ୍ବା ମନା କରିଦିଆଯାଏ ନାହିଁ । ବରଂ ଏହା ହୋଇପାରେ ଯେ ଗୋଟିଏ ସାକ୍ଷାତ-କାରରେ କୌଣସି ଅର୍ଥ ନଥାଏ । ଏ କ୍ଷେତ୍ରରେ ଏହାହିଁ ହେଉଛି । ତୁମର ଶେଷ କଥାପଦକ ଶୁଣିଲାପରେ ମୁଁ ଖୋଲି ଖୋଲି ଭାବରେ ସବୁ କହିପାରେ । ଛଡ଼ି ହେଉ ବା ମୁହାଁମୁହିଁ ହେଉ ଯେମିତି ହେଲେ ତୁମ ସାଙ୍ଗରେ ମୋର ଯୋଗାଯୋଗ ହେବ ସେଥିପାଇଁ ତୁମେ ମୋ' ବନ୍ଧୁଙ୍କୁ ଅନୁରୋଧ କରିଥିଲ । ବର୍ତ୍ତମାନ ମୋର ବନ୍ଧୁ, (ଅନ୍ତତଃ ସେପରି ତାଙ୍କୁ ଗ୍ରହଣ କରିଛି) କେଉଁ ବିଷୟରେ କଥାବାର୍ତ୍ତା ଆମଭିତରେ ହୋଇପାରେ ତାହା ସେ ଜାଣେ । ତେଣୁ ସେ ନିଶ୍ଚିତ ଯେ (ଅବଶ୍ୟ ଏହାର କାରଣ ମୋତେ ଜଣାନାହିଁ) ଏପରି କଥାବାର୍ତ୍ତା ଯଦି ସମ୍ଭବ ହୁଏ ତେବେ ଏହା ଦ୍ୱାରା କାହାରି କିଛି ଲାଭ ହେବନାହିଁ । ସତ କହିବାକୁ ଗଲେ କାଲିସୁଦ୍ଧା ସେ ମୋତେ ଏ ବିଷୟରେ କିଛି କହିନଥିଲା । ଖାଲି କଥାପ୍ରସଙ୍ଗରେ ସୂଚନା ଦେଇଥିଲା ଯେ ଏପରି ସାକ୍ଷାତ ଉପରେ ତୁମେ ବି ବେଶୀ ଗୁରୁତ୍ୱ ଦେଇନାହଁ । କାରଣ ଏପରି ଏକ ସାକ୍ଷାତକାର ହଠାତ୍ ତୁମ ମୁଣ୍ଡକୁ ଜୁଟିଲା । ଆଉ ଏହା କିପରି ଅର୍ଥହୀନ ଯଦି ଏବେବି ନଜାଣିଛ ତାହା ତୁମେ ଖୁବ୍ ଶୀଘ୍ର ଜାଣିପାରିବ । ମୁଁ ତାଙ୍କୁ କହିଥିଲି ଯେ ସେ ଯାହା କହୁଛି ତା ସତ ହୋଇପାରେ ଏପରି ଘଟଣାରୁ ପୂରା ମୁକ୍ତି ପାଇବାକୁ ହେଲେ ପୁଣି ଗୋଟିଏ ପରିଷ୍କାର ଜବାବ ପାଇବା ଉଚିତ୍ । ଏ କ୍ଷେତ୍ରରେ ମୁଁ ମଧ୍ୟସ୍ଥ ହେବି ବୋଲି ମୋ' ବନ୍ଧୁକୁ ଜଣାଇଲି । ଏବଂ ବହୁ ବୁଝା ବୁଝି କରିବା ପରେ ସେ ଏଥିରେ ରାଜିହେଲେ । ମୁଁ ଆଶା କରୁଛି ଏହାଦ୍ୱାରା ମୁଁ ତୁମର ସ୍ୱାର୍ଥକୁ ବି ଜଗିପାରିବି । କାରଣ ଶ୍ରେଷ୍ଠ ଶ୍ରେଷ୍ଠ ଘଟଣାଗୁଡ଼ିକରେ ଥିବା ସାମାନ୍ୟତମ ଅନିଶ୍ଚିତତା ଚିନ୍ତାର କାରଣ ହୋଇପଡ଼େ । ତେଣୁ ଯେତେବେଳେ (ଯେମିତି ଏ କ୍ଷେତ୍ରରେ) ଅନିଶ୍ଚିତତାକୁ ସହଜରେ ଦୂର କରିହେବ ତାକୁ ସାଙ୍ଗେ ସାଙ୍ଗେ ଦୂର କରିବା ଉଚିତ ।'

'ଧନ୍ୟବାଦ'—କେ' କହିଲା ଓ ଧୀରେ ଧୀରେ ଠିଆ ହେଲା । ମୋଣ୍ଟାଗ୍‌କୁ ଦେଖିଲା । ଶେଷରେ ଟେବୁଲ ଏବଂ ଝରକା ଆଡ଼କୁ ଚାହିଁଲା । ସେତେବେଳେ ସାମ୍ନା ଘର ଉପରେ ସୂର୍ଯ୍ୟ କିରଣ ଝଟକୁ ଥିଲା । କେ' ଦ୍ୱାର ଆଡ଼କୁ ଆଗେଇ ଚାଲିଲା । ଫ୍ରଲେନ୍ ମୋଣ୍ଟାଗ୍ ଛିଟ୍କିବାଟ ତା ପଛେ ପଛେ ଗଲା । ଯେମିତିକି ସେ ତାଙ୍କୁ ପୂରା ବିଶ୍ୱାସ କରୁନ । କିନ୍ତୁ ଦ୍ୱାର ପାଖରେ ଉଭୟଙ୍କୁ ପଛକୁ ହଟି ଆସିବାକୁ ପଡ଼ିଲା । କାରଣ ହଠାତ୍ ଦ୍ୱାର ଖୋଲିଗଲା ଆଉ କ୍ୟାପ୍‌ଟେନ୍ ଲେଞ୍ଜ୍ ଭିତରକୁ ପଶି-ଆସିଲେ ।

ପ୍ରଥମଥର ପାଇଁ କେ' ତାଙ୍କୁ ଏତେ ନିକଟରୁ ଦେଖିଲା । ସେ ଜଣେ ଡେଙ୍ଗା ଲୋକ । ବୟସ ଚାଳିଶ ଛୁଇଁଥିବ । ଟାଆଁସିଆ, ମାଉଁସିଆ ମୁହଁ । ଉଭୟ

Digitized by srujanika@gmail.com

କେ' ଏବଂ ମୋଣ୍ଟାଗ୍ ଉଦ୍ଦେଶ୍ୟରେ ସେ ସାମାନ୍ୟ ବାଙ୍କିଗଲେ । ତା'ପରେ ସେ ମୋଣ୍ଟାଗ୍ ପାଖକୁ ଯାଇ ସସମ୍ମାନେ ତା ହାତକୁ ଚୁମ୍ବନ କଲେ । ତାଙ୍କ ଗତିବିଧି ଖୁବ ସହଜ । ମୋଣ୍ଟାଗ୍ ପ୍ରତି ତାଙ୍କ ବ୍ୟବହାର କେ'ର ବ୍ୟବହାରର ଠିକ୍ ବିପରୀତ ତଥାପି କେ'ର ବ୍ୟବହାର ଦ୍ୱାରା ମୋଣ୍ଟାଗ୍ ଅପମାନିତ ବୋଧ କରିନଥିଲା । କାରଣ କ୍ୟାପଟେନ୍ ସହ କେ'ର ପରିଚୟ କରି ଦେବାକୁ ସେ ପ୍ରକୃତରେ ଇଚ୍ଛା କରୁଥିଲା । କିନ୍ତୁ ପରିଚିତ ହେବାକୁ କେ'ର ଇଚ୍ଛା ନଥିଲା । ଏମିତିକି କ୍ୟାପ୍ଟେନ କିମ୍ବା ମୋଣ୍ଟାଗ୍ କାହାରି ପାଖରେ ଭଦ୍ର କିମ୍ବା ନମ୍ର ହେବାକୁ ମଧ କେ'ର ଇଚ୍ଛା ନଥିଲା । ମୋଣ୍ଟାଗ୍‌ର ହାତକୁ ଚୁମ୍ବନ କରିବା ତା ଆଖିରେ କେମିତି ଅଡ଼ୁଆ ଦିଶିଲା । ତାକୁ ଜଣାଗଲା ଯେମିତି ସେ ଦୁଇଜଣ ସାଙ୍ଗ । ବନ୍ଧୁତା ଆଉ ନିସ୍ୱାର୍ଥପରତାର ଯୋଡ଼ିଣୀ ଭିତରେ ବ୍ରାସନାର ସହ ତାର ସମ୍ପର୍କରେ ସେମାନେ ବାଧା ସୃଷ୍ଟି କରିବାକୁ ଚାହାନ୍ତି, ସେମାନଙ୍କ ସମ୍ପର୍କର ଆହୁରି ଅନେକ ନୂଆ ଦିଗ ତା ମନକୁ ଛୁଇଁଲା । ସେ ଭାବିଲା ଯେ, ମୋଣ୍ଟାଗ୍ ଖୁବ୍ ସୁନ୍ଦର ଗୋଟିଏ ଦୁଇପଟ ଧାରଥିବା ହତିଆର ଟିଏ ବାଛିଛି । କେ' ଆଉ ବ୍ରାସନାରର ସମ୍ପର୍କକୁ ସେ ଅଯଥା ବଢ଼ାଇଛି । କେ' ଚାହିଁଥିବା ସାକ୍ଷାତକାରକୁ ବି ସେ ଅଯଥା ବଢ଼ାଇଛି ଏବଂ ତା ସାଙ୍ଗେ ସାଙ୍ଗେ ସେ ଏମିତି କଳ ମୋଡ଼ିଛି ଯେ ଯେମିତିକି ଜଣାପଡ଼ିବ କେ' ସବୁ ବଢ଼ାଇ କହୁଛି । ଠକି ଯାଉଛି ବୋଲି ଶେଷରେ ସେ ବୁଝିବ । କାରଣ କେ' କିଛି ବଢ଼ାଇବାକୁ ଚାହେଁ ନାହିଁ । ସେ ଜାଣେ ଯେ ବ୍ରାସନାର୍ ଜଣେ ସାଧାରଣ ଟାଇ-ପିଷ୍ଟ ଯିଏ କି ବେଶୀ ସମୟ ତାକୁ ବାଧା ଦେଇ ପାରିବନି । ଏହି ନିଷ୍ପତ୍ତିରେ ପହଞ୍ଚିବାରୁ ଗ୍ରୁବାକ୍ ବ୍ରାସନାର ବିଷୟରେ ଯାହା କହିଥିଲା ତାକୁ ଜାଣିଶୁଣି ଭୁଲିବାକୁ ଚେଷ୍ଟା କଲା । ବିଦାୟସୂଚକ ଶବ୍ଦଟିଏ ଉଚ୍ଚାରଣ କରି କୋଠରୀକୁ ଫେରିଗଲା ବେଳେ ଏହିସବୁ କଥା କେ' ଭାବୁଥିଲା । ସେ ସିଧା ନିଜ କୋଠରୀକୁ ଚାଲିଲା । କିନ୍ତୁ ତା' ପଛେ ପଛେ ଖାଇବା ଘରୁ ଆସୁଥିବା ମୋଣ୍ଟାଗ୍‌ର ଚାପାହସ ତା' ମୁଣ୍ଡରେ ଗୋଟିଏ ଅଦ୍ଭୁତ ଖିଆଲ ଜନ୍ମାଇଲା । ସେ ଭାବିଲା ଯେ ବୋଧହୁଏ ଉଭୟ ମୋଣ୍ଟାଗ୍ ଏବଂ କ୍ୟାପ୍ଟେନକୁ ସ୍ତମ୍ଭୀଭୂତ କରିଦେବ । ସେ ଘୂରି ଚାହିଁଲା ଏବଂ ନିଶ୍ଚିତ ହେଲା ଯେ ପାଖ ଘରଗୁଡ଼ିକରୁ ବାଧା ଆସିବାର କୌଣସି ସମ୍ଭାବନା ନାହିଁ । ଚାରିଆଡ଼େ ନୀରବ । ଖାଇବା ଘରୁ ଚାପା ଶବ୍ଦ ଏବଂ ରୋଷେଇ ଘରକୁ ଯାଇଥିବା ବାଟଘରେ ଗ୍ରୁବାକ୍‌ର କଥା ବ୍ୟତୀତ ଆଉ କିଛି ଶୁଭୁନାହିଁ । ଏ ସୁଯୋଗ ତାକୁ ଅପୂର୍ବ ବୋଲି ମନେ ହେଲା । ସେ ବାର୍ସନାର୍‌ର ଦ୍ୱାର ପାଖକୁ ଯାଇ ତା କବାଟରେ ଧୀରେ ଧୀରେ ଠକ୍‌ଠକ୍ କଲା । ଯେତେବେଳେ କୌଣସି ଜବାବ୍ ମିଳିଲାନି ସେ ଆଉ ଥରେ ଠକ୍‌ଠକ୍ କଲା । କିନ୍ତୁ ଏଥର ବି କିଛି ଜବାବ୍ ଆସିଲାନି । ସେ କ'ଣ ଶୋଇ ପଡ଼ିଛି ? ନା ପ୍ରକୃତରେ ସେ ଅସୁସ୍ଥ ? କେବଳ କେ'

Digitized by srujanika@gmail.com

ସେ ଏପରି ମୃଦୁ କରାଘାତ କରୁଛି । ଏହା ନିଶ୍ଚିତଭାବେ ଜାଣି ସେ କ'ଣ ନଥିବାର ଛଳନା କରୁଛି ? ସେ ଛଳନା କରୁଛି ବୋଲି କେ' ଧରିନେଲା ଏବଂ ଆହୁରି ଜୋର୍‌ରେ କରାଘାତ କରିବାକୁ ଲାଗିଲା । ଶେଷରେ ଯେତେବେଳେ କିଛି ଫଳ ହେଲାନି ସେ ଅତି ସାବଧାନତାର ସହ ଦ୍ୱାର ଖୋଲିଦେଲା । ଦ୍ୱାର ଖୋଲିଲାବେଳେ ସେ ଜାଣିଥିଲା ଯେ ସେ ଯାହା କରୁଛି ଭୁଲ୍ କରୁଛି; ଏମିତିକି ଭୁଲ୍ ଅପେକ୍ଷା ଆହୁରି ଅର୍ଥହୀନ କାମଟିଏ କରୁଛି । କୋଠରି ଭିତରେ କେହି ନଥିଲେ । ଅଧିକନ୍ତୁ କେ'ଦେଖିଥିବା କୋଠରି ସହ ଏହାର ଆଦୌ ସାମଞ୍ଜସ୍ୟ ନଥିଲା । କାନ୍ଥକୁ ଲାଗି ସାମ୍ନାସାମ୍ନି ଦୁଇଟି ଖଟଣା ପଡ଼ିଥିଲା, ଦ୍ୱାର ପାଖରେ ଢିନୋଟି ଚଉକି ଉପରେ ଲୁଗାପଟା ଓ ଅନ୍ୟବାସ ସବୁ ଜମା ହୋଇଥିଲା । ଗୋଟିଏ ଆଲମାରି ଖୋଲା ପଡ଼ିଥିଲା । ଫ୍ରଲେନ୍ ବାର୍ସନାର ବାହାରକୁ ଯାଇଥିଲା । ଯେତେବେଳେ ମୋଣ୍ଟାଗ୍ ଖାଇବା ଘରେ କଥା କହୁଥିଲା । କେ' ଆଶ୍ଚର୍ଯ୍ୟ ହେଲାନି । ଏପରି ସମୟରେ ବାର୍ସନାର୍‌କୁ ସହଜରେ ପାଇବା କେବେ ସେ ଆଶା କରିନଥିଲା । ସେ ଏପରି ଚେଷ୍ଟା କରିଥିଲା କେବଳ ମୋଣ୍ଟାଗ୍‌କୁ ରଗାଇବା ପାଇଁ । କିନ୍ତୁ ଯେତେବେଳେ ସେ କ୍ୟାପ୍ଟେନ ଆଉ ମୋଣ୍ଟାଗ୍ ଖୋଲା ଖାଇବା ଘର ସାମ୍ନାରେ କଥା ହେଉଥିଲେ, ଦେଖିଲା ତା' ପାଇଁ ଚମକଟା କମ୍ ହେଲାନି । ସେମାନେ ବୋଧହୁଏ ଏ ସମସ୍ତ ସମୟ ଏଠାରେ ଠିଆହୋଇ ରହିଛନ୍ତି । ଅଉ ତା ଉପରେ ଯେ ନଜର ରଖିଛନ୍ତି ଏ ବିଷୟ ସେମାନେ ବଡ ଚତୁରତାର ସହ ଏଡ଼ାଇ ଦେଇପାରିଛନ୍ତି । ଖୁବ୍ ଧୀରେ ଧୀରେ ସେମାନେ କଥା କହୁଥିଲେ । ତା ସହ କେ'ର ଗତିବିଧିକୁ ଲକ୍ଷ୍ୟ ରଖୁଥିଲେ । ଏସବୁ ସତ୍ତ୍ୱେ ତାଙ୍କ ଚାହାଣି କେ' ଉପରେ ବେଶ୍ ଭାରି ବୋଧ ହେଉଥିଲା । ସେ ଯେତେ ଶୀଘ୍ର ପାରେ କବାଟ ବନ୍ଦ କରି କାନ୍ଥ କଡେ କଡ଼େ ନିଜ କୋଠରି ଆଡ଼କୁ ଚାଲିଗଲା ।



Digitized by srujanika@gmail.com

## ପଞ୍ଚମ ପରିଚ୍ଛେଦ

# ଗୋବୁକ୍ ବାଲା

କିଛିଦିନ ତଳେ ଦିନେ ସଂଧ୍ୟାରେ କେ' ତା' ନିଜ ଅଫିସରୁ ବ୍ୟାଙ୍କର ଅଳିନ୍ଦ ଦେଇ ପାହାଚ ଆଡ଼କୁ ଯାଉଥିଲା । ସେତେବେଳକୁ ସମସ୍ତେ ଗଲେଣି । ଅଫିସ ଗୁଡ଼ିବାପାଇଁ ବୋଧହୁଏ ସେ ଶେଷବ୍ୟକ୍ତି । କେବଳ ଦୁଇଜଣ କର୍ମଚାରୀ ତଥାପି ଲଣ୍ଠନର ମିଳନ ଆଲୁଅରେ କାମ କରିବାରେ ବ୍ୟସ୍ତ ଥା'ନ୍ତି । ସେତିକିବେଳେ ଦ୍ୱାରପଛପଟୁ କାହାର ଦୀର୍ଘଶ୍ୱାସ କେ' ଶୁଣିଲା । ଯଦିଓ କେ' କେବେହେଲେ ସେ ଦ୍ୱାରକୁ ଖୋଲିନଥିଲା ତଥାପି ସେ ଧରି ନେଇଥିଲା ଯେ ସେ ଦ୍ୱାର ହେଉଛି ଗୋଦାମଘର । ସ୍ତମ୍ଭୀଭୂତ ହୋଇ କେ' ଠିଆ ହୋଇଗଲା । ସେ ଯେ ଭୁଲ ଶୁଣି-ନାହିଁ ଏ ବିଷୟରେ ନିଶ୍ଚିତ ହେବାପାଇଁ କାନଡ଼େରି ଆଉଥରେ ଭଲ କରି ଶୁଣିବାକୁ ଲାଗିଲା । ସବୁଆଡ଼େ ଚୁପ୍‌ଚାପ୍ । ମାତ୍ର କିଛିସମୟ ପରେ ପୁଣିଥରେ ସେଇ ଦୀର୍ଘଶ୍ୱାସ ଆରମ୍ଭ ହେଲା । ପ୍ରଥମେ ସେ ଭାବିଲା ଡେସପାଚ୍ ବିଭାଗରୁ ଗୋଟିଏ କର୍ମଚାରୀକୁ ଡାକି ଆଣିବ । କାରଣ ତାର ସାକ୍ଷିଟିଏ ଦରକାର । ମାତ୍ର ତାର କୌତୂହଳ ଏତେ ବଢ଼ିଗଲା ଯେ ତାକୁ ଦମନ କରି ନପାରି ସେ ଦ୍ୱାରକୁ ଜବରଦସ୍ତ ଖୋଲି ଦେଲା । ତାର ଅନୁମାନ ଠିକ୍ ଥିଲା, ପ୍ରକୃତରେ ସେ ଘରଟି ଗୋଟିଏ ଗୋଦାମ ଘର । ଅସଂଖ୍ୟ ଅଦରକାରୀ କାଗଜ ପୁଡ଼ିଆ, ଖାଲି ମାଟି ପାତ୍ର ଆଉ କାଳି ବୋତଲ ଆଦି ଠିକ୍ ଦ୍ୱାର ବନ୍ଦ ପଛକୁ ଗଦା ହୋଇଛି । କିନ୍ତୁ କୋଠରୀ ଭିତରେ ତିନିଜଣ ଲୋକ ଠିଆ ହୋଇଛନ୍ତି । ନୁଆଁଣିଆ ଛାତ ଯୋଗୁ ସେମାନେ ସିଧା ଠିଆ ନହୋଇ ପାରି ନଇଁ କରି ଠିଆ ହୋଇଥିଲେ । ଥାକ ଉପରେ ମହମ ବତିଟିଏ ଧୀରେ ଧୀରେ ଜଳୁଥାଏ ।

'ଏଠି ସବୁ କ'ଣ କରୁଛ ?' ଉତ୍ତେଜିତ ହୋଇ ଖୁବ୍ ତରତରରେ କେ' ପଚାରିଦେଲା । ସେ କିନ୍ତୁ ଖୁବ୍ ପାଟି କରି ପଚାରି ନଥିଲା । ସେମାନଙ୍କ ଭିତରୁ ଜଣେ, ଯିଏ କି ଅନ୍ୟ ଦୁଇଜଣଙ୍କ ଉପରେ ନିଶ୍ଚିତଭାବେ ହାକିମି କରୁଥିଲା, ପ୍ରଥମେ

Digitized by srujanika@gmail.com

ପ୍ରତି ରହିଲା । ତା' ଦେହରେ ଏକପ୍ରକାର ଶ୍ରେଷ୍ଠ ଚମତ୍କାର ପୋଷାକ ଥିଲା । ଏ ପୋଷାକ ତାର ଗଳା, ପ୍ରାୟ କମ୍ପା ବାହୁକୁ ଢାଙ୍କିନଥିଲା ସେ କିଛି ଜବାବ୍ ଦେଲାନ । କିନ୍ତୁ ଅନ୍ୟ ଦୁଇଜଣ ପାଟି କରି ଉଠିଲେ ।

'ସାର୍' ଆମେ ଆଜି ଗୃହକୁ ମାଡ଼ ଖାଇବୁ । କାରଣ ବିଗ୍ୱର କରୁଥିବା ମାଜିଷ୍ଟ୍ରେଟ୍‌ଙ୍କ ପାଖରେ ଆମ ନାମରେ ଆପଣ ଆପତ୍ତି କରିଥିଲେ ।'

କେ' ସେତେବେଳେ ଯାଇ ଜାଣିଲା ଯେ ଏମାନେ ହେଉଛନ୍ତି ଓ୍ୟାଡ଼ର ଫ୍ରାନ୍‌ଜ ଏବଂ ୱିଲେମ୍ । ତୃତୀୟ ଲୋକଟି ଧରିଥିବା ଗୃହଟି କେବଳ ଏଇ-ମାନଙ୍କୁ ପିଟିବା ପାଇଁ ।

'କ'ଣ ହେଲା ?' 'ମୁଁ ତ କେବେ ତୁମ ନାମରେ ଆପତ୍ତି କରିନାହିଁ । ମୋ' କୋଠରୀରେ କ'ଣ ହେଲା ସେଇକଥା କେବଳ ଜଣାଇଥିଲି । ଅବଶ୍ୟ ତୁମର ବ୍ୟବହାର ସମ୍ପୂର୍ଣ୍ଣ ଭାବେ ଦୋଷଶୂନ୍ୟ ନଥିଲା ।' ଆଶ୍ଚର୍ଯ୍ୟ ହୋଇ କେ' ଏତିକ କହିଲା ।

'ସାର୍ ! କେତେ କମ୍ ଦରମା ଆମେ ପାଉ ଏକଥା ଆପଣ ଯଦି ଜାଣିଥାନ୍ତେ ତେବେ ଆପଣ ଆମ ଉପରେ ଏତେ ନିଷ୍ଠୁର ହୋଇ ନଥାନ୍ତେ । ପାଳିବା ପାଇଁ ମୋର ଛୁଆପିଲା ଅଛନ୍ତି । ଆଉ ଫ୍ରାନ୍‌ଜ୍‌ର ବାହା ହେବାର ଅଛି । ଏପରି ଅବସ୍ଥାରେ ମଣିଷ ଯାହା ପାଏ ତାକୁ ମାରି ନେବାକୁ ଚାହେଁ । କାରଣ କଠିନ ପରିଶ୍ରମ କରି କେହି କେବେ ବଡ଼ ଲୋକ ହୋଇନାହିଁ । ଏମିତକି ଯଦି ସେ ଦିନରାତି ପରିଶ୍ରମ କରେ ତେବେ ବି ଏହା ସମ୍ଭବ ନୁହେଁ । ତୁମର ସେ ସାର୍ଟଗୁଡ଼ିକ ବଡ଼ ଆକର୍ଷଣୀୟ । ଅବଶ୍ୟ ସେପରି ଜିନିଷ ଓ୍ୟାଡ଼ରମାନଙ୍କ ପାଇଁ ମନା । କିନ୍ତୁ ଏହା ଭୁଲ । ଆମର ଏଠି ଚଳି ଆସୁଥିବା ପ୍ରଥା ଅନୁସାରେ ସାର୍ଟ ପ୍ୟାଣ୍ଟ୍‌ଗୁଡ଼ିକ ସବୁ ଓ୍ୟାଡ଼ର ମାନଙ୍କର ହକ୍ । ମୋତେ ବିଶ୍ୱାସ କରନ୍ତୁ ସବୁବେଳେ ଏହା ହୁଏ । ଆଉ ଏଇଟାବି ବୁଝିବା କଥା ଯେ ଯେଉଁ ହତଭାଗ୍ୟର ଗିରଫ୍ ହେବା ନିଶ୍ଚିତ ତା' ପାଖରେ ଏ ସବୁର ବା କି ମୂଲ୍ୟ ? କିନ୍ତୁ ଯଦି ସିଏ ସମସ୍ତଙ୍କ ଆଗରେ ଆପତ୍ତି ଉଠାଏ ତେବେ ଦଣ୍ଡ ନିଶ୍ଚିତ ।' ୱିଲେମ୍ ଏତିକ କହିଲା । ସେତେ-ବେଳେ ଫ୍ରାନ୍‌ଜ୍ ତୃତୀୟ ଲୋକ ପାଖରୁ ଦୂରେଇ ରହିବା ପାଇଁ ନିଜକୁ ୱିଲେମ ପଛପଟେ ଲୁଚାଉଥିଲା ।

'ଏସବୁ ବିଷୟରେ ମୋର କିଛି ଧାରଣା ନଥିଲା ବା ମୁଁ କେବେ ଦାବି କରି ନାହିଁ ଯେ ତୁମେ ସବୁ ଦଣ୍ଡ ପାଅ । ମୁଁ ଖାଲି ଗୋଟିଏ ନୀତି ସପକ୍ଷରେ ଯାହା କହୁଥିଲି ।'

Digitized by srujanika@gmail.com

ଉଇଲେମ୍ ଅନ୍ୟ ଓ୍ୟାଡ଼ର୍ ଆଡ଼କୁ ଚାହିଁ କହିଲା—

'ଫ୍ରାନ୍‌କ୍ ମୁଁ କହି ନଥିଲି ଯେ ଏ ଲୋକ ଆମକୁ ଦଣ୍ଡ ଦେବା ପାଇଁ କେବେ କହିନଥିବେ ? ବର୍ତ୍ତମାନ ଆମେ ଦଣ୍ଡ ଭୋଗୁଛୁ ବୋଲି ସେ ମୋଟେ ଜାଣନ୍ତି ବି ନାହିଁ ।'

'ଏମାନେ ଯାହା କହୁଛନ୍ତି ତାକୁ ବିଶ୍ୱାସ କରି ନାହିଁ ।' କେ'କୁ ସେ ତୃତୀୟ ଲୋକଟି କହିଲା । ଏ ଦଣ୍ଡ ଯେତିକ ନ୍ୟାୟୋଚିତ ସେତିକି ଅବଶ୍ୟମ୍ଭାବୀ ।'

'ତାକୁ ଶୁଣନ୍ତୁନି ।' ଉଇଲେମ୍ କହି ଉଠିଲା । ତୃତୀୟ ଲୋକର କଥାରେ ବାଧା ସୃଷ୍ଟି କରିବା ପାଇଁ ସେ ହାତ ମାରିବାକୁ ଲାଗିଲା ଫଳରେ ବାଡ଼ରେ ବେଶ୍ ପାହାରଟିଏ ପାଇଲା ।

'ଆମେ ଦଣ୍ଡ ପାଇଲୁଁ କେବଳ ତୁମେ ଆମ ନାଁରେ ଆପତ୍ତି କଲ ବୋଲି । ଯଦି ଆପତ୍ତି କରି ନଥା'ନ୍ତ କିଛି ହୁଅନ୍ତା ନି ।' ଆମେ କ'ଣ କଲେ ସେମାନେ ତାହା ଜାଣି ପାରିଲେ ବି ଆମର କିଛି ହୁଅନ୍ତା ନି । ଏହାକୁ ଆପଣ ନ୍ୟାୟ କହନ୍ତି ? ଆମ ଦୁଇଜଣଙ୍କର, ବିଶେଷତଃ ମୋର, ବିଶ୍ୱାସୀ ଓ୍ୟାଡ଼ର ହିସାବରେ ଭଲ ରେକର୍ଡ଼ ଅଛି । ପରକାଶ୍ୟ ଲୋକ ଭାବରେ କହୁଛି, ତୁମେ ବି ମାନିବ, ଯେ ଆମେ ତୁମକୁ ସୁନ୍ଦର ଭାବରେ ଜଗିଥିଲୁ । ଆମର ଉନ୍ନତି ପାଇଁ ସବୁ ସମ୍ଭାବନା ଥିଲା । ଏଠାରେ ଥିବା ଏହି ଚାବୁକ୍‌ବାଲା ପରି ଆମେ ବି ଚାବୁକ୍‌ବାଲା ହୋଇ ଥାଆନ୍ତୁ । କିନ୍ତୁ ଆମର ଦୁର୍ଭାଗ୍ୟ । ଏହି ଲୋକଟିର ସୌଭାଗ୍ୟ ଯେ ତା' ନାଁରେ କେହି କେବେ ଆପତ୍ତି କରିନାହାନ୍ତି । ପ୍ରକୃତରେ ଆପତ୍ତି ପ୍ରାପ୍ତ ହୁଏ ନାହିଁ । ଆଜି କିନ୍ତୁ ସବୁ ସରିଗଲା । ଆମର ସବୁ ଉନ୍ନତିର ବାଟ ବନ୍ଦ ହୋଇଗଲା । ଏବେ ଆମକୁ ଆହୁରି ଖରାପ କାମ କରିବାକୁ ପଡ଼ିବ । ତା'ଛଡ଼ା ପୁଣି ଆମକୁ ଚାବୁକ୍ ଖାଇବାକୁ ପଡ଼ିବ । ଆଉ ଚାବୁକ୍ ଖାଇବା ଯେ କେତେ କଷ୍ଟ !'

'ଏଇ ବାର୍ଚ୍ଚ ବାଡ଼ିଟି କ'ଣ ଏତେ କଷ୍ଟ ଦେବ ?' ଲୋକଟି ତା' ଆଗରେ ହଲାଉଥିବା ବାଡ଼ିଟିକୁ ଦେଖୁ ଦେଖୁ କେ' ପଚାରିଲା ।

'ପ୍ରଥମେ ତ ଆମକୁ ସବୁ ଲୁଗାପଟା କାଢ଼ି ଦେବାକୁ ପଡ଼ିବ ।' ଉଇଲେମ୍ କହିଲା ।

'ଅଚ୍ଛା' । ଏତିକି କହି କେ' ସେ ଚାବୁକ୍‌ବାଲା ଆଡ଼କୁ ଚାହିଁଲା । ନାବିକର ଦେହ ପରି ସେ ଚାବୁକ୍‌ବାଲାର ଦେହ ଝିଟିଲି ଝିଟିଲି, ମୁହଁଟି ବଡ଼ ରୁକ୍ଷ ଆଉ ପୁରିଲା ପୁରିଲା । 'ଏମାନଙ୍କୁ ଚାବୁକ୍ ମାଡ଼ରୁ ରକ୍ଷା କରିବାର କୌଣସି କିଛି

Digitized by srujanika@gmail.com

ବାଟ ନାହିଁ ?' କେ' ପଚାରିବାରୁ ହସି ହସି ତା' ମୁଣ୍ଡକୁ ହଲଉ ହଲଉ ସେ ଲୋକଟି ଓ୍ୱାର୍ଡ଼ରମାନଙ୍କୁ କହିଲା—'ଲୁଗା କାଢ଼' ଆଉ କେ'କୁ କହିଲା—'ସେମାନେ ଯାହା କହିଲେ କେବେ ତାକୁ ବିଶ୍ୱାସ କରିବ ନାହିଁ । ସେମାନେ ବେତମାଡ଼ ପାଇଁ ଏତେ ଡରି ଯାଇଛନ୍ତି ଯେ ତାଙ୍କର ଯାହା ଟିକେ ବୁଦ୍ଧି ବୃତ୍ତି ଥିଲା ସବୁ ହରାଇ ବସିଛନ୍ତି । ସେ ଉଇଲେମ୍ ଆଡ଼କୁ ଦେଖାଇ କହିଲା—'ଉଦାହରଣ ସ୍ୱରୂପ ତା' ଚାକଷ୍ଟ ବିଷୟରେ ଇଏ ଯାହା କହିଲା ସବୁ ନିହାତି ବାଜେ କଥା । ଦେଖୁତ ସେ କେଡ଼େ ମୋଟା ହୋଇଛି । ତା' ଦେହର ଚର୍ବି ଭିତରେ ତ ପ୍ରଥମ ବେତ ମାଡ଼ର ଦାଗ କୁଆଡ଼େ ହଜିଯିବ । ତୁମେ ଜାଣିଛ ସେ କାହିଁକି ଏତେ ମୋଟା ହୋଇଛି ? ଯେତେ ଲୋକଙ୍କୁ ସେ ଗିରଫ୍ କରେ, ସମସ୍ତଙ୍କ ସକାଳ ଭୋଜନକୁ ସେ ଉଦରସ୍ଥ କରେ । ତୁମ ସକାଳ ଭୋଜନକୁ ସେ ଖାଇନି କି ? ମୁଁ ଯାହା କହିଲି ତୁମେ ନିଜେ ଦେଖ । ଏତେ ବଡ଼ ପେଟ ଥିବା କୌଣସି ଲୋକ କେବେ ଚାବୁକ୍ ବାଲା ହୋଇପାରିବ । ଏହାର ତ ପ୍ରଶ୍ନ ଉଠୁନି ।' ତା ଟ୍ରାଉଜାର୍ର ବେଲ୍ଟ ଢିଲ କରୁକରୁ ଉଇଲେମ୍ କହିଲା 'ଅନେକ ଚାବୁକ୍ ବାଲା ଅଛନ୍ତି ଯେଉଁମାନେ କି ଠିକ୍ ମୋରିପରି ।'

'ନା, ଆମେ ଯାହା କହୁଛୁ ତୋର ଶୁଣିବା ଦରକାର ନାହିଁ । ଲୁଗାପଟା ଖୋଲିବା ତୋର କାମ ।' ଏତିକି କହି ଚାବୁକ୍‌ବାଲା ଉଇଲେମ୍‌ର ବେକ ଉପରେ ତା' ବେତଟିକୁ ଉଠାଇବାରୁ ସେ ଭୟରେ କୁଙ୍କୁରି ଗଲା ।

'ତୁମେ ଯଦି ଏମାନଙ୍କୁ ଛାଡ଼ିଦିଅ ତେବେ ତୁମକୁ ମୁଁ ବହୁତ ବକ୍‌ସିସ୍ ଦେବି ।' ଚାବୁକ୍‌ବାଲା ଆଡ଼କୁ ନ ଚାହିଁ କେ' ଏତିକି କହିଲା କାରଣ ଏମିତି କହିଲାବେଳେ ଉଭୟ ପକ୍ଷ କେହି କାହାକୁ ନଚାହିଁ ନଜର ଏଡ଼ାଇ ଦେବା ଭଲ । ତେଣୁ ଏତିକି କହି କେ' ତାର ପକେଟ୍ ଡାଇରି ବାହାର କଲା ।

'ମୋ' ବିରୁଦ୍ଧରେ ବି ଗୋଟେ ଅଭିଯୋଗ କରିବାକୁ ଚାହୁଁଛ ?' ଆଉ ମୋତେ ବି ଚାବୁକ୍ ମାଡ଼ ଦେବାର ବନ୍ଦୋବସ୍ତ କରୁଛ ?' ଚାବୁକ୍‌ବାଲା କହିଲା ।

'ନା ନା ! ମୋ କଥା ଟିକିଏ ଶୁଣ, କଥାଟାକୁ ଟିକିଏ ବୁଝ ।' କେ' କହିଲା । 'ଏମାନେ ଦଣ୍ଡ ପାଆନ୍ତୁ ବୋଲି ଯଦି ମୁଁ ଚାହୁଁଥାଆନ୍ତି ତେବେ ବର୍ତ୍ତମାନ ଟଙ୍କା ଦେବାକୁ ଚାହାନ୍ତି ନାହିଁ । ମୁଁ କବାଟ ବନ୍ଦ କରି ଦିଅନ୍ତି । ଆଖି କାନ ବନ୍ଦ କରି ସିଧା ଘରକୁ ଯାଇଥାଆନ୍ତି । କିନ୍ତୁ ତାହା ତ ମୁଁ କରିନି । ପ୍ରକୃତରେ ମୁଁ ଚାହେଁ ସେମାନେ ଖଲାସ୍ ହୁଅନ୍ତୁ । ଯଦି ମୁଁ ଜାଣିଥାଆନ୍ତି ଯେ ସେମାନେ ଏମିତି ଦଣ୍ଡ ପାଇବେ ବା ସେମାନଙ୍କୁ ଏମିତି ଦଣ୍ଡ ଦେଇ ହେବ ତେବେ କେବେହେଲେ ମୁଁ

Digitized by srujanika@gmail.com

ସେମାନଙ୍କ ନାମ କହିବି ନ ଥାଆନ୍ତି । କାରଣ ମୋ' ଦୃଷ୍ଟିରେ ସେମାନେ ଦୋଷୀ ନୁହଁନ୍ତି । ସବୁ ଦୋଷ ଏ ସଙ୍ଗଠନର ଏ ସରକାରୀ କଳର । ବଡ ବଡ଼ ହାକିମ ସବୁ ଦୋଷୀ । ଏମାନେ ନୁହଁନ୍ତି ।'

'ତାହା ସତ ।' ଓ୍ୟାଡ଼ରମାନେ ପାଟି କରି ଉଠିଲେ । ଆଉ ସାଙ୍ଗେ ସାଙ୍ଗେ ସେମାନଙ୍କ ଫୁଙ୍ଗୁଳା ପିଠିରେ ପାହାର ପଡ଼ି ପିଠି ଫାଟିଗଲା ।

'ସେ ବଡ଼ ବଡ଼ ବଗ୍ରରପଡଙ୍କ ଭିତରୁ ଯଦି ଜଣକୁ ତୁମେ ପିଟୁ ଥାଆନ୍ତ । ତା'ହେଲେ ନିଶ୍ଚିତ ଭାବେ ମୁଁ ତୁମକୁ ବାଧାଦିଅନ୍ତି ନାହିଁ ବରଂ ତୁମକୁ ଏପରି ମହତ୍ କାମରେ ଉତ୍ସାହିତ କରିବା ପାଇଁ ଅଧିକ ପଇସା ଦିଅନ୍ତି ।' ଏତିକ କେ' କହିଲା ଏବଂ କହୁଥିଲାବେଳେ ବେତବାଲା ଆଉଥରେ ବେତ ଟେକୁଥିଲା ବେଳେ ବେତକୁ ତଳକୁ ନୁଆଁଇ ଦେଲା । 'ତୁମେ ଯା' କହୁଛ ତା' ବେଶ୍ ଯୁକ୍ତିଯୁକ୍ତ ମନେ ହେଉଛି । କିନ୍ତୁ ମୁଁ କେବେ ଲାଞ୍ଚ ନେବି ନାହିଁ ।' ଲୋକଟି କହିଲା । 'ମୁଁ ଏଠାରେ ଲୋକଙ୍କୁ ଚାବୁକ୍ ଦେବାପାଇଁ ଅଛି ଏବଂ ମୁଁ ନିଶ୍ଚିତ ଭାବେ ସେମାନଙ୍କୁ ଚାବୁକ୍ ମାରିବି ।' ଓ୍ୟାଡ଼ର ଫ୍ରାନ୍‌ଜ୍ ଆଶା କରିଥିଲା ଯେ କେ'ର ହସ୍ତକ୍ଷେପ କିଛି ସୁଫଳ ଦେବ । ତେଣୁ ସେ ପଛକୁ ଚାଲି ଯାଇଥିଲା । ଏବେ ଦ୍ୱାର ପାଖକୁ ଆଗେଇ ଆସିଲା । ସେ କେବଳ ପାଇଜାମାଟି ପିନ୍ଧିଥିଲା । ବର୍ତ୍ତମାନ ସେ ଆଣ୍ଠେଇ ପଡ଼ି କେ'ର ହାତକୁ ଜାବୁଡ଼ି ଧରିଲା ଓ ଧୀରେ ଧୀରେ କହିଲା— 'ତୁମେ ଯଦି ଆମ ଦୁଇ ଜଣଙ୍କୁ ରକ୍ଷା କରିନପାରିବ ତେବେ ଅତି କମ୍‌ରେ ମୋତେ ମୁକ୍ତି ଦେବାପାଇଁ ଚେଷ୍ଟାକର । ଉଇଲେମ୍ ମୋ' ଠାରୁ ବୟସରେ ବଡ଼ । ମୋ'ପରି ପୁଣି ଏତେ ସଚେତନ ନୁହେଁ । ଏହାଛଡ଼ା ବେତ ଖାଇବାରେ ଆଗରୁ ତାର ଅନୁଭୂତି ଅଛି । କିନ୍ତୁ ବର୍ତ୍ତମାନ ଯାଏ ମୁଁ କେବେ ଏମିତି ଲାଞ୍ଛିତ ହୋଇନାହିଁ । ପୁଣି ମୁଁ ତାଙ୍କୁହିଁ ଅନୁସରଣ କରିଛି । ସେ ମୋର ଗୁରୁ । ଭଲରେ ହେଉବା ମନ୍ଦରେ ହେଉ ମୁଁ ତା'ର ପଦାଙ୍କ ଅନୁସରଣ କରିଛି । ମୋ' ମାନସୀ ବିଚରା କ'ଣ ହେବ ଜାଣିବା ପାଇଁ ବ୍ୟାଙ୍କ୍ ଦ୍ୱାର ପାଖରେ ଅପେକ୍ଷା କରି ରହିଛି । ମୁଁ ବଡ଼ ଲଜ୍ଜିତ ଆଉ ଦୟନୀୟ ହୋଇ ପଡ଼ିଛି ।' ସେ କେ'ର ସାର୍ଟରେ ତାର ଲୁହ ଭିଜା ମୁହଁକୁ ପୋଛିଲା । 'ମୁଁ ଆଉ ବେଶୀ ସମୟ ଅପେକ୍ଷା କରି ପାରିବିନାହିଁ ।' ଚାବୁକ୍ ବାଲା ଏତିକି କହି ଦୁଇହାତରେ ବେତକୁ ଧରି ଫ୍ରାନ୍‌ଜ୍ ଉପରେ ପାହାରେ ଦେଲା ବେଳେ ଉଇଲେମ୍ ଗୋଟିଏ କୋଣରେ କୁଙ୍କୁଡ଼ି କାଙ୍କୁଡ଼ି ହୋଇ ଚୁପ୍‌ଚାପ୍ ଠିଆ ହୋଇଥିଲା । ମୁହଁ ବୁଲାଇବାର ବି ସାହାସ ତାର ନଥିଲା । ତା'ପରେ ଫ୍ରାନ୍‌ଜ୍ ଗଳାରୁ ଗୋଟିଏ ଚିତ୍କାର ଶୁଭିଲା । ଚିତ୍କାରଟି ନିହାତି ଅଦ୍ଭୁତ ଓ ଅପରିବର୍ତ୍ତନୀୟ ମନେହେଲା । ଜଣେ ମଣିଷ ପାଖରୁ ଏ ଶବ୍ଦ ଆସୁଥିବାର ଜଣାପଡୁ ନଥିଲା । ଏହା

Digitized by srujanika@gmail.com

ଯେମିତ ଗୋଟିଏ ଭଙ୍ଗା ଯନ୍ତ୍ର ପାଖରୁ ଆସୁଥିଲା । ସମସ୍ତ ଅଳନ୍ଦ ଏହି ଚିତ୍କାରରେ ପ୍ରତିଧ୍ୱନିତ ହୋଇ ଉଠିଲା । ଘରର ସମସ୍ତେ ଏହା ନିଶ୍ଚିତ ଭାବେ ଶୁଣିଥିବେ ।

'ଏମିତ ପାଟି କରନା ' କେ' କହି ଉଠିଲା । ସେ ତା'ପାଖରେ ଠିଆ ହୋଇ ସେଇ ଆଡକୁ ଚାହିଁଥିଲା, ଯେଉଁଆଡୁ ସେ କିରାଣୀ ଦୁଇଜଣ ଏବେ·ନିଶ୍ଚୟ ଧାଇଁ ଆସିବେ । କିନ୍ତୁ ସେ ଫ୍ରାନ୍‌ଜ୍‌କୁ ପେଲି ଦେଲା । ଖୁବ୍ ଜୋର୍‌ରେ ନହେଲେ ବି ଅଧା ମୂର୍ଚ୍ଛିତ ଲୋକଟାକୁ ତଳେ ପକାଇ ଦେବାପାଇଁ ତାହା ଯଥେଷ୍ଟ ଥିଲା । ଫ୍ରାନ୍‌ଜ୍ ତଳେ ଭୂଇଁକାମୁଣ୍ଡ ପଡ଼ି ରହିଲା । ତଥାପି ଫ୍ରାନ୍‌ଜ୍ ଦଣ୍ଡରୁ ମୁକ୍ତ ପାଇ-ପାରିଲା ନାହିଁ । ସେ ଯେଉଁଠି ପଡ଼ିଥିଲା ସେଇଠି ତା' ପିଠିରେ ବେତମାଡ଼ ବର୍ଷି ଚାଲିଲା । ସେ ଏଚର ଭୂଇଁ ଉପରେ ଖାଲି ଗଡ଼ିବାରେ ଲାଗିଥାଏ । ବର୍ତ୍ତମାନ ଦୂରରୁ ଗୋଟିଏ କିରାଣୀ ଆସୁଥିବାର ଦେଖାଗଲା । ତାର କିଛି ଦୂରରେ ଆଉ ଜଣେ । କେ' ସାଙ୍ଗେ ସାଙ୍ଗେ ଦ୍ୱାର ବନ୍ଦ କରିଦେଲା ଏବଂ ପାଖରେ ଥିବା ଝରକା ପାଖକୁ ଗଲା । ସେ ଝରକାରୁ ଅଗଣା ଦେଖେ ତେଣୁ ସେ ସାଙ୍ଗେ ସାଙ୍ଗେ ତାକୁ ଖୋଲିଦେଲା । ଚିତ୍କାର ପୂରା ବନ୍ଦହୋଇ ଯାଇଥିଲା । କିରାଣୀମାନେ ଯେମିତ ଆଉ ନିକଟକୁ ନଆସନ୍ତି ସେଥିପାଇଁ କେ' ପାଟିକରି ଉଠିଲା—'ଏଇଠି ମୁଁ ।'

'ସୁପଝା ସାର୍, କ'ଣ କିଛି ହେଲାକି ?' ସେମାନେ କହିଉଠିଲେ ।

'ନା, ନା କିଛି ହୋଇନି ।' କେ' କହିଲା । କେବଳ ଗୋଟିଏ କୁକୁର ଅଗଣାରେ ରଡ଼ି ଛାଡୁଥିଲା ।' ଯେତେବେଳେ କିରାଣୀମାନେ ଫେରିଗଲେ ସେ କହିଲା-'ଆପଣମାନେ କାମକରିବେ ଯାଆନ୍ତୁ ।' ଏତିକ କହି ଆଉ କଥା ନବଢ଼ାଇବା ପାଇଁ ଝରକା ପାଖରୁ କେ' ନିଜକୁ ଘୁଞ୍ଚାଇ ଆଣିଲା । କିଛି ସମୟ ପରେ ଆଉ ଥରେ ସେ ଯେତେବେଳେ ଅଳନ୍ଦକୁ ଅନାଇଲା ସେତେବେଳକୁ ସେମାନେ ଚାଲି ଯାଇଥିଲେ । କିନ୍ତୁ ସେ ଝରକା ପାଖରେ ଠିଆ ହେଲା । ଗୋଦାମ ଘରକୁ ଫେରି ଯିବାକୁ ତାର ସାହସ ହେଲାନି । ପୁଣି ଘରକୁ ଯିବାକୁ ତାର ଇଚ୍ଛାବି ନଥିଲା ।

ଗ୍ରେଟ ଅଗଣାଟେ । ତାକୁ ଘେରି ରହିଛି ଅଫିସ୍‌ର ସବୁ ଝରକାଗୁଡ଼ିକ । ବର୍ତ୍ତମାନ ସବୁ ଝରକା ଗୁଡ଼ିକରେ ଅନ୍ଧକାର । କେବଳ ସବୁଠାରୁ ଉପର କାଚ ଗୁଡ଼ିକ ଉପରେ ଜହ୍ନ ଅଲୁଅ ମଳିନ ହୋଇ ପଡ଼ିଥାଏ । କେ' ଅଗଣାର ଗୋଟିଏ ଅନ୍ଧାରୁଆ କୋଣକୁ ଖୁବ୍ ନିରେଖି ଦେଖିବାକୁ ଲାଗିଲା । ସେଠାରେ ଗୁଡ଼ାଏ ଠେଲା ଗାଡ଼ି ଜମା ହୋଇଥିଲା ।

ଚାବୁକ୍ ମାଡରୁ ସେମାନଙ୍କୁ ରକ୍ଷା କରିପାରିନଥିବାରୁ କେ' ବଡ଼ ଲାଜି ପଡ଼ୁଥିଲା । କିନ୍ତୁ ଏଥିରେ ତାର ଦୋଷ ନାହିଁ । ଯଦି ଫ୍ରାନ୍‌ଜ୍ ଚିତ୍କାର କରି

Digitized by srujanika@gmail.com

ନଥାଆନ୍ତା । ଅବଶ୍ୟ ବେତମାଡ଼ ଖାଇବା ନିଶ୍ଚିତ ଭାବେ ବଡ଼ କଷ୍ଟଦାୟକ । ତଥାପି ବିପଦବେଳେ ଟିକିଏ ଦମ୍ଭ ଧରିବା ଉଚିତ୍ । ଯଦି ସେ ଚିତ୍କାର କରି ନ ଥାଆନ୍ତା ତେବେ କେ' ନିଶ୍ଚିତ ଭାବେ ସ୍କ୍ରବ୍ ବାଲାକୁ ମନାଇବା ପାଇଁ ଅନ୍ୟ କିଛି ଉପାୟ ଖୋଜିଥାଆନ୍ତା । ଯେତେବେଳେ ଏ ଅନୁଷ୍ଠାନର ସବୁ ତଳିଆ କର୍ମଚାରୀମାନେ ବଦମାସ, ସେତେବେଳେ ଏ ସ୍କ୍ରବ୍ ବାଲା, ଯାର କାମ ସବୁଠାରୁ ହିଂସ୍ର ଓ ଅମାନୁଷିକ, କେମିତିବା ସମସ୍ତଙ୍କଠୁ ଅଲଗା ହେବ ? ଏହାଛଡ଼ା କେ' ଠିକ୍ ଦେଖିଛି କେମିତି ନୋଟ୍ ଦେଖି ତା ଆଖି ଜଳି ଉଠିଥିଲା । ତେଣୁ ସେ ତାର କାମ ଆଉ ଟିକିଏ ଅଧିକ ନିଷ୍ଠାର ସହିତ କରିବାକୁ ଲାଗିଲା କାରଣ ତାର ଅସଲ ମତଲବ ହେଉଛି ଆଉ ଟିକିଏ ଦର ବଢ଼ାଇବା । କେ' କେବେ କାର୍ପଣ୍ୟ କରି ନଥାଆନ୍ତା । କାରଣ ସେ ଓ୍ୱାର୍ଡରମାନଙ୍କୁ ଖଲାସ କରିବାପାଇଁ ପ୍ରକୃତରେ ଉତ୍ସୁକ ଥିଲା । ଯେହେତୁ ସେ ନିଜେ ଏହି ଦୁର୍ନୀତିଗ୍ରସ୍ତ ନ୍ୟାୟାଳୟର ଶାସକଙ୍କ ବିରୁଦ୍ଧରେ ସଂଗ୍ରାମ କରିବାକୁ ବାହାରିଛି ଏପରି କ୍ଷେତ୍ରରେ ହସ୍ତକ୍ଷେପ କରିବା ତାର ନିହାତି କର୍ତ୍ତବ୍ୟ । କିନ୍ତୁ ଯେଉଁ ମୁହୂର୍ତ୍ତରେ ଫ୍ରାନ୍‌ଜ ଚିତ୍କାର କରି ଉଠିଲା ସେତେବେଳେ କୌଣସି ପ୍ରକାର ହସ୍ତକ୍ଷେପ କରିବା ସମ୍ଭବ ହେଲାନି । ସେ କିରାଣୀମାନେ ବା ଅନ୍ୟମାନେ ସେଠାକୁ ଆସି ଗୋଦାମ ଘରେ ତାକୁ ଏପରି ଲୋକମାନଙ୍କ ସାଥିରେ ଆବିଷ୍କାର କରନ୍ତୁ କେ' ଏହା କେବେ ହେବାକୁ ଦିଅନ୍ତା ନାହିଁ । ପ୍ରକୃତରେ କେହି ତା'ପାଖରୁ ଏପରି ଆଉ ଦାବି କରିପାରିବେ ନାହିଁ । ଯଦି ଆଉ ଦରକାର ତେବେ ଅତି ସହଜ ଭାବରେ ସେ ନିଜ ପୋଷାକ ଖୋଲିଦେଇ ସ୍କ୍ରବ୍ ବାଲା ଆଗରେ ଓ୍ୱାର୍ଡରମାନଙ୍କ ପାଇଁ ନିଜ ପିଠି ଦେଖାଇ ଦିଅନ୍ତା । ଅବଶ୍ୟ ନିଶ୍ଚିତ ଭାବରେ ସ୍କ୍ରବ୍ ବାଲା ଏହାକୁ ଗ୍ରହଣ କରନ୍ତା ନାହିଁ । କାରଣ ଏପରି କରିବା ଦ୍ୱାରା ବିନା ଲାଭରେ କର୍ତ୍ତବ୍ୟରେ ହେଳା କରିବା ଅପରାଧରେ ସେ ଜଡ଼ିତ ହୁଅନ୍ତା । ତେଣୁ ଯେ ପର୍ଯ୍ୟନ୍ତ ଏ ବିଷୟର ସ୍ଥିର ଥିବ କୋର୍ଟର କର୍ମଚାରୀଙ୍କ ଏପରି ଦୁର୍ବ୍ୟବହାର ସବୁକୁ କେ'ର ଆଖି ବୁଜିଦେବା ଉଚିତ୍ । ଅବଶ୍ୟ ଯା' ସାଧାରଣ କରିବା କଥା ଏଠାରେ ତା'ବି ପ୍ରଯୁଜ୍ୟ ହୋଇ ପାରିବନି । ସବୁ ଘଟଣାରେ ବନ୍ଦ କରିଦେବା ବ୍ୟତୀତ ସେ ଆଉ କିଛି କରିପାରି ନଥାନ୍ତା । ଏମିତିକି ସେତିକି କରିବା ବି ପୂରା ବିପଦ ଶୂନ୍ୟ ନୁହେଁ । ଏହା ଗୋଟେ ଦୁଃଖର କଥା ଯେ ଶେଷ ମୁହୂର୍ତ୍ତରେ ସେ ଫ୍ରାନ୍‌ଜ୍‌କୁ ଧକ୍କାଟିଏ ଦେଲା । ସେ ଯେଉଁ ଉତ୍ତେଜନା ପୂର୍ଣ୍ଣ ଅବସ୍ଥାରେ ଥିଲା ତାହାହିଁ ଏପରି ବ୍ୟବହାରର ଏକମାତ୍ର ସାନ୍ତ୍ୱନା ।

ଦୂରରୁ ସେ କିରାଣୀମାନଙ୍କର ପାଦଶବ୍ଦ ଶୁଣିବାକୁ ପାଇଲା । ତେଣୁ ତାଙ୍କ ଦୃଷ୍ଟି ଏଡ଼ାଇ ଦେବାପାଇଁ ସେ ଝରକା ବନ୍ଦ କରିଦେଇ ପ୍ରଧାନ ସିଡ଼ି ଆଡ଼କୁ ଯିବାକୁ ଲାଗିଲା । ଗୋଦାମଘର ଦ୍ୱାର ପାଖରେ ଅଳ୍ପ ସମୟ ପାଇଁ ଅଟକି ଯାଇ

Digitized by srujanika@gmail.com

କିଛି ଶବ୍ଦ ଆସୁଅଛିକି ଶୁଣିବାକୁ ଚେଷ୍ଟାକଲା । ସେଠାରେ ଜବର ଖାନାର ମାରିବତା । ଓ୍ୱାଡ଼ରମାନଙ୍କ ବୋଧହୁଏ ସେ ଲୋକଟି ତାଙ୍କ ଚେତା ବୁଡ଼ିବାଯାଏ ପିଟିଛି । ପିଟି ପିଟି ତାଙ୍କ ଦେହରୁ ଭୂତ ଛଡ଼ାଇ ଦେଇଛି । ସେମାନେ ବିଚରା ତା’ ଶକ୍ତି ପାଖରେ ସମ୍ପୂର୍ଣ୍ଣଭାବେ ଆତ୍ମସମର୍ପଣ କରିଛନ୍ତି । କବାଟର ଛିଟିକିଣିକୁ ଧରିବା ପାଇଁ କେ’ର ହାତ ଆପେ ଆପେ ଲମ୍ବି ଯାଇଥିଲା । କିନ୍ତୁ ସେ ନିଜକୁ ସମ୍ଭାଳି ନେଲା । ସେମାନଙ୍କୁ ସାହାଯ୍ୟ କରିବାର ବର୍ତ୍ତମାନ ଆଉ କିଛି ନାହିଁ । ପୁଣି ସେ କଏଦୀମାନେ ଯେକୌଣସି ସମୟରେ ପଦସ୍ଥ ଯାଇ ପାରନ୍ତି । କିନ୍ତୁ ପ୍ରତିଜ୍ଞାକଲା ଯେ କୌଣସିମତେ ଏ ଘଟଣାକୁ ସେ ଗୁପିଦେବ ନାହିଁ । ନିଜର ପାରୁପର୍ଯ୍ୟନ୍ତ ଅସଲ ଦୋଷୀ ସେ ବଡ଼ ବଡ଼ ହାକିମମାନଙ୍କର ମୁକାବିଲା କରିବ । ଯେଉଁମାନେ କି ତା’ଆଗରେ ତାଙ୍କର ମୁହଁ ଦେଖାଇବାକୁ ସାହସ କରି ନାହାନ୍ତି । ବ୍ୟାଙ୍କ୍‌ର ବାହାର ପାହାଚରେ ଓହ୍ଲାଇଲାବେଳେ ସେ ସତର୍କତାର ସହ ସବୁ ଲୋକଙ୍କୁ ଦେଖୁଥାଏ । କିନ୍ତୁ ଏମିତିକି ପାଖ ରାସ୍ତାରେ ବି ଗୋଟିଏ ଝିଅ କାହାକୁ ଅପେକ୍ଷା କରିବାର କୌଣସି ଚିହ୍ନ ବି ପାଇଲା ନାହିଁ । ତେଣୁ ଫ୍ରାନ୍‌ଜ୍‌ର ମାନସୀ ଅପେକ୍ଷା କରିବା କଥା ଖାଲି ମନଗଢ଼ା କାହାଣୀ—ତୁଚ୍ଛାମିଛ ଯଦିଓ ଏହା ଖୁବ୍ ବେଶୀ ଦୋଷାବହ ନୁହେଁ ଖାଲି ଯାହା ନିଜପାଇଁ ଟିକିଏ ସମ୍ବେଦନା ସୃଷ୍ଟି କରିବାପାଇଁ ଉଦ୍ଦିଷ୍ଟ ।

ପରଦିନଗୁଡ଼ିକରେ ମଧ କେ’ ନିଜ ମନକୁ ଓ୍ୱାଡ଼ର ଭିତରୁ ମୁକୁଳାଇ ପାରିଲାନି । ସେ ଅନ୍ୟମନସ୍କ ହୋଇ ପଡ଼ିଲା ଆଉ ନିଜ କାମ ସାରିବାପାଇଁ ତାକୁ ଅନ୍ୟଦିନ ଅପେକ୍ଷା ବେଶୀ ବେଶୀ ସମୟ ଅଫିସ୍‌ରେ ରହିବାକୁ ପଡ଼ିଲା । ଅଫିସ୍‌ରୁ ବାହାରକୁ ଯିବା ବାଟରେ ସେ ଯେତେବେଳେ ଗୋଦାମ ଘର ପାଖ ଦେଇ ଗଲା-ବେଳେ ସେ ଘରର କବାଟ ଖୋଲିବାର ଇଚ୍ଛାକୁ ଦମନ କରି ପାରିଲାନି । କିନ୍ତୁ ଅନ୍ଧାର ଦେଖିବା ପରିବର୍ତ୍ତେ ଏଥର ଯାହା ଦେଖିଲା ସେଥିରେ ସେ ପୁରା ବିଚଳିତ ହୋଇ ପଡ଼ିଲା । ପୂର୍ବଦିନ ସନ୍ଧ୍ୟାରେ ଯାହା ଦେଖିଥିଲା ସବୁ ଠିକ୍ ସେହିପରି ଅଛି । ଚାବୁକ୍ ବାଲା ହାତରେ ଚାବୁକ୍ ଧରି ଠିଆ ହୋଇଛି ଆଉ ସବୁ ପୋଷାକ ପିନ୍ଧି ଓ୍ୱାଡ଼ରମାନେ ବି ସେଠାରେ ଠିଆ ହୋଇଛନ୍ତି । ଥାକରେ ବତି ଜଳୁଛି । ତାକୁ ଦେଖିବାମାତ୍ରେ ସେ ଓ୍ୱାଡ଼ରମାନେ ପାଟି କରି ଉଠିଲେ ।

—‘ସାର୍ !’ ସାଙ୍ଗେ ସାଙ୍ଗେ କେ’ ଧଡ଼୍ କରି କବାଟ ବନ୍ଦ କରି ଦେଲା ଏବଂ କବାଟ ଉପରେ ବିଧା ମାରିବାକୁ ଲାଗିଲା । ଯେମିତିକି ଏ ବିଧା ମାଡ଼ କବାଟକୁ ଆହୁରି ଭଲ କରି ବନ୍ଦ କରିଦେବ । ସେ ପ୍ରାୟ କାନ୍ଦ କାନ୍ଦ ହୋଇ କଏଦୀମାନଙ୍କ ପାଖକୁ ଧାଇଁଲା । ସେତେବେଳେ କଏଦୀମାନେ ଚୁପ୍‌ଚୁପ୍ କ’ଣ

Digitized by srujanika@gmail.com

ସବୁ ଉତ୍ତରବାରେ ବ୍ୟସ୍ତ ଥିଲେ । କେ'ଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇ ମୁଣ୍ଡ ଟେକି ଚାହିଁଲେ ।

'ସେ ଗୋଦାମ ଘରକୁ ସଫା କରିଦିଅ । କରିପାରିବନି ? ଆମେ ସବୁ ଧୂଳିରେ ବୁଡ଼ିଗଲୁ ଯେ ।' କେ' ଚିତ୍କାର କରି କହିଲା । ଅସନ୍ତା କାଲି ସବୁ ସଫା କରିଦେବେ ବୋଲି କିରାଣୀମାନେ ଜବାବ୍ ଦେଲେ । କେ' ମୁଣ୍ଡ ଝୁଙ୍କାଇଲା । ସାଙ୍ଗେ ସାଙ୍ଗେ ଏହି ସମ୍ପର୍କରେ ସଫା କରିବାକୁ ସେ ଆଉ ଜୋର୍ ଦେଇପାରିଲାନି । ଯଦିଓ ସେପରି କରିବାକୁ ପ୍ରଥମେ ଭାବିଥିଲା । କିଛି ସମୟ ପାଇଁ ସେ ବସି ପଡ଼ିଲା । କେବଳ ସେମାନଙ୍କର ସଙ୍ଗ-ସୁଖ ପାଇଁ । ବସି ବସି ସେମାନଙ୍କର କାଗଜପତ୍ର ସବୁ ଓଲଟପାଲଟ କଲା । ଉଦ୍ଦେଶ୍ୟ ସେମାନଙ୍କ ମନରେ ଧାରଣା ଦେବ ଯେ ସେ ସେମାନଙ୍କର କାମକୁ ତଦାରଖ୍ କରୁଛି । ଯେତେବେଳେ ସେ ଦେଖିଲା ଯେ ସେମାନେ ତା ସାଙ୍ଗରେ ସେ ଘର ଛାଡ଼ିବାକୁ କେବେ ଭରସିବେ ନାହିଁ ସେ ଘରକୁ ଫେରିଲା । ସେତେବେଳେ ସେ ପୁରା କ୍ଲାନ୍ତ, ଆଉ ତା' ମୁଣ୍ଡ ପୁରା ଫାଙ୍କା ।



Digitized by srujanika@gmail.com

## ଷଷ୍ଠ ପରିଚ୍ଛେଦ

# କେ'ର କକା ଓ ଲେନି—

ଦିନେ ଅପରାହ୍ନରେ, ସେଦିନର ଚିଠି ପତ୍ର ସବୁ ପଠା ସରିବାର ଠିକ୍ ଆଗରୁ, କେ' ଭାରି ବ୍ୟସ୍ତଥାଏ । ତାର ଦସ୍ତଖତ୍ ପାଇଁ କେତେକ କାଗଜପତ୍ର ଆଣିଥିବା ଦୁଇଜଣ କିରାଣୀ ହଠାତ୍ କାହା ଧକ୍କାରେ ଗୋଟାଏ କଡ଼କୁ ପେଲି ହୋଇଗଲେ ଓ କେ'ର କକା କୋଠରି ଭିତରକୁ ମାଡ଼ି ଆସିଲେ । କେ'ର କକା ମଫସଲର ଜଣେ କ୍ଷୁଦ୍ର ଜମିଦାର । କକାଙ୍କର ଆସିବାରେ କେ' ସେତେ ବେଶୀ ଶଙ୍କି ଯାଇନଥିଲା, କାରଣ ସେ ଆସିବେ ଆସିବେ ବୋଲି କେ' ଅନେକ ଦିନୁ ଭାବି ଭାବି ଭୟରେ ଶୁଖି ଯାଉଥିଲା । ତା' କକା ଯେ ନିଶ୍ଚୟ ଆସିବେ ଏ ବିଷୟରେ ସେ ପ୍ରାୟ ମାସେ ହେବ ନିଃସନ୍ଦେହ ହୋଇଥିଲା । ବର୍ତ୍ତମାନ ସେ ଯେମିତି ଭାବେ ଆସି ଉଭା ହେଲେ ଠିକ୍ ସେମିତି ତାଙ୍କର ଗୋଟିଏ ଛବି ସେ ତା ମନେ ମନେ ଅନେକଥର ଦେଖିଥିଲା । ତାଙ୍କ ପିଠି ସାମାନ୍ୟ ନଇଁ ପଡ଼ିଥିବ, ତାଙ୍କ ବାମ ହାତରେ ତାଙ୍କ ପାନାମା ଟୋପି ଚପି ହୋଇ ଲେଟ୍ରକୋଟ୍ ହୋଇ ଧରା ହୋଇ-ଥିବ, ତାଙ୍କ ଡାହାଣ ହାତ ଠିକ୍ ଦୁଆର ମୁହଁରୁ ଆଗକୁ ସେ ଲମ୍ବେଇ ଦେବେ ଏବଂ ଟେବୁଲ୍ ଉପରେ ବେପରୁଆ ହାତଟାକୁ ଆଗକୁ ବଢ଼େଇ ଦେବେ ଓ ହାତ ଆଗରେ ଯାହା ପଡ଼ିଲା ତାକୁ ଠେଲି ଲେଉଟାଇ ପକାଇବେ । ତା' କକା ସବୁବେଳେ ତରତର ଥାଆନ୍ତି । କାରଣ ଧାରଣା ତାଙ୍କୁ ସବୁବେଳେ ଛଟପଟ କରୁଥାଏ । ସେ ଯେ କୌଣସି ଦିନ ସହରକୁ ଆସିବେ ସେଦିନ ସେ ଯାହା ଯାହା କରିବେ ବୋଲି ନିର୍ଘଣ୍ଟ ତିଆରି କରିଥିବେ ସେ ସବୁଯାକ କାମ ସାରିବେ, ତାହା ଛଡ଼ା ଯେଉଁଠି କିଛି ଗପସପ କରିବାର ଥିବ ତାକୁ ଛାଡ଼ିବେ ନାହିଁ କି କେଉଁଠି କେଉଁ ଆମୋଦପ୍ରମୋଦରେ ଯୋଗ ଦେବାକୁ ଥିବ ତାହା ମଧ୍ୟ ଛଡ଼ା ଯିବ ନାହିଁ । କେ' ଉପରେ ତାଙ୍କର ଭାରି ଜୋର । ଛୁଆଟି ବେଳରୁ କେ' ତାଙ୍କୁ ତା' ମୁରବି ବୋଲି ଜାଣିଛି । ସେ ହବୁଥିରେ କେ' ତାର ପାରୁ ପର୍ଯ୍ୟନ୍ତ ତାଙ୍କୁ ସାହାଯ୍ୟ

Digitized by srujanika@gmail.com

କରିବାକୁ ପଡୁଥିଲା ତ ବେଳେ ବେଳେ ମଧ୍ୟ ଦରକାର ପଡ଼ିଲେ ତା' ପାଖରେ ତାଙ୍କୁ ରାତିକ ପାଇଁ ରଖିବାକୁ ପଡୁଥିଲା । ତା କାରଣ ସେ ପୂର୍ବେ କେ'ର ମୁରବି ହୋଇଥିଲେ ଓ କେ' ତାଙ୍କ ଦ୍ୱାରା ଅନୁଗୃହୀତ ହୋଇଥିଲା । ସେ ତାଙ୍କୁ କହୁଥିଲା—'ସେ ଆମ ପରିବାରର ଅସ୍ଥି କଙ୍କାଳ ।'

ପ୍ରଥମ ଦେଖା ସାକ୍ଷାତ ପରେ ସେ ସାଙ୍ଗେ ସାଙ୍ଗେ କେ'କୁ ଅତି ଗୁପ୍ତରେ କିଛି କଥା କହିବାକୁ ଚାହିଁଲେ । କେ' ତାଙ୍କୁ ବସିବାକୁ ଚଉକି ଦେଲା କିନ୍ତୁ ବସିବାକୁ ତାଙ୍କର ବେଳ କାହିଁ ? 'ଏହା କ'ଣ ନିହାତି ଦରକାର' ଦୁଃଖର ସହିତ କହିଲେ ଏହା ମୋର ମାନସିକ ଶାନ୍ତି ପାଇଁ ନିହାତି ଦରକାର । କେ' ସାଙ୍ଗେ ସାଙ୍ଗେ ସେ ଦୁଇଜଣ କିରାଣୀଙ୍କୁ ବାହାରକୁ ଯିବା ପାଇଁ କହିଲା । କାହାରିକୁ ଭିତରକୁ ନ ଛାଡିବା ପାଇଁ ସେମାନଙ୍କୁ କହିଦେଲା ।

'ଏସବୁ କ'ଣ ମୁଁ ଶୁଣୁଛି ଜୋସେଫ୍ ?' ସେମାନେ ଦୁଇଜଣ ଘରେ ଏକୁଟିଆ । କେ'ର କକା ଟେବୁଲ୍ ଉପରେ ବସି ପଡ଼ିଲେ ଏବଂ ନିଜକୁ ଆରାମ ଦେବା ପାଇଁ କାଗଜପତ୍ରଗୁଡ଼ିକୁ ନ ଦେଖି ତା ଉପରେ ଚାପି କରି ଏତକ କହି ଉଠିଲେ । କେ' କିଛି କହିଲା ନି । ସେ ଜାଣେ ଏହାପରେ କ'ଣ ହେବ । କଠିନ ପରିଶ୍ରମରୁ ଟିକିଏ ମୁକ୍ତି ପାଇଁ ଯେ ଆଳସ୍ୟ ଭିତରେ ନିଜକୁ ବୁଡ଼ାଇ ଦେଲା । ଝୋଲା ଝର୍କା ଦେଇ ସାମ୍ନା ରାସ୍ତାକୁ ଚାହିଁଲା । ସେ ଯେଉଁଠି ବସିଥିଲା ସେଇଠୁ ରାସ୍ତାର ତ୍ରିକୋଣ ଅଂଶଟିଏ ମାତ୍ର ଦିଶୁଥିଲା । ଝର୍କା ଫାଙ୍କ ଦେଇ ଦୁଇଟି ଦୋକାନ ମଝିରେ କୋଠିଏ ଘରର ଫାଙ୍କା ପାଚେରି ଯାହା ତା ଆଖିରେ ପଡ଼ୁଥିଲା । ହାତକୁ ଝାଡ଼ି କେ'ର କକା କହି ଉଠିଲେ—'ତୁ ସେଠି ବସି (ଝରକା) ଆଡ଼େ ଚାହିଁଥା । ଭଗବାନଙ୍କ ଦୋହି, ମୋ' କଥାର ଭଲ ଜବାବ ଦେ । ଏହା କ'ଣ ସତ ? ଏହା କ'ଣ ସତ ହୋଇପାରେ ?' ନିଜ କଳ୍ପନାରୁ ଫେରିଆସି କେ' କହିଲା—'କକା ! ସତ କହୁଛି ତୁମେ କ'ଣ କହୁଛ ମୁଁ କିଛି ଜାଣେ ନି ।'

ସତର୍କ କଲାଭଳି ଗଳାରେ କକା କହିଲେ—'ଜୋସେଫ୍ । ମୁଁ ଯେତେ-ଦୂର ଜାଣେ ତୁ ସବୁବେଳେ ସତ କହୁ । ତୋର ଏପରି କଥାକୁ କ'ଣ ଅଶୁଭ ସୂଚନା ଭାବରେ ଗ୍ରହଣ କରିବି ?'

'ତୁମେ କ'ଣ ଚାହୁଁଛ ମୁଁ ବୁଝିପାରୁନି । ତୁମେ ବୋଧହୁଏ ମୋର ବିଚାର ବିଷୟରେ କିଛି ଶୁଣିଛ ।' କେ' କହିଲା ।

'ହଁ ସେଇଆ ତ । ତୋ' ବିଚାର ବିଷୟରେ ମୁଁ ଶୁଣିଛି ।' କକା ମୁଣ୍ଡ ହଁକାର କହିଲେ ।

Digitized by srujanika@gmail.com

'କିନ୍ତୁ କାହା ପାଖରୁ ?' କେ' ପଚାରିଲା ।

'ଏ ବିଷୟରେ ଏଗ୍ନା ମୋତେ ଲେଖିଥିଲା ।' କକା କହିଲେ ।

'ଜୋ' ସାଙ୍ଗରେ ତ ତାର ବେଶୀ ଦେଖା ହୁଏନା । ଦୁଃଖର କଥା ତା' ଉପରେ ତୁ ବେଶୀ ନଜର ଦେଉନା । ତାର କିଛି ଖବର ରଖୁନା ତା' ସହ କିଛି ସମ୍ପର୍କ ବି ରଖିନୁ । ତଥାପି ଏ ବିଷୟରେ ସେ ଶୁଣିଲା । ଆଜି ସକାଳେ ତା' ଚିଠି ପାଇଲି । ଏବଂ ପ୍ରଥମ ଗାଡ଼ି ଧରି ଚାଲି ଆସିଛି । ଏଠାକୁ ଆସିବାକୁ ମୋର ଆଉ କିଛି କାରଣ ନଥିଲା । କିନ୍ତୁ ଏହି କାରଣ ତ ଯଥେଷ୍ଟ । ଜୋ ବିଷୟରେ ଲେଖା ଚିଠିରୁ ତ ମୁଁ ତୋତେ ଜାଣିପାରେ ।' ସେ ତାଙ୍କ ଟିପାଖାତା ଚିଠିଟିକୁ ବାହାର କଲେ । 'ହେଇ ସେ ଚିଠି ।' ସେ ଲେଖିଛି—'ଅନେକ ଦିନ ହେଲା ମୁଁ ଜୋସେଫ୍‌କୁ ଦେଖିନି । ଗତ ସପ୍ତାହ ମୁଁ ବ୍ୟାଙ୍କ୍‌କୁ ଦେଖା କରିବାକୁ ଯାଇଥିଲି । ମାତ୍ର କାମରେ ସେ ଏତେ ବ୍ୟସ୍ତ ଥିଲା ଯେ ତା' ସାଙ୍ଗରେ ଦେଖା କରି ପାରିଲିନି । ପ୍ରାୟ ଘଣ୍ଟାଏ କାଳ ଅପେକ୍ଷା କଲି । ଶେଷରେ ମୋତେ ଫେରି ଆସିବାକୁ ପଡ଼ିଲା । କାରଣ ପିଆନୋ ଶିଖିବାର ବେଳ ହୋଇଗଲା । ତା ସାଙ୍ଗରେ କଥା ହୋଇଥିଲେ ଖୁବ୍ ଭଲ ଲାଗିଥାଆନ୍ତା । ଖୁବ୍ ଶୀଘ୍ର ତା' ସାଙ୍ଗରେ ହୁଏତ ଦେଖା ହେବାର ସୁଯୋଗ ମିଳିବ । ମୋ' ଜନ୍ମ ଦିନରେ ମୋ' ପାଇଁ ଗୋଟିଏ ବଡ଼ ଚକୋଲେଟ୍ ବାକ୍‌ସ ସେ ପଠାଇ ଦେଇଥିଲା । ଏହା ତାର ଭଲ ପାଇବାର ନମୁନା । ସେତେବେଳେ ସେ ବିଷୟରେ ମୁଁ ଲେଖି ତାଙ୍କୁ ଜଣାଇ ପାରିଲିନି । କେବଳ ତୁମେ ପଚାରିଲ ପରେ ଯାଇ ସେ ବିଷୟରେ ମୋର ମନେ ପଡ଼ିଲା । ସ୍କୁଲ୍‌ରେ ଚକୋଲେଟ୍ ପହଞ୍ଚିବା ମାତ୍ରେ ତ ସବୁ ସରିଯାଏ । ସବୁ ସରିଗଲା ପରେ ଚକୋଲେଟ୍ ବାକ୍‌ସଟେ ଯେ ଉପହାର ମିଳିଥିଲା ଏକଥା ସହଜରେ ଭାବି ହୁଏନି । କିନ୍ତୁ ଜୋସେଫ୍ ବିଷୟରେ ଏହାଛଡ଼ା ଆଉ କିଛି କଥା ତୁମକୁ ମୋର କହିବାର ଅଛି । ମୁଁ ତ କହିଥିଲି ବ୍ୟାଙ୍କ୍‌ରେ ତାଙ୍କ ସହ ଦେଖା କରି ପାରିଲିନି । କାରଣ ଜଣେ ଲୋକ ସହ ସେ ଭାରି ବ୍ୟସ୍ତ ଥିଲେ । ଚୁପ୍‌ଚାପ୍ କିଛି ସମୟ ଅପେକ୍ଷା କଲା ପରେ ଜଣେ ଚପରାସୀଙ୍କୁ ପଚାରିଲି ଯେ ସେ ଲୋକ ସହ ଆଲୋଚନା କ'ଣ ବହୁତ ସମୟ ଧରି ଚାଲିବ ? ସେ ଚପରାସୀ କହିଲା ଯେ ଖୁବ୍ ସମ୍ଭବ ବିଳମ୍ବ ହେବ । କାରଣ ହେଡ୍‌କ୍ଲାର୍କ୍‌ଙ୍କ ବିରୁଦ୍ଧରେ ଚାଲିଥିବା ମକଦ୍ଦମା ବିଷୟରେ ଆଲୋଚନା ଚାଲିଛି । 'କି ମକଦ୍ଦମା ?' ମୁଁ ପଚାରିଲି । କ'ଣ କିଛି ଭୁଲ୍ ଭଟକା କଲେ ? ଉତ୍ତରରେ ସେ କହିଲା 'କିଛି ଭୁଲ ଭଟକା ପାଇଁ ନୁହେଁ, କିନ୍ତୁ ତାଙ୍କ ବିରୁଦ୍ଧରେ ଗୋଟେ ମକଦ୍ଦମା ଚାଲିଛି ଏବଂ ବଡ଼ ଗୁରୁତ୍ୱପୂର୍ଣ୍ଣ । ଏହାଠାରୁ ଆଉ ଅଧିକ କିଛି ସେ ଜାଣେ ନାହିଁ । ସେ ଲୋକଟି ନିଜେ ସାହାଯ୍ୟ କରିବାକୁ ଖୁବ୍ ଆଗ୍ରହୀ କାରଣ

Digitized by srujanika@gmail.com

କେ' ଖୁବ୍ ଭଲ ଓ ସାଧୁ ଲୋକ । କିନ୍ତୁ କେମିତି ସାହାଯ୍ୟ କରିବାକୁ ପଡ଼ିବ ସେ ବିଷୟରେ ତାର କିଛି ଧାରଣା ନାହିଁ । ତେଣୁ ସେ ଚାହେଁ ଜଣେ କେହି ପ୍ରଭାବ-ଶାଳୀ ଲୋକ କେ' ତରଫ ନେଇ ତାକୁ ସାହାଯ୍ୟ କରୁ । ଏହା ନିଶ୍ଚିତ ଯେ ଏହା ନିଷ୍ପତ୍ତି ହେବ ଏବଂ ଶେଷରେ ସବୁ ଠିକ୍ ହୋଇଯିବ । କିନ୍ତୁ କେ'ର ମାନସିକ ଅବସ୍ଥାରୁ ଯାହା ଜଣାପଡୁଛି ବର୍ତ୍ତମାନର ପରିସ୍ଥିତି ସେତେ ଭଲ ନୁହେଁ । ପ୍ରକୃତରେ ଏ ବିଷୟରେ ମୁଁ ବେଶୀ ଗୁରୁତ୍ୱ ଦେଇନି । ମୁଁ ସେ ସରଳ ଲୋକଟିକୁ ସାନ୍ତ୍ୱନା ଦେଲି । କିଛି ହେବନି ବୋଲି ତାକୁ କହି ଏ ବିଷୟରେ ସେ ଆଉ କାହା ସାଙ୍ଗରେ ଆଲୋଚନା ନ କରିବାକୁ ତାକୁ କହି ଆସିଲି । ପୁଣି ତାକୁ ଜଣାଇ ଆସିଲି ଯେ ଏସବୁ ଖାଲି ବାଜେ ଗୁଜବ । ତଥାପି ବାପା, ତୁମେ ଏଥର ଯେବେ ସହରକୁ ଆସିବ ଏ ବିଷୟରେ ନିଷ୍ପତ୍ତି ବୁଝିବ । ପ୍ରକୃତ ସତକଥା ଜାଣିବା ତୁମ ପକ୍ଷରେ ସହଜ ହେବ । ଯଦି ଦରକାର ପଡ଼େ ତୁମର କେତେ ଜଣ ପ୍ରଭାବଶାଳୀ ବନ୍ଧୁ ଯେମିତି ଏଥିରେ ହସ୍ତକ୍ଷେପ କରନ୍ତି ସେ ବିଷୟରେ ଦେଖିବ । ଏହାର ଦରକାର ଯଦି ବା ନପଡ଼େ, ହୁଏତ ଖୁବ୍ ସମ୍ଭବ ଦରକାର ପଡ଼ିବନି, ତଥାପି ତୁମକୁ ଚୁମାଟିଏ ଦେଇ ସ୍ୱାଗତ କରିବା ପାଇଁ ତୁମ ଝିଅକୁ ସୁଯୋଗଟିଏ ତ ମିଳିବ । ଯାହା ତାକୁ ଖୁବ୍ ଆନନ୍ଦ ଦେବ ।'

'ସୁନା ଝିଅଟେ ।' ଶଠି ପଢ଼ିସାରି କେ'ର କକା ଏତକ କହିଲେ ଏବଂ ଆଖିରୁ ଲୁହ ପୋଛି ପକାଇଲେ । ଗତ କିଛିଦିନର ଜଞ୍ଜାଳ ଭିତରେ ହତପନ୍ତ ହୋଇ ଏର୍ନାକୁ ପୂରା ସେ ଭୁଲି ଯାଇଥିଲେ । ଆଉ ଚକୋଲେଟ୍ ପଠାଇବାର କାହାଣୀଟି ଏରନା ନିଜେ ଉଦ୍ଭାବନ କରିଛି ଉଦ୍ଦେଶ୍ୟ ତା' ବାପା ଆଉ ମା' ଆଗରେ କେ'ର ମାନ ରକ୍ଷିବାକୁ । ଏହା ପ୍ରକୃତରେ ବଡ଼ ପ୍ରାଣସ୍ପର୍ଶୀ । ଏଥର ନିୟମିତ ଭାବରେ ତା' ପାଖକୁ ଥିଏଟର୍ ଟିକେଟ୍ ପଠାଇବା ପାଇଁ ସେ ଯେଉଁ ପଣ କରିଚ ତା' ଏହା ଆଗରେ କେତେ ଅପୂର୍ଣ୍ଣ, କେତେ ତୁଚ୍ଛ । କିନ୍ତୁ ଏଇ ପରିସ୍ଥିତିର ଗୋଟିଏ ଅଠର ବର୍ଷର ଚପଳା ଝିଅ ସହ ତା' ହଷ୍ଟେଲ୍‌ରେ ଦେଖା କରିବାକୁ ତାର ଇଚ୍ଛା ହେଲା ନାହିଁ ।

'ତେବେ ବର୍ତ୍ତମାନ ଏ ବିଷୟରେ କଅଣ କହୁଛ ?' କେ'ର କକା ପଚାରିଲେ । ଏତେବେଳକୁ ତାଙ୍କ ପାଖରେ ଦେଖା ଦେଇଥିବା ସମସ୍ତ ଉତ୍ତେଜନା ମରି ସାରିଥିଲା ।

'ହଁ କକା, ସବୁକଥା ସତ ।'

Digitized by srujanika@gmail.com

'ସତ ?' କକା ଚତ୍କାର କରି ଉଠଲେ । 'ସତ ? କ'ଣ ସତ ? ହେ ଭଗବାନ, କେମିତି ଏହା ସତ ହୋଇପାରେ ? କି ମକଦ୍ଦମା ଇଏ ? ନିଶ୍ଚିତ ଭାବେ ଏହା କ୍ରିମିନାଲ୍ କେଶ୍ ନୁହେଁ ?'

'ହଁ ଗୋଟିଏ କ୍ରିମିନାଲ୍ କେଶ୍ ।' କେ' କହିଲା ।

'ତୋ ମୁଣ୍ଡ ଉପରେ ଗୋଟିଏ କ୍ରିମିନାଲ୍ କେଶ୍ ଅଛି ତୁ ଆରାମ୍‌ରେ ଚୁପ୍‌ଚାପ୍ ବସି ରହିଛୁ ?' କକା ଚତ୍କାର କରି ଉଠିଲେ । ତାଙ୍କ ସ୍ୱର ଧୀରେ ଧୀରେ ଅଧିକ ଜୋର୍ ହୋଇ ଉଠଲା ।

'ଯେତେ ମୁଁ ଧୀରସ୍ଥିର ହୋଇ ରହିବ, ପଛକୁ ତାର ଫଳ ଭଲ ହେବ ।' କେ' କହିଲା ।

'ଆଚ୍ଛା ଚିନ୍ତା କରନା । ଏଟା ଖୁବ୍ ଭଲକଥା । ମୋତେ ଆଉ ଏସବୁ ଶିଖାନା ଜୋସେଫ୍ । ତୁ ଥରେ ତୋ' ନିଜକଥା ଭାବ । ତୋ ଜ୍ଞାତି, କୁଟୁମ୍ବଙ୍କ କଥା ଭାବ । ଆମ ବଂଶର ସୁନାମ କଥା ଭାବ । ଆଜି ପର୍ଯ୍ୟନ୍ତ ତୁ ଆମ ବଂଶର ଗର୍ବ ଥିଲୁ । ତୁ କେବେ ସେ ନାମରେ କାଳି ଲେପି ପାରିବୁନି । ତୋର ଢଙ୍ଗଢାଙ୍ଗ ମୋତେ କେମିତି ଜମା ଭଲ ଲାଗୁନାହିଁ । ମୁଣ୍ଡ ଠିକ୍ ଥିଲେ କୌଣସି ନିର୍ଦ୍ଦୋଷ ଲୋକ ଏମିତି ବ୍ୟବହାର କରେ ନାହିଁ । ମୋତେ ତୁ ସିଧା ସିଧା କହିଦେଲ କଅଣ ସବୁ ହେଉଛି । ଯେମିତିକ ମୁଁ ତୋତେ କଛି ସାହାଯ୍ୟ କରିପାରେ । ଏହା କ'ଣ ତୁମ ବ୍ୟାଙ୍କ୍ ସମ୍ବନ୍ଧରେ କଛି ?' କେ'ର କକା ମୁଣ୍ଡକୁ ସାମାନ୍ୟ ଟେକ ଏତକ କହିଲେ ।

ଠିଆ ହୋଇପଡ଼ି କେ' କହିଲା—'ନା' କକା ତୁମେ ଖୁବ୍ ଜୋର୍‌ରେ କଥାବାର୍ତ୍ତା ହେଉଛ । ମୁଁ ନିଶ୍ଚିତ ଯେ ତୁମ ଦୁଆର ପାଖରେ ପିଅନ ସବୁ ଶୁଣୁଛି । ମୋତେ ଏକଥା ଆଦୌ ଭଲ ଲାଗୁନାହିଁ । ଭଲ ହେବ ଚାଲ କୁଆଡେ ବାହାରକୁ ଚାଲିଯିବା । ସେଠାରେ ଯେତେଦୂର ପାରେ ତୁମ ପ୍ରଶ୍ନର ସବୁ ଉତ୍ତର ଦେବ । ମୁଁ ଭଲ କରି ଜାଣେ ଯେ ଏଥିପାଇଁ ମୋତେ ଘରକୁ କୈଫିୟତ ଦେବାକୁ ପଡ଼ିବ ।'

'ଠିକ୍ କଥା, ଏକଦମ୍ ଠିକ୍ । ଶୀଘ୍ର ଚାଲ୍ ଶୀଘ୍ର ଶୀଘ୍ର ।' କକା ପାଟି କରି ଉଠିଲେ ।

'ମୋତେ କେତୋଟି କାମ ବିଷୟରେ କହିଯିବାକୁ ପଡ଼ିବ ।' ଏତକ କହି କେ' ଟେଲିଫୋନ୍‌ରେ ତାର ହେଡ୍‌କ୍ଲାର୍କକୁ ଡ଼ାକିଲା ଏବଂ ଅଳ୍ପ ସମୟ ଭିତରେ

Digitized by srujanika@gmail.com

ସେ ଅସି ପହଞ୍ଚିଲା । ଉତ୍ତେଜିତ କଳା କିରାଣୀଙ୍କ ଦେଖିବାମାତ୍ରେ ହାତ ହଲାଇ କହି ଉଠିଲେ ଯେ କେ’ ତାଙ୍କୁ ଡାକ ପଠାଇଛି । ମାତ୍ର ଏପରି କହିବାର କିଛି ଦରକାର ନଥିଲା । ଟେବୁଲ୍ ପାଖରେ ଠିଆ ହୋଇ ବିଭିନ୍ନ କାଗଜକୁ ଦେଖାଇ ତା’ ଅନୁପସ୍ଥିତିରେ କଅଣ କରିବାକୁ ହେବ ସେ ବିଷୟରେ କେ’ ଅତି ଧୀର ଗଳାରେ କିରାଣୀକୁ କହିବାକୁ ଲାଗିଲା । କିରାଣୀଟି ବଡ଼ ଅଶ୍ରଦ୍ଧ ଅଥଚ ଉଦାସ ଭାବରେ ସବୁ ଶୁଣୁଥାଏ । ତାପାଖରେ ଛିଡ଼ା ହୋଇ କଳା ବଡ଼ ବଡ଼ ଆଖିରେ ଚାହିଁଥାନ୍ତି । ତାଙ୍କର ଏପରି ଛିଡ଼ା ହେବା କେ’କୁ ଭାରି ବ୍ୟସ୍ତ କରୁଥାଏ । ଯଦିଓ କେ’ର କଳା ତା କଥାକୁ ଶୁଣୁ ନଥାଆନ୍ତି ମାତ୍ର ସେ ଯେମିତି ଶୁଣିବା ଭଙ୍ଗିରେ ଠିଆ ହୋଇଥାଆନ୍ତି ସେଇ ଢଙ୍ଗଟି ବଡ଼ ଅସୁବିଧା ସୃଷ୍ଟି କରୁଥିଲା । ବ୍ୟସ୍ତ ହୋଇ କେ’ର କଳା କୋଠରି ଭିତରେ ବୁଲିବାକୁ ଲାଗିଲେ । ବୁଲୁବୁଲୁ ଝରକା ପାଖରେ ଟଙ୍ଗା ହୋଇଥିବା ଫଟୋଟି ଆଗରେ ଠିଆ ହୋଇ ମନକୁ ମନ ଜୋର୍‌ରେ କହି ଉଠୁଥା’ନ୍ତି --

‘ଅସମ୍ଭବ । ମୋ’ପାଖରେ ଏ କଥା ଭାବିବା ବି ଅସମ୍ଭବ । ହେ ଭଗବାନ ତୁମେ ଜାଣ ଭବିଷ୍ୟତରେ କଅଣ ହେବ ।’ କିରାଣୀଟି କିଛି ନଦେଖିଲା ଭଳି ବ୍ୟବହାର କରୁଥିଲା । କେ’ ତାକୁ ଯାହା କହୁଥିଲା ନୀରବରେ ତାକୁ ଶୁଣିଯାଉ ଥାଏ । ମଝିରେ ମଝିରେ ଟିକିଏ କ’ଣ ଲେଖିପକାଉଥାଏ । ଶେଷରେ ଉଭୟ କେ’ ଆଉ ତା କକାକୁ ମଥା ନୁଆଁଇ ନମସ୍କାର କରି ବାହାରିଗଲା । ଅବଶ୍ୟ କେ’ର କକା ସେତେବେଳେ ତା’ଅଡ଼କୁ ପଛକରି ପର୍ଦ୍ଦାକୁ ଧରି ଝରକାବାଟେ ବାହାରକୁ ଚାହିଁଥିଲେ । ଘରର କବାଟ ବନ୍ଦ ହେଉ ନହେଉଣୁ କେ’ର କକା କହିଲେ— ‘ଶେଷରେ ଗଧଟା ଗଲା । ଆମେ ଏଇଲରେ ଯାଇପାରିବା ।’

ସେଇ ବ୍ୟାଙ୍କ୍ ଭିତରେ ଯେଉଁଠି କିରାଣୀସବୁ ପୁଣି ଆସିଷ୍ଟାଣ୍ଟ୍ ମ୍ୟାନେଜର ଯା’ ଆସ କରୁଛନ୍ତି ସେପରି ଜାଗାରେ ମକଦ୍ଦମା ବିଷୟରେ ପରସ୍ପରରି ନକରି-ବାକୁ କେ’ ତା କକାକୁ ଦୁର୍ଭାଗ୍ୟବଶତଃ କୌଣସିମତେ କହିପାରିଲାନି । କିରାଣୀ-ମାନଙ୍କ ସମ୍ମାନସୂଚକ ମୁଣ୍ଡ ନୁଆଁଇବା ପ୍ରତି ସାମାନ୍ୟ ମୁଣ୍ଡ ନୁଇଁାଇ ସେ ଆରମ୍ଭ କଲେ—‘ବର୍ତ୍ତମାନ କହିତ, କିପ୍ରକାର ଏ ମକଦ୍ଦମା ?’

କେ’ କେବଳ ସାମାନ୍ୟ ହସି କଥା ବାଆଁରେଇବା ପାଇଁ ଏଣୁ ତେଣୁ ହଁ ହାଁ ମାରିବାରେ ଲାଗିଲା ଏବଂ ଶେଷରେ ସିଢ଼ିରେ ଗଲାବେଳେ କହିଲା ଯେ କିରାଣୀମାନଙ୍କ ଆଗରେ ସେ ଏ ମକଦ୍ଦମା ବିଷୟରେ କିଛି କହିବାକୁ ଚାହୁଁ ନଥିଲା ।

Digitized by srujanika@gmail.com

'ଠିକ୍ କଥା ! ଏବେତ ଆଉ ସେମାନେ କେହି ନାହାନ୍ତି ।' ସିଗାରେଟ୍‌ରୁ କଲେ ଧୂଆଁ ଗୁଡ଼ାକ ବକା ମୁଣ୍ଡ ନୁଆଁଇ ଶୁଣିବାକୁ ଲାଗିଲେ ।

କେ' ଆରମ୍ଭ କଲା—'ଏ ମକଦ୍ଦମାରେ ପ୍ରଥମ ଜାଣିବା କଥା ହେଉଛି ସାଧାରଣ କୋର୍ଟରେ ହେଉଥିବା ସଧାରଣ ମକଦ୍ଦମା ଏ ନୁହେଁ ।'

'ଏହାତ ଅତି ଖରାପ କଥା' କକା କହିଲେ ।

'ତୁମେ କ'ଣ ଭାବୁଛ ?' କେ' ପଚାରିଲା ।

'ମୁଁ ଭାବୁଛି ଯେ ଏହା ନିହାତି ଖରାପ ।' କକା ସେଇ କଥାକୁ ଦୋହରାଇଲେ । ସେ ଦୁହେଁ ପାହାଚ ଉପରେ ଛିଡ଼ା ହୋଇ କଥା କହୁଥିଲେ । ଜଗୁଆଳୀ ଶୁଣୁଥିବାର ଦେଖି କେ' ତା'କକାଙ୍କୁ ବାହାରକୁ ଟାଣିନେଲା । ବର୍ତ୍ତମାନ ସେମାନେ ରାସ୍ତାର ଭିଡ଼ ଭିତରେ ମିଶିଗଲେ ।

କେ'ର କକା ତାର ହାତ ଧରି ଚାଲୁଥିଲେ । ବ୍ୟସ୍ତହୋଇ ସେ ଆଉ ଆଗ ପରି ମକଦ୍ଦମା କଥା ପଚାରୁନଥିଲେ । ବର୍ତ୍ତମାନ ପ୍ରାୟ ସେ ଦୁହେଁ ଚୁପ୍‌ଚାପ୍ ଚାଲିଥିଲେ ।

'କିନ୍ତୁ ଏକଥା ହେଲା କେମିତି ?' ଶେଷରେ କେ'ଙ୍କୁ ପଚାରିଲେ ଏବଂ ହଠାତ୍ ଠିଆ ହୋଇଗଲେ । ସେ ଏପରି ହଠାତ୍ ଠିଆ ହୋଇଗଲେ ଯେ ଠିକ୍ ତାଙ୍କ ପଛରେ ଚାଲୁଥିବା ଲୋକମାନେ ଚମକି ଆଡ଼େଇ ଗଲେ ।

'ଏପରି କଥାତ ଦିନେ ଓଳକେ କେବେ ହୋଇ ଯାଏନି ? ଧୀରେ ଧୀରେ ନିଶ୍ଚୟ ହୋଇଥିବ । ତୁ କାହିଁକି ଏ ବିଷୟରେ ମୋତେ ଆଗରୁ ଲେଖିଲୁନି ? ତୁ ଜାଣୁ, ତୋପାଇଁ ମୁଁ କିଛି 'କରିଥାଆନ୍ତି । ମୁଁ ତୋର ଗାର୍ଜେନ । ଆଜିବି ମୁଁ ତୋର ଗାର୍ଜେନ ଏବଂ ଏଥିପାଇଁ ମୁଁ ଗର୍ବ କରେ । ଅବଶ୍ୟ ଯେତେଦୂର ପାରେ ମୁଁ ନିଶ୍ଚୟ ତୋତେ ସାହାଯ୍ୟ କରିବ । କଥା କ'ଣ କି ଯଦି ମକଦ୍ଦମାଟି ପୁରା ଆରମ୍ଭ ହୋଇ ଯାଇଥାଏ ତେବେ ତାକୁ ବାଟକୁ ଆଣିବା ଟିକଏ କଷ୍ଟ । ବର୍ତ୍ତମାନ ସବୁଠାରୁ ଭଲ ହେବ କିଛିଦିନ ଛୁଟି ନେଇ ଗାଁକୁ ଚାଲିଆ । ମୁଁ ଦେଖୁଛି ତୁ ବେଶ୍ ଝଡ଼ି ଯାଇଛୁ । ଗାଁରେ ତୋର ଦେହ ଭଲ ହୋଇଯିବ । ତାହା ତୋ ପକ୍ଷରେ ମଙ୍ଗଳକର । କାରଣ ଏ ମକଦ୍ଦମା ତୋ' ଉପରେ ବେଶ୍ ଚାପ ପକାଉଥିବ । ଏହାଛଡ଼ା ଏପରି କଲେ ଅଦାଲତର ହାତମୁଠାରୁ ତୁ କିଛିଦିନ ପାଇଁ ମୁକୁଳିଯାଇପାରିବୁ । ଏଠାରେ ସେମାନେ ତାଙ୍କର ସବୁ କଳକୁ ତୋ ବିରୁଦ୍ଧରେ ଲଗାଇବେ । କିନ୍ତୁ ତୁ ଯଦି ଗାଁରେ ରହୁ ତେବେ ତୋ ବିଷୟରେ ଜାଣିବାପାଇଁ ଏଜେଣ୍ଟ୍ ରଖିବେ ।

Digitized by srujanika@gmail.com

ବା ଟେଲିଫୋନ୍ ବା ଟେଲିଗ୍ରାଫ୍ କରି ଖବର ନେବେ । ଏହା ନିଶ୍ଚିତ ଭାବେ ତାର ପ୍ରଭାବକୁ ଦୁର୍ବଳ କରିଦେବ । ଏହାଦ୍ୱାରା ଯେ ତୁ ତାଙ୍କ ପାଖରୁ ପୂରା ମୁକୁଳି ପାରିବୁ ତା' ନୁହେଁ । କିନ୍ତୁ ଟିକେ ନିଶ୍ୱାସ ମାରିବାକୁ ବେଳତ ପାଇବୁ ।'

'ସେମାନେ କିନ୍ତୁ ମୋତେ ଯିବାକୁ ମନା କରିବେ ।' କକାଙ୍କ ଚିନ୍ତାକୁ ବୁଝି ବିଚାରି କେ' କହିଲା ।

'ସେମାନେ ମନାକରିବେ ବୋଲି ମୁଁ କିନ୍ତୁ ଭାବୁନି । ଏହାଦ୍ୱାରା ତାଙ୍କରତ କିଛି କ୍ଷତି ହେଉନି ।' ଚିନ୍ତାଶୀଳ ଭାବେ କକା କହିଲେ । ପୁରା ଛୁଡ଼ା ହୋଇ ରହିବାକୁ ବନ୍ଦ କରିବା ପାଇଁ କକାଙ୍କ ହାତ ଧରି ଆସ୍ତେ ଆସ୍ତେ କେ' କହିଲା—'ମୁଁ ଭାବୁଥିଲି ସେ ମୋ' ଠାରୁ ତୁମେ ଏ ମକଦ୍ଦମା ଉପରେ କମ୍ ଗୁରୁତ୍ୱ ଦେବ । ମାତ୍ର ଏବେ ଦେଖୁଛି ତୁମେ ଏହା ଉପରେ ବେଶ୍ ଗୁରୁତ୍ୱ ଦେଲଣି ।'

କେ' ହାତରୁ ନିଜ ହାତକୁ ମୁକୁଳାଇ ଛଡ଼ା ହେବାକୁ ଚେଷ୍ଟା କରୁକରୁ (କାରଣ କେ' ଠିଆ ହେବାକୁ ତାଙ୍କୁ ଦେଉନଥିଲା) କକା କହି ଉଠିଲେ—'ଜୋସେଫ୍ ! ତୁ ପୁରା ବଦଳି ଯାଇଛୁ । ଆଗରୁ ତୁ ତ ବେଶ୍ ପରିଷ୍କାର ଚିନ୍ତା କରିପାରୁଥିଲୁ । ବର୍ତ୍ତମାନ କଅଣ ତୋର ମୁଣ୍ଡ ଆଉ ଠିକ୍ କାମ କରୁନି ? ତୁ କଅଣ ଏ ମକଦ୍ଦମାରେ ହାରିବାକୁ ଚାହୁଁ ? ତୁ ଜାଣୁ ତାର ପରିଣତି କଅଣ ହେବ ? ତୁ ପୁରା ବୁଡ଼ିଯିବୁ । ତୋର ଆଉ କିଛି ରହିବନି । ଆମେ ସମସ୍ତେ ତୋ ସାଥିରେ ବୁଡ଼ିଯିବା । ମାଟିରେ ମିଶିଯିବା । ଜୋସେଫ୍ ଦମ୍ଭଧର । ତୋର ଉଦାସିନତା ମୋତେ ପାଗଳ କରିଦେବ । ତୋତେ ଦେଖି ମୋର ଗୋଟେ ପୁରୁଣା ଢଗ ମନେପଡୁଛି । ଏମିତି ମକଦ୍ଦମା ସବୁବେଳେ ଜିତାପଟ ହୋଇଥାଏ ।'

'କକା ! ଏମିତି ଉତ୍ତେଜିତ ହେବାର କୌଣସି କାରଣ ନାହିଁ । ତୁମ ପାଖରେ ପୁଣି ମୋ ପାଖରେବି ଏହା ପୁରା ଅର୍ଥହୀନ । ଉତ୍ତେଜିତ ହୋଇ କୌଣସି ମକଦ୍ଦମା ଜିତାଯାଏନି । ତୁମେ ମୋର ସାଧାରଣ ବୁଦ୍ଧିକୁ ବିଶ୍ୱାସ କର । ମୁଁ ତୁମର ବୁଦ୍ଧିକୁ ସବୁଦିନ ସମ୍ମାନ ଦେଇଆସିଛି । ଯଦିଓ ତୁମେ ଆଜି ମୋତେ ବିସ୍ମିତ କରୁଛ ତଥାପି ତୁମକୁ ସମ୍ମାନ ଦେଉଛି । ଏପରି ଦୁର୍ନାମଦ୍ୱାରା ଆମବଂଶରେ କଳଙ୍କ ଲାଗିବ ବୋଲି ତୁମେ ଭାବୁଛ । ମାତ୍ର ମୁଁ କାହିଁକି କେଜାଣି ସେମିତି କିଛି ଦେଖୁନି । ସେ ଯାହା ହେଉନା କାହିଁକି ମୁଁ ତୁମ ବିଚାରକୁ ମାନିନେବି । ଗାଁକୁ ଯିବା କଥା କହୁଛ । ତୁମ ଦୃଷ୍ଟି କୋଣରୁ ବିଚାର କଲେବି ତାହା ବୁଦ୍ଧିମାନର କାମ ହେବ ନାହିଁ । କାହିଁକିନା ଏହା ପଳାଇଯିବା ପରି ଦେଖାଯିବ । ଫଳରେ ମୋତେ

Digitized by srujanika@gmail.com

ଦୋଷୀ ସାବ୍ୟସ୍ତ କରିବାରେ ଏହା ସାହାଯ୍ୟ କରିବ । ଯଦିଓ ଏଠାରେ ମୋ' ଉପରେ ଖୁବ୍ ବେଶୀ କାମର ଚାପ ପଡ଼ୁଛି ତଥାପି ଏଠାରେ ରହିଲେ ସିନା ନିଜ ସୁବିଧାନୁସାରେ ନିଜ ମକଦ୍ଦମାଟିକୁ ତଦାରଖ କରିପାରିବି । ତା'ଉପରେ ନଜର ରଖିପାରିବି ।'

'ଠିକ୍ କଥା ।' ଅଶ୍ୱସ୍ତ ସ୍ୱରରେ କେ'ର କଳା କହିଲେ । ସେ ଯେମିତି ଦେଖିଲେ ତାଙ୍କ ଦୁଇଜଣଙ୍କ ଚିନ୍ତା ମିଶିଯାଇଛି ।

'ମୁଁ ଏପରି କହୁଥିଲି କାହିଁକିନା ତୁ ଯେମିତି ହେଲାସିଆ ଏଠାରେ ରହିଲେ ମକଦ୍ଦମାଟିକୁ ହେଳାକରି ଖରାପ କରିଦେବୁ । ତେଣୁ ତୋ ବଦଳରେ ମୁଁ ଯଦି ମକଦ୍ଦମାଟିର ଦାୟିତ୍ୱ ନିଅନ୍ତି ତେବେ ଭଲ ହୁଅନ୍ତା କିନ୍ତୁ ଯେତେବେଳେ ତୁ ନିଜେ ତୋର ସବୁ ଶକ୍ତି ଦେଇ ମକଦ୍ଦମା କଥା ବୁଝିବୁ ବୋଲି କହୁଛୁ ତେବେ ତାହା ଭଲ ।'

'ମୁଁ ତା'ହେଲେ ଏକଆଡେ ଯିବି ?' କେ' କହିଲା ଆଉ ପଚାରିଲା— 'ଏହାପରେ ମୋର ପ୍ରଥମ କାମ କ'ଣ ହେବ କୁହନ୍ତୁ ?'

'ମୋତେ ଟିକେ ଭାବିବାକୁ ପଡ଼ିବ । ତୋତେ ଏତିକି ମନେ ରଖିବାକୁ ପଡ଼ିବ ଯେ ସ୍ବା ଭିତରେ ପ୍ରାୟ ଏକାଦିକ୍ରମେ କୋଡ଼ିଏ ବର୍ଷ ଧରି ମୁଁ ଗାଁରେ ରହୁଛି । ତେଣୁ ସ୍ବା ବିଷୟରେ ଆଗପରି ମୋର ମୁଣ୍ଡ ଆଉ କାମ କରୁନି । ଏହା ଭିତରେ ଏହିବିଷୟରେ ମୋଠୁ ବେଶୀ ଜାଣିଥିବା ପ୍ରଭାବଶାଳୀ ଲୋକଙ୍କ ସହ ମୋର ସମ୍ପର୍କ ବି କମି ଆସିଲାଣି । ତୁ ତ ଜାଣୁ ଗାଁରେ ସମସ୍ତଙ୍କ ସହ ମୋର ସମ୍ପର୍କ ଖୁବ୍ କମ୍ । ମୁଁ ଟିକିଏ ଏକଲଟିଆ ଲୋକ । କେବଳ ଏଇମିତି ଜରୁରି ଅବସ୍ଥାରେ ପଡ଼ିଲେ ମଣିଷ ବିଷୟରେ ସଚେତନ ହୁଏ । ଏହାଛଡ଼ା ତୋ' କଥା ବଡ଼ ଅସ୍ୱାଭାବିକ ଭାବରେ ଏର୍ନାର ଚିଠିରୁ ଜାଣିଲି । ଚିଠି ପଢ଼ି ମୁଁ ଯାହା ଭାବିଥିଲି ତୋତେ ଦେଖି ସେ ବିଷୟରେ ପୂରା ନିଶ୍ଚିତ ହୋଇଗଲି । ଏସବୁ କଥା ବଡ଼ ନୁହେଁ । ସବୁଠୁ ବଡ଼କଥା ହେଉଛି ବର୍ତ୍ତମାନ ଆଉ ସମୟ ନଷ୍ଟ ନ କରିବା ।'

ଏତିକି କଥା ସରୁନସରୁଣୁ ସେ ହଠାତ୍ ଗୋଟିଏ ଟ୍ୟାକ୍ସିକୁ ଡାକି ଡ୍ରାଇଭରକୁ ଗୋଟିଏ ଠିକଣା କହି କେ'କୁ ପ୍ରାୟ ତାଙ୍କ ପଛେ ପଛେ ଟ୍ୟାକ୍ସି ଭିତରକୁ ଟାଣି ନେଲେ । ବର୍ତ୍ତମାନ ଆମେ ସିଧା ଓକିଲ 'ହୁଲ୍ଦ୍'ଙ୍କ ଘରକୁ ଯିବା । ସେ ମୋର ବନ୍ଧୁ । ଏକାସାଙ୍ଗରେ ସ୍କୁଲ୍‌ରେ ପଢୁଥିଲୁ । ତୁ ନିଶ୍ଚୟ ତାଙ୍କ ନାମ ଶୁଣିଥିବୁ । ଶୁଣିନୁ ? ଏହା ପ୍ରକୃତରେ ବଡ଼ ଆଶ୍ଚର୍ଯ୍ୟ କଥା । ଭଲ

Digitized by srujanika@gmail.com

ଓକିଲ ଭାବେ ପୁଣି ଗରିବ ଲୋକଙ୍କ ଓକିଲ ଭାବେ ତାଙ୍କର ବେଶ୍ ସୁନାମ ଅଛି । ମଣିଷ ସ୍ୱଭାବରେ ତାଙ୍କ ଉପରେ ମୁଁ ମୋର ସବୁ ଆସ୍ଥା ଓ ବିଶ୍ୱାସ ରଖିଛି ।'

'ତୁମେ ଯାହା କହିବ ମୁଁ ତା' କରିବ ।' କେ' କହିଲା କିନ୍ତୁ ଯେପରି ତରବରିଆ ହୋଇ ତା' କକା କାମସବୁ କରୁଛନ୍ତି ସେଥିପାଇଁ ସେ ଚିନ୍ତିତ ହୋଇ ପଡ଼ିଲା । ଜଣେ ଗରିବ ଲୋକଙ୍କ ଓକିଲ ପାଖକୁ ଏମିତି ତରତର ହୋଇ ଯିବାରେ କିଛି ଗୌରବ ଥିଲା ଭଳି ତାକୁ ଲାଗିଲାନି । 'ଏମିତି ଗୋଟେ କେଶ୍‌ରେ ଜଣେ ଓକିଲ ଲୋଡ଼ିବା ପାଇଁ କୌଣସି କାରଣ ମୁଁ ଦେଖୁନି ।'—କେ' କହିଲା ।

'ଅବଶ୍ୟ ! ତେବେ ଲୋଡ଼ିଲେ କ୍ଷତି କଅଣ ? ହଁ, ତେବେ ବର୍ତ୍ତମାନ ସୁଦ୍ଧା ଯାହା ଯାହା ଘଟିଛି ସବୁ ମୋତେ କହ ତ । ଯାହା ଫଳରେ ଆମେ ବର୍ତ୍ତମାନ କେଉଁଠି ଛିଡ଼ା ହୋଇଛୁଁ ମୁଁ ଟିକିଏ ଧାରଣା କରିବି ।'

ସଙ୍ଗେ ସଙ୍ଗେ ଯାହାସବୁ ଘଟିଛି କେ' ଟିକିନିଖି କରି କହିଗଲା । କାରଣ ସେ ଜାଣେ ଯେ ଖୋଲା ଖୋଲି କଥା ଦ୍ୱାରା ହିଁ ଏପରି ମକଦ୍ଦମାର ବିରୋଧ କରା-ଯାଇପାରେ ଏବଂ ଏପରି ଖୋଲା ଖୋଲି କହିଦେବା ଦ୍ୱାରା ଏହି ମକଦ୍ଦମା ବିଷୟରେ ତା' କକାର ଧାରଣାକୁ ବଦଳାଇ ଦେଇପାରିବ । ପ୍ରତିବାଦ କରି ସେ କହିପାରିବ ଯେ ଏ ମକଦ୍ଦମା ନିଆ ନୁହେଁ । ଫ୍ରଲେନ୍ ବ୍ରାସ୍‌ନାର୍‌ର ନାମ ସେ ଥରେ 'ମାତ୍ର ପ୍ରସଙ୍ଗକ୍ରମେ ଧରିଥିଲା । ତଥାପି ଏ ଅବହେଳା ତାର ଟିକିନିଖି ବର୍ଣ୍ଣନାରେ ବ୍ୟାଘାତ ସୃଷ୍ଟି କରି ନଥିଲା କାହିଁକି ନା ଏ ମକଦ୍ଦମା ସହ ତାର କିଛି ସମ୍ପର୍କ ନଥିଲା । ମକଦ୍ଦମା କଥା ବର୍ଣ୍ଣନା କରୁଥିଲା ବେଳେ ଝରକା ଦେଇ ସେ ବାହାରକୁ ଚାହିଁଥିଲା । ସେ ଦେଖିଲା ଯେ ତାଙ୍କ ଟ୍ୟାକ୍ସି ସେହି ସହରତଳି ଦେଇ ଚାଲିଛି ଯେଉଁଠି କୋର୍ଟର ଅଫିସ୍ ଅଛି । ଏହି ବିଷୟରେ ସେ ତାର କକାର ଦୃଷ୍ଟି ଆକର୍ଷଣ କଲା । କିନ୍ତୁ ତା' କକା ଏମିତି ଯୋଗାଯୋଗ ପ୍ରତି ବିଶେଷ ଭାବରେ ଆଗ୍ରହ ଦେଖାଇଲେ ନାହିଁ । ଗୋଟିଏ ଅନ୍ଧାରୁଆ ଘର ଆଗରେ ଟ୍ୟାକ୍ସି ଠିଆହେଲା । ତଳ ମହଲାର ଦ୍ୱାର ପାଖରେ ତା' କକା ଘଣ୍ଟି ଚିପିଲେ । ଅପେକ୍ଷା କରିଥିଲା ବେଳେ ସେ ବଡ଼ ବଡ଼ ଦାନ୍ତ ଦେଖାଇ ହସିହସି କହିଲେ—'ଆଠଟା ବେଳେ ମହକିଲ୍‌ମାନଙ୍କ ଆସିବା ପାଇଁ ଠିକ୍ ସମୟ ନୁହେଁ । କିନ୍ତୁ ମୋ' ପାଇଁ ହୁଲଡ୍ ଖରାପ ଭାବିବେ ନାହିଁ । ଲୁହା ଗ୍ରୀଲ୍ ପଛପଟେ ଦୁଇଟି ବଡ଼ବଡ଼ ଆଖି ଦେଖା ଦେଲା । ଦୁଇଜଣ ଆଗନ୍ତୁକଙ୍କୁ କ୍ଷଣକ ପାଇଁ ନିରୀକ୍ଷଣ କରି ପୁଣି ଉଭେଇ ଗଲା । କିନ୍ତୁ ଦ୍ୱାର ଖୋଲିଲା ନାହିଁ । କେ' ଓ ତାର କକା ନିଶ୍ଚିତ ଯେ ସେମାନେ ଦୁଇଟି ଆଖି ଦେଖିଛନ୍ତି ।

Digitized by srujanika@gmail.com

'ଜଣେ ନୂଆ ସ୍ୱାଗତକାରିଣୀ ବୋଧହୁଏ । ସେଇଥିପାଇଁ ଅଚିହ୍ନା ଲୋକ ଦେଖି ଡରୁଛି ।' କେ'ର କକା ଏତକ କହିଲେ ଏବଂ ଆଉଥରେ ଘଣ୍ଟି ବଜାଇଲେ । ଆଉଥରେ ସେଇ ଆଖି ଦେଖା ଦେଲା । ବର୍ତ୍ତମାନ ସେ ଆଖି କେମିତି କରୁଣ ଦେଖା ଯାଉଥିଲା । କିନ୍ତୁ ଏପରି ଭୃକ୍ଷିଲା ବୋଧହୁଏ ଠିକ୍ ନୁହେଁ । ଏହା ହୁଏତ ସେଇ ଲଗାଲା ଗ୍ୟାସ୍ ଆଲୁଅଟା ଯୋଗୁଁ ହେଉଥିବ । ସେ ବତୀଟା ତ ଖାଲି ସାଁ ସାଁ ଶବ୍ଦ କରୁଥିଲା ଆଉ ଯେତେ ଶବ୍ଦ କରୁଥିଲା ତା'ଠାରୁ କମ୍ ଆଲୁଅ ଦେଉଥିଲା ।

'ଦ୍ୱାର ଖୋଲ, ଆମେ ହୁଲ୍‌ଦ୍‌ଙ୍କ ବନ୍ଧୁ !' ଗ୍ରୀଲ୍ ଉପରେ ଜୋର୍‌ରେ ହାତ ବାଡ଼େଇ ବାଡେଇ କେ'ର କକା ଚିତ୍କାର କଲେ ।

'ହୁଲ୍‌ଦ୍‌ ପୀଡ଼ିତ'—ଗ୍ରୀଲ୍ ପଛପଟୁ ମୃଦୁ ଶବ୍ଦ ଭାସି ଆସିଲା । ଷ୍ଟୋଟ ଗଳିବାଟର ଆର ମୁଣ୍ଡରେ ଦ୍ୱାରଟିଏ ଖୋଲିଗଲା ଏବଂ ଗାଉନ୍ ପିନ୍ଧି ଜଣେ ଲୋକ ଛିଡ଼ା ହୋଇ ଏହି ଖବରଟି ଖୁବ୍ ଧୀର ସ୍ୱରରେ ଦେଲେ । ଅପେକ୍ଷା କରି କରି ବିରକ୍ତ ହୋଇଯାଇଥିବା କେ'ର କକା ଚିତ୍କାରକରି ଉଠି ଘୂରି ପଡ଼ିଲେ । 'ପୀଡ଼ିତ' ତୁମେ କହୁଛ ସେ ପୀଡ଼ିତ ?' ଏତକ କହି କକା ସେ ଲୋକଟି ଆଡ଼କୁ ଭୟଙ୍କର ଭାବରେ ଆଗେଇ ଗଲେ ଯେମିତିକି ସେ ଲୋକଟି ମୂର୍ତ୍ତିମନ୍ତ ବ୍ୟାଧି । 'ଦ୍ୱାର ଖୋଲା ହେଲାଣି ।' ଏତକ କହି ଓକିଲଙ୍କ ଘର ଆଡ଼କୁ ହାତ ଦେଖାଇ ଦେଇ ନିଜ ଗାଉନ୍‌କୁ ଟେକି ଲୋକଟି ଚାଲିଗଲା । ପ୍ରକୃତରେ ଦ୍ୱାର ଖୋଲା ଥିଲା । ଗୋଟିଏ ତରୁଣୀ ଧଳା ପୋଷାକ ପିନ୍ଧି ହଲ୍ ନିକଟରେ ମହମବତୀଟିଏ ଧରି ଠିଆ ହୋଇଥିଲା । କେ' ତାର କଳା ଅଥଚ ସାମାନ୍ୟ ଫୁଲିଲା ଫୁଲିଲା ଆଖିକୁ ଠିକ୍ ଚିହ୍ନି ପାରୁଥିଲା । ଝିଅଟି ଦେଖାଉଥିବା ସମ୍ମାନ ପ୍ରତି ନଜର ନ ଦେଇ କେ'ର କକା କହି ଉଠିଲେ—'ଆର ଥରକୁ ଯେମିତି କବାଟ ଖୋଲିବାରେ ଆଉ ଟିକିଏ ଫୁର୍ତ୍ତି ହୁଅ ।' 'ଜୋସେଫ୍'-ଅସ କେ'ର କକା ତାକୁ ଡାକଲେ । ସେତେବେଳେ କେ' ମୃଦୁ ଭାବରେ ସେଇ ଝିଅଟି ପାଖଦେଇ ଯାଉଥିଲା । ବିନା ଦ୍ୱିଧାରେ କେ'ର କକା ଗୋଟିଏ ଭିତର ଦ୍ୱାର ଆଡ଼କୁ ଯାଉଥିଲେ, ଝିଅଟି କହିଲା—ହୁଲ୍‌ଦ୍‌ ପୀଡ଼ିତ । କେ' ତଥାପି ଝିଅଟି ଆଡ଼କୁ ଗୃହିଁଥାଏ । ସେତେବେଳେ ସେ ବାହାର କବାଟ ବନ୍ଦ କରିବା ପାଇଁ ବୁଲି ପଡ଼ିଥାଏ । ଝିଅଟିର ମୁହଁ କଣ୍ଢେଇର ମୁହଁ ପରି ଗୋଲ୍ । ତାର ଶେତା ଗାଲ, ଚିବୁକ କେବଳ ଗୋଲ୍ ନୁହେଁ, ତାର ମଥା ଏବଂ କପାଳର ଗାର ମଧ୍ୟ ଗୋଲ୍ । 'ଜୋସେଫ୍' ଆଉ ଥରେ କେ'ର କକା ପାଟି କରିଉଠିଲେ ଏବଂ ଝିଅଟିକୁ ପୃଚ୍ଛି କହିଲେ 'କଅଣ ସେଇ ହୃଦ୍‌ରୋଗ ?'

'ହଁ, ମୁଁ ତ ସେଇଆ ଭାବୁଛି ।' ଝିଅଟି କହିଲା । ଏ ଭିତରେ ସେ ମହମବତୀ ଧରି ଆଗେଇ ଯାଇ ଗୋଟିଏ ଦ୍ୱାର ଖୋଲିଦେଲା । ମହମବତୀର

Digitized by srujanika@gmail.com

ଆଲୁଅ ପଡୁ ନଥିବା ଘରର ଗୋଟିଏ କୋଣରେ ଲମ୍ବା ଦାଢ଼ିଥିବା ଗୋଟିଏ ମୁହଁ ତକିଆ ଉପରୁ ଟିକଏ ଉପରକୁ ଉଠିଲା ।

'ଲେନ, କିଏ ଆସିଛନ୍ତି ?' ଓକିଲ ପଚାରିଲେ । ଆଲୁଅରେ ତାଙ୍କ ଆଖି ଜଳା ମାରିଯିବାରୁ ସେ ଆଗନ୍ତୁକଙ୍କୁ ଚିହ୍ନିପାରିଲେ ନାହିଁ ।

'ତୁମ ପୁରୁଣା ବନ୍ଧୁ ଆଲ୍‌ବର୍ଟ୍' କେ'ର କକା କହିଲେ ।

'ଓଃ ଆଲ୍‌ବର୍ଟ୍' ଏତିକି କହି ପୁଣି ସେ ତକିଆ ଉପରେ ଢଳିପଡ଼ିଲା । ଯେମିତିକି ଏପରି ଆଗନ୍ତୁକ ପାଖରେ ମୁଣ୍ଡ ଟେକି ରହିବାର କିଛି ପ୍ରୟୋଜନ ନାହିଁ ।

କ'ଣ ଦେହ ପ୍ରକୃତରେ ଖୁବ୍ ଖରାପ ? ଖଟଣା ଧାରରେ ବସିପଡ଼ି କେ'ର କକା କହିଲେ । 'ଖୁବ୍ ଖରାପ ବୋଲି କିନ୍ତୁ ମୋର ବିଶ୍ୱାସ ହେଉନି । ସେଇ ପୁରୁଣା ସାଧାରଣ ହୃଦ୍‌ରୋଗ । ଆଗପରି ଭଲ ହୋଇଯିବ । 'ହୋଇପାରେ' ଟିକିଏ ଖୁବ୍ ମୃଦୁ ସ୍ୱରରେ କହିଲେ । 'କିନ୍ତୁ ଆଗ ଅପେକ୍ଷା ଏଥର ଖୁବ୍ ବେଶୀ ଖରାପ । ନିଶ୍ୱାସ ପ୍ରଶ୍ୱାସ ନେବାରେ କଷ୍ଟ ହେଉଛି । ଆଦୌ ଶୋଇପାରୁନି ଆଉ ଦିନକୁ ଦିନ ଦୁର୍ବଳ ହୋଇ ପଡୁଛି ।'

'ଆଚ୍ଛା' ନିଜ ପାନାମା ଟୋପିଟିକୁ ଆଣ୍ଠୁରେ ଜୋର୍‌ରେ ଚାପି ଧରି କେ'ର କକା କହିଲେ । 'ଏହା ହେଲେତ ଖରାପ କଥା କିନ୍ତୁ ତୁମର ଚିକିତ୍ସା ଠିକ୍ ଚାଲିଛିତ ? ଏ ଘରଟା କେମିତି ବଡ଼ ଅନ୍ଧାରୁଆ । କେମିତି ମାଡ଼ି ପଡ଼ିଲା ପରି ଲାଗୁଛି । ବହୁତ ଦିନ ତଳେ ମୁଁ ଏଠାକୁ ଆସିଥିଲି କିନ୍ତୁ ସେତେବେଳେ ଏ ଘର କେତେ ଉଜ୍ଜ୍ୱଳ ଓ ପ୍ରାଣବନ୍ତ ଥିଲା । ଆଉ ତୁମର ଏ ବୁଢ଼ୀଟି ସେତେ ଚାଲାକ୍ ଥିଲାପରି ଜଣାପଡୁନି । ସେ କଅଣ ସବୁ ଲୁଚାଉଛି କି ?'

ଝିଅଟି ତଥାପି ଆଲୁଅ ଧରି କବାଟ ପାଖରେ ଠିଆ ହୋଇଥିଲା । ତାହା ଆଖିର ପଲକପାତରୁ ଜଣେ ଅନୁମାନ କରିପାରିବ ଯେ ଯଦିଓ କେ'ର କକା ତା' ବିରୁଦ୍ଧରେ କହୁଥିଲେ ସେ ତାଙ୍କ ଆଡ଼କୁ ନଅନାଇ କେ' ଆଡ଼କୁ ହିଁ ଚାହିଁ ରହୁଥିଲା । କେ' ଯେଉଁ ଚଉକି ଦେହରେ ଆଉଜି ପଡ଼ିଥିଲା ସେଇଟାକୁ ସେ ସେଇ ଝିଅଟି ଆଡ଼କୁ ଠେଲିଦେଲା ।

'ମୋପରି ପୀଡ଼ିତ ଲୋକ ନିଶ୍ଚିତଭାବେ ନୀରବତା ଦରକାର କରେ ।' ଓକିଲ କହିଲେ । ମୋତେ ତ କାହିଁ ଏ ଘର ଅନ୍ଧାରୁଆ ଲାଗୁନି । ଟିକଏ ରହି ପୁଣି କହିଲେ 'ଲେନି ମୋର ଖୁବ୍ ସେବାକରୁଛି । ସେ ଖୁବ ଭଲ ଝିଅଟିଏ ।'

Digitized by srujanika@gmail.com

ଏପରି କଥା କିନ୍ତୁ କେ'ର ଜଜାଙ୍କ ଧାରଣାକୁ ବଦଳାଇ ପାରିଲନି । ସେ ଝିଅଟି ବିଷୟରେ ତାଙ୍କ ମନରେ ଆଗରୁ କେମିତି ଗୋଟେ ମନ୍ଦ ଧାରଣା ହୋଇ ଯାଇଥିଲା । ଯଦିଓ ଶ୍ରେଣୀର କଥାରେ ସେ କିଛି ଜବାବ ଦେଲେ ନାହିଁ କିନ୍ତୁ ସେ ଝିଅଟି ଯେତେବେଳେ ବିଛଣା ପାଖକୁ ଯାଇ ବିଛଣା ପାଖ ଟେବୁଲ ଉପରେ ଆଲୁଅଟିକୁ ରଖିଲାବେଳେ କମ୍ବା ଶ୍ରେଣୀ ଉପରେ ନଇଁପଡ଼ି ତକିଆ ସଜାଇ ଧୀରେ ଧୀରେ କଥା ହେଉଥିଲାବେଳେ କେ'ର ଜଜା ତାକୁ ତୀବ୍ର ଦୃଷ୍ଟିରେ ଚାହିଁଥିଲେ । ସେ ପୂରା ଭୁଲିଯାଇଥିଲେ ଯେ ସେ ଗୋଟିଏ ରୋଗୀର ଘରେ ଅଛନ୍ତି । ସେ ହଠାତ୍ ଠିଆ ହୋଇପଡ଼ି ଝିଅଟିର ପଛେ ପଛେ ଚାଲିବାକୁ ଲାଗିଲେ । ଏପରି ଅବସ୍ଥାରେ ସେ ଯଦି ଝିଅଟିର ସ୍କାର୍ଟ୍‌କୁ ଧରି ବିଛଣା ଉପରୁ ଟାଣି ଆଣିଥାଆନ୍ତେ ତେବେ ବି କେ' ହୁଏତ ଆଶ୍ଚର୍ଯ୍ୟ ହୁଅନ୍ତା ନାହିଁ । ଏହି ଘଟଣାକୁ କେ' ବଡ଼ ଉଦାସଭାବରେ ଲକ୍ଷ୍ୟ କରୁଥିଲା । ଓକିଲଙ୍କ ଦେହ ଖରାପ ତା'ପାଖରେ ସମ୍ପୂର୍ଣ୍ଣ ଅଗ୍ରହଣୀୟ ନଥିଲା କିନ୍ତୁ ତା'ପାଇଁ ତା' ଜଜାଙ୍କ ଶରୀର ଅଯଥା ଆଗ୍ରହକୁ ପୂରା ବାଧା ଦେଇ ପାରୁନଥିଲା । ତେଣୁ ଏପରି ଅବସ୍ଥାକୁ ସେ ଗ୍ରହଣ କରି ନେଲା କାରଣ ତା'ର ବିନା ସାହାଯ୍ୟରେ ଏହା ତା ଜଜାଙ୍କ ଆଗ୍ରହକୁ ଧୀରେ ଧୀରେ କମାଇ ଦେଇଥିଲା । ବୋଧହୁଏ କେବଳ ସେ ନର୍ସ ଝିଅଟିକୁ ଅପମାନିତ କରିବା ପାଇଁ ସେ ପାଟି କରି ଉଠିଲେ—'ଫ୍ରାଲେନ୍ ଦୟାକରି କିଛି ସମୟ ପାଇଁ ଆମକୁ ଟିକିଏ ଏକୁଟିଆ ରହିବାକୁ ଦିଅ । କୌଣସି ବ୍ୟକ୍ତିଗତ କଥା ବିଷୟରେ ମୁଁ ମୋ' ବନ୍ଧୁ ସହ ଆଲୋଚନା କରିବାକୁ ଚାହେଁ ।'

ତଥାପି ଶ୍ରେଣୀ ପାଖରେ ନଇଁ ପଡି କାନ୍ଥପାଖ ବିଛଣାକୁ ସଜାଉ ସଜାଉ ନର୍ସଟି କେବଳ ମୁହଁ ବୁଲାଇ ଚାହିଁଲା ଓ ଅତି ଧୀର ଗଳାରେ କହିଲା—'ମୋ' ମୁନିବଙ୍କ ଦେହ ଖୁବ୍ ଖରାପ । ତାଙ୍କ ପାଙ୍ଗରେ ବର୍ତ୍ତମାନ କୌଣସି ବିଷୟରେ ଆଲୋଚନା କରି ହେବ ନାହିଁ ।' ତାର ସ୍ୱର ଖୁବ୍ ନରମ ଏବଂ କେ'ର ଜଜାଙ୍କ ଚିତ୍କାରର ଠିକ୍ ବିପରୀତ ଥିଲା । ସେ ବୋଧହୁଏ ଆଳସ୍ୟ ଯୋଗୁଁ ତାର ପୂର୍ବ କଥାକୁ ଦୋହରାଇଲା । କିନ୍ତୁ ତାର ଏକଥାକୁ ଜଣେ କେହି ଥଟ୍ଟା ବୋଲି ବୁଝିପାରେ ଏବଂ କେ'ର ଜଜା ତେଣୁ ଖୁବ୍ ଜୋର୍ ରାଗିଗଲେ ଯେମିତି କି ତାକୁ ବସ୍ତୁ କାମୁଡ଼ିଲା ।

'ତୁ ଅଲକ୍ଷଣୀ' ଉତ୍ତେଜିତ ହୋଇ ଏତେ ତରତରରେ କହି ପକାଇଲେ ଯେ କେହି ତାକୁ ବୁଝିପାରିଲେ ନାହିଁ ।

ଭୟରେ କେ' ଚମକି ପଡ଼ିଲା । ଏମିତି ଭାବରେ ତା' ଜଜା ଉତ୍ତେଜିତ ହେବେ ବୋଲି ସେ ଆଶଙ୍କା କରୁଥିଲା ଏବଂ ଦୁଇ ହାତରେ ତାଙ୍କ ପାଟିକୁ ଚାପି

Digitized by srujanika@gmail.com

ଧରିବା ଉଦ୍ଦେଶ୍ୟରେ ସେ ତାଙ୍କ ଆଡ଼କୁ ଧାଇଁଗଲା । ଭାଗ୍ୟକୁ ରୋଗୀ ଜଣକ ନର୍ସ ପଛରେ ବିଛଣା ଉପରେ ଉଠି ବସିଲେ । କେ'ର କକା ପିତା ଔଷଧ ଖାଇଲା ଭଳି ପାଟିକୁ ବିକୃତ କରି କହିଲେ—'ମୁଁ ନିଶ୍ଚିତ ଜବାବ ଦେଉଛି ଆମେ ଆମର ହୋସ୍‌ରେ ଅଛୁଁ । ମୁଁ ଯାହା ମାଗୁଛି ତାହା ଯଦି ଅସମ୍ଭବ ତେବେ ମୁଁ କେବେ ମାଗନ୍ତି ନାହିଁ । ଦୟାକରି ଏବେ ଟିକିଏ ଯାଅ ।'

ବିଛଣା ପାଖରେ ଝିଅଟି ସିଧା ଠିଆହେଲା । କେ'ର କକାଙ୍କ ଆଡ଼କୁ ସିଧା ଚାହିଁଲା । କେ'କୁ ଝିଅଟିର କେବଳ ଗୋଟିଏ ମାତ୍ର ହାତ ଦେଖା ଯାଉଥିଲା । କେ' ଅନୁମାନ କଲା ଯେ ଅନ୍ୟ ହାତଟିରେ ଝିଅଟି ଓକିଲଙ୍କ ହାତକୁ ଆପୁଡ଼ୁଛି ।

'ଲେନି ସାମ୍ନାରେ ତୁମେ ଯେକୌଣସି କଥା ଆଲୋଚନା କରିପାର ।' ଅନୁରୋଧ ସ୍ୱରରେ ଓକିଲ କହିଲେ ।

'ମୋ' ସହିତ ଏହାର କିଛି ସମ୍ପର୍କ ନାହିଁ । ମୋର କିଛି ଗୁପ୍ତକଥା ନାହିଁ । ଏତିକି କେ'ର କକା କହିଲେ ଓ ମୁହଁ ବୁଲାଇ ନେଲେ ଯେମିତିକି ସେ ସବୁକଥାର ସମାପ୍ତି ଆଣିବାକୁ ଚାହାନ୍ତି ଅଥଚ ଓକିଲଙ୍କୁ ଆଉ ଥରେ ବିଚାର କରିବାକୁ ସମୟ ଦେଉଥିଲେ ।

'ତା' ହେଲେ କାହା ବିଷୟରେ ତୁମେ କହିବାକୁ ଆସିଛ ?'

କ୍ଲାନ୍ତ ସ୍ୱରରେ ଓକିଲ ଏତିକି ପଚାରିଲେ ଓ ବିଛଣା ଉପରେ ପୁଣିଥରେ ଶୋଇପଡ଼ିଲେ ।

'ମୋ' ପୁତୁରା ବିଷୟରେ । ମୁଁ ତାକୁ ମୋ' ସାଙ୍ଗରେ ଆଣିଛି ।' ଏହା କହି ପୁତୁରାର ପରିଚୟ କରାଇ ଦେଲେ । 'ଜୋସେଫ୍ କେ' ମୁଖ୍ୟ କିରାଣୀ ।'

'ଓଃ'—ରୋଗୀଟି ବହୁ କଷ୍ଟରେ ଦେହରେ ସାମାନ୍ୟ ପ୍ରାଣ ସଞ୍ଚାର କରି କେ' ଆଡ଼କୁ ନିଜ ହାତ ବଢ଼ାଇ କହିଲେ—'କ୍ଷମା କରିବେ, ମୁଁ ଆପଣଙ୍କୁ ଲକ୍ଷ୍ୟ କରିନାହିଁ । ଲେନି ତୁମେ ଟିକିଏ ଯାଅ ।' ସେ ତାର ହାତକୁ ଚିପି ଧରିଥିଲେ ଯେମିତିକି ସେ ତାକୁ ବହୁତ ସମୟ ପାଇଁ ବିଦାୟ ଦେଉଛନ୍ତି । ବଡ଼ ବିନୟ ଭାବରେ ନର୍ସ ସେଠାରୁ ଚାଲିଗଲା ।

'ତା'ହେଲେ ମୋ' ରୋଗ ଶଯ୍ୟାରେ ତୁମେ ମୋତେ ଖାଲି ଦେଖିବାକୁ ଆସିନ ? ତୁମେ ତୁମ କାମରେ ଆସିଛ ।' ବର୍ତ୍ତମାନ ଶାନ୍ତ ପଡ଼ିଯାଇ ଥିବା ଏବଂ ପୁଣି ଥରେ ରୋଗୀର ବିଛଣା ପାଖରେ ବସିଥିବା କେ'ର କକାକୁ ରୋଗଗ୍ରସ୍ତ ଓକିଲ କହିଲେ । ରୋଗୀ ହିସାବରେ ତାଙ୍କୁ ଦେଖିବାକୁ ଆସିଛନ୍ତି ଏଇ ଚିନ୍ତା

Digitized by srujanika@gmail.com

ଓକିଲଙ୍କୁ ଘାରିଥିଲା । ତେଣୁ ସେ କ୍ଳାନ୍ତ ହୋଇ ପଡ଼ିଥିଲେ । ବର୍ତ୍ତମାନ ସେ ଉଠି ବସିଲେ । ତାଙ୍କ ଦେହରେ ଯେମିତି ଯୌବନ ଫେରିଆସିଲା । ନିଜ କହୁଣୀ ଉପରେ ଭର ଦେଇ ସେ ଏମିତି ଆଉଜି ବସିଲେ ଯେ ଜଣାଗଲା ଯେମିତିକି ତାଙ୍କ କହୁଣୀକୁ କଷ୍ଟ ହେବ । ତାପରେ ସେ ତାଙ୍କ ଦାଢ଼ିରେ ଆଙ୍ଗୁଳି ଚାଳନ କରିବାକୁ ଲାଗିଲେ ।

'ସେ ଡାହାଣୀ ଚାଲିଯିବାରୁ ତୁମେ ବେଶ୍ ସୁସ୍ଥ ଦିଶିଲ ।' 'କେ'ର କକା ଏତିକି କହିଲା ପରେ ପୁଣି ଧୀରେ ଧୀରେ କହିଲେ 'ମୁଁ ବାଜିମାରି କହିପାରେ ସେ ତୁମ କଥା ଶୁଣୁଛି ।'

ଏହା କହି ସେ ଦ୍ୱାର ପାଖକୁ ଝାମ୍ପି ଗଲେ । କିନ୍ତୁ ଦ୍ୱାର ପଛପଟେ କେହି ନଥିଲେ । ଖୁବ୍ ବେଶୀ ହତାଶ ନହୋଇ ସେ ଫେରିଆସିଲେ କାରଣ ତାଙ୍କ କଥାକୁ ତାର ନ ଶୁଣିବା ଯେମିତି ତାଙ୍କ ପାଇଁ ତାର ଅନୁଦାରତାର ସୂଚକ । ତାଙ୍କ ପ୍ରତି ତାର ଘୃଣା ଓ ବିରକ୍ତିର ପ୍ରତୀକ ।

'ତୁମେ ତା' ପ୍ରତି ଅନ୍ୟାୟ କରୁଛ ।' ନର୍ସ ସପକ୍ଷରେ ଆଉ କିଛି ଯୁକ୍ତି ନବାଢ଼ି ଓକିଲ ଏତିକି କହିଲେ । ତା'ପରେ ଖୁବ୍ ବନ୍ଧୁତ୍ୱପୂର୍ଣ୍ଣ ସ୍ୱରରେ କହିବାକୁ ଲାଗିଲେ—

'ତୁମ ପୁତୁରାର ଏଇ କେଶ୍ ପାଇଁ ଲଢ଼ିବାର ସୁଯୋଗ ପାଇଲେ ମୁଁ ନିଜକୁ ଭାଗ୍ୟବାନ ମନେକରିବି । ଅବଶ୍ୟ ଏପରି ଏକ ଜଟିଳ କେଶ୍ ପାଇଁ ମୋର ସ୍ୱାସ୍ଥ୍ୟ ମୋତେ ଅନୁମତି ଦେଲେ ହେଲା । ମୋର ବିଶ୍ୱାସ ସ୍ୱାସ୍ଥ୍ୟ ଏତେ ଖରାପ ହେବ ନାହିଁ । ମୁଁ ମୋର ସବୁପ୍ରକାର ଚେଷ୍ଟା କରିବି । ଏହାସତ୍ତ୍ୱେ ଯଦି ଅସଫଳ ହୁଏ ତେବେ ମୋର ସାହାଯ୍ୟ ପାଇଁ ତୁମେ ଆଉ ଜଣକୁ ଡ଼ାକିବ । ସତ କହିବାକୁ ଗଲେ ଏ ମକଦ୍ଦମା ଏତେ ଆକର୍ଷଣୀୟ ଯେ ଏଥିରେ ଜଡିତ ହେବାର ଲୋଭକୁ ମୁଁ ସମ୍ବରଣ କରି ପାରୁନାହିଁ । ଯଦି ମୋର ହୃଦ୍‌ରୋଗ ନବଢ଼େ ତେବେ ମୁଁ ହାରିବାକୁ କେବେ ଦେବି ନାହିଁ । ଆମ ବିରୁଦ୍ଧରେ ନଯିବା ପାଇଁ ପ୍ରକୃତ ବାଧା ସୃଷ୍ଟି କରିବି ।'

କେ' ଓକିଲଙ୍କ କଥାର ବିନ୍ଦୁବିସର୍ଗ ବୁଝିପାରୁନଥିଲା । ସେ ତା' କକାଙ୍କ ଆଡ଼କୁ ଚାହିଁଲା । ଆଶା କରିଥିଲା ସେ ତାକୁ କିଛି କହିବେ । ମାତ୍ର ହାତରେ ବତୀଟିକୁ ଧରି ବିଛଣା ପାଖରେ ସେ ବସିଥାଆନ୍ତି । ଟେବୁଲ ଉପରେ ଥିବା ଗୋଟିଏ ଔଷଧ ବୋତଲ ଗାଲିଚା ଉପରେ ଗଡ଼ି ପଡିଛି । ତା' କକା ତାଆଡ଼କୁ ନଚାହିଁ ଓକିଲ ଯାହା କହୁଛନ୍ତି ସେଥିରେ ମୁଣ୍ଡ ଟୁଙ୍ଗାରିବାରେ ଲାଗିଛନ୍ତି ।

Digitized by srujanika@gmail.com

ଜଣାଯାଉଛି ଯେମିତି ସବୁଥିରେ ତାଙ୍କର ସମ୍ମତି । ଏହିପରି ମୁଣ୍ଡ ଝୁଙ୍କାଇ ଝୁଙ୍କାଇ ବେଳେବେଳେ ଯାହା କେ' ଆଡ଼କୁ ଚାହିଁ ଦେଉଛନ୍ତି । ସେ ଚାହାଣି ଯେମିତି 'କେ' ପାଖରୁ ବି ସେମିତି ସମ୍ମତି ଦାବି କରୁଛି । ଓକିଲଙ୍କୁ କ'ଣ ତା କକା ମକଦ୍ଦମା ବିଷୟରେ ସବୁକଥା କହି ସାରିଲେଣି ? କିନ୍ତୁ ତାହା ସମ୍ଭବ ନୁହେଁ । ବର୍ତ୍ତମାନ ପୂର୍ବା ଯାହା ଘଟିଛି ସେଥିରେ ସେ କଥାତ ଅସମ୍ଭବ ।

'ମୁଁ ଠିକ୍ ବୁଝିପାରୁନାହିଁ ।' ଦ୍ୱନ୍ଦରେ ପଡ଼ି କେ' କହିଲା ।

'ଓଃ ! ବୋଧହୁଏ ମୁଁ ତୁମକୁ ଭୁଲ୍ ବୁଝିଲି ।' କେ' ପରି ବିଚଳିତ ହୋଇ ଓକିଲ କହିଲେ । 'ବୋଧହୁଏ ମୁଁ ଟିକିଏ ବେଶୀ ତରବର ହୋଇଗଲି ।' ତା'ହେଲେ ମୋ' ପାଖରେ କଅଣ ପରାମର୍ଶ କରିବ ? ମୁଁ ଭାବୁଛି ଏହା ତୁମ କେଶ୍ ବିଷୟରେ ?'

'ଅବଶ୍ୟ କେଶ୍ ବିଷୟରେ ।' କେ'ର କକା କହିଲେ ଏବଂ କେ' ଆଡ଼କୁ ଚାହିଁ ପଚାରିଲେ—

'ତୋତେ ପୁଣି କେଉଁ ଚିନ୍ତା ଘାରୁଛି ?'

'ଆଚ୍ଛା ଆପଣ ମୋ ବିଷୟରେ ଆଉ ମୋ ମକଦ୍ଦମା ବିଷୟରେ କେମିତି ସବୁ ଜାଣିଲେ ?' କେ' ପଚାରିଲା ।

'ଓଃ, ତା'ହେଲେ ଏଇଥି' ହସିହସି ଓକିଲ କହିଲେ । 'ତୁମେ ଜାଣ ମୁଁ ଜଣେ ଓକିଲ । ମୋର କାରବାର ଏଇ ଆଇନଜୀବୀଙ୍କ ଭିତରେ ଯେଉଁଠି ବିଭିନ୍ନ ମକଦ୍ଦମାଗୁଡ଼ିକ ଆଲୋଚିତ ହୋଇଥାଏ । ଯେଉଁ ମକଦ୍ଦମା ସବୁଠୁ ବେଶୀ ଆକର୍ଷଣୀୟ ତା' ମନ ଭିତରେ ରହିଯାଏ । ବିଶେଷତଃ ଏହି ମକଦ୍ଦମାଟି ମୋର ବାଲ୍ୟବନ୍ଧୁର ପୁତୁରା ସଂକ୍ରାନ୍ତରେ । ତେଣୁ ଏହା କିଛି ଆଶ୍ଚର୍ଯ୍ୟର କଥା ନୁହେଁ ଯେ ମୁଁ ତୁମ କେଶ୍ ବିଷୟରେ ଆଗରୁ ଜାଣିଛି ।'

'ତୁ ମକଦ୍ଦମା ବିଷୟରେ ଏତେ କଅଣ ଭାବୁଛୁ କହିଲୁ ?' କେ'ର କକା ପୁଣି ଥରେ ପଚାରିଲେ ।

'ଆପଣ ତାହାହେଲେ ଆଇନ୍ ଜଗତରେହିଁ ଚଳପ୍ରଚଳ କରୁଛନ୍ତି ?' କେ' ପଚାରିଲା । 'ହଁ', ଓକିଲ କହିଲେ ।

'ପିଲାଙ୍କ ଭଳି ତୁମେ କ'ଣ ପ୍ରଶ୍ନ କରୁଛ ?' କେ'ର କକା କହିଲେ । 'ମୋ' ଜୀବିକା ସହ ସମ୍ପୃକ୍ତ ଓକିଲମାନଙ୍କ ସହ ଚଳପ୍ରଚଳ ନକରି ଆଉ କାହା ସାଙ୍ଗରେ

Digitized by srujanika@gmail.com

ଚଳପ୍ରଚଳ କରିବ ବୋଲି ତୁମେ ଭାବୁଛ ?' ଓକିଲ ପଚାରିଲେ । 'ଏକଥା ଉପରେ ଆଉ ଯୁକ୍ତି କରାଯାଇ ନପାରେ ।' ତେଣୁ କେ' ଆଉ କିଛି ଜବାବ୍ ଦେଲା ନାହିଁ ।

'କିନ୍ତୁ ଆପଣ 'ଟପଲସ୍ ଅଫ୍ ଜାଷ୍ଟିସ୍'ରେ ଥିବା କୋର୍ଟ ସହ ଅଯଥା ସମ୍ପୃକ୍ତ । ସେ ପୁରୁଣା କୋଠାଟିରେ ବସୁଥିବା ସେ କୋର୍ଟ ସହ ସଂପୃକ୍ତ ନୁହଁନ୍ତି । ଏଇକଥା କେ' ପଚାରିବ ପଚାରିବ ହୋଇ ଶେଷରେ ପଚାରି ପାରିଲାନି ।

'ତୁମର ବୁଝିବା ଉଚିତ୍ ଯେ ବହୁତ ଓକିଲଙ୍କ ସହ ମୋର ଏପରି ମିଳାମିଶା ମୋର ମକ୍କେଲମାନଙ୍କ ଉପକାର ବିଭିନ୍ନ ଭାବରେ କରିଥାଏ । କେମିତି ଉପକାର କରିଥାଏ ଅବଶ୍ୟ ସେ କଥା ଏପରି ଖୋଲାଖୋଲି ଭାବରେ ବୁଝାଯାଇ ପାରିବନି । ଅବଶ୍ୟ ମୋର ଅସୁସ୍ଥତା ବର୍ତ୍ତମାନ ମୋତେ ଟିକେ କାବୁ କରି ଦେଇଛି । ତଥାପି ମୋର କେତେଷ୍ଟ ବନ୍ଧୁମାନେ ସବୁବେଳେ ପ୍ରାୟ ମୋ ପାଖକୁ ଆସନ୍ତି ଆଉ ମୁଁ ତାଙ୍କ ପାଖରୁ ସବୁକଥା ଜାଣିପାରେ । ଉଦାହରଣ ସ୍ୱରୂପ ମୋର ଜଣେ ଅନ୍ତରଙ୍ଗ ବନ୍ଧୁ ବର୍ତ୍ତମାନ ମୋତେ ଦେଖା କରିବାକୁ ଆସିଛନ୍ତି ।' ଉଦାସୀନ ଆଉ ଖାମ୍‌ଖିଆଲି ଭାବରେ ଏତିକି କହି ସେ ଘରର ଗୋଟିଏ ଅନ୍ଧାରୁଆ କୋଣ ଆଡ଼କୁ ହାତ ବଢ଼ାଇଲେ ।

'କେଉଁଠି ?' ରୁକ୍ଷ ଗଳାରେ କେ' ପଚାରିଲା । ସେ ପ୍ରଥମ ଥର ପାଇଁ ଆଶ୍ଚର୍ଯ୍ୟ ହୋଇ ଚମକି ପଡ଼ିଲା । ଅନିଶ୍ଚିତ ଭାବରେ ସେ ଚାରିପାଖକୁ ଚାହିଁଲା । ଛୋଟ ମହମବତୀଟିର କ୍ଷୀଣ ଆଲୁଅ ସେଠିଥିବା କାନ୍ଥ ପର୍ଯ୍ୟନ୍ତ ପହଞ୍ଚି ପାରୁନଥିଲା । ସେଇ ଅନ୍ଧାରୁଆ କୋଣରେ ଗୋଟାଏ ଅସ୍ପଷ୍ଟ ଆକୃତି ପ୍ରକୃତରେ ହଲ୍‌ଚଲ ହେବାର କେ' ଦେଖିଲା । ତା କକା ତାଙ୍କ ମୁଣ୍ଡ ଉପରେ ଟେକି ଧରିଥିବା ଆଲୁଅରେ କେ' ଦେଖିପାରିଲା ଯେ ଜଣେ ବୟସ୍କ ଭଦ୍ରଲୋକ ଗୋଟିଏ ଛୋଟ ଟେବୁଲ ପାଖରେ ବସିଛନ୍ତି । ସମସ୍ତଙ୍କ ଦୃଷ୍ଟିରୁ ଏଡ଼ାଇ ଏତେ ସମୟ ବସିବାକୁ ହେଲେ ତାଙ୍କୁ ନିଶ୍ଚୟ ନିଶ୍ୱାସ ନମାରି ବସିବାକୁ ପଡ଼ିଥିବ । ତା ନହେଲେ ଏମିତି କରିବା ଅସମ୍ଭବ । ବର୍ତ୍ତମାନ ସେ ଉଠି ଠିଆ ହେଲେ । ତାଙ୍କର ଅବସ୍ଥିତି ଜଣା ପଡିବାରୁ ନିଶ୍ଚିତ ଭାବେ ସେ ଖୁସି ନଥିଲେ । ଛୋଟ ଡେଣା ପରି ତାଙ୍କର ହାତ ଦୁଇଟିକୁ ସେ ହଲାଉଥିଲେ । ସେଥିରୁ ଜଣା ପଡୁଥିଲା ଯେମିତି ଏତେସବୁ ସମ୍ଭାଷଣ ଆଉ ପରିଚୟ ଆଦିକୁ ସେ ପସନ୍ଦ କରୁନାହାନ୍ତି । ସେ ଯେମିତି କହୁଥାନ୍ତି ଯେ କାହାରିକୁ ବିରକ୍ତ କରିବାକୁ ସେ ଆଦୌ ଚାହାନ୍ତି ନାହିଁ । ସେ କେବଳ ଚାହାନ୍ତି ଯେ ତାଙ୍କୁ ସେଇ ଅନ୍ଧାର ଭିତରକୁ ଯିବାକୁ ଦିଆଯାଉ ଯେଉଁଠି ତାଙ୍କ ଅବସ୍ଥିତିକୁ ସମସ୍ତେ ଭୁଲିଯାଇପାରିବେ । କିନ୍ତୁ ସେ ସୁଯୋଗ ହେଲା ନାହିଁ । 'ତୁମେ ଆମ

Digitized by srujanika@gmail.com

ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଦେଇ 'କୈଫିୟତ' ଦେବୀପରି ଓକିଲ କହିଲେ ଆଉ ସେ ଭଦ୍ରଲୋକଙ୍କୁ ହାତଠାରି ଆସିବାକୁ କହିଲେ । ଭଦ୍ରଲୋକର ସ୍ମରଣଶକ୍ତିକୁ ସଂଦିଗ୍ଧ ଆଖିରେ ଚାହିଁ ସମ୍ମାନର ସହ ଧୀରେ ଧୀରେ ଆସିବାକୁ ଲାଗିଲେ ।

'କଚେରୀର ମୁଖ୍ୟ କିରାଣି'—ଓଃ ! ମୋତେ କ୍ଷମା କରିବେ । ମୁଁ ତୁମ ସହ ଏମାନଙ୍କର ପରିଚୟ କରାଇ ଦେଇନାହିଁ । ଇଏ ହେଉଛନ୍ତି ମୋ ବନ୍ଧୁ ଆଲ୍‌ବାର୍ଟ୍ ବେ', ଇଏ ତାଙ୍କ ପୁତୁରା ଜୋସେଫ୍ ବେ' ଆଉ ଏ ହେଉଛନ୍ତି ଅଦାଲତ ମୁଖ୍ୟ କିରାଣି । ଭଦ୍ରଲୋକ ଏତେ ଭଲ ଯେ ମୋତେ ଦେଖା କରିବାକୁ ଆସିଛନ୍ତି । ଅଦାଲତର ମୁଖ୍ୟ କିରାଣି କେତେ କର୍ମବ୍ୟସ୍ତ ଏକଥା ଯେଉଁମାନେ ଜାଣନ୍ତି ସେହି-ମାନେ କେବଳ ଏହାଙ୍କର ଏପରି ଆସିବାର ମୂଲ୍ୟ କେତେ ବୁଝିପାରିବେ । ତାଙ୍କର ଏପରି ବ୍ୟସ୍ତତା ସତ୍ତ୍ୱେ ସେ ମୋତେ ଦେଖିବାକୁ ଆସନ୍ତି । ମୋ ସ୍ୱାସ୍ଥ୍ୟକୁ ନେଇ ଯେତେଦୂର ପାରେ ମୁଁ ଏଠାରେ ଟିକିଏ ଶାନ୍ତିରେ କଥା ହେଉଛୁ । ଆଗନ୍ତୁକ ମାନଙ୍କୁ ଆସିବାକୁ ନ ଦେବା ପାଇଁ ମୁଁ ଲେନିକୁ କହିନଥିଲି । ଏହା ସତ ଯେ ଆମେ କୌଣସି ଆଗନ୍ତୁକ ଆଶା କରୁନଥିଲୁ । ତେଣୁ ଆମେ ଖାଲି ଚାହୁଁଥିଲୁ ଯେ ଟିକିଏ ଶାନ୍ତିରେ ଚୁପ୍‌ଚାପ୍ ବସିବୁ । କିନ୍ତୁ ପରେ ପରେ ଆଲ୍‌ବାର୍ଟ୍ ତୁମେ ଆସିଲ । ତୁମର ସେ ଖ୍ୟାପଣ ଠକ୍ ଠକ୍ ଶବ୍ଦ ଶୁଣି ଆମର ମୁଖ୍ୟ କିରାଣି ସେଇ କୋଣକୁ ତାଙ୍କ ଟେବୁଲ ଓ ଚୌକି ସହ ଘୁଞ୍ଚିଯାଇଥିଲେ । କିନ୍ତୁ ବର୍ତ୍ତମାନ ଜଣାଯାଉଛି ଯେ ଆମ ହାତରେ ସୁଯୋଗ ଟିଏ ଆସି ପହଞ୍ଚିଛି । ତାହା ହେଉଛି, ସାଧାରଣ ଭାବରେ ଦେଖିଲେ, ଏ ମକଦ୍ଦମାଟି ଆମ ସମସ୍ତଙ୍କର । ତେଣୁ ଆମେ ସମସ୍ତେ ଏକ ସାଙ୍ଗରେ ବସି ତାର ଆଲୋଚନା କରିପାରିବା ।'

ସାମାନ୍ୟ ବାଙ୍କିଯାଇ ସମ୍ମାନଶୀଳ ହସ ଟିକିଏ ହସି ଚଟଣା ପାଖକୁ ଗୋଟିଏ ଆରାମ୍ ଚୌକି ଆଡ଼କୁ ହାତ ଦେଖାଇ କହିଲେ—'ଆଜ୍ଞା ଦୟାକରି…'

'ଦୁର୍ଭାଗ୍ୟବଶତଃ ମୁଁ ଖାଲି ଅଳ୍ପ ସମୟ ବସି ପାରିବି ।' ମୁଖ୍ୟ କିରାଣି ଭଦ୍ରଭାବରେ ଏତିକି କହି ଚୌକିରେ ବସିପଡ଼ିଲେ । ସବୁବେଳେ କିନ୍ତୁ ତାଙ୍କ ଆଖି ତାଙ୍କ ଘଡ଼ିଉପରେ ଥାଏ । ଘଡ଼ିକୁ ଦେଖୁ ଦେଖୁ କହିଲେ—'କାମବେଳ ହୋଇଗଲାଣି । ତଥାପି ମୋ ବନ୍ଧୁର ପରମ ବନ୍ଧୁଙ୍କ ସହ ପରିଚିତ ହେବାର ସୁଯୋଗରୁ ନିଜକୁ ବଞ୍ଚିତ କରି ପାରିବିନାହିଁ ।' କେ'ର କକାଙ୍କ ପ୍ରତି ସମ୍ମାନ ଦେଖାଇ ସେ ଟିକିଏ ନଇଁପଡ଼ିଲେ । କକା ମଧ୍ୟ ଏଥିରେ ଅତ୍ୟନ୍ତ ଉତ୍ସାହିତ ହୋଇ ଉଠିଲେ । କିନ୍ତୁ ତାଙ୍କର ପ୍ରକୃତି ଭିନ୍ନ ।

Digitized by srujanika@gmail.com

ସୂକ୍ଷ୍ମ ଭାବରେ ନିଜ ଭାବ ପ୍ରକାଶ କରିବାକୁ ସେ ସବୁବେଳେ ଅକ୍ଷମ । ତେଣୁ ସେ କରଣୀଙ୍କ କଥାଗୁଡ଼ିକୁ କର୍କଶ ସ୍ୱରରେ ହସି ହସି ଖଣ୍ଡନ କରି ଦେଲେ । କେ'ଙ୍କୁ ଏସବୁ ଦୃଶ୍ୟ ବଡ଼ ଖରାପ୍ ଲାଗୁଥିଲା । ସେ ଧୀର ସ୍ଥିର ଭାବରେ ସବୁ ଲକ୍ଷ୍ୟ କରୁଥିଲା କାରଣ ତା ପ୍ରତି କେହି ଦୃଷ୍ଟି ଦେଉନଥିଲେ । କୋର୍ଟର ମୁଖ୍ୟ କରଣୀଙ୍କୁ ପ୍ରାଧାନ୍ୟ ଦିଆଯିବାରୁ ଆଲୋଚନାରେ ସେ ନେତୃତ୍ୱ ନେବାକୁ ଲାଗିଲେ । ଏପରି କରିବା ଯେପରି ତାଙ୍କର ସ୍ୱାଭାବିକ ଗୁଣ । ଓକିଲଙ୍କର ଅସୁସ୍ଥତା, ବୋଧହୁଏ ଲୋକମାନଙ୍କୁ ଦୂରେଇ ଦେବା ପାଇଁ, ଏକ ପ୍ରକାରର ଛଳନା ଥିଲା । ସେ ବର୍ତ୍ତମାନ କାନ ପାଖରେ ନିଜ ଦୁଇ ହାତକୁ ରଖି ଅତି ଆଗ୍ରହ ସହ ତାଙ୍କ କଥା ଶୁଣିବାକୁ ଲାଗିଲେ । କେ'ର କକା ମହମବତୀଟିକୁ ଧରି ଥାଆନ୍ତି । ନିଜ ଜଙ୍ଘ ଉପରେ ତାକୁ ରଖିଥାଆନ୍ତି । କାଳେ ଜଙ୍ଘ ଉପରୁ ବତୀଟି ପଡ଼ିଯିବ ସେଥିପାଇଁ ଓକିଲଙ୍କ ମୁହଁରେ ବ୍ୟଗ୍ରତା ।

ପ୍ରଥମେ ଦେଖା ଦେଇଥିବା ବିଚଳିତ ଭାବ ଆଉ ଓକିଲଙ୍କର ନଥିଲା । ସେ ବର୍ତ୍ତମାନ ବଡ଼ ଆଗ୍ରହ ସହକାରେ କରଣୀଙ୍କ ଭାଷଣ ଶୁଣିବାରେ ଲାଗିଥାଆନ୍ତି । ବଡ଼ ଆନନ୍ଦରେ ସେ ତାଙ୍କ କଥା କହିବା ଭଙ୍ଗୀ, ହାତହଲା ସବୁ ଦେଖିବାରେ ଲାଗିଥାଆନ୍ତି । ଖଟକୁ ଆଉଜି ଠିଆ ହୋଇଥିବା କେ'କୁ ସେ କରଣୀ ପୂରା ଉପେକ୍ଷା କରୁଥିଲେ । ସେଠାରେ ସେ ଠିଆ ହୋଇଛି ବୋଲି ତାଙ୍କର ଖିଆଲ୍ ନଥିଲା । ସେ କେବଳ କେ'ର କକା ଆଉ ଓକିଲଙ୍କୁ ତାଙ୍କର ଶ୍ରୋତା ବୋଲି ଧରିନେଇ ଥିଲେ । ଏପରି ବୋଧହୁଏ ସେ ଜାଣିଶୁଣି କରୁଥିଲେ । ଏହାଛଡ଼ା କେ' ସେମାନଙ୍କର କଥା କିଛି ବୁଝିପାରୁନଥିଲା । ତେଣୁ ଠିଆ ହୋଇ ହୋଇ ସେ ପ୍ରଥମେ ନର୍ସ କଥା ଭାବିଲା । ତା' କକାଙ୍କ ଦ୍ୱାରା ସେ କେମିତି କଦର୍ଯ୍ୟ ବ୍ୟବହାର ପାଇଲା ସେ କଥା ଭାବିଲା । ତା'ପରେ ସେ ଭାବିବାକୁ ଲାଗିଲା କେଉଁଠି ସେ ଏହି କରଣୀଙ୍କୁ ଦେଖିଛି । ବୋଧହୁଏ ଭୁଲ ହୋଇଥାଇପାରେ । ତଥାପି ଏହି କରଣୀଟି ପ୍ରଥମ ଧାଡ଼ିରେ ବସିଥିବା ମେଞ୍ଚା ମେଞ୍ଚା ରୁଢ଼ ଥିବା ଭଦ୍ରଲୋକମାନଙ୍କ ସହ ପୂରା ମିଶି ଯାଉଛି ।

ବାଟଘରୁ ହଠାତ୍ ପ୍ଲେଟ ଭାଙ୍ଗିବା ଝଣଝାଣ ଶବ୍ଦ ଶୁଣି ସମସ୍ତେ କାନ ଡେରିଲେ । 'ମୁଁ ଯାଇ ଦେଖୁଚି କଅଣ ହେଲା ।' ଏତିକି କହି କେ' ଧୀରେ ଧୀରେ ଘରୁ ବାହାରିଗଲା । ତାର ଉଦ୍ଦେଶ୍ୟ ଯେମିତି ସେମାନେ ତାକୁ ପଛରୁ ଡାକନ୍ତୁ । ବାଟଘରେ ପହଞ୍ଚି ଅନ୍ଧାର ଭିତରେ ସେ ବାଟ ପାଇଁ ଅଣ୍ଡାଳିବୁଲିବାକୁ ଆରମ୍ଭ କରିଛି କି ନାହିଁ ସେତିକି ବେଳେ ତା ହାତଠାରୁ ଅନେକ ଶ୍ରେଷ୍ଠ ଗୋଟିଏ ହାତ ଦ୍ୱାରର ହେଣ୍ଡେଲ୍ ଉପରେ ତା' ହାତକୁ ଚିପି ଧରିଲା । ଆଉ ଅତି ଧୀରେ ଦ୍ୱାରକୁ

Digitized by srujanika@gmail.com

ବନ୍ଦ କରି ଦେଲା । ଏଇ ହ୍ୱାଡଟି ହେଉଚ ସେଠାରେ ଅପେକ୍ଷା କରିଥିବା ନର୍ସଟିର । 'କିଛୁ ହେଇନ ? କେବଳ ତୁମକୁ ସେଠାରୁ ନେଇ ଆସିବା ପାଇଁ ମୁଁ ଗୋଟିଏ ପ୍ଲେଟ ଖାଲି ତଳେ ପକାଇ ଦେଲି ।'

ଅପ୍ରତିଭ ହୋଇ କେ' କହିଲା 'ମୁଁ ମଧ୍ୟ ତୁମକଥା ଭାବୁଥିଲି ।' 'ତାହେଲେ ତ ଅଧିକ ଭଲ, ଏଇବାଟେ ଆସନ୍ତୁ ।' ନର୍ସ କହିଲା ।

ପାଦେ ଦୁଇ ପାଦ ଯିବାପରେ ସେମାନେ ଗୋଟିଏ କାଚ ଲଗା କବାଟ ପାଖରେ ପହଞ୍ଚିଲେ । ନର୍ସଟି କବାଟ ଖୋଲି ଦେଲା । 'ଏଇଠି ବସିବା' ସେ କହିଲା । କୋଠରୀଟି ଓକିଲଙ୍କ ଅଫିସ ଘର । ଦୁଇଟି ବଡ଼ ବଡ଼ ଝରକା ଦେଇ ପଡୁଥିବା ଜହ୍ନ ଆଲୁଅ ଘରର ନେତକ ଅଂଶ ଆଲୋକିତ କରୁଥିଲା ସେଥିରେ ଜଣେ ପରିଷ୍କାର ଦେଖି ପାରିବ ଯେ ଘରଟି ପୁରୁଣା ଆସବାବ ପତ୍ରଦ୍ୱାରା ସଜ୍ଜିତ । ଗୋଟିଏ କଳା ଚମକୁଟ ହୋଇଥିବା ସିନ୍ଦୁକକୁ ଦେଖାଇ ଦେଇ ନର୍ସଟି କହିଲା ଏଇଠି ବସିବା । ତା ଉପରେ ବସି ସାରିଲା ପରେ କେ' ଘରଟିକୁ ଦେଖିବାରେ ଲାଗିଲା । କୋଠରୀଟି ଖୁବ୍ ବଡ଼ ଓ ଆଡ଼ମ୍ବର ପୂର୍ଣ୍ଣ । ଗରିବ ଲୋକଙ୍କ ଏଇ ଓକିଲଙ୍କ ମକ୍କେଲମାନେ ଏଇ କୋଠରୀ ଭିତରେ ନିଶ୍ଚିତ ଭାବେ ହଜିଯାଉଥିବେ । କେ' ନିଜ ମନ ଭିତରେ ଛବି ଆଙ୍କିବାକୁ ଲାଗିଲା—କେମିତି ସେ ମକ୍କେଲମାନେ ଡରି ଡରି ଏଇ ଟେବୁଲ ଆଡ଼କୁ ତାଙ୍କ ପାଦ ଧୀରେ ଧୀରେ ପକାଉଥିବେ । ତା'ପରେ ସେ ପୁରାପୁରି ନିଜକୁ ଭୁଲିଗଲା । ଆଉ ତାରି ଖୁବ୍ ପାଖରେ ଲାଗି ବସିଥିବା ନର୍ସଟିକୁ ଦେଖିବାରେ ଲାଗିଲା । ସେ ନର୍ସଟି ବେଞ୍ଚ୍‌ର ବାଡ଼ା ଦେହରେ ତାକୁ ପୁରା ଚାପି ଦେଉଥିଲା ।

'ମୁଁ ଭାବିଥିଲି ତୁମେ ଆପେ ଆପେ ସେଠାରୁ ଚାଲିଆସିବ । ମୁଁ ଡାକିବା ପର୍ଯ୍ୟନ୍ତ ଅପେକ୍ଷା କରିବ ନାହିଁ । ଏମିତି ଡାକିବା କେମିତି ଅଡୁଆ ଅଡୁଆ ଲାଗେ । ଆସିବା ବେଳକୁ ତ ତୁମେ ମୋ ଉପରୁ ତୁମ ଆଖିକୁ ଏଡ଼ାଇ ପାରିନ । ତଥାପି ମୋତେ ଅପେକ୍ଷା କରିବାକୁ ପଡ଼ିଲା । ଏବେଠୁ ତୁମେ ମୋତେ ଖାଲି ଲେନି ବୋଲି ଡାକିଲେ ଭଲ ହେବ ।' ଏତକ ସେ ନର୍ସଟି ଖୁବ୍ ତରତରରେ କହିଗଲା । ଯେମିତିକି ଗୋଟିଏ ମୁହୂର୍ତ୍ତବି ନଷ୍ଟ କରିବାର ନୁହେଁ ।

'ସେମିତି ଡାକି ପାରିଲେ ମୁଁ ଖୁବ୍ ଖୁସି ହେବି ।' ମୋର ଏଇ ଅଦ୍ଭୁତ ବ୍ୟବହାର ପାଇଁ ମୁଁ ମୋର କୈଫିୟତ ଦେଉଛି । ପ୍ରଥମତଃ ମୋତେ ସେ ବୁଢ଼ା ଲୋକଙ୍କ କଥା ସବୁକୁ ଶୁଣିବାକୁ ପଡିଲା । ପୁଣି କାରଣ ନ ଦେଖାଇ ଖାଲି ସେମିତି ମୁଁ ଆସି ପାରିଲି ନାହିଁ । ଦ୍ୱିତୀୟତଃ ମୁଁ ଜମା ଜଣେ ସାହସୀ ଯୁବକ ନୁହେଁ । ବରଂ

Digitized by srujanika@gmail.com

ସତ କହିବାକୁ ଗଲେ ବଡ଼ ଲଜ୍ଜାକୁଳା । ପୁଣି ଲେନି, ତୁମେ ବି ତ ସେମିତି ଜମା ଜଣାପଡ଼ନି ଯେମିତିକି ଡାକ ଦେଲେ ତୁମେ ମିଳିଯିବ ।'

'ଏହା ତାହା ନୁହେଁ ।' ଚୌକିର ପଛପଟେ ତାର ହାତରଖି କେ' ଆଡ଼କୁ ଚାହିଁ ଲେନି କହିଲା । 'ବୋଧହୁଏ ପ୍ରଥମ ଦେଖାରେ ମୁଁ ତୁମକୁ ଭଲ ଲାଗି ନଥିଲି । ବୋଧହୁଏ ଏବେବି ତୁମକୁ ମୁଁ ଭଲ ଲାଗୁନି ।'

'ଭଲ ଲାଗିବା ଗୋଟେ ବଡ଼ ଦୁର୍ବଳ ଶବ୍ଦ ।' ଖାମ୍‌ଖିଆଲି ଭାବେ କେ' କହିଲା ।

'ଆଚ୍ଛା' ଅଳ୍ପ ହସି ସେ କହିଲା । କେ'ର ମତ ଆଉ କୈଫିୟତ୍ ଲେନିକୁ କେ' ଉପରେ ପ୍ରଭାବ ପକାଇବା ପାଇଁ ସୁଯୋଗ ଦେଲା । ତେଣୁ କେ' କିଛି ସମୟ ପାଇଁ କିଛି କହିଲାନି । କିଛି ସମୟ ପରେ ଯେତେବେଳେ କୋଠରୀର ଅନ୍ଧାରକୁ କେ'ର ଆଖି ସୁହାଇଗଲା ସେ ଘରର ଆହୁରି ଅନେକ ଜିନିଷକୁ ଦେଖିପାରିଲା । ବିଶେଷତଃ ଦ୍ୱାରର ଡାହାଣ ପଟେ ଟଙ୍ଗା ହୋଇଥିବା ବିରାଟ ଛବି ପ୍ରତି ତାର ଦୃଷ୍ଟି ଆକର୍ଷିତ ହେଲା । ଏବଂ ଛବିଟିକୁ ଆଉ ଟିକେ ପରିଷ୍କାର ଭାବେ ଦେଖିବା ପାଇଁ ସେ ଟିକିଏ ଆଗକୁ ଝୁଙ୍କି ପଡ଼ିଲା । ବିଚାରପତି ପୋଷାକରେ ଜଣେ ବ୍ୟକ୍ତି ସିଂହାସନ ପରି ଗୋଟିଏ ଆସନରେ ବସିଛନ୍ତି ସେ ଆସନର ସୁନାରଙ୍ଗ ଛବିରେ ଉଜ୍ଜ୍ୱଳ ଭାବେ ଫୁଟିଉଠୁଛି । ସବୁଠୁ ଆଶ୍ଚର୍ଯ୍ୟର କଥା ହେଉଚି ସେ ବିଚାରପତି ଜଣକ ଗାମ୍ଭୀର୍ଯ୍ୟପୂର୍ଣ୍ଣ ପୁଣି ସମ୍ମାନାସ୍ପଦ ଭାବେ ତାଙ୍କ ଆସନରେ ବସି ନାହାଁନ୍ତି । କାରଣ ତାଙ୍କ ବାମହାତ ସିଂହାସନର ପଛପଟ କାଠ ହାତ ଉପରେ ଆଶ୍ରିତ ଥିଲାବେଳେ ଡାହାଣ ହାତ କାହାରି ଉପରେ ଆଶ୍ରୟ ନେଇ ନାହିଁ । କେବଳ ହାତଟି ସିଂହାସନର ଅନ୍ୟ ହାତଟିକୁ ଜାବୁଡ଼ି ଧରିଛି । ଜଣାପଡ଼ୁଚି ଯେମିତି ଏଇ ମୁହୂର୍ତ୍ତରେ ଅତି କ୍ଷିପ୍ର ପୁଣି ହୁଏତ ବିରକ୍ତିସୂଚକ ଭଙ୍ଗୀରେ ସେ ଡେଇଁ ପଡ଼ିବେ । କିନ୍ତୁ ଗୋଟିଏ ଉଲ୍ଲେଖନୀୟ ଶେଷ ମୀମାଂସାପୂର୍ଣ୍ଣ ପର୍ଯ୍ୟବେକ୍ଷଣ କରିବା ପାଇଁ, ଅବା ତାଙ୍କର ବଜ୍ର ଘୋଷଣା କରିବା ପାଇଁ । ଦେଖୀଟି ସବୁଠୁ ତଳ ପାହାଚରେ ଠିଆହୋଇ ଏଇ ନ୍ୟାୟର ଆସନ ଆଡ଼କୁ ନଇଁ ପଡ଼ିଚି ବୋଲି କଳ୍ପନା କରାଯାଇପାରେ ଏବଂ ହଳଦିଆ ଗାଲିଚା ଦ୍ୱାରା ଆବୃତ ହୋଇଥିବା ଉପର ପାହାଚଗୁଡ଼ିକ ହିଁ କେବଳ ଛବିରେ ଦେଖାଯାଉଛି ।

'ବୋଧହୁଏ ସେଇ ହେଉଛନ୍ତି ମୋର ବିଚାରପତି ।' ଛବିଟି ଆଡ଼କୁ ଆଙ୍ଗୁଠି ଦେଖାଇ କେ' କହିଲା ।

'ମୁଁ ତାଙ୍କୁ ଜାଣିଚି ।' ଲେନି କହିଲା ଆଉ ଥରେ ମଧ୍ୟ ଛବିଆଡ଼କୁ ଚାହିଁଲା । 'ସେ ପ୍ରାୟ ଏଠାକୁ ଆସନ୍ତି । ଏ ଛବିଟି ଅଙ୍କା ଯାଇଥିଲା ଯେତେବେଳେ ସେ

Digitized by srujanika@gmail.com

ଯୁବକ ଥିଲେ । କିନ୍ତୁ ଏ ଛବି ଠିକେ ହେଲେବି ତାଙ୍କ ପରି ନୁହେଁ କାରଣ ସେ ଖୁବ୍ ବାଙ୍ଗରା ପ୍ରାୟ ବାମନଟିଏ । ତଥାପି ଛବିରେ ସେ ନିଜକୁ ଏମିତି ଚିତ୍ରିତ କରାଇଛନ୍ତି । କାରଣ ଏଠାରେ ଥିବା ଅନ୍ୟମାନଙ୍କ ପରି ସେ ମଧ୍ୟ ଖୁବ୍ ଅହଙ୍କାରୀ । ମୁଁ ମଧ୍ୟ ଜଣେ ଅହଙ୍କାରୀ ଏବଂ ମୋତେ ଜମା ଭଲ ପାଉନ ସ୍ୱଭାବ ଖୁବ୍ ବଚଳାତ ।' ଏଇ ଶେଷ ମନ୍ତାମନ୍ତଟିରେ କେ' କିଛି ଜବାବ୍ ନ ଦେଇ ନିଜ ବାହୁକୁ ତା' ଦେହରେ ଜଡ଼ାଇ ଦେଇ ତାକୁ ନିଜ ଆଡ଼କୁ ଟାଣି ଆଣିଲା । କେ'ର କାନ୍ଧ ଉପରେ ସେ ତାର ମଥାଟିକୁ ନୀରବରେ ଲଦି ଦେଲା । ତା'ପରେ ଲେନିର ଶେଷ କଥା ପଦକର ଜବାବ୍ ଦେଲା—

'ଫ୍ଲୁକଟିର ପାହ୍ୟା କଅଣ ?'

'ଜେରା କରିବା ମାଜିଷ୍ଟ୍ରେଟ୍ ।'—ତାକୁ ବେଢ଼ି ଧରିଥିବା କେ'ର ହାତକୁ ନିଜ ହାତରେ ଧରି ତା ଆଙ୍ଗୁଳି ଚଳାଇ ଚଳାଇ ଲେନି କହିଲା ।

'ପୁଣି ସେହି ଜେରା କରିବା ମାଜିଷ୍ଟ୍ରେଟ୍ !' ହତାଶ ହୋଇ କେ' କହିଲା । 'ବଡ଼ ବଡ଼ ଅଫିସରମାନେ ସବୁବେଳେ ନିଜକୁ ଗୁପ୍ତ ରଖନ୍ତି ଇଏ କିନ୍ତୁ ଗୋଟିଏ ରାଜକୀୟ ଆସନରେ ବସିଛନ୍ତି, ଖାଲି ନିଜର ଗୋଟିଏ ଉଦ୍‌ଭାବନ ।' କେ'ର ହାତରେ ନିଜ ମୁହଁକୁ ଲୁଚାଇ ଲେନି କହିଲା । 'ପ୍ରକୃତରେ ସେ ଗୋଟେ ରୋଷେଇ ଚୌକିରେ ବସିଛନ୍ତି । ତା ତଳେ ଗୋଡ଼ ଢ଼ଙ୍କା କମ୍ବଳ ଦୁଇ ପରସ୍ତ କରି ପକା ହୋଇଛି । କିନ୍ତୁ ତୁମେ କଅଣ ସବୁଦିନ ପାଇଁ ତୁମର ସେଇ ମକଦ୍ଦମା କଥା ଚିନ୍ତା କରୁଥିବ । ବଡ଼ ଧୀର ଗଳାରେ ଲେନି ପଚାରିଲା ।

'ନା, ନା, କଦାପି ନୁହେଁ ! ପ୍ରକୃତରେ ମୁଁ ବୋଧହୁଏ ସବୁଠାରୁ କମ୍ ଭାବୁଚି ।' କେ' କହିଲା ।

'ତା ତୁମ ପକ୍ଷେ ଭଲ ନୁହେଁ । କିନ୍ତୁ ମୁଁ ଶୁଣୁଚି ତୁମେ ଟିକିଏ ନଇଁନ ସବୁବେଳେ କାଉଁରିଆ କାଠିପରି ସିଧା ।' ଲେନି କହିଲା ।

'କିଏ ତୁମକୁ କହିଲା ?' କେ' ପଚାରିଲା । କେ' ନିଜ ଛାତି ଉପରେ ଲେନିର ଦେହ ସ୍ପର୍ଶ ଅନୁଭବ କରିପାରିଲା ଆଉ ତାର ସେଇ ବହଳ ସତେଜ କେଶଗୁଚ୍ଛକୁ ଅନାଇ କହିଲା 'ତା' ଯଦି କହିଦିଏ, ମୋ'ପାଇଁ ଖୁବ୍ ବେଶୀ ହୋଇଯିବ । ଦୟାକରି କାହାରି ନାମ ପଚାରନି । ମୋର ଟିକି କଥା ମାନ । ମୁଁ ଚେତେଇ ଦେଉଛି । ତାକୁ କ୍ଷମା କର । ଭବିଷ୍ୟତରେ ଏତେ ବେଶୀ ଟାଣୁଆ ହେବନି । ଏମିତି ହେଲେ ତୁମେ ଏ କୋର୍ଟ ବିରୁଦ୍ଧରେ ଲଢ଼ି ପାରିବନି । ପ୍ରଥମ ସୁଯୋଗରେ

Digitized by srujanika@gmail.com

ତୁମେ ତୁମର ଦୋଷ ସ୍ୱୀକାର କରିଦିଅ । ସେ ପର୍ଯ୍ୟନ୍ତ ଏତକ ନ କରିଛ ତାଙ୍କ ହାତରୁ ମୁକୁଳିବାର କୌଣସି ସମ୍ଭାବନା ନାହିଁ । ନା, ଆଦୌ ନାହିଁ । ଏହା ସତ୍ତ୍ୱେ ବି ବାହାର ସାହାଯ୍ୟ ବିନା ତୁମର ମୁକୁଳିବା ସହଜ ନୁହେଁ । କିନ୍ତୁ ଏସବୁ ବିଷୟରେ ମୁଣ୍ଡ ଖେଳାଇବା ତୁମର ଦରକାର ନାହିଁ । ସେକଥା ମୁଁ ନିଜେ ବୁଝିବି ।'

'ମୁଁ ଦେଖୁଛି ତୁମେ ଅନେକ କଥା ଏ ଅଦାଲତ ଏବଂ ଏହାର ଷଡ଼ଯନ୍ତ୍ର ବିଷୟରେ ଜାଣିଛ ।' ନିଜ କୋଳକୁ ତାକୁ ଟାଣି ନେଇ କେ' କହିଲା ।

'ସେତ ଭଲ କଥା' କେ'ର କୋଳରେ ଲେନି ସ୍ୱଚ୍ଛନ୍ଦ ହୋଇଉଠିଲା ଆଉ ନିଜ ସ୍କାର୍ଟ୍ ଆଉ ବ୍ଲାଉଜ୍‌କୁ ସଜାଡ଼ି ସଜାଡ଼ି କହିଲା । ତା'ପରେ ନିଜ ଦୁଇ ବାହୁରେ କେ'ର ବେକକୁ ଜଡ଼ାଇ ଧରି ପଛକୁ ଢ଼ଳି ପଡ଼ିଲା ଆଉ କେ'କୁ ଦୀର୍ଘ ସମୟ ଧରି ଅନାଇ ରହିଲା ।

'ତା' ହେଲେ ମୁଁ ଯଦି ନିଜ ଦୋଷ ସ୍ୱୀକାର ନ କରେ ତେବେ ତୁମେ ମୋତେ ସାହାଯ୍ୟ କରି ପାରିବନି ?' ପରୀକ୍ଷା କରିବା ପାଇଁ କେ' ପଚାରିଲା ଆଉ ଆଶ୍ଚର୍ଯ୍ୟ ହୋଇ ନିଜେ ନିଜେ ଭାବିବାକୁ ଲାଗିଲା । —'ତା'ହେଲେ ମୋତେ ସାହାଯ୍ୟ କରିବାକୁ ନାରୀ ଯୋଗାଡ଼ କରିବାକୁ ହେବ । ପ୍ରଥମେ ଫ୍ରଲେନ୍ ବ୍ରାସନାର, ତା'ପରେ କଚୁଆଳର ସ୍ତ୍ରୀ ଏବଂ ବର୍ତ୍ତମାନ ଏହି ନର୍ସ । ଏହାର ତ ମୋ ପ୍ରତି ପ୍ରବଳ କାମନା । ସେ ମୋ' କୋଳରେ ବସିଛି ଯେମିତିକି ତା'ପାଇଁ ଏଇଟା ହିଁ ଏକମାତ୍ର ଠିକ୍ ସ୍ଥାନ ।

ମୁଣ୍ଡ ହଲାଇ ଲେନି କହିଲା—'ନା, ନା, ତା' ହେଲେ ମୁଁ ତୁମକୁ ସାହାଯ୍ୟ କରି ପାରିବିନାହିଁ । ତୁମେ ଜମା ମୋର ସାହାଯ୍ୟ ଚାହୁଁନ । ତୁମ ପାଖରେ ମୋ' ସାହାଯ୍ୟର କିଛି ଅର୍ଥ ନାହିଁ । ତୁମେ ବଡ଼ ଏକଜିଦିଆ । ତୁମକୁ ମୁଁ କେମିତି ବୁଝାଇବି ।' କିଛି ସମୟ ପରେ ସେ ପଚାରିଲା—'ତୁମର କେହି ପ୍ରେମିକା ଅଛନ୍ତି କି ?'

'ନା' କେ' କହିଲା । 'ହଁ ଅଛନ୍ତି' ଲେନି କହିଲା ।

'ହଁ ହଁ ସତକଥା ଅଛନ୍ତି' କେ' କହିଲା । 'ଖାଲି କଳ୍ପନା କରିନିଅ । ପ୍ରେମିକା ଥିବା କଥା ମୁଁ ଅସ୍ୱୀକାର କରିଛି ମାତ୍ର ପ୍ରକୃତରେ ତା' ଫଟୋ ମୋ ପକେଟ୍‌ରେ ଅଛି ।'

ଲେନିର ଅନୁରୋଧରେ କେ' ଏଲ୍‌ସାର ଫଟୋ ଦେଖାଇଲା । ଲେନି ଫଟୋଟିକୁ ନିରେଖି ନିରେଖି ଦେଖିଲା ଆଉ ନିଜ ଆଣ୍ଠୁ ଉପରେ ମୋଡ଼ି ଧରିଲା ।

Digitized by srujanika@gmail.com

ନାଚର ଶେଷ ମୁଦ୍ରାରେ ଏହା ଏନ୍‌ଲାର୍ଜ ଗୋଟିଏ ଫଟୋ, ଏହା ତାର ବାବାରେ ନାଚ । ଫଟୋରେ ସେମିତ ଏବେବି ତାର ସ୍କାର୍ଟ୍ ତା ଚାରିପଟେ ଫାଙ୍କା ଫାଙ୍କ ବୁଲୁଛି ଆଉ ତାର ହାତ ଘନ ଭରକ ଉପରେ ଏବେବି ରହିଛି । ତା' କାନ୍ଧ ଉପର ଦେଇ ସେ କାହାକୁ ଚାହିଁ ହସୁଛି । ଯାହାକୁ ଚାହିଁ ହସୁଛି ତାର ଫଟୋ ଉଠିନାହିଁ ।

'ସେ ବଡ଼ ଶସ୍ତା ପୋଷାକ ପିନ୍ଧିଛି ।' ଫଟୋର ଗୋଟିଏ ଅଂଶକୁ ଦେଖାଇ ଲେନ କହିଲା । ଦେଖାଉଥିବା ଅଂଶଟିରେ ପୋଷାକର ଲେସ୍‌ଗୁଡ଼ିକ ଖୁବ୍ ଶସ୍ତା ଜଣାପଡ଼ୁଛି । ମୋତେ କାହିଁକି ତାକୁ ଜମା ଭଲ ଲାଗୁନାହିଁ ସେ କେମିତି ରୁକ୍ଷ ଏବଂ ବେଢ଼ଙ୍ଗିଆ, ବୋଧହୁଏ ତୁମ ପ୍ରତି ସେ ଖୁବ୍ ସ୍ନେହଶୀଳ ହୋଇଥିବ । ଅବଶ୍ୟ ଫଟୋରୁ ମୁଁ ଯାହା ଅନୁମାନ କରୁଛି । ଅନେକ ସମୟ ଦୀର୍ଘକାୟ ବଳୁଆ ଝିଅମାନେ ବି ସ୍ନେହଶୀଳା ଏବଂ ଦୟାବତୀ ନ ହୋଇ ରହିପାରନ୍ତିନି କାରଣ ଏ ଝିଅଟି କଅଣ ତୁମ ପାଇଁ ସବୁ ସମର୍ପଣ କରିପାରିବ ? ସବୁ ତ୍ୟାଗ କରିପାରିବ ?'

'ନା' କେ' କହିଲା । ସିଏ ନା ସ୍ନେହଶୀଳା ନା ଦୟାବତୀ । ନା ମୋତେ ତ୍ୟାଗ କରିବା ତା' ପକ୍ଷରେ ସମ୍ଭବ । ବର୍ତ୍ତମାନ ସୁଦ୍ଧା ମୁଁ ତା' ପାଖକୁ ଏଥିରୁ କୌଣସି ଗୋଟିଏ ସୁଦ୍ଧା ଦାବି କରିନାହିଁ । ଏମିତିକି ତୁମେ ଯେମିତି ଏ ଫଟୋଟିକୁ ନିରୀକ୍ଷଣ କରୁଛ ମୁଁ ସେମିତି ଆଦୌ ଦେଖିନାହିଁ ।'

'ତେଣୁ ତୁମ ପାଖରେ ସେ ଏତେବେଶୀ ଗୁରୁତ୍ୱପୂର୍ଣ୍ଣ ନୁହେଁ । ସେ ଆଦୌ ତୁମର ପ୍ରେମିକା ନୁହେଁ ।' ଲେନ କହିଲା ।

'ନା, ନା, ନିଶ୍ଚିତଭାବେ ସେ ମୋର ପ୍ରେମିକା । ମୁଁ ଥରେ ଯାହା କହିଛି ସେଥିରୁ ଫେରି ଆସି ପାରିବିନି ।' କେ' ଉତ୍ତର ଦେଲା ।

'ଆଚ୍ଛା, ଆଚ୍ଛା, ଧରିନିଆଯାଉ ସେ ତୁମର ମାନସୀ । ତଥାପି ଯଦି ତାକୁ ହରାଇବାକୁ ପଡ଼େ କିମ୍ବା କାହା ସହିତ, ଧର ମୋ ସହିତ, ତାକୁ ବଦଳାଇବାକୁ ପଡ଼େ, ତୁମେ ତାର ଅଭାବ ଅନୁଭବ କରିବନି ?' ଲେନ ପଚାରିଲା ।

'ନିଶ୍ଚୟ ଅନୁଭବ କରିବି ।' ହସି ହସି କେ' କହିଲା । ତୁମ ଅପେକ୍ଷା ତା' ପାଖରେ ମୋର ଟିକିଏ ସୁବିଧା ଅଛି । ସୁବିଧାଟି ହେଉଛି ସେ ମୋର ମକଦ୍ଦମା ବିଷୟରେ କିଛି ଜାଣେନି । ଯଦିବା ସେ ଜାଣନ୍ତା ତେବେ ସେ କେବେ ଏଥିରେ ତା' ମୁଣ୍ଡ ଖେଳାନ୍ତା ନାହିଁ । ଆଉ ମୋତେ ଏତେ ଏଜେ଼ଞ୍ଜିଆ ହେବାକୁ ମନା କରନ୍ତା ନାହିଁ ।'

Digitized by srujanika@gmail.com

'ଏହା କେବେ ଗୋଟିଏ ବଡ଼ ସୁବିଧା ବା ସେମିତି କିଛି ଲାଭଜନକ କଥା ନୁହେଁ ।' ଲେନ କହିଲା । 'ଏହାଛଡ଼ା ଯଦି ମୋ ଅପେକ୍ଷା ତାର ଭଲଗୁଣ ତେବେ ମୁଁ ଆଶା ହରାଇବି ନାହିଁ । ସେ କଅଣ ବିକଳାଙ୍ଗ କି ?'

'ବିକଳାଙ୍ଗ ?' କେ' ପଚାରିଲା ।

'ହଁ,' ଲେନ କହିଲା । 'ମୋର ସାମାନ୍ୟ ଟିକିଏ ତ୍ରୁଟି ଅଛି । ହେଇ ଦେଖ ।' ଏହା କହି ସେ ତାର ଡାହାଣ ହାତ ଟେକି ଧରି ପାପୁଲିର ମଝି ଦୁଇଟି ଆଙ୍ଗୁଳିକୁ ମେଲାଇ ଧରିଲା । ଅଙ୍ଗୁଳି ଦୁଇଟି ପ୍ରାୟ ଯୋଡ଼ିହୋଇ ଯାଇଥାଏ । କଅଣ ସେ ଦେଖାଇବାକୁ ଯାଉଛି ଅନ୍ଧାରରେ କେ' ପ୍ରଥମେ କିଛି ବୁଝିପାରିଲାନି । ତେଣୁ ଲେନ କେ'ର ହାତ ଧରି ତା' ଆଙ୍ଗୁଳିରେ ଛୁଆଁଇ ଦେଲା ।

'ପ୍ରକୃତିର କି ବିଦ୍ରୂପ ।' କେ' କହିଲା ଏବଂ ପୁରା ହାତଟି ପରୀକ୍ଷା କରୁକରୁ ପୁଣି ଥରେ ଆରମ୍ଭ କଲା—'କେଡ଼େ ସୁନ୍ଦର ଶ୍ରେଷ୍ଠ ହାତଟି ?'

ଲେନ ଗର୍ବରେ ତାଆଡ଼କୁ ଚାହିଁଲା । କେ' ଆଶ୍ଚର୍ଯ୍ୟ ହୋଇ ଲେନର ସେଇ ଦୁଇଟି ଅଙ୍ଗୁଳି ମେଲାଉଥାଏ ପୁଣି ପାଖାପାଖି ରଖି ଦେଉଥାଏ । ଏବଂ ଶେଷରେ ସେଇ ଅଙ୍ଗୁଳିଗୁଡ଼ିକୁ ଧୀରେ ଚୁମାଟିଏ ଦେଇ ଛାଡ଼ିଦେଲା ।

'ଓ ! ତୁମେ ମତେ ଚୁମ୍ବନ କଲ ।' ଲେନ କହିଉଠିଲା । ଏହା କହି ସେ ଉଠିପଡ଼ିଲା ଏବଂ ତାର ଆଣ୍ଠୁ ଉପରେ ପାଟି ମେଲିଥିବା ଅବସ୍ଥାରେ ଆଣ୍ଠେଇ ପଡ଼ିଲା । ହତବାକ୍ ହୋଇ କେ' ତା ଆଡ଼କୁ ଅନାଇ ରହିଲା । ବର୍ତ୍ତମାନ କେ'ର ଖୁବ୍ ପାଖରେ ଥିବାରୁ ଲେନର ଦେହରୁ କେମିତି ଗୋଲମରିଚ ପରି ଏକ ତୀବ୍ର ଉତ୍ତେଜନାପୂର୍ଣ୍ଣ ଗନ୍ଧ ବାହାରୁଥାଏ । ଲେନ କେ'ର ମଥାକୁ ଧରି ତା ଉପରେ ନଇଁ ପଡ଼ିଲା ଆଉ ତା ବେକରେ ଚୁମା ଦେଲା ଏବଂ ତା' ମଥାର ବାଳପର୍ଯ୍ୟନ୍ତ ଦାନ୍ତରେ ଆଘାତ କରି ଚାଲିଲା ।

'ତୁମେ ମୋତେ ଛାଡ଼ି ତାକୁ ଗ୍ରହଣ କରିଛ । ମୋତେ ବଦଳ କରିଛ ।' ଲେନ ବାରମ୍ବାର କହିବାକୁ ଲାଗିଲା । 'ଦେଖ ଯା' ହେଉ ତୁମେ ମୋ ବଦଳରେ ତାକୁ ଗ୍ରହଣ କରିଛ ।'

ଏହାପରେ ହଠାତ୍ ତାର ଆଣ୍ଠୁ ଖସିଗଲା । ମୃଦୁସ୍ୱର ଚିତ୍କାରଟିଏ କରି ସେ ପ୍ରାୟ ଗାଲିଚା ଉପରେ ପଡ଼ିଗଲା ।

କେ' ତା'ର ବାହୁକୁ ତା ଦେହରେ ବେଢ଼ିଧରି ଉପରକୁ ଆଣିବାକୁ ଚେଷ୍ଟାକଲା ଏବଂ ତାଆଡ଼କୁ ଟାଣି ହୋଇଗଲା ।

Digitized by srujanika@gmail.com

'ତୁମେ ବର୍ତ୍ତମାନ ମୋର' ସେ କହି ଉଠିଲା । 'ଏ ଘରର ସୁବିଧା ହେଉ ନାଥ । ଯେତେବେଳେ ମନ ଏଠାକୁ ଆସିବ ।' ଏହାହିଁ ଥିଲା ତାର ଶେଷ କଥା । ଆଉ ଯେତେବେଳେ କେ' ସେଠାରୁ ବିଦାୟ ନେଲା ତା' କାନ୍ଧ ଉପରେ ଚୁମାଟିଏ ଆଙ୍କିଦେଲା । ଘର ବାହାରକୁ ଆସି ଯେତେବେଳେ ସେ ରାସ୍ତାରେ ଠିଆ ହେଲା ସେତେବେଳେ ଅଳ୍ପ ଅଳ୍ପ ବର୍ଷା ହେଉଥାଏ । ଝର୍କା ପାଖରେ ଲେନିକୁ ଶେଷଥର ଦେଖିବା ପାଇଁ ସେ ରାସ୍ତା ମଝିକୁ ଚାଲିଯାଉଥିଲା । ମାଳ ଗାଡ଼ିଟିଏ ତା ଆଗରେ ଠିଆ ହୋଇଥିଲା । ଅନ୍ୟମନସ୍କ କେ'ର ଦୃଷ୍ଟି ସେ ଗାଡ଼ି ଉପରେ ପଡ଼ିନଥିଲା । ମାଳ ଗାଡ଼ିଭିତରୁ ହଠାତ୍ ତା ଜଣା ବାହାରି ପଡ଼ିଲେ ଆଉ ତା ହାତକୁ ପଛ କାନ୍ଧରେ ଚାପିଧରିଲେ ଯେମିତିକି ସେ କେ'କୁ ସେ କାନ୍ଧରେ କଣ୍ଢାମାରି ଅଟକାଇ ରଖିବେ ।

'ଜୋସେଫ୍ ! ତୁ କେମିତି ଏହା କରିପାରିଲୁ । ତୁ ତୋ ମକଦ୍ଦମାର କ୍ଷତି କଲୁ । ଦେଖ୍, ଭଲଭାବରେ ସବୁ ଆରମ୍ଭ ହୋଇ ଆସୁଥିଲା । ତୁ କିନ୍ତୁ ଜଣେ ଦୁଷ୍ଚରିତା ସ୍ତ୍ରୀ ଲୋକ ସାଙ୍ଗରେ ଲୁଚି ରହିଲୁ । ସେ ନିଶ୍ଚିତଭାବେ ଓକିଲଙ୍କ ରକ୍ଷିତା ଆଉ ତୁ ତା' ସାଙ୍ଗରେ ଘଣ୍ଟା, ଘଣ୍ଟା ରହିଗଲୁ । ଏମିତିକି କୌଣସି ଅଛିଳା ଦେଖାଇଲୁ ନାହିଁ । ତୁ କିଛି ଲୁଚାଇଲୁନ । ଖୋଲା ଖୋଲି ଭାବରେ ତୁ ଚାଲିଗଲୁ ଆଉ ତା' ପାଖରେ ରହିଗଲୁ । ଆଉ ଏଇ ସମସ୍ତଟା ଆମେ ତିନିଜଣ ଏକାଠି ବସିଚୁ । ତୋ ଜଣା ଯିଏକି ତୋ ଭଲ ପାଇଁ ଲାଗିପଡ଼ିଛନ୍ତି, ସେ ଚେଷ୍ଟା କରୁଛନ୍ତି ସେ ଓକିଲକୁ କେମିତି ନିଜପଟକୁ କରିବ । ପୁଣି ସେ କିରାଣୀଙ୍କୁ କେମିତି ନିଜର କରିବାକୁ ପଡ଼ିବ । କାରଣ ସେ ଜଣେ ବଡ଼ ମୁଖିଆ ଲୋକ ଏବଂ ବର୍ତ୍ତମାନ ଅବସ୍ଥାରେ ସେ ନିଜେ ଏଇ ମକଦ୍ଦମାର ଦାୟିତ୍ୱରେ ଅଛନ୍ତି । ଆମେ ସେଠାରେ ବସି ତୋତେ କେମିତି ସାହାଯ୍ୟ କରାଯାଇପାରିବ ସେ ବିଷୟରେ ଆଲୋଚନା କରୁଚୁ ଅଥଚ ତୁ ଚାଲିଆସିଲୁ । ମୋତେ ସେ ଓକିଲ ସଙ୍ଗେ ଅତି ସାବଧାନତାର ସହ ଚଳିବାକୁ ପଡ଼ିବ । ପ୍ରଥମେ ମୋତେ ସେ ଓକିଲଙ୍କୁ କୌଶଳରେ ହାତ କରିବାକୁ ପଡ଼ିବ । ତାପରେ ସେ ତାଙ୍କ ତରଫରୁ କୌଶଳରେ ସେ କିରାଣୀଙ୍କୁ ହାତ କରିବେ ।

ଏପରି ଅବସ୍ଥାରେ ଜଣେ ଆଶା କରିବ ଯେ, ତୁମେ ଅତି କମ୍‌ରେ ମୋତେ ଟିକିଏ ସାହାଯ୍ୟ କରିବ । ମାତ୍ର ମୋତେ ସାହାଯ୍ୟ କରିବା ତ ଦୂରର କଥା, ଏପରି ଅବସ୍ଥାରେ ତୁମେ ପୁରା ଅନୁପସ୍ଥିତ ରହିଗଲ । ତୁମେ ଏତେବେଳ ପର୍ଯ୍ୟନ୍ତ ଅନୁପସ୍ଥିତ ରହିଲ ଯେ ଏହା ଆଉ ଲୁଚି ରହିଲାନ । ଅବଶ୍ୟ ସେ ଦୁଇଜଣ ନିହାତି ବାସ୍ତବବାଦୀ ହୋଇଥିବାରୁ ଏ ବିଷୟରେ କିଛି କଥାବାର୍ତ୍ତା ହୋଇ-

Digitized by srujanika@gmail.com

ନାହାନ୍ତି । ମୋର ମାନସିକ ଅବସ୍ଥାକୁ ସେମାନେ ଆଦୌ ନଜର ଦେଇନାହାନ୍ତି । କିନ୍ତୁ ଅବଶେଷରେ ସେମାନେବି ବେଶୀ ସମୟ ତାକୁ ଅବହେଳା କରି ପାରିଲେନି । କିନ୍ତୁ ଏ ବିଷୟରେ କିଛି ପୃଚ୍ଛି ନପାରିବାରୁ ବାଧ୍ୟ ହୋଇ ଚୁପ୍ ରହିଲେ । ମିନିଟ୍ ମିନିଟ୍ ଧରି ତୁମ ଆସିବାକୁ ଅପେକ୍ଷା କରି ଆମେ ବସିରହିଲୁ । କିନ୍ତୁ ସବୁ ବୃଥା ହେଲା । ତାଙ୍କ ଇଚ୍ଛା ବିରୁଦ୍ଧରେ ଅନେକ ସମୟ ଧରି ରହିଯାଇଥିବା ସେ ମୁଖ୍ୟ କିରାଣୀ ଶେଷରେ ଉଠିଲେ । ସମସ୍ତେ ସେମାନେ ମୋତେ ଶୁଭରାତ୍ରି ଜଣାଇଲେ । ଅବଶ୍ୟ ମୋତେ ସାହାଯ୍ୟ କରି ପାରୁନଥିବାରୁ ଖୁବ୍ ଦୁଃଖ ପ୍ରକାଶ କଲେ । ଲୋକ ଜଣକ ଅଦ୍ଭୁତ ଦୟାଶୀଳ । ଯିବାପୂର୍ବରୁ କବାଟ ପାଖରେ ବି ସେ କିଛି ସମୟ ଅପେକ୍ଷା କରି ଛିଡ଼ାହୋଇ ରହିଲେ । ମୁଁ ତୋତେ କହିଦେଉଛି ସେତେବେଳକୁ ମୋର ଯେମିତି ନିଶ୍ୱାସ ବନ୍ଦ ହୋଇ ଯାଉଥାଏ, ବିଚରା ସେ ଗେରା ଓକିଲଙ୍କ ଅବସ୍ଥା ମୋଠାରୁ ଅଧିକ । ମୁଁ ଯେତେବେଳେ ତା'ଠାରୁ ବିଦାୟ ନେଲି ସେ ଭଦ୍ରଲୋକ ପଦଟିଏ କଥାବି ଉଚ୍ଚାରଣ କରିପାରିଲେ ନାହିଁ । ଖୁବ୍ ସମ୍ଭବ ତୁ ତାଙ୍କ ଦେହ ଖରାପ ବଢ଼ାଇ ଦେଲୁ । ଯା'ପଛରେ ତାଙ୍କ ମରଣ ଆଉ ଟିକିଏ ପାଖେଇ ଗଲା । ତୁ ତୋ କକାକୁ ଘଣ୍ଟା ଘଣ୍ଟା ଧରି ବର୍ଷାରେ ଭିଜି ଅପେକ୍ଷା କରିବାକୁ ଛାଡ଼ି ଦେଇଗଲୁ । ଦେଖ୍, ଟିକେ ଭଲ୍ ବୁଝିବାକୁ ଚେଷ୍ଟା କର ମୁଁ କେମିତି ଦୁଶ୍ଚିନ୍ତାରେ ମରୁଛି । ତୁହିଁ ଦେଖ୍‌ତ ମୁଁ କେମିତି ପୂରା ଥକିଯାଇଛି ।'



## ସପ୍ତମ ପରିଚ୍ଛେଦ

# ଓକିଲ, ଉତ୍ପାଦକ ଓ ଚାଷକାର

ଦିନେ ଶୀତସକାଳେ, କୁହୁଡ଼ିଆ ହୋଇ ଝର୍କା ବାହାରେ ବରଫ ପଡ଼ୁଥାଏ। ଜେ' ତା' ଅଫିସ୍‌ରେ ବସିଥାଏ। ସକାଳେ ଏତେ ସହଳରୁ ଜେ' କେମିତି କ୍ଲାନ୍ତ ଅନୁଭବ କରୁଥାଏ। ତା' ତଳିଆ କର୍ମଚାରୀଙ୍କ ଆଗରେ ଅତ୍ୟନ୍ତ ନିଜ ଦୁର୍ବଳତା ଢ଼ାଙ୍କିବା ପାଇଁ ଜରୁରୀ କାମରେ ବ୍ୟସ୍ତଥିବାର ଆଳ ଦେଖାଇ କାହାରିକି ଭିତରକୁ ନଛାଡ଼ିବାପାଇଁ କିରାଣୀକୁ କହିଥାଏ। କିନ୍ତୁ କାମ ଦାମ କିଛି ନକରି ସେ ତା ନିଜ ଚୌକିରେ ଜାକିଜୁକି ଚୁପ୍‌ଚାପ୍ ବସିଥାଏ। ଟେବୁଲ୍ ଉପରେ କାଗଜପତ୍ରଗୁଡ଼ିକୁ ଏପାଖ ସେପାଖ କରୁଥାଏ, ଆଉ ପରେ ପରେ ନିଜ ଅଜାଣତରେ ଟେବୁଲ୍ ଉପରେ ହାତକୁ ଲମ୍ବାଇ ଦେଇ ମୁଣ୍ଡ ନୁଆଇଁ ବସିରହିଲା।

ତା' ବିଷୟର ଚିନ୍ତା ତା' ମନରୁ ଆଉ ଯାଉନଥିଲା। ଏବେ ତାହା ଜେ'ର ମନରେ ବସା ବାନ୍ଧିଲାଣି। ନିଜ ସପକ୍ଷରେ ଯାହା କହିବାର କଥା ତାହା ଲିଖିତାକାରରେ କୋର୍ଟକୁ ଦେଇ ଦେଲେ କଣ ଭୁଲ ହେବ ? ଏହିକଥା ସେ ଅନେକ ସମୟରେ ଭାବେ। ସେ ଲେଖାରେ ତା' ନିଜ ଜୀବନର ଗୋଟିଏ ଛୋଟ ବର୍ଣ୍ଣନା ଦେବ ଆଉ ଯେତେବେଳେ ବୁଝାଇବା ଭଳି କୌଣସି ଘଟଣା ଆସିବ ସେ ପରିଷ୍କାର ଲେଖି ଦେବ କାହିଁକି ଏବଂ କେଉଁ ପରିବେଶରେ ସେ ସେପରି ବ୍ୟବହାର କରିଥିଲା। ଆହୁରି ମଧ୍ୟ ଜଣାଇ ଦେବ ଯେ ତା ପରବର୍ତ୍ତୀ ବିଚାରଧାରା ଅତୀତର ସେ ବ୍ୟବହାରକୁ ଏବେ ଅନୁମୋଦନ କରୁଛି ନା ନିନ୍ଦା କରୁଛି। ଏପରି ଅନୁମୋଦନ ବା ନିନ୍ଦା କରିବାର କାରଣ ମଧ୍ୟ ଦର୍ଶାଇ ଦେବ। ତ୍ରୁଟିଶୂନ୍ୟ ହୋଇ ନଥିବା ଜଣେ ଓକିଲର ଯୁକ୍ତି ଅପେକ୍ଷା ଏପରି ଲିଖିତ ଆତ୍ମପକ୍ଷ ନେବା ଅନେକ ଲାଭ, ଏଥିରେ ସନ୍ଦେହ ନାହିଁ। କେଶ୍ ବିଷୟରେ ତା ଓକିଲ କଣ କରୁଛନ୍ତି ସେ ବିଷୟରେ ଜେ'ର ଆଦୌ ଧାରଣା ନାହିଁ। ସେଥିରେ କିନ୍ତୁ ବେଶୀ କିଛି ଯାଏଆସେ ନାହିଁ। ମାସେରୁ ଅଧିକ ହେବ ହୁଲ୍‌ଡ୍ ତାକୁ ଡାକି ପଠାଇଥିଲେ।

Digitized by srujanika@gmail.com

ପୂର୍ବରୁ ଯେତେଥର ତାଙ୍କ ସହ ପରାମର୍ଶ ହୋଇଛି ସବୁଥର ଭଦ୍ରଲୋକ ଯେ, ତାହା ପାଇଁ ବେଶୀ କିଛୁ କରିପାରିବେ ନାହିଁ ଏମିତି ଧାରଣା ତା'ର ହୋଇଛି । ପ୍ରଥମରୁ ବିଚାର କଲେ ଦେଖାଯିବ ଯେ, ଭଦ୍ରଲୋକ ତାକୁ କୌଣସି ପ୍ରଶ୍ନ ପଚାରି ନାହାନ୍ତି । ଏପରି ମକଦ୍ଦମାରେ କେତେ ପ୍ରଶ୍ନ ପଚାରିବାର ଅଛି । ପ୍ରଶ୍ନ ପଚାରି-ବା ଟାହିଁ ପ୍ରଧାନ କଥା । କେ' ଅନୁଭବ କଲା ଯେ ସମ୍ଭାବିତ ସବୁପ୍ରକାର ପ୍ରଶ୍ନଗୁଡ଼ିକୁ ସେ ରଖିବ । କିନ୍ତୁ ସେ ଓକିଲ ପ୍ରଶ୍ନ ପଚାରିବା ପରିବର୍ତ୍ତେ ଖାଲି କଥାବାର୍ତ୍ତା ହେଲେ । କିମ୍ବା ସାମାନ୍ୟ ଉତ୍ତର ଶୁଣିଥିବାରୁ ଟେବୁଲ ଉପରକୁ ଝୁଙ୍କିପଡ଼ି ତା ସାମ୍ନାରେ ଚୁପ୍‌ଚାପ୍ ବସି ରହିଲେ । ବସି ବସି ଦାଢ଼ି ମଝିରେ ନିଜ ହାତ ବୁଲାଉ-ଥିଲେ । ଆଉ ଗାଲିଚା ଉପରେ ଯେଉଁଠି ଲେନିସହ ସେ ଶୋଇଥିଲା ସେଇ ସ୍ଥାନକୁ ଅନାଉଥିଲେ । ବେଳେ ବେଳେ ପିଲାମାନଙ୍କୁ ଗାଳି ଦେଲା ପରି କେ'କୁ ଟିକିଏ ମୃଦୁ ଭର୍ତ୍ସନା କରୁଥିଲେ । ଏପରି ଭର୍ତ୍ସନାଗୁଡ଼ିକ ଯେମିତି ଅର୍ଥହୀନ ସେମିତି ବିରକ୍ତିକର, ଆଉ କେ' ତା ଉପରେ ଫଟା ପଇସାକର ଗୁରୁତ୍ୱ ଦେଉନଥିଲା । ଓକିଲ ଯେତେବେଳେ ଭାବନ୍ତି ଯେ ଏପରି ଗାଳି ଦେବା ଦ୍ୱାରା ସେ କେ'କୁ ବେଶ୍ କିଛୁ ନମ୍ର କରି ପାରିଛନ୍ତି ସେ ତା'ପରେ ସାମାନ୍ୟ ଉତ୍ସାହିତ କରିବାରେ ଲାଗନ୍ତି । ସେ କହି ଚାଲିଥାଆନ୍ତି ଏ ପ୍ରକାରର ଅନେକ କେଶ୍‌ରେ ପୂରା ବା ଆଂଶିକ ଭାବେ ଜିତିଛନ୍ତି ଅନେକ କେଶ୍ ଯଦିଓ ବାହାରକୁ ଦେଖିଲେ ସେମିତି କିଛୁ କଠିନ ନୁହେଁ, ତଥାପି ଯେମିତି କେ'ର କେଶ୍ ନିହାତି ଆଶାହୀନ । ତାଙ୍କ ଟେବୁଲର ଡ୍ରୟାରରେ ଏପରି ଅନେକ କେଶ୍‌ର ଗୋଟିଏ ତାଲିକା ଅଛି । ସେଗୁଡ଼ିକ ଭିତରୁ ଗୋଟାକୁ କାଢ଼ି ପାରନ୍ତି ମାତ୍ର ଦୁଃଖିତ ଯେ ତାକୁ ଦେଖାଇ ହେବନି; କାରଣ ଏହା ନିହାତି ଗୁପ୍ତ । ଯାହା ହେଉ ଏହିସବୁ ମକଦ୍ଦମାରୁ ସେ ଯେଉଁ ଅନୁଭୂତି ହାସଲ କରିଛନ୍ତି ତା କେ'ର କେଶ୍ ପାଇଁ ବେଶ୍ ସାହାଯ୍ୟ କରିବ । ଅବଶ୍ୟ ସାଙ୍ଗେ ସାଙ୍ଗେ କେ'ର କେଶ୍ ପାଇଁ ସେ କାମ ଆରମ୍ଭ କରିଛନ୍ତି ଏବଂ ପ୍ରଥମ ଜବାବ୍ ଉପସ୍ଥାପିତ କରିବା ପାଇଁ ପ୍ରାୟ ପ୍ରସ୍ତୁତ ହୋଇଗଲେଣି । ଏହା ବଡ଼ ଦରକାରୀ । କାରଣ ପ୍ରତିବାଦୀ ତରଫରୁ ପ୍ରଥମ ଯେଉଁ ଧାରଣା ସୃଷ୍ଟି ହୋଇଥାଏ ତାହାହିଁ ଭବିଷ୍ୟତରେ ମକଦ୍ଦମାର ଭବିଷ୍ୟତକୁ ନିର୍ଦ୍ଧାରିତ କରିଥାଏ । ମାତ୍ର ଦୁର୍ଭାଗ୍ୟର କଥା ଯେ ଅନେକ ସମୟରେ ଏହି ପ୍ରଥମ ଜବାବଟି ଆଦୌ ପଢ଼ାଯାଏ ନାହିଁ । ଏହି ବିଷୟରେ କେ'କୁ ସତର୍କ କରିଦେବା ହେଉଛି ତାଙ୍କର କର୍ତ୍ତବ୍ୟ । ସେ ତାକୁ ଜଣାଇ ଦେବାକୁ ଚାହାନ୍ତି ଯେ ଦିଆଯାଇଥିବା ଜବାବ୍‌ଟିକୁ ଅନ୍ୟ କାଗଜମାନଙ୍କ ସାଥିରେ ଫାଇଲ୍ କରିଦିଆଯାଏ । ତାକୁ ଜଣାଇ ଦିଆଯାଏ ଯେ ଅଭିଯୁକ୍ତକୁ ଜେରା କରିବା ଆଉ ପର୍ଯ୍ୟବେକ୍ଷଣ ଭିତରେ ରଖିବା ଅଧିକ ଦରକାରୀ । ତାର ତଥାକଥିତ ଜବାବ ଓ ଦରଖାସ୍ତ ଅପେକ୍ଷା ଏହା ଅଧିକ ଗୁରୁତ୍ୱ-

Digitized by srujanika@gmail.com

ପୁଷ୍ଟି । ଯଦି ଦରଖାସ୍ତକାରୀ ଅଧିକ ଖର୍ଚ୍ଚ ପକାଏ ତେବେ ତାକୁ ସାଧାରଣତଃ ଜଣାଇ ଦିଆଯାଏ ଯେ ରାୟ ପ୍ରକାଶିତ ହେବା ପୂର୍ବରୁ ମକଦ୍ଦମା ସଂକ୍ରାନ୍ତରେ ମିଳିଥିବା ସମସ୍ତ ତଥ୍ୟ—ଅବଶ୍ୟ ସବୁ କାଗଜପତ୍ର ଏହାର ଅନ୍ତର୍ଭୁକ୍ତ—ଏବଂ ଅଭିଯୁକ୍ତର ପ୍ରଥମ ଜବାବ୍ ସବୁ ଯତ୍ନର ସହ ପରୀକ୍ଷା କରାଯିବ । ଦୁର୍ଭାଗ୍ୟବଶତଃ ଅଧିକାଂଶ କ୍ଷେତ୍ରରେ ଏହା ମଧ୍ୟ ଆଦୌ ସତ ନୁହେଁ । କାରଣ ଏହି ପ୍ରଥମ ଜବାବ୍ ଏଣେ ତେଣେ ରହିଯାଏ ବା ପୁରା ହଜିଯାଏ । କେବେ ଯଦି ଅକ୍ଷତ ଅବସ୍ଥାରେ ଦୈବାତ୍ ରହିଗଲା ତେବେ ତାକୁ ଆଦୌ ପଢ଼ାଯାଏ ନାହିଁ । ଅବଶ୍ୟ ଓକିଲ ଏକଥା କହିଲା ବେଳେ ମାନିଲେ ଯେ ଏହା ଖାଲି ଜନରବ । ଏସବୁ ବଡ଼ ଦୁଃଖର ବିଷୟ । ମାତ୍ର ଏସବୁରେ ଯେ ଯାଥାର୍ଥତା ନାହିଁ ଏହା ଠିକ୍ ନୁହେଁ । କେ' ନିଶ୍ଚିତ ଭାବେ ଜାଣିରଖିବା ଉଚିତ୍ ଯେ ମକଦ୍ଦମାର କାର୍ଯ୍ୟ ପ୍ରଣାଳୀ ସର୍ବସାଧାରଣ ପାଇଁ ଉଦ୍ଦିଷ୍ଟ ନୁହେଁ । ଯଦି କୋର୍ଟ ଏହାର ପ୍ରୟୋଜନୀୟତା ବିବେଚନା କରେ ତେବେ ଏହାକୁ ସର୍ବସାଧାରଣ କରାଯାଇପାରେ । କିନ୍ତୁ ଆଇନ୍ କେବେ ବ୍ୟବସ୍ଥା କରିନି ଯେ ଏହା ସାଧାରଣ ପାଇଁ ଉଦ୍ଦିଷ୍ଟ ହେଉ । ତେଣୁ ବାସ୍ତବରେ ମକଦ୍ଦମା ଆଇନ ସଂକ୍ରାନ୍ତୀୟ କାଗଜପତ୍ର ଏବଂ ସର୍ବୋପରି ପ୍ରକୃତ ଅଭିଯୋଗ ପତ୍ର ଅଭିଯୁକ୍ତ ଏବଂ ତାର ଓକିଲ ପାଖରେ ଦୁଷ୍ପ୍ରାପ୍ୟ । ଫଳତଃ ସାଧାରଣ ଭାବରେ ଜଣେ ଜାଣି ପାରିବନି । ତେଣୁ ଏପରି ଦରଖାସ୍ତରେ ପ୍ରାସଙ୍ଗିକତା ରହିବା ଦୈବ ଘଟଣା ମାତ୍ର । ପ୍ରକୃତରେ ଫଳପ୍ରଦ ଓ ହୃଦ୍‌ବୋଧ ଜବାବ ପତ୍ରଟିଏ ଦେବା କେବଳ ପରବର୍ତ୍ତୀ ପର୍ଯ୍ୟାୟରେ ସମ୍ଭବ ହିଁ ହେବ । ଯେତେବେଳେ କି ନିର୍ଦ୍ଦିଷ୍ଟ ଅଭିଯୋଗ ଏବଂ ଯେଉଁ ସାକ୍ଷୀ ଉପରେ ନିର୍ଭର କରି ଏପରି ଅଭିଯୋଗ ଅଣାଯାଇଛି ତାହା ଜଣାଯିବ ବା ସେ ବିଷୟରେ ଜେରାରୁ ଅନୁମାନ କରି ହେବ । ଏପରି କ୍ଷେତ୍ରରେ ପ୍ରତିବାଦୀର ଅବସ୍ଥା ପ୍ରକୃତରେ ଜଟିଳ ଓ ବଡ଼ ବିପଦଜନକ । କିନ୍ତୁ ଏହା ମଧ୍ୟ ସ୍ୱେଚ୍ଛାକୃତ । କାରଣ ଆଇନ ପ୍ରତିବାଦୀକୁ ପ୍ରକୃତରେ ସାହାଯ୍ୟ କରେ ନାହିଁ ? ତାକୁ ଖାଲି ସହ୍ୟ କରିଥାଏ । ଏପରି କ୍ଷେତ୍ରରେ ମଧ୍ୟ ବିଭିନ୍ନ ମତ ଦେଖାଯାଏ । ପ୍ରଶ୍ନ ଉଠେ ଆଇନ୍ ଏପରି ଉଦାରତା ଦେଖାଇ ପାରିବ କି ନାହିଁ । ତେଣୁ ପ୍ରକୃତରେ ଦେଖିବାକୁ ଗଲେ ପ୍ରତିବାଦୀର କୌଣସି ଓକିଲକୁ କୋର୍ଟ ସ୍ୱୀକାର କରେ ନାହିଁ । ତେଣୁ ପ୍ରତିବାଦୀ ସପକ୍ଷରେ ଯେଉଁମାନେ ଠିଆ ହୁଅନ୍ତି ସେମାନେ କେବଳ ଶ୍ରେଷ୍ଠ ଶ୍ରେଷ୍ଠ ଜନପରେ ଅଯଥା ଚିନ୍ତା କରୁଥିବା ଓକିଲଙ୍କ ବ୍ୟତୀତ ଆଉ କେହି ନୁହନ୍ତି । ତେଣୁ ଓକିଲତି ବୃତ୍ତି ଉପରେ ଏହାର ଏକ ଲଜ୍ଜାକର ପ୍ରଭାବ ପଡ଼ିଥାଏ । ଭବିଷ୍ୟତରେ କେ' ଯେବେ କୋର୍ଟ ଅଫିସ୍‌କୁ ଯିବ ସେତେବେଳେ ଓକିଲମାନଙ୍କୁ ମିଳିଥିବା କୋଠରୀଗୁଡ଼ିକୁ ଟିକିଏ ଦେଖି ଆସିବ । ଜୀବନରେ ଗୋଟିଏ ଜନପକୁ ଥରେ ଦେଖି ଆସିବା ବ୍ୟତୀତ ଆଉ କିଛି ନୁହେଁ ଏହା

Digitized by srujanika@gmail.com

କୌତୂହଳତା ନୁହେଁ । ସେଠାରେ ଜମିଥିବା ଲୋକମାନଙ୍କୁ ଦେଖି ସେ ହୁଏତ ଡରିଯିବ । କୋର୍ଟ କେମିତି ସେମାନଙ୍କୁ ଘୃଣା ଆଖିରେ ଦେଖେ ତାଙ୍କୁ ମିଳିଥିବା ସେଇ ଅତି ଶ୍ରେଷ୍ଠ ଆଉ ସଙ୍କୁଚିତ କୋଠରିଗୁଡ଼ିକ ହିଁ ତାର ସୂଚକ । ବହୁ ଉଚ୍ଚରେ ଥିବା ସ୍କାଇଲାଇଟ୍ ଦ୍ୱାରା ସେ କୋଠରିଗୁଡ଼ିକ ସାମାନ୍ୟ ଆଲୋକିତ । ସେଗୁଡ଼ିକ ଏତେ ଉଚ୍ଚରେ ଯେ ଯଦି କେହି ବାହାରକୁ ଦେଖିବାକୁ ଚାହେଁ ତେବେ ତାକୁ ତାର ଗୋଟିଏ ସହକର୍ମୀର କାନ୍ଧରେ ଚଢ଼ି ଚାହିଁବାକୁ ପଡ଼ିବ । ଏପରି ସତ୍ତ୍ୱେ ବି ପାଖରେ ଥିବା ଚିମିନିରୁ ଧୂଆଁ ତାକୁ ଅଣନିଶ୍ୱାସୀ କରି ପକାଇବ ବା ତା' ମୁହଁକୁ କଳା କରିଦେବ । କେଉଁ ଅବସ୍ଥାରେ ସେ ଘରଗୁଡ଼ିକ ଅଛି ଆଉ ଗୋଟିଏ ଉଦାହରଣ ଦେଲେ ଯଥେଷ୍ଟ ହେବ । ବର୍ଷକରୁ ଅଧିକ ହେବ ଚଟାଣରେ ଗୋଟିଏ ଗାତ ହୋଇଛି । ଗାତଟି ଏତେ ବଡ଼ ନୁହେଁ ଯେ ତୁମେ ତା' ଭିତରେ ଗଳି ପଡ଼ିବ । କିନ୍ତୁ ଜଣକର ଗୋଡ଼ ଗଳିଯିବା ପାଇଁ ଗାତଟି ଯଥେଷ୍ଟ । ଓକିଲଙ୍କ କୋଠରିଟି କୋଠାର ସବା ଉପର ସ୍ତରରେ । ତେଣୁ ଦୈବାତ୍ ଯଦି ତୁମ ଗୋଡ ସେ ଗାତରେ ଗଳିଗଲା ତେବେ ତଳେ ଥିବା କୋଠରିର ସ୍ତରରେ ବେଶ୍ ତୁମେ ଝୁଲି ରହିବ ଅର୍ଥାତ୍ ଗଳି ବାଟରେ ଯେଉଁଠି ମହକିଲମାନେ ଅପେକ୍ଷା କରିଥା'ନ୍ତି ସେଇଠି ସେମାନଙ୍କ ମଥା ଉପରେ ତୁମ ଗୋଡ଼ ଝୁଲି ରହିବ । ଏପରି ଅବସ୍ଥାକୁ ଅପମାନଜନକ ବୋଲି ଯଦି ଓକିଲମାନେ କହନ୍ତି ତେବେ ତା' ବେଶୀ କିଛି ନୁହେଁ ? କର୍ତ୍ତୃପକ୍ଷଙ୍କ ପାଖରେ ଆପଣଙ୍କର ଆପତ୍ତିର କିଛି ଅର୍ଥ ନାହିଁ । ପୁଣି ନିଜ ଖର୍ଚ୍ଚରେ ସେପରି ଗାତର ମରାମତି ବା ତାର କିଛି ପରିବର୍ତ୍ତନ କରିବା ପାଇଁ ଓକିଲମାନଙ୍କୁ ପୂରା ମନା । ତଥାପି କର୍ତ୍ତୃପକ୍ଷଙ୍କର ଏପରି ମନୋଭାବର କିଛି ଉଦ୍ଦେଶ୍ୟ ଅଛି । କର୍ତ୍ତୃପକ୍ଷ ଚାହାନ୍ତି ଯେ ପ୍ରତିବାଦୀ ପାଇଁ କିଛି କାମ ସେପରି ଓକିଲମାନେ ନ କରନ୍ତୁ । କାରଣ ନିଜ ଆତ୍ମରକ୍ଷାର ଦାୟିତ୍ୱ ଅଭିଯୁକ୍ତ ଉପରେହିଁ ନ୍ୟସ୍ତ । ନିଶ୍ଚିତଭାବେ ଏହା ଏକ ଯୁକ୍ତିଯୁକ୍ତ ଦୃଷ୍ଟିକୋଣ । ତଥାପି ଅଦାଲତର ସମ୍ମୁଖୀନ ହେଲାବେଳେ ଜଣେ ଅଭିଯୁକ୍ତ ବ୍ୟକ୍ତିର ଆତ୍ମରକ୍ଷା ପାଇଁ ଜଣେ ଓକିଲର ଯେ ପ୍ରୟୋଜନ ନାହିଁ ଏପରି ବିଚାର କରିବାଠାରୁ ଭ୍ରମାତ୍ମକ ଧାରଣା ଆଉ କିଛି ନାହିଁ । ଏଇ କୋର୍ଟରେ ବରଂ ଓକିଲଙ୍କ ସାହାଯ୍ୟର ପ୍ରୟୋଜନ ଯେତେ ଦରକାର ଅନ୍ୟ କେଉଁଠି ହୁଏତ ନ ପଡ଼ିପାରେ । କାରଣ ଏଠାରେ ବିଚାରର ବିବରଣୀ କେବଳ ସାଧାରଣଙ୍କଠାରୁ ଗୁପ୍ତ ରଖାଯାଇଥାଏ ତା' ନୁହେଁ, ଅଭିଯୁକ୍ତ ବ୍ୟକ୍ତି ଏହା ଜାଣିବାକୁ ବଞ୍ଚିତ ହୋଇଥାଏ । ଅବଶ୍ୟ ଯେତେଦୂର ସମ୍ଭବ ଏପରି ଗୋପନୀୟତା ରକ୍ଷା କରାଯାଇଥାଏ । ମାତ୍ର ଅଭିଜ୍ଞତାରୁ ଜଣାଯାଏ ଏହା ଶେଷ ପର୍ଯ୍ୟନ୍ତ କଡ଼ାକଡ଼ି ରହିଥାଏ । ଏମିତିକି ଅତିବେଶୀ ଜଡ଼ିତଥିବା ଚିନ୍ତାଦଗ୍ଧ ଅଭିଯୁକ୍ତ ବ୍ୟକ୍ତିଟିର ମଧ୍ୟ ଅଦାଳତ କାଗଜପତ୍ର ଦେଖିବାର

Digitized by srujanika@gmail.com

ଅଧିକାର ନାହିଁ । କୋର୍ଟର କେସ୍‌କୁ ତା'ବିରୁଦ୍ଧରେ କେଉଁ ପ୍ରକାର ତଥ୍ୟ ସଂଗୃହୀତ ହୋଇଛି ତା'ର ଅନୁମାନ କରିବା ସମ୍ଭବ ନୁହେଁ । ଫଳରେ ଅଭିଯୁକ୍ତ ଧୀରେ ହତାଶ ହୋଇଯିବା ସ୍ୱାଭାବିକ । ମାତ୍ର ଏଇଠି ଓକିଲଙ୍କ ଭୂମିକା ଆରମ୍ଭ ହୁଏ । ସାଧାରଣତଃ କହିବାକୁଗଲେ ଅଭିଯୁକ୍ତ ବ୍ୟକ୍ତିକୁ ଜେଲ କଲାବେଳେ ଓକିଲଙ୍କୁ ସେଠାରେ ରହିବା ପାଇଁ ଅନୁମତି ମିଳେ ନାହିଁ । ଫଳରେ ଜେଲ ସିପାହୀମାନେ ତାକୁ ଆସାମୀକୁ ପ୍ରଶ୍ନ କରିବାକୁ ପଡ଼ିଥାଏ । ଯଦି ସମ୍ଭବ ସେହି କୋର୍ଟର ଦ୍ୱାର ପାଖରେହିଁ ତାକୁ ଏହା କରିବାକୁ ପଡ଼ିଥାଏ । ଏପରି ପ୍ରଶ୍ନୋତ୍ତରରୁ ଯାହାସବୁ ଅସଂଲଗ୍ନ କୁଚୁରା ଖବର ସଂଗ୍ରହ ହୁଏ ତାହାକୁହିଁ ସଂଯୋଜିତ କରି ଗୋଟିଏ ମୋଟାମୋଟି ଧାରଣା ସେ କରିଥାଏ । ଏହି ଧାରଣାହିଁ ତାକୁ ତା' ମହକିଲର ସପକ୍ଷରେ ଯୁକ୍ତି କରିବାରେ ସାହାଯ୍ୟ କରିଥାଏ । କିନ୍ତୁ ଏ ଉପାୟ ମଧ୍ୟ ସେତେ ମୁଖ୍ୟ ନୁହେଁ । କାରଣ ଏପରି ଉପାୟ ଦ୍ୱାରା ଜଣେ ଖୁବ୍ ବେଶୀ ଖବର ଆଦାୟ କରିପାରିବ ନାହିଁ । ଯଦିଓ ଅନ୍ୟ କ୍ଷେତ୍ରପରି ଏଠାରେ ମଧ୍ୟ ଅନେକ ଯୋଗ୍ୟ ଓକିଲ ଅଛନ୍ତି ଯେଉଁମାନେକି ଅନ୍ୟମାନଙ୍କ ଅପେକ୍ଷା ଖୁବ୍ ଫଳପ୍ରଦ ହୋଇଥାଆନ୍ତି । ସବୁଠାରୁ ବଡ଼ କଥା ହେଲା ଅଦାଲତ କର୍ମଚାରୀଙ୍କ ସହିତ ଓକିଲଙ୍କ ବ୍ୟକ୍ତିଗତ ସମ୍ପର୍କ । ଏହି ସମ୍ପର୍କରେହିଁ ନିହିତ ଓକିଲଙ୍କ ବାହାଦୁରୀ । ବର୍ତ୍ତମାନ ନିଜ ଅନୁଭୂତିରୁ କେ' ଜାଣି ପାରିଲିଣି ଯେ କୋର୍ଟରେ ତଳଠାରୁ ଉପରଯାଏ ଘଷ ପାହ୍ୟାର ପାହାଚ । ଏଠି ସବୁଠାରୁ ତଳ ପାହ୍ୟାରେବି ଦୁର୍ନୀତି ଭରି ରହିଛି । ଫଳରେ ବିଚାର ମିଳିବା ପ୍ରକ୍ରିୟାଟି ଏଠି ଅତି ସବଳ ଆଉ ନ୍ୟାୟପୂର୍ଣ୍ଣ ନୁହେଁ । ଏଥିରେବି ଫାଟ ପଡ଼ିଛି । ଶ୍ରେଷ୍ଠ ଶ୍ରେଷ୍ଠ ଓକିଲମାନେ ଏହି ଦୁର୍ବଳତାର ସଦ୍‌ବ୍ୟବହାର କରିବାକୁ ଚାହାନ୍ତି । ଏଥିପାଇଁ ତାଙ୍କୁ ଲାଞ୍ଚ ଦେବାକୁ ପଡ଼ିଥାଏ । ଆଜେବାଜେ ଗପସବୁ ଶୁଣିବାକୁ ପଡ଼ିଥାଏ । କାଗଜପତ୍ର ହେର ହେବାର ବି ଅନେକ ଉଦାହରଣ ଅଛି । ଅବଶ୍ୟ ଅଜ୍ଞାତରେ ଏସବୁ ଘଟିଛି । କିନ୍ତୁ ଏହା ସ୍ୱୀକାର କରି ହେବ ନାହିଁ ଯେ ଏହିସବୁ ଉପାୟ ଅଭିଯୁକ୍ତ ବ୍ୟକ୍ତି ପାଇଁ ଫଳପ୍ରଦ ହୋଇନାହିଁ । ଏଥିପାଇଁତ ତଳତଳିଆ ଓକିଲମାନେ ଗର୍ବ ଅନୁଭବ କରିଥାଆନ୍ତି । ଏହିକଥା ଚାରିଆଡ଼େ ପ୍ରଚାର କରି ନୂଆ ନୂଆ ମହକିଲମାନଙ୍କୁ ପ୍ରଲୋଭିତ କରିଥାଆନ୍ତି । ମାତ୍ର ଯେତେବେଳେ ମକଦ୍ଦମା କେଶ୍ ଆଗେଇଯାଏ ସେତେବେଳେ ତାଉପରେ ଏ ସବୁର କିଛି ପ୍ରଭାବ ନଥାଏ । ଯଦି କିଛି ଥାଏ ତାହା ଖାଲି ଖରାପ୍ ପ୍ରଭାବ । ଉଚ୍ଚପାହ୍ୟା କର୍ମଚାରୀଙ୍କ ସହ ସମ୍ମାନଜନକ ବ୍ୟକ୍ତିଗତ ସମ୍ପର୍କ ଅପେକ୍ଷା ଆଉ କୌଣସି ଉପାୟ ଏତେ ମୂଲ୍ୟବାନ ନୁହେଁ । ଏତେ ଫଳପ୍ରଦ ନୁହେଁ । ଅବଶ୍ୟ ଉଚ୍ଚପାହ୍ୟା କର୍ମଚାରୀମାନେ କହିଲେ ଅଧସ୍ତନ ପାହ୍ୟାକୁହିଁ ଧରାଯାଏ । ଏହିମାନଙ୍କ ସାହାଯ୍ୟରେହିଁ ମକଦ୍ଦମା ଧାରାକୁ ପ୍ରଭାବିତ କରାଯାଇପାରେ; ପ୍ରଥମରେ ଅତି ସୂକ୍ଷ୍ମଭାବରେ ଏବଂ

Digitized by srujanika@gmail.com

ଯେତେବେଳେ କେଶ୍ ଆଗେଇ ଚାଲେ ଏହାଙ୍କ ପ୍ରଭାବ ସେତେ ସେତେ ଶକ୍ତିଶାଳୀ ହୋଇପଡେ । ଅବଶ୍ୟ ଖୁବ୍ କମ୍ ଓକିଲଙ୍କର ଏପରି ଭାଗ୍ୟ ଥାଏ । ଏପରି ଜଟିଳ ପରିସ୍ଥିତିରେ କେ'ର ଭାଗ୍ୟ ଖୁବ୍ କ୍ଷୀଣ । ଡ଼: ହୁଲ୍ଦ୍ଙ୍କ ପରି ସମ୍ପର୍କଥିବା ଓକିଲଙ୍କ ସଂଖ୍ୟା ଖୁବ୍ କମ୍ । ମାତ୍ର ଜଣେ ଦୁଇଜଣ କେବଳ ସେପରି ଗର୍ବ କରି ପାରନ୍ତି । ସେମାନେ ଏ ଓକିଲଖାନାରେ ଜମିଥିବା ଭିଡ଼ ବିଷୟରେ ଆଦୌ ଚିନ୍ତା କରନ୍ତିନି । ସେମାନଙ୍କ ସାଙ୍ଗରେ ତାଙ୍କର କିଛି ସମ୍ପର୍କ ନଥାଏ । କିନ୍ତୁ ସେମାନଙ୍କର ସମ୍ପର୍କ ନିବିଡ଼ଥାଏ, କୋର୍ଟ କର୍ମଚାରୀମାନଙ୍କ ସାଙ୍ଗରେ । ଡ଼: ହୁଲ୍ଦ୍ ଯେ ସବୁବେଳେ କୋର୍ଟକୁ ଯିବେ, ଜେରା କରୁଥିବା ମାଜିଷ୍ଟ୍ରେଟ୍ଙ୍କ ପାଖ କୋଠରୀରେ ମନହେଲେ ଆସି ବସିବେ, ତାଙ୍କପାଇଁ ଅପେକ୍ଷାକରିବେ ଏବଂ ମାଜିଷ୍ଟ୍ରେଟ୍ଙ୍କ ଖିଆଲ ଉପରେ ନିଜର ମକଦ୍ଦମାର ସଫଳତା ପାଇଁ ନିର୍ଭର କରିବେ, ଏପରି ଦରକାର ତାଙ୍କର ପଡ଼େନାହିଁ । ନା, କେ'ତ ନିଜେ ଦେଖିଛି କର୍ମଚାରୀମାନେ ନିଜ ତରଫରୁ ଆପେ ଆପେ ତାଙ୍କ ଘରକୁ ଆସନ୍ତି । ଆପେ ଆପେ ବିଭିନ୍ନ ମକଦ୍ଦମା ବିଷୟରେ ଖବର ଯୋଗାନ୍ତି ବା ବ୍ୟାପକ ସୂଚନା ଦେଇଥାଆନ୍ତି । କେତେବେଳେ ବିଭିନ୍ନ ମକଦ୍ଦମାର ଭବିଷ୍ୟତ ପର୍ଯ୍ୟାୟ ସମ୍ପର୍କରେ ଆଲୋଚନା କରନ୍ତି । ଅଧିକନ୍ତୁ ବେଳେ ବେଳେ ସେମାନେ ପ୍ରଭାବିତ ହୋଇ ନୂଆ ମତକୁ ମାନିନିଅନ୍ତି । ଅବଶ୍ୟ ସେମାନଙ୍କ ଏପରି ପରିବର୍ତ୍ତିତ ଦୃଷ୍ଟିକୋଣ ଓ ମତାମତ ଉପରେ ଅତି ବେଶୀ ଗୁରୁତ୍ୱ ଦେବା ଉଚିତ୍ ନୁହେଁ । କାରଣ ଆଲୋଚିତ ନୂଆ ଦୃଷ୍ଟିକୋଣ ଅନୁଯାଇ ବିଚାର କରି ଅଭିଯୁକ୍ତର ସପକ୍ଷରେ ମତ ଦେଲେ ମଧ୍ୟ ନିଜ ଅଫିସ୍କୁ ଯାଇ ସେମାନେ ଠିକ୍ ତା'ର ଓଲଟା ମତ ଦେଇଥା'ନ୍ତି । ଭିନ୍ନ ଆଦେଶ ଦେଇଥା'ନ୍ତି ଯାହାକି ଅଭିଯୁକ୍ତ ପ୍ରତି ଅଧିକ ମାତ୍ମକ ହୋଇଥାଏ । ଅଫିସରମାନଙ୍କର ଏପରି ବ୍ୟବହାରର କୌଣସି ପ୍ରତିକାର ନାହିଁ । କାରଣ ବ୍ୟକ୍ତିଗତ ଭାବରେ ସେମାନେ ଯେଉଁକଥାଟି ତୁମକୁ ଗୁପ୍ତରେ କହିଥିବେ ତାହା ସର୍ବସାଧାରଣରେ ଆଲୋଚିତ ହୋଇପାରିବନାହିଁ । ଏମିତିକି ପ୍ରତିବାଦୀ ପକ୍ଷର ଓକିଲ ତା'ର ପାରୁ ପର୍ଯ୍ୟନ୍ତ ଚେଷ୍ଟା କଲେବି ଏହି ଭଦ୍ରଲୋକମାନଙ୍କର ଅନୁଗ୍ରହ ପ୍ରାପ୍ତି ସମ୍ଭବନୁହେଁ । ଅନ୍ୟ ଦିଗରୁ ବିଚାର କଲେ ଦେଖାଯାଏ ଏ ଭଦ୍ରଲୋକମାନେ କେବେ ମାନବିକତା ବା ବନ୍ଧୁତା ଦ୍ୱାରା ପ୍ରଭାବିତ ହୋଇ ପ୍ରତିବାଦୀର ଓକିଲ, ବିଶେଷତଃ ପୁରୁଣା ଓକିଲମାନଙ୍କ ପାଖକୁ ଆସନ୍ତି ନାହିଁ । କେତେକ ଦୃଷ୍ଟିରୁ ସେମାନେ ପ୍ରତିବାଦୀ ଓକିଲଙ୍କ ଉପରେ ନିର୍ଭରଶୀଳ ମଧ୍ୟ । ମୂଳରୁ ଗୋପନୀୟତା ଉପରେ ଗୁରୁତ୍ୱ ଦେଉଥିବା ବିଚାର ପଦ୍ଧତିର ଅସୁବିଧା ସବୁକୁ ଅନୁଭବ କରିବାପାଇଁ ସେମାନେ ବାଧ୍ୟ ହୁଅନ୍ତି । ସମସ୍ତଙ୍କ ସହ ସମ୍ପର୍କହୀନତା ଏହି କର୍ମଚାରୀମାନଙ୍କୁ ସାଧାରଣଙ୍କ ଠାରୁ ଦୂରେଇ ରଖିଥାଏ । ସାଧାରଣ ମକଦ୍ଦମାଗୁଡ଼ିକୁ ବିଚାର କରିବା ପାଇଁ

Digitized by srujanika@gmail.com

ସେମାନଙ୍କ ପାଖରେ ସବୁପ୍ରକାର ଖୋରାକ ଆସେ । ତେଣୁ ଯନ୍ତ୍ରପରି ସେମାନେ ବିଚାର କରିଥା'ନ୍ତି । ମଝିରେ ମଝିରେ ଯାହାକିଛିକେ ଯାନ୍ତ୍ରିକ ପଦ୍ଧତିକୁ ବ୍ୟବହୃତ କରିବାକୁ ପଡ଼ିଥାଏ । ତଥାପି ଅତି ସହଜ ବା ଖୁବ୍ ଜଟିଳ କେଶ୍‌ର ସମ୍ମୁଖୀନ ହେଲାବେଳେ ସେମାନେ ଦ୍ୱନ୍ଦ୍ୱରେ ପଡ଼ନ୍ତି । କ'ଣ କରିବେ କିଛି ଠିକ୍ କରି ପାରନ୍ତିନାହିଁ । ସେମାନେ ତ ଦିନରାତି ବିଚାର କାମରେ ଲାଗି ରହିଥା'ନ୍ତି ତେଣୁ ମାନବିକ ସମ୍ପର୍କ ବିଷୟରେ ତାଙ୍କର କୌଣସି ସଠିକ୍ ଧାରଣା ନଥାଏ । ମାତ୍ର ଏପରି ମକଦ୍ଦମାଗୁଡ଼ିକରେ ମାନବ ପ୍ରକୃତି ସମ୍ପର୍କରେ ଜ୍ଞାନର ପ୍ରୟୋଜନୀୟତା ସବୁଠାରୁ ବେଶୀ । ଏଥିପାଇଁ ଓକିଲମାନଙ୍କ ପାଖକୁ ସେମାନେ ଉପଦେଶ ପାଇଁ ଆସିଥା'ନ୍ତି । ତାଙ୍କ ପଛେ ପଛେ ଗୋପନୀୟ ନଥିପତ୍ର ଧରି ତାଙ୍କର ଚାକର ଚାଲିଥାଏ । ସେଠାରେ ବସିଥିବା ସେ ଝିଅଟି ପାଖରେ ଅନେକ ଭଦ୍ରଲୋକ ଯେଉଁ-ମାନଙ୍କ ବର୍ଣ୍ଣନ ପାଇବା ସହଜ ନୁହେଁ, କେମିତି ହତାଶ ଆଖିରେ ଚାହାଁନ୍ତି ଚାହିଁ ରହିଛନ୍ତି । ସେମାନଙ୍କୁ ଆଇନ୍ ସଂକ୍ରାନ୍ତୀୟ ଉପଦେଶ ଦେବାପାଇଁ ଓକିଲ ତାଙ୍କ ଟେବୁଲ୍ ପାଖରେ କାଗଜପତ୍ର ପରୀକ୍ଷା କରୁଥିବେ । ଏହିପରି ପରିସ୍ଥିତିରେ ଜଣେ ଅନୁମାନ କରିପାରିବ ଏହି ଭଦ୍ରଲୋକମାନେ କେତେ ଗମ୍ଭୀରଭାବେ ତାଙ୍କ କାମକୁ ଗ୍ରହଣ କରିଥା'ନ୍ତି । ଆଉ ଯେତେବେଳେ ତାଙ୍କ କାମରେ ଅସୁବିଧା ଦେଖାଦିଏ ଯାହାକୁ ଦୂର କରିବା ପାଇଁ ସେମାନେ ଅସମର୍ଥ ହୁଅନ୍ତି, ସେମାନେ ସେତେବେଳେ କେତେ ହତାଶ ହୋଇପଡ଼ନ୍ତି ।

ଅନ୍ୟ ଦିଗରେ ସେମାନଙ୍କ କାମ ଆଦୌ ସହଜନୁହେଁ । ତେଣୁ ତାଙ୍କ କାମକୁ ସହଜ ବୋଲି କହି ତାଙ୍କ ପ୍ରତି ଅନ୍ୟାୟ କରିବା ଉଚିତ୍ ନୁହେଁ । ଏହି ବିଚାର ବ୍ୟବସ୍ଥାରେ କର୍ମଚାରୀଙ୍କର ସଂଖ୍ୟା ଉପରକୁ ଉପରକୁ ଅସରନ୍ତି ଭାବେ ଲମ୍ବିଯାଇଛି । ଏହାକୁ ସମ୍ପୂର୍ଣ୍ଣ ଭାବେ ଜାଣିବା ସହଜନୁହେଁ । ବିଚାର କାମ ଅତି ଗୋପନୀୟ ଭାବେ ଚାଲିଥିବାରୁ କେଶ୍‌ର ଅଗ୍ରଗତି ସମ୍ପର୍କରେ ଅଧସ୍ତନ କର୍ମଚାରୀଙ୍କର କୌଣସି ଧାରଣା ନଥାଏ । କୌଣସି ଗୋଟିଏ ବିଶିଷ୍ଟ ମକଦ୍ଦମା ତାଙ୍କ କ୍ଷମତାର ପରିସର ଭିତରକୁ ଆସିଗଲେ ବି ସେମାନେ ଜାଣିପାରନ୍ତିନି କେଉଁଠୁ ଆସିଲା ଏବଂ ପୁଣି ତାଙ୍କ ହାତରୁ ଏହା କେମିତି ଚାଲିଯାଏ ସେକଥା ବି ସେମାନେ ଜାଣିପାରନ୍ତିନି । ଏହା କୁଆଡ଼େ ଓ କାହା ପାଖକୁ ଗଲା, ଗୋଟିଏ ମକଦ୍ଦମାକୁ ବିଭିନ୍ନ ପର୍ଯ୍ୟାୟରେ ଅଧ୍ୟୟନ କରି ତା ବିଷୟରେ ଗୋଟିଏ ପୂର୍ଣ୍ଣାଙ୍ଗ ଧାରଣା ଏମାନଙ୍କର ହୁଏ ନାହିଁ । ଗୋଟିଏ ମକଦ୍ଦମାର ଶେଷ ପରିଣତି ଏମାନଙ୍କର ଅଗୋଚରରେ ରହିଥାଏ । କେବଳ ନିଜର ସୀମିତ ପରିସର ଭିତରେ ମକଦ୍ଦମା ସହି ସେମାନେ ଯେମିତି ସଂପୃକ୍ତ— ସେଠିକରେ ରହିବାକୁ ବାଧ୍ୟ ହୁଅନ୍ତି ଆଉ ତା'ଫଳରେ କେଶ୍‌ର କଥଣ ହେଲା

Digitized by srujanika@gmail.com

ଅର୍ଥାତ୍ ତାର ଫଳାଫଳ ବିଷୟରେ ବା ନିଜ କାମର ଚରମ ପରିଣତି ବିଷୟରେ ସେମାନେ ପ୍ରାୟ ଜାଣି ପାରନ୍ତି । ଏପରି କ୍ଷେତ୍ରରେ ପ୍ରତିବାଦୀର ଓକିଲ ତାଙ୍କଠୁ ବେଶୀ ଜାଣିବାର ସୁଯୋଗ ପାଏ, କାରଣ ସେ ପ୍ରତିବାଦୀ ସହ ଶେଷପର୍ଯ୍ୟନ୍ତ ସମ୍ପର୍କ ରଖିଥାଏ । ତେଣୁ ଏହି କ୍ଷେତ୍ରରେ ବି ସେମାନେ ଓକିଲ ପାଖରେ ଯାହା ଜାଣିବା କଥା ସେ ବିଷୟରେ ଅନେକ ଜାଣିଛନ୍ତି । ତେଣୁ ଏସବୁ କଥା ଜାଣିଲା ପରେ କର୍ମଚ୍ୟୁତମାନେ ତାଙ୍କ ମକ୍କେଲମାନଙ୍କ କେଶ୍ ବିଚାର କଲାବେଳେ ସମସ୍ତ ସମୟରେ ଚଡ଼ଚଡ଼ା ହୋଇ ଅପମାନଜନକ ବ୍ୟବହାର କରିଥା'ନ୍ତି । ସେ ବିଷୟରେ କେ' କାହିଁକି ଆଶ୍ଚର୍ଯ୍ୟ ହେବ ? ଏପରି ବ୍ୟବହାର ତ ସେମାନଙ୍କ ଅଶାନ୍ତିପୂର୍ଣ୍ଣ ଜୀବନର ସୂଚକ । ତା'ତ ସାର୍ବଜନୀନ ଅନୁଭୂତ । ସମସ୍ତ କର୍ମଚ୍ୟୁତଙ୍କ ମାନସିକ ଅବସ୍ଥା ସବୁବେଳେ ଚଡ଼ଚଡ଼ା । ଏମିତିକି ଯେତେବେଳେ ସେମାନେ ଅତି ଶାନ୍ତ ଥିଲାପରି ମନେ ହୁଅନ୍ତି, ସେତେବେଳେ ବି ସେମାନେ ଚଡ଼ଚଡ଼ା । ତେଣୁ ଏଇ ଶ୍ରେଷ୍ଠକାଟିଆ ଓକିଲମାନେ ଏହାଦ୍ୱାରା ଆକ୍ରାନ୍ତ ହୋଇଥାଅନ୍ତି । ଏ ବିଷୟରେ ନିମ୍ନୋକ୍ତ କାହାଣୀଟି ପ୍ରଚଳିତ । ଏ କାହାଣୀରେ ସତ୍ୟତା ଥିବାପରି ମନେହୁଏ । ଜଣେ ଭଲ ଶୁଭେଚ୍ଛୁ ବିଚାରପତି ହାତରେ ଗୋଟିଏ ଜଟିଳ କେଶ୍ ଥିଲା । ଓକିଲଙ୍କ ଦରଖାସ୍ତ ଦ୍ୱାରା ଏହା ଆହୁରି ଜଟିଳ ହୋଇ ଯାଇଥିଲା । ତେଣୁ ସେ ନିରବଚ୍ଛିନ୍ନ ଭାବରେ ଦିନରାତି ବସି ସେ ମକଦ୍ଦମାଟିକୁ ଅଧ୍ୟୟନ କରିବାକୁ ଲାଗିଲେ, କାହିଁକିନା ଏମାନେ ଅନ୍ୟମାନଙ୍କ ଅପେକ୍ଷା ଅଧିକ କର୍ତ୍ତବ୍ୟନିଷ୍ଠ । ଚବିଶଘଣ୍ଟା ଅଧ୍ୟୟନ ପରେ ସକାଳକୁ ଯେତେବେଳେ କିଛି ଫଳ ହେଲାନି ସିଏ ପ୍ରବେଶ ଦ୍ୱାର ପାଖରେ ନିଜକୁ ଲୁଚାଇ ରଖିଲେ ଓ ଯେତେ ଓକିଲ ସେଠାକୁ ଆସିବାକୁ ଚେଷ୍ଟାକଲେ ସମସ୍ତଙ୍କୁ ସିଡ଼ିରେ ତଳକୁ ଗଡ଼ାଇଦେଲେ । ଓକିଲମାନେ ସବୁ ତଳେ ଜମା ହୋଇ କଅଣ କରିବେ ପରାମର୍ଶ କରିବାକୁ ଲାଗିଲେ । ଗୋଟିଏ ଦିଗରେ ସେଠାକୁ ଯିବାର ଅଧିକାର ନାହିଁ ସେମାନଙ୍କର । ତେଣୁ ମାଜିଷ୍ଟ୍ରେଟ୍‌ଙ୍କ ବିରୁଦ୍ଧରେ ଆଇନଗତ କାର୍ଯ୍ୟାନୁଷ୍ଠାନ କିଛି କରିହେବ ନାହିଁ; ପୁଣି ମାଜିଷ୍ଟ୍ରେଟ୍‌ଙ୍କ ସହ ଶତ୍ରୁତା କରିବାକୁ ସେମାନେ ଦେବେ ନାହିଁ ।

ଅନ୍ୟ ଦିଗରେ କୋର୍ଟକୁ ଦିନେ ନ ଗଲେ ସେମାନଙ୍କର ଅନେକ କ୍ଷତି । ତେଣୁ କୋର୍ଟ ଭିତରକୁ ଯିବା ଉପରେ ସେମାନଙ୍କର ଅନେକ କିଛି ନିର୍ଭର କରୁଚି । ତେଣୁ ସେମାନେ ସବୁ ଏକାଠି ବସି ଠିକ୍ କଲେ ଯେ ସେ ବୃଦ୍ଧ ମାଜିଷ୍ଟ୍ରେଟ୍‌ଙ୍କୁ କ୍ଲାନ୍ତ ହେବାକୁ ଛାଡ଼ି ଦିଆଯିବ । ତାପରେ ଜଣେ ପରେ ଜଣେ ଓକିଲ ସବୁଠାରୁ ବଡ଼ ନିର୍ଦ୍ଦିଷ୍ଟ ଅସହଯୋଗ ସୃଷ୍ଟି କରିବା ପାଇଁ ଉପରକୁ ପଠାଗଲେ । ସେମାନେ ସିଡ଼ିରେ ଧାଇଁ ଧାଇଁ ଚଢ଼ିଲେ ଏବଂ ଶେଷରେ ଧକ୍କାଖାଇ

Digitized by srujanika@gmail.com

ତାଙ୍କ ସହକର୍ମୀଙ୍କ କୋଳରେ ଖସିଲେ । ଏହିପରି ଘଣ୍ଟାଏ କଟିଗଲା । ତାପରେ ସାରାରାତି ପରିଶ୍ରମ କରିଥିବା ସେ ବୃଢ଼ା ଭଦ୍ରଲୋକ ଶେଷରେ ଥକିଗଲେ ଏବଂ ନିଜ ଅଫିସ୍‌କୁ ଫେରିଗଲେ । ତଳେ ଥିବା ଓକିଲମାନେ ପ୍ରଥମେ ଏକଥା ବିଶ୍ୱାସ କରି ପାରିଲେ ନାହିଁ । ପ୍ରକୃତରେ ସେ ଚାଲିଗଲେଣି ଆଉ ସେ ସ୍ଥାନ ଖାଲିପଡ଼ିଛି ଏ ବିଷୟରେ ନିଶ୍ଚିତ ହେବା ପରେ ଓକିଲମାନେ ସେମାନଙ୍କ ଭିତରୁ ଜଣକୁ ଉପରକୁ ପଠାଇଲେ । ତା'ପରେ ଯାଇ ଭିତରକୁ ଯିବାକୁ ତାଙ୍କର ସାହସ ହେଲା । ଏମିତିକି ସେଠାରେ ସେମାନେ ତାଙ୍କର ଅସନ୍ତୋଷ ପ୍ରକାଶ କରିବାକୁ ବି ସାହସ କରି ପାରିଲେନାହିଁ । ଯଦିଓ ଜଣେ ତଳତଳିଆ ଶ୍ରେଷ୍ଠ ଓକିଲ ଅଦାଲତର ବିସ୍ତୃତ ପଦ୍ଧତି ବିଷୟରେ ଆଲୋଚନା କରି ବିଶ୍ଳେଷଣ କରିବାକୁ ସମର୍ଥ, ତଥାପି ଏ ପଦ୍ଧତିରେ କେମିତି ଉନ୍ନତ କରାଯାଇ ପାରିବ ସେ ବିଷୟରେ ସୂଚନା ଦେବାକଥା କେବେ କୌଣସି ଓକିଲଙ୍କ ମନକୁ ଆସିନି । ଅଥଚ ପ୍ରତ୍ୟେକ ଅଭିଯୁକ୍ତ ବ୍ୟକ୍ତି ଏମିତିକି ସେମାନଙ୍କ ମଧ୍ୟରେ ଯେଉଁମାନେ ଅତି ସରଳ ସେମାନଙ୍କ ମକଦ୍ଦମା ପ୍ରଥମ ପ୍ରାରମ୍ଭରୁହିଁ ଏପରି ବିସ୍ତୃତ ପଦ୍ଧତିରେ ପରିବର୍ତ୍ତନ ଲୋଡ଼ା ବୋଲି ଅନୁଭବ କରନ୍ତି । ଏବଂ ସେ ବିଷୟରେ ସୂଚନା ଦେବାରେ ଲାଗନ୍ତି । ଏପରି କରିବା ଦ୍ୱାରା ତାଙ୍କ ସମୟ ଓ ଶକ୍ତିର ଅପଚୟ ଘଟିଥାଏ । ଯାହାକି ଅନ୍ୟ କୌଣସି ଢଗରେ ଖଟାଯାଇ ପାରିଥାଆନ୍ତା । ତେଣୁ ସବୁଠାରୁ ଶ୍ରେଷ୍ଠ ଓ ବୁଦ୍ଧିମାନର କାମ ହେଉଛି ଏହି ପଦ୍ଧତି ସହିତ ନିଜକୁ ଖାପ୍ ଖୁଆଇ ଦେବା । ଏ ପଦ୍ଧତିରେ ଏଠି ସେଠି ସାମାନ୍ୟ ପରିବର୍ତ୍ତନ କରିବା ହୁଏତ ସମ୍ଭବ ମାତ୍ର ଏପରି ଚିନ୍ତା କରିବା ପାଗଳାମି ଛଡ଼ା ଆଉ କିଛି ନୁହେଁ । ଏହା ଦ୍ୱାରା ଯେଉଁ ଲାଭ ହେବ ତା' କେବେ ମହକିଲମାନଙ୍କ ଭବିଷ୍ୟତ ଉପକାରରେ ଆସିବ ମାତ୍ର ଏପରି କରିବା ଦ୍ୱାରା ସେ ନିଜେ ପ୍ରତିହିଂସା-ପ୍ରିୟ କୋର୍ଟ କର୍ମଚାରୀମାନଙ୍କ ଦୃଷ୍ଟି ଆକର୍ଷଣ କରିବ ଯାହାକି ନିଜ ସ୍ୱାର୍ଥର ପ୍ରଭୂତ କ୍ଷତି କରିବ । ତେଣୁ ସବୁବେଳେ ମୁଣ୍ଡ ନୁଆଁଇ ରହିବା ଭଲ । ନିଜ ବିରୁଦ୍ଧରେ ଏହା ଯେତେ ଯାଉନା କାହିଁକି, ଏହା ବୁଝିବାକୁ ହେବ ଯେ ଏହି ବିରାଟ ଅନୁଷ୍ଠାନ ଗୋଟିଏ ସୂକ୍ଷ୍ମ ଭାରସାମ୍ୟ ଉପରେ ତିଷ୍ଠି ରହିଛି । ତେଣୁ ଯଦି କେହି ନିଜ ତରଫରୁ ଏହି ଭାରସାମ୍ୟକୁ ବଦଳାଇବାର ଚେଷ୍ଟା କରେ ତେବେ ତାକୁ ପାଦ ଖସି ଧୂଳିସାତ୍ ହେବାର ଦାୟିତ୍ୱ ବହନ କରିବାକୁ ପଡ଼ିବ । କିନ୍ତୁ ଏ ଅନୁଷ୍ଠାନ କୌଣସି ନା କୌଣସି ବାଟେ ଭିନ୍ନ ପ୍ରତିକ୍ରିୟା ଦ୍ୱାରା ଏ କ୍ଷତିର ଭରଣା କରି ନେବ । କାହିଁକି ନା ଏହି ପଦ୍ଧତିର ବିଶାଳ ଯନ୍ତ୍ର ଭିତରେ ସମସ୍ତେ ସମସ୍ତଙ୍କ ସହିତ ବନ୍ଧା, ସମ୍ପର୍କିତ । ତେଣୁ ସବୁଦିନ ଅପରିବର୍ତ୍ତନୀୟ । ଏହାକୁ ବଦଳାଇବାର ପ୍ରଚେଷ୍ଟା କେବଳ ଏହାକୁ ଅଧିକ ଶକ୍ତ, ଅଧିକ ସତର୍କ ଏବଂ ଅଧିକ ନିଷ୍ଠୁର କରି ତୋଳିବ । ତେଣୁ ଓକିଲଙ୍କ କାମରେ ହସ୍ତକ୍ଷେପ ନ କରି ତାଙ୍କୁ ତାଙ୍କ କାମ

Digitized by srujanika@gmail.com

କରିବାକୁ ଛାଡ଼ିଦେବା ଭଲ । ନିନ୍ଦା କରିବା ବା ଗାଳିଦେବାର ଅର୍ଥ କିଛି ହୁଏନି । କାହିଁକି ନା ଗାଳିଦେବାବାଲା ତାର ଗାଳି ଦେବାର ଯଥାର୍ଥତାର କ୍ଷେତ୍ରକୁ ବୁଝିବାରେ ସକ୍ଷମ ହୁଏ ନାହିଁ । ତେଣୁ ସେ ଭାବେ ଯେ କୋର୍ଟର ମୁଖ୍ୟ କିରାଣୀକୁ ଅସମ୍ମାନ ଦେଖାଇ କେ' ନିଜ ମକଦ୍ଦମାର ଘୋର କ୍ଷତି କରିଛି । ତାକୁ ସାହାଯ୍ୟ କରି ପାରିବା ଭଳି ପ୍ରଭାବଶାଳୀ ଲୋକଙ୍କ ତାଲିକାରୁ ସେ ଜଣକୁ କାଟି ଦେଇଛି । ଫଳରେ ଜାଣିଶୁଣି ସେ କେ'ର ମକଦ୍ଦମାକୁ ଉପେକ୍ଷା କରିଚନ୍ତି । ସରକାରୀ କର୍ମଚାରୀମାନେ ଅନେକ ସମୟରେ ପିଲାଙ୍କ ପରି ବ୍ୟବହାର କରନ୍ତି । ଅତି ସାମାନ୍ୟ କଥାରେ ଗଭୀର ଅପମାନିତ ବୋଧକରନ୍ତି । (ଦୁର୍ଭାଗ୍ୟବଶତଃ କେ'ର ବ୍ୟବ-ହାରକୁ ସାମାନ୍ୟ କହି ହେବ ନାହିଁ । ) ଆଉ ସେମାନଙ୍କ ପୁରୁଣା ବନ୍ଧୁମାନଙ୍କ ସହ କଥା କହିବା ବନ୍ଦ କରିଦଅନ୍ତି । ଏମିତିକି ବିଭିନ୍ନ ଉପାୟରେ ସେମାନଙ୍କର କ୍ଷତି କରିବାକୁ ଚେଷ୍ଟା କରନ୍ତି । କିନ୍ତୁ ହଠାତ୍ କେତେବେଳେ ଆଶ୍ଚର୍ଯ୍ୟ ଭାବରେ ତୁମର ସାମାନ୍ୟ ପରିହାସ ଦ୍ୱାରା ସେମାନେ ହସିଥାଆନ୍ତି ଏବଂ ପରେ ପରେ ପୁଣି ତୁମର ବନ୍ଧୁ ହୋଇଯାଆନ୍ତି । ପ୍ରକୃତରେ ସେମାନଙ୍କ ସହ ଚଳିବା ଯେତିକି ସହଜ ପୁଣି ସେତିକି ମଧ୍ୟ କଷ୍ଟ । ତାଙ୍କ ସହ ଚଳିବାକୁ ହେଲେ ଗୋଟିଏ ନିୟମ ବା ଧାରାରେ ଚଳିପାରିବ ନାହିଁ । ବେଳେ ବେଳେ ଭାବିଲେ ଆଶ୍ଚର୍ଯ୍ୟ ଲାଗେ ଯେ, ଏପରି ବୃତ୍ତିରେ ସଫଳତା ପାଇଁ ଯେତିକି ଜ୍ଞାନର ପ୍ରୟୋଜନ ଜଣେକ ଜୀବନ କାଳରେ କେତେ ଦୂର ସମ୍ଭବ । ଜୀବନଟା ସବୁବେଳେ ଭଲରେ ଯାଏନି । ସମସ୍ତଙ୍କ ଜୀବନରେ ବେଳେ ବେଳେ ଖରାପ ସମୟ ଆସେ । ଏପରି ସମୟ ଆସିଲେ ଜଣେ ଭାବେ ଯେ, କିଛି ହେଲାନି । ତା ଜୀବନ ବୃଥା ହୋଇଗଲା । ଏଇ କ୍ଷେତ୍ରରେ ଜଣାଯିବ ଯେ ଯେଉଁ ମକଦ୍ଦମାର ଭାଗ୍ୟ ଭଲ ସେଗୁଡିକ ମୂଳରୁ ଭଲରେ ଭଲରେ ଯାଇ ଶେଷରେ ଭଲରେ ସରେ । ଜଣକ ବିନା ସାହାଯ୍ୟରେ ବି ତାର ପରିଣତି ଭଲ ହେବ । କିନ୍ତୁ ଅନ୍ୟ କ୍ଷେତ୍ରରେ ଏମିତି ଅନେକ ମକଦ୍ଦମା ଅଛି ତୁମର ସବୁ ଚେଷ୍ଟା ସବୁ ଧରାଧରି ସତ୍ତ୍ୱେ ଏବଂ ମିଛ ବିଜୟ ଦ୍ୱାରା ନିଜକୁ ବିଜୟମଣ୍ଡିତ କରିବା ସତ୍ତ୍ୱେ ତାର ପରା-ଜୟ ସୁନିଶ୍ଚିତ । ଏହା ଏକପ୍ରକାର ମାନସିକ ଅବସ୍ଥା ସୃଷ୍ଟି କରିଥାଏ । ଏପରି ଅବସ୍ଥାରେ କୌଣସି ଜିନିଷ ନିଶ୍ଚିତ ବୋଲି ମନେହୁଏ ନାହିଁ । ତେଣୁ ଜଣକର ହସ୍ତକ୍ଷେପ ଦ୍ୱାରା ଯେ ଗୋଟିଏ କେଶ୍‌ର ଗତି ଖରାପ ଆଡ଼କୁ ଗଲା ଏବଂ ଯଦି ହସ୍ତକ୍ଷେପ ନ କରି କେଶ୍‌ଟିକୁ ତା' ବାଟରେ ଯିବାକୁ ଛାଡ଼ିଦଆ ହୋଇଥାଆନ୍ତା ହୁଏତ ପରିଣତି ଭଲ ହୋଇଥାଆନ୍ତା । ଏପରି ଆଲୋଚନା ହେଲେ ଜଣେ କେବେ ତାକୁ ପୂରା ଅସ୍ୱୀକାର କରିପାରିବ ନାହିଁ । ତଥାପି ଏପରି ଅବସ୍ଥାରେ ହସ୍ତକ୍ଷେପ କରିବା ହିଁ ଏକପ୍ରକାର ଆତ୍ମବିଶ୍ୱାସର ସୂଚନା । କାରଣ ଏହାଛଡ଼ା ଆଉ କିଛି କରିବା ସମ୍ଭବ ନୁହେଁ । ଗୋଟିଏ କେଶ୍‌କୁ ବହୁଦିନ ଧରି ସୁରୁଖୁରୁରେ ପରିଚାଳିତ

Digitized by srujanika@gmail.com

କରିଆଣି ଶେଷବେଳକୁ ଏପରି ହାତଛଡ଼ା ହୋଇଯିବା ଓକିଲମାନଙ୍କୁ ବହୁତ କଷ୍ଟ ଦିଏ। ତାଙ୍କ ମନ ଉପରେ ଗଭୀର ପ୍ରଭାବ ପକାଇଥାଏ। ନିଃସନ୍ଦେହରେ ଜଣେ ଓକିଲ ପକ୍ଷରେ ଏହା ସବୁଠାରୁ କଷ୍ଟଦାୟକ। ଏପରି କ୍ଷେତ୍ରରେ ମହକିଲ ଯେ ଓକିଲକୁ ତା' କେଶ୍‌ରୁ ଓହରି ଯିବାକୁ କହେ ତା' ନୁହେଁ। କାରଣ ଥରେ ଜଣେ ଓକିଲକୁ ନିଜ ମକଦ୍ଦମା ଦାୟିତ୍ୱ ଦେଲା ପରେ ମହକିଲ ସେହି ଓକିଲକୁ ଶେଷ ପର୍ଯ୍ୟନ୍ତ ଧରି ରଖିଥାଏ। କାରଣ ଥରେ ଜଣଙ୍କର ସାହାଯ୍ୟ ନେଇ ସାରିଲା ପରେ ତା ପାଖରୁ ବା କେମିତି ସେ ଦୂରେଇ ଯାଇପାରିବ ? ଫଳରେ ଓକିଲର ପରି-ବର୍ତ୍ତନ ହୁଏ ନାହିଁ। ମାତ୍ର ମକଦ୍ଦମାଟି ଏପରି ଗତି ନିଏ ଯେ ଓକିଲ ତାକୁ ଆଉ ନିଜ ଆୟତ୍ତରେ ରଖି ପାରେ ନାହିଁ। ସେ ମକଦ୍ଦମାରେ ଅଭିଯୁକ୍ତ ବ୍ୟକ୍ତି ସମସ୍ତେ କେମିତି ଓକିଲ ପାଖରୁ ଦୂରେଇ ଯାଆନ୍ତି। ଅଫିସରମାନଙ୍କ ସହ ତାର ସବୁ ଭଲ ସମ୍ପର୍କ ବି କିଛି କାମରେ ଆସେ ନାହିଁ। କାରଣ ସେ ଅଫିସରମାନେ ବି ସେ କେଶ୍ ବିଷୟରେ କିଛି ଜାଣିପାରନ୍ତି ନାହିଁ। କେଣ୍ଠି ଏପରି ଅବସ୍ଥାରେ ଆସି ପହଞ୍ଚିଥାଏ ଯେ ଆଉ କାହାରି ସାହାଯ୍ୟର ପ୍ରୟୋଜନ ନଥାଏ। ଏହାର ବିଚାର ଏପରି ଏକ ଅଜ୍ଞାତ, ଅଭେଦ୍ୟ ଅଦାଲତ ଦ୍ୱାରା ହୁଏ ଯେଉଁଠିକି ଅଭିଯୁକ୍ତ ବ୍ୟକ୍ତି ଓକିଲ ପାଖକୁ ଯାଇ ପାରେ ନାହିଁ। ତା'ପରେ ଦିନେ ଘରେ ହଠାତ୍ ଆସି ଦେଖେ ଯେ ତୁମେ ଦେଇଥିବା ଅସଂଖ୍ୟ ଜବାବଗୁଡ଼ିକ ଯାହାକୁ ଏତେ କଷ୍ଟ କରି ଲେଖି ଥିଲ, ଯାହା ଉପରେ ଏତେ ଭରସା ରଖିଥିଲ, ସେସବୁ ଫେରିଆସିଛି। କାରଣ ବିଚାରର ନୂଆ ପର୍ଯ୍ୟାୟରେ ସେଗୁଡ଼ିକର ପ୍ରାସଙ୍ଗିକତା ଅଛି ବୋଲି ଗ୍ରହଣ କରାଗଲା ନାହିଁ। ସେଗୁଡ଼ିକ ବର୍ତ୍ତମାନ ଅଳିଆଗଦାର କାଗଜ ମାତ୍ର। ଆମେ ମକଦ୍ଦମାରେ ହାରି ଗଲୁ ବୋଲି ଏଥିରୁ ଅନୁମାନ କରାଯାଇ ନ ପାରେ। ଏହା କଦାପି ହୋଇ ପାରିବ ନାହିଁ। ଅନ୍ତତଃ ଏପରି ଧାରଣା ପାଇଁ ନିର୍ଦ୍ଧାରିତ କୌଣସି ପ୍ରମାଣ ନାହିଁ। ଖାଲି ଯାହା ତୁମେ ଆଉ ସେ ମକଦ୍ଦମା ବିଷୟରେ କିଛି ଜାଣି ପାରିବ ନାହିଁ। ଭବିଷ୍ୟତରେ ବି ଜାଣିବାର କିଛି ରହିବନାହିଁ। ସାଧାରଣତଃ ଭାଗ୍ୟରେ ଏପରି ପ୍ରାୟ ଘଟେନାହିଁ। ଆଉ ଯଦିଚ କେ'ର ମକଦ୍ଦମା ଏଇ ଧରଣର ହୋଇଥାଏ ତେବେ ବି ଏପରି ସ୍ତରକୁ ଆସିବା ପାଇଁ ତାକୁ ବହୁତ ଦିନ ଲାଗିବ। ବର୍ତ୍ତମାନ ଅବସ୍ଥାରେ ଆଇନ୍ କାରବାର କରିବାର ଅନେକ ସୁଯୋଗ ଅଛି। ଆଉ କେ'ର ନିଶ୍ଚିତ ରହିବା କଥା ଯେ ସେପରି ସୁଯୋଗର ସଦ୍ ଉପଯୋଗ ନିଶ୍ଚିତ ଭାବେ କରାଯିବ। ଏ ମକଦ୍ଦମାର ପ୍ରଥମ ଜବାବ ଏବେ ସୁଦ୍ଧା ଦିଆଯାଇ ନାହିଁ। ଅବଶ୍ୟ ସେଥିପାଇଁ ତରତର ହେବାର କୌଣସି କାରଣ ନାହିଁ। ଏହାଠାରୁ ବଡ଼ କଥା ହେଉଛି ଠିକ୍ କର୍ମଗୃଣ୍ଣଙ୍କ ସହ ଆଲୋଚନା କରିବା ଏବଂ ଏପରି ଆଲୋ-ଚନା ଠିକ୍ ହୋଇଛି। ଅଉ ଖୋଲି କରି କହିଲେ ଏପରି ଆଲୋଚନାରେ ବହୁବାଧ

Digitized by srujanika@gmail.com

ସଫଳତା ମଧ୍ଯ ମିଳିବ । ଆପାତତଃ ସବୁ ଜିନିଷ ଚିଠିରେ ପ୍ରକାଶ କରିବା ଉଚିତ୍ ହେବ ନାହିଁ । କାହିଁକି ନା କେ' ଉପରେ ଏହାର ଖରାପ ପ୍ରଭାବ ପଡ଼ି-ପାରେ । ଏହା ହୁଏତ କେ'କୁ ଆନନ୍ଦରେ ଖୁବ୍ ବେଶୀ ଉଲ୍ଲସିତ କରିପାରେ, କିମ୍ବା ଅଯଥା ଦୁଃଖରେ ସେ ଭାଙ୍ଗିପଡ଼ି ପାରେ । କିନ୍ତୁ ଏତିକି ଜୋର ଦେଇ କୁହାଯାଇପାରେ ଯେ, କେତେକ କର୍ମଚାରୀ ଦୟାଶୀଳ ହୋଇ ତାକୁ ସାହାଯ୍ୟ ପାଇଁ ଆଗ୍ରହ ପ୍ରକାଶ କରୁଛନ୍ତି । କିନ୍ତୁ ପୁଣି କେତେକ ତା ପ୍ରତି ସେତେ ସହାନୁ-ଭୂତିଶୀଳ ମନୋଭାବ ପୋଷଣ କରିନାହାନ୍ତି । ତଥାପି ସେମାନେ କେବେ ତାଙ୍କର ସହଯୋଗିତା ପାଇଁ ମନା କରି ନାହାନ୍ତି । ସବୁ ଦୃଷ୍ଟିରୁ ଦେଖିଲେ ବର୍ତ୍ତମାନ ସୁଦ୍ଧା ଫଳ ସନ୍ତୋଷଜନକ୍ ମାତ୍ର ଏଥିରୁ ଜଣେ କେବେ ନିଶ୍ଚିତ କିଛି ହୋଇଗଲା ବୋଲି କହି ପାରିବନି । କାହିଁକି ନା ସବୁ ପ୍ରାରମ୍ଭିକ ଆଲୋଚନା ଏକପ୍ରକାର ଆରମ୍ଭ ହୋଇଥାଏ । କେବଳ ପରବର୍ତ୍ତୀ ସ୍ତରରେ ହିଁ ଜଣାପଡ଼େ ଯେ, ଏପରି ଆଲୋ-ଚନାର ପ୍ରକୃତ ମୂଲ୍ୟ କିଛି ଅଛି କି ନାହିଁ । ସେ ଯାହା ହେଉ ବର୍ତ୍ତମାନ ସୁଦ୍ଧା କିଛି ନଷ୍ଟ ହୋଇନାହିଁ ଯାହା ସବୁ ହୋଇଗଲା ତା ସତ୍ତ୍ୱେ ଅନେକ ଚେଷ୍ଟା ପରେ ଯଦି କୌଣସି ଉପାୟରେ ପ୍ରଧାନ କିରାଣୀକୁ ନିଜ ହାତ ମୁଠାକୁ ଅଣାଯାଉଚି—ତେବେ ଆଉ କିଛି ଚିନ୍ତା ନାହିଁ । ଯାହାକୁ ଡାକ୍ତରମାନେ କହନ୍ତି ସାଦା ସା'ଇଁଏ । ଏଥିପାଇଁ ଚିନ୍ତା କରିବାର କିଛି ନାହିଁ । ନିର୍ଭିନ୍ତ ମନରେ ତାହା ଭଲ ହେବାକୁ ଅପେକ୍ଷା କରାଯାଇପାରେ ।

କେ'ର ଓକିଲ ଭାଷଣ ଦେବାରେ ଅତୁଳନୀୟ ଏଥିରେ ସେ କେବେ ଥକି ପଡ଼ନ୍ତି ନାହିଁ । ଯେତେଥର କେ' ତାଙ୍କ ଘରକୁ ଯାଏ ପ୍ରତିଥର ସେ ଏକା କଥାକୁ ଦୋହରାଇ ଆଆନ୍ତି । ସବୁବେଳେ କହନ୍ତି ମକଦ୍ଦମା ଠିକ୍ ଚାଲିଛି, କିନ୍ତୁ କେତେବାଟ ଗଲାଣି କଅଣ କଅଣ କାମ ହୋଇଛି କେତେ ଆଗେଇଛି ସେ ବିଷୟରେ କିଛି ପ୍ରକାଶ କରିପାରନ୍ତି ନାହିଁ । ସବୁଦିନ ଓକିଲ ସେଇ ପ୍ରଥମ ଜବାବ ଉପରେ ହିଁ କାମ କରୁଥାଆନ୍ତି । କେବେତାର ଶେଷ ହୁଏନି । ପରେ ଆଉ ଥରେ ଗଲାବେଳକୁ କାଗଜ ଦାଖଲ କରିଥିବାଟା ଗୋଟିଏ ସୁଯୋଗ ବୋଲି କହୁଥାଆନ୍ତି । କାହିଁକନା ତାଙ୍କ ମତରେ ଗତ କେତେଦିନ ସେ କାଗଜ ପତ୍ର ଦାଖଲ ପାଇଁ ଆଦୌ ଅନୁକୂଳ ସମୟ ନଥିଲା । ଏ ବିଷୟ କେହି ଆଗରୁ ଜାଣିପାରିବନି । ବେଳେ ବେଳେ ଏମିତିଭବି ହୁଏ । ଓକିଲଙ୍କ ବକ୍ତୃ ଭାଷଣରେ କ୍ଳାନ୍ତ ହୋଇ ଯେତେବେଳେ କେ' କହେ ଯେ ସବୁ ଅସୁବିଧାକୁ ବିଚାର କରି ଦେଖିଲେବି ତା କେଶ୍ର ଗତି ବଡ଼ ମନ୍ଥର ହେଉଚି ସେତେବେଳେ ସାଙ୍ଗେ ସାଙ୍ଗେ ତା' ଓକିଲଙ୍କ ଜବାବ ଆସେ ଯେ, କେଶ୍ କେବେ ମନ୍ଥର ଗତିରେ

Digitized by srujanika@gmail.com

ପ୍ଲାନ୍‌ନାହିଁ । ଅବଶ୍ୟ କେ' ଯଦି ଠିକ୍ ସମୟରେ ଆସିଥାଆନ୍ତା ତେବେ ଏତେବେଳକୁ ସେମାନେ ବହୁତ ଆଗେଇ ଯାଆନ୍ତେଣି । ଦୁର୍ଭାଗ୍ୟକୁ ସେ ଆସିବାକୁ ହେଲା କରିଛୁ, ଏବଂ ଏଇଥିପାଇଁ ତାକୁ କିଛିଟା ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିବ ଆଉ ଏ ଅସୁବିଧା ଯେ କେବଳ ସମସ୍ତ ସଂସ୍ଥାନ୍ତୀୟ ତା'ନୁହେଁ । ଓକ୍‌ଲଙ୍କ ସହ ଏମିତି ଦେଖା ସାକ୍ଷାତବେଳେ କେବଳ ମାତ୍ର ଗୋଟିଏ ସ୍ୱାଗତଯୋଗ୍ୟ ବ୍ୟାଘାତ ହେଉଛି ଲେନ । ଲେନ ଏମିତି ବନ୍ଦୋବସ୍ତ କରିଥାଏ ଯେ କେ' ଉପସ୍ଥିତ ଥିଲା ବେଳେ ସେ ଓକ୍‌ଲଙ୍କ ପାଇଁ ଟି' ନେଇ ଆସିବ । ଟି' ଦେଇ କେ'ର ଚୌକି ପଛଆଡ଼େ ଛିଡ଼ା ହେବ । ଓକ୍‌ଲ ଯେତେବେଳେ ଏକ ପ୍ରକାର କୃପଣ ଅଖିରେ ଟି'କପ୍‌କୁ ଚାହିଁ ଟି' ଢ଼ାଳି ଭଙ୍ଗିରେ ଚୁମୁକ୍ ମାରିବେ ଲେନ ଖାଲି ଚାହିଁ ରହି-ଥିବ ଆଉ ଗୋପନରେ ନିଜ ହାତକୁ ଧରିବାକୁ କେ'କୁ ସୁଯୋଗ ଦେଉଥିବ । ଚାରିଆଡେ ଥିବ ନୀରବତା । ଓକ୍‌ଲ ତାଙ୍କର ଟି' ପିଉଥିବେ । କେ' ଲେନର ହାତ ଆଉଁସୁ ଥିବ ଏବଂ ସେତେବେଳେ ଲେନ କେ'ର କେଶକୁ ଆଉଁସି ଦେବାର ସାହସ କରୁଥିବ ।

'ତୁମେ ବର୍ତ୍ତମାନ ବି ଏଠାରେ ଅଛ ?' ଟି' ପିଇସାରି ଓକ୍‌ଲ ପଚାରନ୍ତି ।

'ଟି'କପ୍ ଆଉ ଟ୍ରେ ନେଇଯିବାକୁ ମୁଁ ଅଛି ।' ଲେନ ଏତକ କହିବ ଏବଂ ଶେଷଥର ପାଇଁ ସେ ଆଉ କେ' ହାତ ଧରାଧରି ହେବେ । ଓକ୍‌ଲ ତାଙ୍କ ମୁହଁ ପୋଛିବେ ଏବଂ ତା'ପରେ କେ'କୁ ଦୀର୍ଘ ଭାଷଣ ଶୁଣାଇବା ପାଇଁ ଦୁଇଗୁଣ ଶକ୍ତି ନେଇ ପ୍ରସ୍ତୁତ ହୋଇଯିବେ ।

ଓକ୍‌ଲ ତାକୁ ସାନ୍ତ୍ୱନା ଦେବାକୁ ଚେଷ୍ଟା କରୁଛନ୍ତି ନା ତାକୁ ହତାଶା ଆଡ଼କୁ ଟାଣି ନେଉଛନ୍ତି ? କେ' କହିପାରିବ ନାହିଁ ? କିନ୍ତୁ ଖୁବ୍ ଶୀଘ୍ର ସେ ସତ କଥାଟି ବୁଝିଯାଇଛି । ସେ ବୁଝିଯାଇଛି ଯେ ତା କେଶ୍‌ର ଦାୟିତ୍ୱ ଭଲ ହାତରେ ପଡ଼ି ନାହିଁ । ଓକ୍‌ଲ ଯାହା କହୁଛନ୍ତି ହୁଏତ ସବୁ ସତ କିନ୍ତୁ ଏଥିରେ ନିଜର ଗୁରୁତ୍ୱକୁ ସେ ଯେମିତି ଖୁବ୍ ବଢ଼ାଇ କରି କହୁଛନ୍ତି । ଏହାବି ସମ୍ଭବ ଯେ କେ'ର କେଶ୍ ଅତି ଗୁରୁତ୍ୱପୂର୍ଣ୍ଣ କେଶ୍ ସେ କେବେ ପରିଚାଳନା କରିନାହାନ୍ତି । କିନ୍ତୁ ଅଫିସର-ମାନଙ୍କ ସହ ଘନିଷ୍ଠ ସମ୍ପର୍କ ପାଇଁ ସେ କରୁଥିବା ଗର୍ବକୁ କିନ୍ତୁ ସନ୍ଦେହ କରା-ଯାଇପାରେ । ଓକ୍‌ଲ କେବେ କହିବାକୁ ଭୁଲି ନାହାନ୍ତି ଯେ ଏହି ଅଫିସରମାନେ ତଳିଆ କର୍ମଚାରୀ । ତେଣୁ ଅନ୍ୟ ଉପରେ ସେମାନେ ବେଶୀ ନିର୍ଭର କରିଥାଆନ୍ତି । ତଥାପି ତାଙ୍କର କଥାରେ କେଶ୍ ଏମିତି ଗତି ନେଇଥାଏ ଯାହାର ପ୍ରୟୋଜନ

Digitized by srujanika@gmail.com

ଭବିଷ୍ୟତରେ ଖୁବ୍ ବେଶୀ ହୋଇପାରେ । ସେମାନେ କ'ଣ କେଶ୍‌ରେ ଏପରି ଏକ ମୋଡ଼ ଆଣିବାପାଇଁ ଓକିଲକୁ ଅନୁମତି ଦେବେ ଯାହାକି ଅଭିଯୁକ୍ତର ବିପକ୍ଷରେ ଯିବ ? ପ୍ରାୟ ଏପରି ଏମାନେ କରନ୍ତି ନାହିଁ । ବରଂ ଓକିଲ କିଛି ଲାଭବାନ ହେବ ତା'ର ବନ୍ଦୋବସ୍ତ କରନ୍ତି । ଏହା ଯେମିତି ସେବାପାଇଁ ଓକିଲର ପୁରସ୍କାର । କାହିଁକିନା ଓକିଲଙ୍କ ପାଟିରେ ଅଫିସରମାନଙ୍କ ସ୍ୱାର୍ଥ ନିହିତ ଆଉ ସେଥିପାଇଁ ତା'ର ସୁନାମ ସେମାନେ ରକ୍ଷା କରିବାକୁ ଚାହାଁନ୍ତି । କିନ୍ତୁ ଏହା ଯଦି ପ୍ରକୃତ ଅବସ୍ଥା ହୋଇଥାଏ ତେବେ କେ'ର କେଶ୍‌କୁ ସେମାନେ କେଉଁ ଶ୍ରେଣୀ-ଭୁକ୍ତ କରିବେ ? ଓକିଲ ସବୁବେଳେ କହିଆସିଛନ୍ତି ଏହା ଏକ ଜଟିଳ ଏବଂ ଗୁରୁତ୍ୱପୂର୍ଣ୍ଣ କେଶ୍ ହୋଇଥିବାରୁ ପ୍ରଥମରୁହିଁ କୋର୍ଟର ଦୃଷ୍ଟି ଆକର୍ଷଣ କରିଛି । ସେମାନେ କ'ଣ କରିବେ ସେଥିରେ ଅଉ କିଛି ସନ୍ଦେହ ନାହିଁ କାହିଁକିନା ଗୋଟିଏ ସୂତ୍ର ମିଳିଯାଇଛି । ପ୍ରଥମରୁ କୁହାଯାଇଛି ଯେ ବର୍ତ୍ତମାନ ସୁଦ୍ଧା ପ୍ରଥମ ଜବାବ ପତ୍ର ଦାଖଲ କରାଯାଇ ନାହିଁ ଯଦିଓ କେଶ୍ ମାସ ମାସ ଧରି ଚାଲିଲାଣି । ଓକିଲଙ୍କ ମତରେ ସବୁକାମ ଏବେବି ପ୍ରଥମ ଅବସ୍ଥାରେହିଁ ରହିଛି । ଏହା ବଡ଼ ହସିବ କଥା ଏହା ଦ୍ୱାରା ଅଭିଯୁକ୍ତର ମନକୁ ଶାନ୍ତ ରଖିବା ସଙ୍ଗେ ସଙ୍ଗେ ତାକୁ ଏକ ପ୍ରକାର ଅସହାୟ ଅବସ୍ଥାରେ ରଖିବାର ଚେଷ୍ଟା ହୋଇଥାଏ । ଏହାଦ୍ୱାରା ହଠାତ୍ ଦିନେ ରାୟ ଶୁଣାଇ ଅଭିଯୁକ୍ତକୁ କହି ଦିଆଯାଏ ଯେ ପ୍ରାଥମିକ ପରୀକ୍ଷାର ଫଳାଫଳ ତା' ବିପକ୍ଷରେ ଗଲା ଏବଂ ତା'ର କାଗଜପତ୍ର ଉଚ୍ଚକର୍ତ୍ତୃପକ୍ଷଙ୍କ ପାଖକୁ ପଠାଇ ଦିଆଗଲା । ଏପରି କହିବା ଦ୍ୱାରା ଅଭିଯୁକ୍ତକୁ ହତାଶରେ ମ୍ରିୟମାଣ କରି ଦିଆଯାଏ ।

ବ୍ୟକ୍ତିଗତ ଭାବେ ହସ୍ତକ୍ଷେପ କରିବା କେ' ପାଇଁ ନିହାତି ଦରକାରୀ । ଆଜିର ଶୀତ ସକାଳେ ସେ ଯେମିତି କ୍ଳାନ୍ତ ଅନୁଭବ କରୁଛି, ସେପରି ଅବସ୍ଥାରେ ଏଇସବୁ ଚିନ୍ତା ଅସଂଲଗ୍ନ ଭାବେ ତା ମୁଣ୍ଡରେ ଖେଳିଯାଉଛି । ତେଣୁ ଏଇଧାରଣାକୁ ବାଧା ଦେବାର କ୍ଷମତା ତାର ନାହିଁ । ଏଇ କେଶ୍ ପ୍ରତି ଦିନେ ତାର ଯେଉଁ ଘୃଣା ଥିଲା ଆଜି ଆଉ ତାହା ନାହିଁ । ସେ ଯଦି ଏ ପୃଥିବୀରେ ଏକୁଟିଆ ଥାଆନ୍ତା ତେବେ ସେ ଏସବୁ ବ୍ୟାପାର ପରିହାସ କରି ଉଡ଼ାଇ ଦିଅନ୍ତା । ଅବଶ୍ୟ ଏହା ସତ ଯେ ସେପରି ସ୍ଥଳେ ଏ ପ୍ରଶ୍ନ ଉଠନ୍ତା ନାହିଁ । କିନ୍ତୁ ବର୍ତ୍ତମାନ ତା କକା ତାକୁ ଏ ଓକିଲ ପାଖକୁ ଟାଣି ଆଣିଛନ୍ତି । ବଂଶର ସମ୍ମାନ ପ୍ରଶ୍ନ ଉଠୁଛି । ବର୍ତ୍ତମାନ ତା' କେଶ୍ ଯେଉଁ ଗତି ନେଇଛି ତା'ଠାରୁ ସିଏ ପୁରା ଅଲଗା ରହି ପାରିବନି । ଆତ୍ମସନ୍ତୋଷ ଦ୍ୱାରା ଚାଳିତ ହୋଇ ବଡ଼ ଦାୟିତ୍ୱହୀନ ଭାବେ ତାର କେତେ ଜଣ ପରିଚିତଙ୍କ ପାଖରେ ଏ ବିଷୟ ପ୍ରକାଶ କରିଦେଇଛି, ଅନ୍ୟମାନେ ଏକଥା

Digitized by srujanika@gmail.com

କେମିତି ଜାଣିଲେ ସେ ଜାଣିପାରିଲାନି । ଫ୍ରେଙ୍କ୍ ବାର୍ଗଟାର ସହ ତାର ସମ୍ପର୍କ ଏହି କେଶ୍‌ର ଗତିପଥ ଏପାଖ ସେପାଖ ହେବାକୁ ଲାଗିଲା । ତାର ବର୍ତ୍ତମାନ ଆଉ କୌଣସି ଉପାୟ ନାହିଁ । ସେ ଏହି କେଶ୍‌କୁ ଗ୍ରହଣ କରିବ ନା ତ୍ୟାଗ କରିବ ସେ ବିଚାର କରିବାର ଶକ୍ତି ଆଉ ତାର ନାହିଁ । ସେ ଏହି ଦ୍ୱନ୍ଦର ଠିକ୍ ମଝିରେ ଆଉ ଏଥିପାଇଁ ତାକୁ କେବଳ ନିଜ ଉପରେ ହିଁ ନିର୍ଭର କରିବାକୁ ପଡ଼ିବ । ଏବେ କ୍ଳାନ୍ତ ହୋଇପଡ଼ିବା ତା' ପକ୍ଷରେ ଖରାପ ଲକ୍ଷଣ ।

ତଥାପି ବର୍ତ୍ତମାନ ଏଇ ମୁହୂର୍ତ୍ତରେ ଅତିରିକ୍ତ ଦୁଶ୍ଚିନ୍ତାର ପ୍ରୟୋଜନ ନାହିଁ । ଅନ୍ୟମାନଙ୍କ ତୁଳନାରେ ଅତି କମ୍ ସମୟ ଭିତରେ ସେ କେଶ୍ ବର୍ତ୍ତମାନର ଉଚ୍ଚପାହ୍ୟା ହାସଲ କରିବାରେ ସକ୍ଷମ ହୋଇପାରିଛି ଏବଂ ସେହି ପଦବୀରେ ରହି ସମସ୍ତଙ୍କର ସ୍ୱୀକୃତି ମଧ୍ୟ ପାଇପାରିଛି । ଯେଉଁ ଶକ୍ତି ଯେଉଁ ପାରିବାପଣ ତାକୁ ଏପରି ଆସନରେ ବସାଇ ପାରିଲା, ସେଇ ପାରିବା ପଣକୁ ଯଦି ଏଇ କେଶ୍‌ରେ ସମାଧାନ ପାଇଁ ଲଗାଯାଏ ତେବେ ପରିଣାମ ନିଶ୍ଚିତ ଭାବେ ଭଲ ହେବ । ସର୍ବୋପରି ଏଥିରୁ ଯଦି ସେ କିଛି ପାଇବାକୁ ଚାହେଁ ତେବେ ପ୍ରଥମ କାମ ହେବ ତା ମନ ଭିତରୁ ସବୁଦିନ ପାଇଁ ଦୋଷ ଭାବକୁ ଦୂର କରିବାକୁ ପଡ଼ିବ । ଏ ମକଦ୍ଦମା ବ୍ୟବସାୟିକ କାରବାରଠାରୁ କିଛି ଅଧିକ ନୁହେଁ । ଏପରି କାରବାର ତ ବ୍ୟାଙ୍କ ତରଫରୁ ସେ କେତେ କରିଛି । ଏପରି କାରବାରରେ ତ ସବୁ କାରବାର ପରି ଅନେକ ବିପଦ ଛପି ରହିଥାଏ, ଯାହାକୁ କି ନିଶ୍ଚିତ ଭାବେ ଦୂର କରିବାକୁ ପଡ଼େ । ବର୍ତ୍ତମାନ ପରିସ୍ଥିତିରେ ସବୁଠାରୁ ଠିକ୍ କୌଶଳ ହେବ ନିଜ ମନରୁ ନିଜ ଦୁର୍ବଳତା ସମ୍ପର୍କରେ ସବୁ ପ୍ରକାର ବାଜେ ଦୁଶ୍ଚିନ୍ତାକୁ ଦୂର କରିବା ଆଉ ନିଜକୁ ପୁହାଉଥିବା ଚିନ୍ତାକୁ ନିକର କରିବା । ଏହି ଦୃଷ୍ଟିରୁ ବିଚାର କରିଲେ ଗୋଟିଏ ମାତ୍ର ନିଷ୍ପତ୍ତି ନିଶ୍ଚିତ, ତା ହେଉଛି ଯେତେ ଶୀଘ୍ର ସମ୍ଭବ ଡଃ ହୁଲଦ୍‌ଙ୍କ ହାତରୁ କେଶ୍‌କୁ କାଢ଼ି ଆଣିବା, ଯଦି ସମ୍ଭବ ହୁଏ ଆଜି ଏଇ ସନ୍ଧ୍ୟାରେ । ତା' ମତରେ ଏମିତି କଥା କେବେ ଶୁଣାଯାଇନି । ଏହା ସତ ଯେ ଓକିଲଙ୍କ ପ୍ରତି ଏହା ଅପମାନଜନକ । କିନ୍ତୁ ଅଫିସ୍‌ରେ ଚାଲିଥିବା ଷଡ଼ଯନ୍ତ୍ର ଦ୍ୱାରା ତାର ସବୁ ଚେଷ୍ଟା ବିଫଳ ହେଉ ଏହା ଆଉ କେ' ସହି ପାରିବନି । ଥରେ ଓକିଲଙ୍କୁ ବାଦ୍ ଦେଲେ ଜବାବ ସଙ୍ଗେ ସଙ୍ଗେ ଅଦାଲତ ଅଫିସ୍‌କୁ ପଠାଯାଇ ପାରିବ ଏବଂ ଯଦି ସମ୍ଭବ ସେଠାରେ ଚପାଇ ଦିଆଯାଇ ପାରିବ । ଓକିଲଙ୍କ ସେହି ପୁରୁଣା ବୈଠକ୍ ଘରେ ଚୁପ୍‌ଚାପ୍ ନିଜ ଟୋପିକୁ ଆସନ ତଳେ ରଖି ବସି ରହିଲେ ଏହା କରିବା ସମ୍ଭବ ହେବନି । ନିଜେ କେ' କିମ୍ବା ସେ ସ୍ତ୍ରୀଲୋକମାନଙ୍କ ଭିତରୁ କେହି ବା ଅନ୍ୟ କେହି ଜଣେ ସବୁଦିନ ସେ କର୍ମଚାରୀଙ୍କ ପଛରେ ଲାଗିରହି ତାଙ୍କୁ ଝର୍କାର କାଠ ରେଲିଂ ଦେଇ

Digitized by srujanika@gmail.com

ବୈଠକ ଘରକୁ ନ ଘୁଞ୍ଚି କେ'ର କାଗଜ ପତ୍ରକୁ ପରୀକ୍ଷା କରିବା ପାଇଁ ବାଧ୍ୟ କରିବେ, ଏହି ଉପାୟ ନିରବଚ୍ଛିନ୍ନ ଭାବରେ କରିବାକୁ ପଡ଼ିବ । ସବୁଜିନିଷର ସୁବ୍ୟବସ୍ଥା କରିବାକୁ ପଡ଼ିବ ଏବଂ ତାର ତଦାରଖ କରିବାକୁ ହେବ । ତାହେଲେ ଯାଇ କୋର୍ଟ ପ୍ରଥମ ଥର ପାଇଁ ଜଣେ ଅଭିଯୁକ୍ତ ବ୍ୟକ୍ତିର ସମ୍ମୁଖୀନ ହେବ ଯିଏକି ନିଜର ଦାବୀ ପାଇଁ କେମିତି ଲଢ଼ିବାକୁ ହୁଏ ଜାଣେ ।

ଯଦିଓ ଏସବୁ ସମ୍ଭାଳି ନେଇ ପାରିବ ବୋଲି କେ' ବିଶ୍ୱାସ କରୁଥିଲା ତଥାପି ଦରଖାସ୍ତ ଲେଖି ପେଶ କରିବା ତା ପକ୍ଷରେ ଅତି ଦୁଃସାଧ୍ୟ ମନେ ହେଲା । ସାତଦିନରୁ ବେଶୀ ହେବ ନାହିଁ, ସେ ଦିନେ ଭାବୁଥିଲା ଯେ ନିଜ ପାଇଁ ଜବାବ ଲେଖିବା କେମିତି ଏକ ଲଜ୍ଜ୍ୟାକର କଥା କିନ୍ତୁ ଏପରି ଜବାବ ଲେଖିବା ଯେ ଅତ୍ୟନ୍ତ କଷ୍ଟକର, ଏପରି ଧାରଣା କେବେ ତା' ମନକୁ ଆସି ନଥିଲା । ସେଇସବୁ ସକାଳଗୁଡ଼ିକ କଥା ତାର ମନେ ପଡ଼େ, ସେମିତି ଦିନେ ସକାଳେ ସେ ଆକଣ୍ଠ କାମରେ ବୁଡ଼ି ରହିଥିଲା ହଠାତ୍ ସବୁକାମକୁ ଆଡ଼େଇ ଦେଇ ନିଜ ଜବାବ ନିଜେ ଲେଖିବ ବୋଲି ଭାବି କାଗଜ ଟାଣିଆଣିଲା । ଉଦ୍ଦେଶ୍ୟ ଜବାବ ଲେଖି ଡ: ହୁଲଦ୍‌ଙ୍କୁ ଧରାଇ ଦେଇ ତାଙ୍କୁ କାମରେ ଲଗାଇ ଦେବ । ମାତ୍ର ଠିକ୍ ଏତିକି ବେଳେ ମେନେଜରଙ୍କ କୋଠରୀର ଦ୍ୱାର ଖୋଲିଗଲା ଆଉ ଆସିଷ୍ଟେଣ୍ଟ୍ ମେନେଜର ତାର ଜବାବ ଲେଖା ଦେଖି ହସୁ ନଥିଲେ କାରଣ ସେ ବିଷୟରେ ସେ କିଛି ଜାଣି ନଥିଲେ । ସେ ହସୁଥିଲେ ଷ୍ଟକ୍ ଏକ୍‌ସଚେଞ୍ଜରୁ ସଦ୍ୟ ଶୁଣିଥିବା ଗୋଟେ ମଜା କାହାଣୀ ପାଇଁ । ସେ କାହାଣୀକୁ ଉପଭୋଗ କରିବାକୁ ହେଲେ ତାର ଗୋଟେ ଛବି ଆଙ୍କିବାକୁ ପଡ଼ିବ । ତେଣୁ ଆସିଷ୍ଟେଣ୍ଟ ମେନେଜର ଟେବୁଲ ଉପରେ ନଇଁପଡ଼ି କେ' ହାତରୁ ପେନ୍‌ସିଲ ନେଇ ଜବାବ ଲେଖୁଥିବା କାଗଜ ଉପରେ ଛବି ଆଙ୍କିବାକୁ ଲଗିଲେ ।

ଆଜି ଆଉ ଲଜ କେ'ର ପ୍ରତିବନ୍ଧକ ହୋଇରହିନାହିଁ । ଜବାବଟିକୁ ଖାଲି ଯାହା ଲେଖିବାକୁ ପଡ଼ିବ । ଯଦି ଅଫିସରେ ଲେଖିବାକୁ ସମୟ ନପାଏ, ଯାହା ଖୁବ୍ ସମ୍ଭବ, ତେବେ ସେ ତା ଘରେ ରାତିରେ ଲେଖିବ । ରାତି ଯଦି ଯଥେଷ୍ଟ ନ ହେଲା ତେବେ ସେ ଛୁଟିନେବ । ଖାଲି ବ୍ୟବସାୟରେ ନୁହେଁ ଯେ କୌଣସି କାମ ଅଧାଛାଡ଼ିବା ସବୁଠାରୁ ବୋକାମି । ଅବଶ୍ୟ ଏପରି କାମରେ ଅନେକ ପରିଶ୍ରମ ଲୋଡ଼ା । ଡରୁଆ ଆଉ ଦୁର୍ବଳ ମନ ନେଇ ଏକାମ ଚଳିବ ନାହିଁ । ଏପରି ଜବାବ ଲେଖିବା ଅସମ୍ଭବ ବୋଲି ଭାବି ଡରିଗଲେ କିଛି ହେବନି । ଆଳସ୍ୟ ବା ଘୃଣା ପାଇଁ ନୁହେଁ ଯାହାକି ଡ: ହୁଲଦ୍‌ଙ୍କୁ ତାଙ୍କ କାମରେ ବାଧା ସୃଷ୍ଟି କରିବ । ଯେହେତୁ ଗୋଟିଏ ଅଜଣା ଅଭିଯୋଗର ସମ୍ମୁଖୀନ ହେବାକୁ ପଡ଼ିବ । ଏହି ଅଭିଯୋଗରୁ

Digitized by srujanika@gmail.com

ହୁଏତ ଆହୁରି ଅନେକ ନୂଆ ନୂଆ ଅଭିଯୋଗ ଦେଖା ଦେଇପାରେ । ସେ ସବୁକୁ ବିଚାରକୁ ନ ନେଇ ମଧ୍ୟ ସେହି ଗୋଟିଏ ଅଭିଯୋଗ ପାଇଁ ଜଣକର ସମସ୍ତ ଜୀବନକୁ ଭଲକରି ପରୀକ୍ଷା କରିବାକୁ ପଡ଼ିବ । ତା' ଜୀବନରେ ସବୁ ଶ୍ରେଷ୍ଠ ଶ୍ରେଷ୍ଠ ଘଟଣାଠାରୁ ଆରମ୍ଭ କରି ବଡ଼ ଘଟଣା ପର୍ଯ୍ୟନ୍ତ କାହାରିକୁ ବାଦ୍ ଦିଆଯାଇନପାରେ । ଏ ସବୁକୁ ବିଭିନ୍ନ ଦିଗରୁ ବିଚାର କରିବାକୁ ପଡ଼ିବ, ଏପରି କାମ କେତେ ନୀରସ, କେତେ ଭୟଙ୍କର ଭାବେ ଦୁଃଖଦାୟକ । ଅବସର ନେବା ସମୟ ତ ଜୀବନରେ ଦ୍ୱିତୀୟ ବାଲ୍ୟାବସ୍ଥା । ଏପରି ସମୟରେ କାମ ଜଣଙ୍କୁ ପୋଷାଏ କାହିଁକି ନା ଏହା ଦ୍ୱାରା କ୍ଳାନ୍ତ ଦୀର୍ଘ କର୍ମହୀନ ଦିନଗୁଡ଼ିକ ପାଇଁ କିଛି ଖୋରାକ ମିଳିଥାଏ । କିନ୍ତୁ ବର୍ତ୍ତମାନ କେ' ତାର ସମସ୍ତ ଶକ୍ତି ନିଜ କାମ ପାଇଁ ବିନିଯୋଗ କରିବା ଉଚିତ୍ । ବର୍ତ୍ତମାନ ଯେତେବେଳେ ପ୍ରତ୍ୟେକ ମୁହୂର୍ତ୍ତ କର୍ମ ଚଞ୍ଚଳ କାହିଁକି ନା ସେ ତାର ଚାକିରି ଜୀବନର ମଧ୍ୟାହ୍ନରେ ଉପନୀତ ଏବଂ ଆସିଷ୍ଟେଣ୍ଟ ମେନେଜରର ପ୍ରତିଦ୍ୱନ୍ଦୀ । ଯେତେବେଳେ ତାର ପ୍ରତ୍ୟେକ ସନ୍ଧ୍ୟା ଏବଂ ରାତି ଜଣେ ଅବିବାହିତର ଆନନ୍ଦ ମୁଖର ଜୀବନ ପାଇଁ ଅତି ଶ୍ରେଷ୍ଠ । ତଥାପି ଏହାହିଁ ପ୍ରକୃତ ସମୟ ତା ଜୀବନର ଏକ ନିଷ୍ଠୁର ପରୀକ୍ଷାର ସମ୍ମୁଖୀନ ପାଇଁ ଏହାହିଁ ପ୍ରକୃତ ସମୟ । ଆଉଥରେ ତାର ଚିନ୍ତାଧାରା ତା ମନରେ ନିଜ ପାଇଁ କରୁଣା ଭରି ଦେଲା । ତା ଚିନ୍ତାଧାରାରୁ ମୁକ୍ତି ପାଇବା ପାଇଁ ଅନିଚ୍ଛାକୃତ ଭାବେ ସେ ବୋତାମରେ ହାତ ମାରିଲା । ପ୍ରତୀକ୍ଷାଳୟରେ ଘଣ୍ଟା ବାଜିଲା । ଯେତେବେଳେ ସେ କଲିଂ ବେଲ୍‌ର ସୁଇଚ ଟିପୁଥିଲା ତାର ଆଖି ଘଣ୍ଟା ଉପରେ ଥିଲା । ସେତେବେଳେ ଏଗାରଟା, ଅମୂଲ୍ୟ ଦୀର୍ଘ ଦୁଇଘଣ୍ଟା ସେ ସ୍ୱପ୍ନ ଦେଖି ନଷ୍ଟ କରି ଦେଲା । ଏତେ ସମୟ ନଷ୍ଟ କଲା ପରେ ବି ସେ ପୂର୍ବଠାରୁ ଆହୁରି ଅଧିକ କ୍ଳାନ୍ତ ବୋଲି ନିଜକୁ ମନେ କରୁଥିଲା । ତଥାପି ସମୟ ନଷ୍ଟ ହୋଇଛି ବୋଲି ତାର ମନେ ହେଲା ନାହିଁ କାରଣ ଏହି ସମୟ ଭିତରେ ସେ ଯେଉଁ ସଙ୍କଳ୍ପ ଗ୍ରହଣ କରିଛି ଭବିଷ୍ୟତରେ ତାର ମୂଲ୍ୟ ଜଣାପଡ଼ିବ । ପିଅନ ଗୁଡ଼ିଏ ଚିଠି ଏବଂ ଦୀର୍ଘ ସମୟ ଧରି ଅପେକ୍ଷା କରିଥିବା ଦୁଇଜଣଙ୍କ ଭଦ୍ରଲୋକଙ୍କ ପାଖରୁ ଦୁଇଟି କାର୍ଡ ଧରି ଆସିଲା । ପ୍ରକୃତରେ ସେ ଦୁଇଜଣ ବ୍ୟାଙ୍କର ଅତି ମୂଲ୍ୟବାନ ଗରାଖ । ଏମାନଙ୍କୁ କୌଣସି ମତେ ଦୀର୍ଘ ସମୟ ଅଟକାଇବା ଉଚିତ୍ ନୁହେଁ । ସେମାନେ ଏ ସମୟରେ କାହିଁକି ଆସିଛନ୍ତି ? କେ' ତ କେବେ ତାର ବ୍ୟକ୍ତିଗତ କାମ ପାଇଁ ଦିନର ସବୁଠାରୁ ମୂଲ୍ୟବାନ ସମୟକୁ ନଷ୍ଟ କରି ନାହିଁ ? ଯାହା ହୋଇଯାଇଛି ଏବଂ ଆଗକୁ କଅଣ ହେବ ସେ ବିଷୟରେ ଚିନ୍ତା କରୁଥିଲା ବେଳେ ଗରାଖମାନଙ୍କୁ ସ୍ୱାଗତ କରିବା ପାଇଁ କେ' ଠିଆହୋଇପଡ଼ିଲା ।

ହସଖୁସିଆ ଶ୍ରେଷ୍ଠ ଲୋକଟେ, ସେ ଜଣେ ଉତ୍ପାଦକ । କେ' ତାଙ୍କୁ ଭଲ-ଭାବେ ଜାଣେ । ଏପରି ବ୍ୟସ୍ତ ସମୟରେ ଆସି କେ'ର ଅସୁବିଧା ସୃଷ୍ଟି କରୁଛି ବୋଲି

Digitized by srujanika@gmail.com

ସେ ଦୁଃଖ ପ୍ରକାଶ କଲା । ତାଙ୍କୁ ଏତେ ସମୟ ଅପେକ୍ଷା କରିବାକୁ ପଡ଼ିଥିବାରୁ କେ' ମଧ୍ୟ ନିଜ ତରଫରୁ ଦୁଃଖପ୍ରକାଶ କଲା । ମାତ୍ର ଏପରି ଯାନ୍ତ୍ରିକ ଓ ଆନୁଷ୍ଠାନିକତାପୂର୍ଣ୍ଣ ସ୍ୱରରେ କେ' ଦୁଃଖ ପ୍ରକାଶକଲା ଯେ ଯଦି ଉତ୍ପାଦକ ନିଜ କାମରେ ଅତି ବେଶୀ ବ୍ୟସ୍ତ ନଥା'ନ୍ତେ ତେବେ ନିଶ୍ଚିତଭାବେ ତାହା ଧରିପାରି ଥାଆନ୍ତେ । ସେ ଭଦ୍ରଲୋକ ତାଙ୍କ ପକେଟ୍‌ରୁ କାଗଜସବୁ କାଢି ଟେବୁଲ ଉପରେ ମେଲାଇ ଧରିଲେ । ସେ କାଗଜରେ ଖାଲି ହିସାବ, କିତାବ । ଅସଂଖ୍ୟ ପରିସଙ୍ଖ୍ୟାନ ଖବର । କାଗଜରେ ଲେଖାଥିବା ସଙ୍ଖ୍ୟାର ଅର୍ଥ ସବୁ ସେ କେ'କୁ ବୁଝାଉଥିଲେ । ଏଠି ସେଠି ଥିବା ସାମାନ୍ୟ ଭୁଲ୍ ସବୁକୁ ସେ ସଂଶୋଧନ କରି ଦେଉଥିଲେ । ଏତେ ତରତର ଥିଲେ ସୁଦ୍ଧା ଭୁଲ୍‌ସବୁ ତାଙ୍କ ନଜର ଏଡ଼ି ପାରୁନଥିଲା । ବର୍ଷକ ପୂର୍ବରୁ ଏସବୁ ବ୍ୟବସାୟିକ ଆଦାନପ୍ରଦାନ ହୋଇଛି ବୋଲି ସେ କେ'କୁ ମନେ ପକାଇ ଦେଉଥିଲେ । କଥା ପ୍ରସଙ୍ଗରେ ପୁଣି କହିବାକୁ ଭୁଲୁନଥିଲେ ଯେ କେମିତି ଆଉ ଗୋଟିଏ ବ୍ୟାଙ୍କ୍ ତାଙ୍କ ସହ ଏ କାରବାର କରିବାକୁ ବ୍ୟଗ୍ର । ଏହା କହି ସେ କେ'ର ମତାମତକୁ ଆଗ୍ରହ ସହକାରେ ଅପେକ୍ଷା କରିରହିଲେ । ପ୍ରଥମରୁ କେ' ସେ ଲୋକଟିର କଥାବାର୍ତ୍ତା ଓ ଯୁକ୍ତିକୁ ମନଯୋଗ ସହ ଶୁଣୁଥିଲା । ଏପରି ଏକ ବଡ଼ ବ୍ୟବସାୟ ତାକୁ ବେଶ୍ ଆକର୍ଷିତ କରିଥିଲା । ମାତ୍ର ଦୁର୍ଭାଗ୍ୟବଶତଃ ଏ ଆକର୍ଷଣ କ୍ଷଣସ୍ଥାୟୀ । ଅଳ୍ପ ସମୟ ପରେ ସେ ଆଉ କିଛି ଶୁଣିପାରିଲାନି । ଯେତେ ବେଳେ ସେ ଲୋକଟିର ଉତ୍ସାହ ଦୁଇଗୁଣ ବଢ଼ିଯାଇଥିଲା ସେତେବେଳେ ସେ କେବଳ ମଝିରେ ମଝିରେ ମୁଣ୍ଡ ହଲାଉଥିଲା । ଏବଂ ଶେଷରେ ସେତିକ ଆଗ୍ରହବି କେ' ଦେଖାଇବାକୁ ଭୁଲିଗଲା । କେବଳ ତା' କାଗଜ ଉପରେ ନଇଁ ପଡ଼ିଥିବା ସେ ଲୋକଟିର ଚନ୍ଦା ମୁଣ୍ଡକୁ ଅନାଇ ରହିଥିଲା ଆଉ ମନେ ମନେ ନିଜକୁ ପଚାରୁଥିଲା—କେତେବେଳେ ଏ ଲୋକଟି ବୁଝିବ ଯେ, ତା'ର ସବୁ ଭାଷଣ ଖାଲି ଅଯଥା । ଉତ୍ପାଦକ କହିବା ବନ୍ଦକଲାରୁ କେ' କ୍ଷଣେକ ପାଇଁ ଭାବିଲା ଯେ ଏହି ବିରତି ତାକୁ ସୁଯୋଗ ଦେଇଛି, ସେ କହିବ ବର୍ତ୍ତମାନ ବ୍ୟବସାୟ କଥା ଶୁଣିବା ପାଇଁ ତା'ର ମାନସିକ ଅବସ୍ଥା ଠିକ୍ ନାହିଁ । ବଡ଼ ଦୁଃଖର ସହିତ ସେ ଉତ୍ପାଦକର ଉତ୍ସୁକ ମୁହଁକୁ ଦେଖିଲା । ସେ ଚାହାଣିରେ ଥିଲା ଗଭୀର ସତର୍କତା ଯେମିତିକି ସିଏ ସବୁ ପ୍ରକାର ଦୋଷ ତ୍ରୁଟିକୁ ବାଧା ବିଘ୍ନକୁ ସମ୍ଭାଳିନେବା ପାଇଁ ପ୍ରସ୍ତୁତ । ସେ ବୁଝିଥିଲା ଏ ସାକ୍ଷାତକାର କୌଣସି ପ୍ରକାର ଭୁଲୁରହିଆଉ, ତେଣୁ ସେ ମଥା ତଳକୁ କରି ପେନ୍‌ସିଲ୍‌ରେ ଖୁବ୍ ଧୀରେ ଧୀରେ କାଗଜରେ ଲେଖା ହୋଇଥିବା କେତୋଟି ସଂଖ୍ୟାକୁ ଦେଖାଇବାକୁ ଲାଗିଲା । ଉତ୍ପାଦକର ବଡ଼ ସନ୍ଦେହ ହେଉଥିଲା ଯେ କେ' ଯେମିତି ତା' ଯୋଜନାରେ ଥିବା ତ୍ରୁଟିକୁ ଖୋଜି ବୁଲୁଛି । ତା'ର ଯେମିତି ସନ୍ଦେହ ହେଉଛି ଯୋଜନାରେ ଦିଆଯାଇଥିବା ସଂଖ୍ୟା ସବୁ ଠିକ୍ ନୁହେଁ ବା ସେଗୁଡ଼ିକ

Digitized by srujanika@gmail.com

ବ୍ୟବସାୟ ପାଇଁ କରୁଥା ନୁହେଁ । ତଥାପି କାଗଜ ଉପରେ ହାତରଖି କେ' ଅଡ଼କୁ ଟିକେ ପାଖେଇ ଆସିଲା ଆଉ ବ୍ୟବସାୟ ପଛରେ ଥିବା ସାଧାରଣ ନିୟମଗୁଡ଼ିକୁ ବୁଝାଇବାକୁ ଲାଗିଲା ।

'ବର୍ତ୍ତମାନ ବହୁତ ଅସୁବିଧା' ଉତ୍ପାଦକର ମୁହଁକୁ ଚାହିଁ କେ' କହିଲା । ବର୍ତ୍ତମାନ ଏକମାତ୍ର ସମ୍ବଳ ଏହି କାଗଜଗୁଡ଼ିକୁ ହାଙ୍କି ପକାଇବା ଦେଖି କେ' ବଡ଼ ଦୁର୍ବଳ ଭାବରେ ନିଜ ଚୌକି ଉପରେ ବସିପଡ଼ିଲା । ସେ ସାମାନ୍ୟ ମୁଣ୍ଡ ଟେକିଛି କି ନାହିଁ ଦେଖିଲା ଯେ ଆସିଷ୍ଟେଣ୍ଟ ମେନେଜରର କୋଠରୀ ଦ୍ୱାର ଖୋଲିଗଲା ଆଉ କୋଠରୀ ଭିତରେ ମେନେଜର ଦେଖାଗଲେ । ମେନେଜର ବଡ ଅସ୍ପଷ୍ଟ ଦିଶୁଥିଲେ ଯେମିତି ଗଜ୍‌କନାରେ ଦେହସାରା ଢାଙ୍କି ହୋଇଛନ୍ତି । ତାଙ୍କର ଏପରି ଭୌତିକ ରୂପର କାରଣ କେ' ଖୋଜିବାକୁ ଚେଷ୍ଟା କଲାନାହିଁ । ସେ କେବଳ ତାଙ୍କ ଆସିବାର ପରିଣାମ ବିଷୟରେ ସଚେତନ ହୋଇପଡ଼ିଲା କାରଣ ତାହା ତା ପକ୍ଷରେ ବଡ଼ ସ୍ୱାଗତଯୋଗ୍ୟ ଥିଲା । ତାଙ୍କୁ ଦେଖି ଉତ୍ପାଦକ ତା' ଚୌକିରୁ ଉଠି ତାଙ୍କ ପାଖକୁ ଦୌଡ଼ିଲା । କେ' ଇଚ୍ଛା କରୁଥିଲା ସେ ଦଶଗୁଣ ବେଗରେ ଦୌଡ଼ନ୍ତା କି । କାରଣ ତା'ର ଭୟ ହେଉଥିଲା କାଳେ ମେନେଜରର ସେ ଭୌତିକ ରୂପ ଉଭେଇଯିବ । କିନ୍ତୁ କେ'ର ଭୟ ଅମୂଳକ ଥିଲା । ସେ ଦୁହେଁ ପରସ୍ପରକୁ ଭେଟିଲେ କରମର୍ଦ୍ଦନ କଲେ, ଏବଂ କେ'ର ଟେବୁଲ୍ ଆଡ଼କୁ ଆଗେଇ ଆସିଲେ । ଉତ୍ପାଦକ କେ'କୁ ଦେଖାଇ ଦେଖାଇ ଦୁଃଖ ପ୍ରକାଶ କରୁଥିଲେ ଏବଂ କହୁଥିଲେ ମୁଖ୍ୟ କିରାଣୀ ତା'ର ପ୍ରସ୍ତାବ ପ୍ରତି ଆଗ୍ରହ ଦେଖାଉନାହାନ୍ତି । ଆସିଷ୍ଟେଣ୍ଟ ମେନେଜରଙ୍କୁ ଦେଖି କେ' ଆଉ ଥରେ କାଗଜପତ୍ର ଉପରେ ନଇଁପଡ଼ିଲା । ଯେତେବେଳେ ସେ ଦୁଇଜଣ କେ'ର ଟେବୁଲ୍ ଉପରେ ନଇଁପଡ଼ିଲେ ଆଉ ଉତ୍ପାଦକ ଆସିଷ୍ଟେଣ୍ଟ ମେନେଜରର ସ୍ୱୀକୃତି ହାସଲ ପାଇଁ ଲାଗିପଡ଼ିଲା, ସେତେବେଳେ କେ'ର ମନେ ହେଉଥିଲା ଯେମିତି ଦୁଇଟି ବିରାଟକାୟ ବ୍ୟକ୍ତି ଠିକ୍ ତା' ମଥା ଉପରେ ତାହାରି ବିଷୟ ଆଲୋଚନା କରୁଛନ୍ତି । ଯେତେଦୂର ସାହସପାଇଲା ସେ ତା'ର ଆଖି ଉପରକୁ ଟେକି ସେମାନେ କଅଣ କରୁଛନ୍ତି ଦେଖିବାକୁ ଚେଷ୍ଟାକଲା । ତା'ପରେ ଯେଉଁଠୁ ପାରେ ଟେବୁଲ୍ ଉପରୁ କାଗଜଟିଏ ଉଠାଇନେଇ ନିଜ ହାତ ଉପରେ ଖୋଲିଧରି ତାକୁ ଧୀରେ ଧୀରେ ଉପରକୁ ଟେକିଲା ଆଉ ନିଜେ ମଧ୍ୟ ସେ ଦୁଇଜଣଙ୍କ ସିଧାରେ ଠିଆ ହେଲା । ଏମିତି କରିବାରେ ତା'ର କିଛି ଉଦ୍ଦେଶ୍ୟ ନଥିଲା କେବଳ ଗୋଟେ ଧାରଣାର ବଶବର୍ତ୍ତୀ ହୋଇ ଏପରି କରୁଥିଲା । ଧାରଣାଟି ହେଲା ଯେତେବେଳ ପର୍ଯ୍ୟନ୍ତ ତା'ର ଜବାବ ଲେଖିସାରିଛି ତାକୁ ଏମିତି କରିବାକୁ ହେବ କାରଣ ସେହି ଜବାବହିଁ ତାକୁ ପୂର୍ବ ମୁକ୍ତ ଅଣିଦେବ । ଆସିଷ୍ଟେଣ୍ଟ ମେନେଜର ବଡ ମନଯୋଗ

Digitized by srujanika@gmail.com

ସହ କଥାବାର୍ତ୍ତାରେ ବ୍ୟସ୍ତଥିଲେ । ସେ କେବଳ ଉତ୍ପାଦକର କାଗଜ ଆଡ଼କୁ ଅନାଇଲେ ସେଥିରେ କଅଣ ଲେଖାଅଛି ଟିକେବି ଦେଖିଲେନି । କାରଣ ମୁଖ୍ୟ କିରାଣୀ ପାଖରେ ଯାହା ଦରକାରୀ ତାଙ୍କ ପାଖରେ ତାହା ଦରକାରୀ ହେବା ଉଚିତ୍ ନୁହେଁ । କେ' ପାଖରୁ ସେ କାଗଜ ନେଇ କହିଲେ 'ଧନ୍ୟବାଦ୍, ସେସବୁ ଆଗରୁ ଜାଣିଛି' ଏତିକ କହି ଟେବୁଲ୍ ଉପରେ ଅଳଥରେ ରଖିଦେଲେ । କେ' ତାଙ୍କ ଆଡ଼କୁ ତୀକ୍ଷ୍ଣଦୃଷ୍ଟିରେ ଚାହିଁଲା କିନ୍ତୁ ମେନେଜର ତାକୁ ଲକ୍ଷ୍ୟକଲେନି, ସେ ଉଚ୍ଚସ୍ୱରରେ ହସିବାକୁ ଲାଗିଲେ ଏବଂ ଦେଖେଇ ହୋଇ ଉତ୍ପାଦକ ପ୍ରତି କଟୁଭାଷା ପ୍ରୟୋଗ କଲେ, ପରେ ତା'ର ପ୍ରଭାବକୁ କଟାଇବା ପାଇଁ ତାକୁ ନିଜ କୋଠରୀକୁ ନିମନ୍ତ୍ରଣ କରିନେଲେ, ଯେଉଁଠି ସେ ବ୍ୟବସାୟ ବିଷୟ ଚୂଡ଼ାନ୍ତ କରିବେ ।

'ପ୍ରକୃତରେ ଏହା ଏକ ଦରକାରୀ ପ୍ରସ୍ତାବ' ସେ ଉତ୍ପାଦକକୁ କହିଲେ । 'ମୁଁ ପୂରା ଏକମତ । ଆଉ ହେଡ୍ କିରାଣୀ....' ଏତିକ କହି ସେ ଖାଲି ଉତ୍ପାଦକକୁହିଁ ଚାହିଁଲେ ।

'ଯଦି ଆମେ ତା' ପାଖରୁ ଏହାର ଦାୟିତ୍ୱ କାଢ଼ିନେଉ ତେବେ ସେ ନିଶ୍ଚିତ ଭାବରେ ଏ ବୋଝରୁ ମୁକ୍ତି ପାଇବେ । ଏ ବ୍ୟବସାୟ ପାଇଁ ତନ୍ମାର ପ୍ରୟୋଜନ । ଆଜି ସେ ଖୁବ୍ ବ୍ୟସ୍ତପରି ଜଣାପଡୁଛନ୍ତି । ତା'ଛଡ଼ା କେତେକ ଲୋକ ଘଣ୍ଟା ଘଣ୍ଟା ହେଲା ତାଙ୍କ ପାଇଁ ପାଖ ଘରେ ଅପେକ୍ଷା କରିଛନ୍ତି' । ତଥାପି ଆସିଷ୍ଟେଣ୍ଟ ମେନେଜର ପାଖରୁ ଦୂରେଇ ଯାଇପାରିବ ଏପରି ପ୍ରଭାବ କେ'ର ଥିଲା । ଉତ୍ପାଦକକୁ ଚାହିଁ ସେ କେବଳ ଟିକିଏ ହସିଲା । ଏହାଛଡ଼ା ସେ ଆଉ ହସ୍ତକ୍ଷେପ କଲାନାହିଁ । ଟେବୁଲ ଉପରେ ଦୁଇହାତ ଦେଇ ନିଜକୁ ସମ୍ଭାଳି ନେଲା । ଆଗକୁ ବାଧ୍ୟ ଅଧସ୍ତନ କିରାଣୀଟିଏ ପରି ସାମାନ୍ୟ ଝୁଙ୍କି ପଡ଼ି ସେ ଦୁଇଜଣ ତଥାପି କଥା ହେଉଥିବାର ଦେଖିଲା । କାଗଜ ସବୁ ଗୁଣ୍ଡାଇ ସେମାନେ ମେନେଜରଙ୍କ କୋଠରୀକୁ ପଶିଗଲେ । ଠିକ୍ ଦ୍ୱାର ପାଖରେ ଉତ୍ପାଦକ ବୁଲିପଡ଼ି କହିଲା ଯେ ସେ ଏବେବି ବିଦାୟ ନେଇନି ଅବଶ୍ୟ ତା' ସାକ୍ଷାତକାରର ଫଳାଫଳ ମୁଖ୍ୟ କିରାଣୀଙ୍କୁ ସେ ଜଣାଇବ । ତାଛଡ଼ା ତା'ପାଖରେ ସାମାନ୍ୟ କାମଟିଏ ମଧ୍ୟ ଅଛି । ଅବଶେଷରେ କେ' ଟିକିଏ ଏକୁଟିଆ ରହିବାର ସୁଯୋଗ ପାଇଲା । ଅନ୍ୟ ଗରାଖ ସହ ସାକ୍ଷାତ କରିବାକୁ ତା'ର ଟିକିଏ ହେଲେ ଇଚ୍ଛାନଥିଲା । ସେ ମନେ ମନେ ଅନୁଭବ କରୁଥିଲା ଯେ ବାହାରେ ଅପେକ୍ଷା କରିଥିବା ଲୋକ ଏବେବି ଭାବୁଛନ୍ତି ସେ ଉତ୍ପାଦକ ସହ ବ୍ୟସ୍ତଅଛି । ତେଣୁ କେହି ଏମିତିକି ତା'ର ଚପରାସୀ ଆସି ଗୋଳମାଳ କରିବ ନାହିଁ । ସେ ଝର୍କାପାଖକୁ ଗଲା, ଝର୍କା ଧାରରେ ଆଉଜିପଡ଼ି ଗୋଟିଏ

Digitized by srujanika@gmail.com

ହାତରେ ଛୁଟ୍‌କଣିକୁ ଧରି ଚାଲି ଅଗଣାକୁ ଆଣାଇଲା । ବରଷା ତଥାପି ପଡୁଥାଏ । ଆକାଶ ପରିଷ୍କାର ହୋଇନଥାଏ ।

ଅନେକ ସମୟ ଧରି ସେ ସେମିତି ବସି ରହିଲା । ଜାଣିପାରୁ ନଥିଲା ପ୍ରକୃତରେ କିଏ ଅସୁବିଧା ସୃଷ୍ଟି କରୁଛି । ଥରକୁଥର ସେ ତା'ର ମୁଣ୍ଡବୁଲାଇ ସେଇ ପାଖ ଘରକୁ ଡ଼ରିଲା ଡ଼ରିଲା ଆଖିରେ ଚାହୁଁଥାଏ, ଯେଉଁଠୁ କିଛି ଗୋଟିଏ ଶବ୍ଦ ଆସିଲାପରି ତା'କୁ ଲାଗୁଥାଏ । ଯେତେବେଳେ କେହି ନଆସିଲେ ସେ ତା'ର ସାହସ ଫେରିପାଇଲା । ବେଶିନ୍ ପାଖକୁ ଯାଇ ଥଣ୍ଡା ପାଣିରେ ମୁହଁ ଧୋଇଲା ଏବଂ ପୁଣି ଝର୍କା ପାଖକୁ ଖୋଲାମନ ନେଇ ଫେରିଆସିଲା । ନିଜର ଆତ୍ମରକ୍ଷାର ଦାୟିତ୍ୱ ନିଜେ ନେବାର ଧାରଣା ବର୍ତ୍ତମାନ ତାକୁ ଅଧିକ ଗମ୍ଭୀର ଭାବେ ପୂର୍ବାପେକ୍ଷା ବିବ୍ରତ କଲା । ଯେପର୍ଯ୍ୟନ୍ତ ତା' କେଶ୍‌ର ଦାୟିତ୍ୱ ଓକିଲଙ୍କ ହାତରେ ଥିବ ସେପର୍ଯ୍ୟନ୍ତ ତା'ର କିଛି ଲାଭ ହେବନି । କିଛିଟା ଦୂରତା ରଖି ଅବୈକ୍ତିକ ଭାବେ ସେ କେଶ୍‌କୁ ବିଶ୍ଳେଷଣ କରିଥିଲା । ଆଉ କେଶ୍ ପାଖରୁ ଦୂରତା ରକ୍ଷାକରିଥିଲା । ଯେତେବେଳେ ଇଚ୍ଛାକରୁଥିଲା ତଦାରଖ କରି ପାରୁଥିଲା । ପୁଣି ଇଚ୍ଛାମୁତାବକ ତା'ଠାରୁ ନିଜକୁ ଦୂରେଇ ରଖିପାରୁଥିଲା ।

ଅନ୍ୟ ଢଗରେ ବର୍ତ୍ତମାନ ସେ ଯଦି ନିଜ ରକ୍ଷାର ଦାୟିତ୍ୱ ନିଜ ହାତକୁ ନିଏ ତେବେ ନିଜକୁ କୋର୍ଟ ପାଖରେ ଅନ୍ତତଃ କିଛି କାଳପାଇଁ ସମର୍ପି ଦେବାକୁ ପଡ଼ିବ । ଏପରି ନୀତି ଅବଶ୍ୟ ତାକୁ ନିଶ୍ଚିତଭାବେ ସଂପୂର୍ଣ୍ଣ ଖଲାସ କରିଦେଇ ପାରିବ ମାତ୍ର କିଛି ସମୟ ପାଇଁ, ଅସ୍ଥାୟୀ ଭାବେ ଅନ୍ତତଃ । ଏହା ତାକୁ ପୂର୍ବାପେକ୍ଷା ଅଧିକ ବିପଦରେ ପକାଇବ । ଏପରି ପରିସ୍ଥିତି ବିଷୟରେ ଯଦି ତା'ର ସନ୍ଦେହ ଥାଏ, ତେବେ ଆସିଷ୍ଟେଣ୍ଟ ମେନେଜର ଆଉ ଉତ୍ପାଦକ ସହ କଥାବାର୍ତ୍ତା ବେଳେ ତାର ମାନସିକ ଅବସ୍ଥା ଏ ବିଷୟରେ ତାକୁ ନିଶ୍ଚିତ କରି ଦେବାକୁ ଯଥେଷ୍ଟ । ନିଜ ଆତ୍ମରକ୍ଷା ନିଜେ କରିବ ଏହି ଚିନ୍ତା କେମିତି ଗୋଟେ ଶିଥିଳତା ସୃଷ୍ଟି କରିଥିଲା । ଆଗରେ କଅଣ ହେବ ? ଭବିଷ୍ୟତରେ ତା'ପାଇଁ କଅଣ ଅପେକ୍ଷା କରିଛି ? ଏସବୁ ଅସୁବିଧା ବାଧାବିଘ୍ନ ଭିତରେ ପ୍ରକୃତ ବାଟ ସେ ପାଇ ପାରିବତ ? ପୁରାପୁରି ଗୋଟେ ଆତ୍ମରକ୍ଷା ଆରମ୍ଭ କରିଦେବାକୁ ହେବ । ଅନ୍ୟ କୌଣସି ପ୍ରକାର କାମ କେବଳ ସମୟ ନଷ୍ଟ । ପୁରାପୁରି ନିଜର ଗୋଟେ ଆତ୍ମରକ୍ଷା କରିବାକୁ ହେଲେ ଅନ୍ୟସବୁ କାମ ପାଖରୁ ତା'ର ସମ୍ପର୍କକୁ କଅଣ କାଟିବାକୁ ପଡ଼ିବନି ? ସେ କଅଣ ତା' କରିବାରେ ସଫଳ ହେବ ? ପୁଣି ବ୍ୟାଙ୍କରେ ଥାଇ ତା ନିଜ କେଶ୍‌କୁ ସେ କେମିତି ଚଳାଇବ ? ଏହା କେବଳ ଗୋଟେ କାରଣ ଦର୍ଶାଇବାର ନୁହେଁ । ତା'

Digitized by srujanika@gmail.com

ହେଲେତ କହୁଦନ ଛୁଟି ନେଇ ଚଳିଯାଆନ୍ତା । ଯଦଓ ଏପରି ଅବସ୍ଥାରେ ଛୁଟିନେବା ବଡ଼ ଅସୁବଧା ଜନକ । କନ୍ତୁ ଯେତେବେଳେ ଗୋଟେ ପୁରା ବର୍ଷର ସ୍ୱଳଛୁ କେତେଦନ ଏଥିପାଇଁ ଲଗିବ ସେକଥାତ କହୁହେବ ନାହିଁ । ତା' ବ୍ୟକ୍ତିଗତ ଜୀବନରେ ଏ ଯେ କି ପ୍ରକାର ବାଧା ଅସି ଛୁଡ଼ାହେଲ !

ଏହାହିଁ ତ ସମସ୍ୟ ଯେତେବେଳେ ସେ ବ୍ୟାଙ୍କ ପାଇଁ କାମ କରନ୍ତା । ସେ ତା ଟେବୁଲକୁ ଗ୍ଲହିଁଲ । ଏହା କଅଣ ମକ୍କେଲମାନଙ୍କୁ ଦେଖା କର ତାଙ୍କ ସହ ବ୍ୟବସାୟିକ ବ୍ଷୟ ଆଲୋଚନା କରବା ବେଲ ନୁହେଁ ? ଯେତେବେଳେ ତା ନଜ ବ୍ଷ୍ୟର ଧୀରେ ଧୀରେ ଜଟିଳ ହେଉଛ, ଯେତେବେଳେ କଚେରୀ ଅଫିସ ଘରେ ଅଫିସରମାନେ ତା ବରୁଦ୍ଧରେ ଅଭିଯୋଗ ପତ୍ରମାନ ଜମା କରୁଚନ୍ତ ସେତେବେଳେ କଅଣ ସେ ବ୍ୟାଙ୍କ କଥା ବୁଝିପାରବ ? ତାକୁ ଜଣାଗଲ ଯେମିତ ଏହା ଏକପ୍ରକାର ଯନ୍ତ୍ରଣା ଯାହାକ କୋର୍ଟ ଦ୍ୱାରା ଅନୁମୋଦତ । ଏହା ଯେମିତ ତା' ମକଦ୍ଦମାରୁ ହିଁ ଜାତ ଏବଂ ତା ସହ ଜଡ଼ିତ । ଯେତେବେଳେ ତାର ବ୍ଗ୍ୟର ହେବ ସେତେବେଳେ କଅଣ ବ୍ୟାଙ୍କରେ ତାର ଏପର ବଚତ୍ର ଅବସ୍ଥାର ବ୍ଗ୍ୟର କରାହେବ ? କେବେ ନୁହେଁ । କାହାର ଦ୍ୱାରା ନୁହେଁ । ତା କେସ୍ କଥା ବ୍ୟାଙ୍କରେ ଅଜଣା ନୁହେଁ । ଯଦଓ ଏହା ପରଷ୍କାର ନୁହେଁ ଯେ କଏ ଏ ବ୍ଷୟରେ କେତେ ଜାଣେ । ତେବେ ବାହାରକୁ ଯାହା ଜଣାପଡ଼ୁଛୁ ଏ ମକଦ୍ଦମା ବ୍ଷୟରେ ଗୁଜବ ? ଆସିଷ୍ଟେଣ୍ଟ ମେନେଜର କାନରେ ଏବେବ ପଡ଼ିନାହିଁ । ତା ହୋଇଥିଲେ ସେ ନଶ୍ଚୟ ଜାଣି-ଥାଆନ୍ତା । କାହିଁକ ନା ଜଣେ ସହକର୍ମୀ ଭାବେ ବା ଜଣେ ମଣିଷ ଭାବେ କୌଣସି ପ୍ରକାର ନୀତ ନରଖି ସେ ଏ ବ୍ଷୟର ସୁଯୋଗ ନଅନ୍ତା ଆଉ ନଜେ ମେନେଜର ମଧ୍ୟ । କେ' ସହ ତାଙ୍କର ସମ୍ପର୍କ ଭଲ । ଏକଥା ଜାଣିଲେ ତାଙ୍କ ଶକ୍ତି ଭିତରେ ଯେତକ ସମ୍ଭବ ସେତକ ସୁବଧା ଦେଇ କେ'ର କାମକୁ ସେ ଲଘବ କରଥାନ୍ତେ । କନ୍ତୁ ତାର ଭଲ ଉଦ୍ଦେଶ୍ୟ ବାଧାପାଆନ୍ତା । କାହିଁକ ନା କେ'ର ଜମି ଆସୁଥିବା ସମ୍ମାନ ଆସିଷ୍ଟେଣ୍ଟ ମେନେଜରର ପ୍ରଭାବକୁ ଆୟତ୍ତାଧୀନ କରବା ପାଇଁ ଆଉ ଯଥେଷ୍ଟ ନୁହେଁ । ତେଣୁ ମେନେଜର ଉପରେ ତାର ପ୍ରଭାବ ଧୀରେ ଧୀରେ ବଢ଼ିବାରେ ଲଗିଛୁ । ଫଳରେ ସେ ଏଇ ଅବସ୍ଥା ଅର୍ଥାତ୍ କେ'ର ଅସହାୟ ଅବସ୍ଥାର ସୁଯୋଗ ନେଇପାରୁଚ । ତେଣୁ ଏଥିରୁ କେ' କଅଣ ଆଶାକରେ ? ଏହା ମଧ୍ୟ ହୋଇପାରେ ଯେ ସେ ଏ ପ୍ରକାର ଚନ୍ତାକୁ ମୁଣ୍ଡରେ ପୂରାଇ ନଜର ବାଧାଦେବା ଶକ୍ତିକୁ ଦୁର୍ବଳ କର ଦେଉଛ । ବର୍ତ୍ତମାନ ଆଉ କୌଣସି ପ୍ରକାର ମିଛ ଧାରଣାକୁ ମନରେ ସ୍ଥାନ ଦେବା ଠିକ୍ ହେବ ନାହିଁ । ବର୍ତ୍ତମାନ ଅବସ୍ଥାରେ ସେ କେଉଁଠି ଠିଆ ହୋଇଚ ତାକୁ ଭଲ କର ଦେଖିବା କଥା ।

Digitized by srujanika@gmail.com

କୌଣସି ଉଦ୍ଦେଶ୍ୟ ନରଖି କେବଳ ନିଜର ଟେବୁଲ ପାଖରୁ ଦୂରରେ ରହିବା ପାଇଁ ସେ ଝରକା ଖୋଲିଲା । ଝରକା ଖୋଲିବାରେ ବେଶ୍ ଅସୁବିଧା ହେଲା । ଦୁଇ ହାତରେ ତାକୁ ଛିଟିକିଣିଟିକୁ ପେଲିବାକୁ ପଡ଼ିଲା । ଝରକା ଖୋଲି-ବାରୁ ଘର ଭିତରକୁ କୁହୁଡ଼ି ଆଉ ଧୂଆଁ ପଶିଆସିଲା ସେଥିରେ ଥିଲା ପୋଡ଼ାଗନ୍ଧ । ବରଫର ଟୁକୁଡ଼ା କିଛି ମଧ୍ୟ ପଶିଆସିଲା ।

'ଗୋଟେ ଭୟଙ୍କର ଶରତ' ଉତ୍ପାଦକର ସ୍ୱର ପଛରୁ ଶୁଭିଲା । ଆସିଷ୍ଟେଣ୍ଟ ମେନେଜରର ସହ କଥାବାର୍ତ୍ତା ସାରି ସେ କେ'ର କୋଠରୀ ଭିତରକୁ ପଶିଥିଲା । କେ' ମୁଣ୍ଡ ଟୁଙ୍ଗାରିଲା ଆଉ ଉତ୍ପାଦକ ଧରିଥିବା ଆଟେଚି ଆଡ଼କୁ ଶଙ୍କାକୁଳ ଆଖିରେ ଅନାଇଲା । କାହିଁକି ନା ସେ ବର୍ତ୍ତମାନ ତା ଭିତରୁ ସବୁ କାଗଜପତ୍ର କାଢ଼ି ତାକୁ ଦେଖାଇବ ଆଉ ଜଣାଇଦେବ ଯେ, କେତେଦୂର ବ୍ୟବସାୟ ସମ୍ବନ୍ଧରେ କଥାବାର୍ତ୍ତା ଆଗେଇଲା । କିନ୍ତୁ ଉତ୍ପାଦକ କେ' ଆଖିରେ ଆଖି ମିଶାଇ କେବଳ ତା ବାକ୍ସ ନ ଖୋଲି ହାତ ଆପୁଡ଼ିଲା ଆଉ କହିଲା—

'କଥା କେତେ ଦୂର ଗଲା ତା ଆପଣ ଜାଣିବାକୁ ଉଦ୍‌ଗ୍ରୀବ ନିଶ୍ଚୟ ? ଶେଷ ନିଷ୍ପତ୍ତି ପ୍ରାୟ ମୋ ପକେଟରେ । ଆପଣଙ୍କର ଆସିଷ୍ଟେଣ୍ଟ ମେନେଜର ଖୁବ୍ ଭଲ ଲୋକ କିନ୍ତୁ କାମରେ ବଡ଼ କଡ଼ା ।' ସେ ହସିଲା ଆଉ କେ' ସହ କରମର୍ଦ୍ଦନ କଲା । କେ'କୁ ହସାଇବା ପାଇଁ ଚେଷ୍ଟା ମଧ୍ୟ କଲା । କିନ୍ତୁ କେ'ର ସନ୍ଦେହ ବର୍ତ୍ତମାନ ଘନୀଭୂତ ହେଲା । ତାର ସନ୍ଦେହ ହେଲା ଯେ ଉତ୍ପାଦକ ତାକୁ କାଗଜପତ୍ର ଦେଖାଇ ନାହିଁ ତେଣୁ ଏଥିରେ ହସିବାର କିଛି ନାହିଁ । 'ମିଷ୍ଟର କେ' ଆଜିର ପାଗ ବୋଧହୁଏ ତୁମକୁ ଭଲ ଲାଗୁନାହିଁ । ତୁମେ ଏତେ ବିଷଣ୍ଣ ଦିଶୁଛ ?'

'ହଁ' କପାଳରେ ହାତମାରି କେ' କହିଲା 'ମଥା ଯନ୍ତ୍ରଣା ବିଭୂତି । ଘରେ ଅସୁବିଧା ।'

'ଆଚ୍ଛା' ଉତ୍ପାଦକ କହିଲା । ସେ ଜଣେ ଖାଣ୍ଟି ବ୍ୟସ୍ତଲୋକ, କାହାଠାରୁ ପୂରା ଶୁଣିବାର ସମୟ ତାର ନଥାଏ । ସେ ତରତରରେ କହିଲା 'ଆମ ସମସ୍ତଙ୍କର ତ ସୁବିଧା ଅସୁବିଧା ଅଛି ।' କେ' ଆପେ ଆପେ ଦ୍ୱାର ଆଡ଼କୁ ଯିବାକୁ ଯେମିତିକି ଉତ୍ପାଦକକୁ ବାହାରକୁ ଯିବା ପାଇଁ ବାଟଦେଖାଇ ଦେବ—କିନ୍ତୁ ଉତ୍ପାଦକ କହିଲା—'କେ' ଆପଣଙ୍କ ସହ ମୋର ସାମାନ୍ୟ କଥାଥିଲା । ଅବଶ୍ୟ ମୋତେ ଡର ଲାଗୁଚି ଏମିତି ଅବସ୍ଥାରେ ସେକଥା କହିବା ଠିକ୍ ହେବନି । ତଥାପି ଆଗରୁ ଯେଉଁ ଦୁଇଥର ମୁଁ ଆସିଥିଲି ସେତେବେଳେ ସେକଥା କହିବାକୁ ଭୁଲି ଯାଇଥିଲି । କିନ୍ତୁ ପରେ ଆଉ ବିଳମ୍ବ କଲେ ସେ କଥାର କିଛି ଅର୍ଥ ରହିବନି ଏବଂ ତାହା ବଡ଼ ଦୁଃଖ-

Digitized by srujanika@gmail.com

ଦାୟକ ହେବ । କାରଣ ମୁଁ ଯେଉଁ ଖବର ଦେବି ତା' ଆପଣଙ୍କ ପାଖରେ ବେଶ୍ ମୂଲ୍ୟବାନ୍ ।

କେ' କିଛି କହିବା ପୂର୍ବରୁ ସେ କେ'ର ଖୁବ୍ ପାଖକୁ ଚାଲିଆସିଲା । ତା' ଗ୍ଲାସରେ ଗୋଟିଏ ଆଙ୍ଗୁଳି ମାରି ଖୁବ୍ ଧୀରେ ଧୀରେ କହିଲା—'ଆପଣ ଗୋଟେ ମକଦ୍ଦମାରେ ପଡ଼ିଛନ୍ତି ନୁହେଁ କି ?' କେ' ଚମକି ପଡ଼ି କହି ଉଠିଲା—'ଆସିଷ୍ଟେଣ୍ଟ ମେନେଜର ତୁମକୁ ଏକଥା କହିଛନ୍ତି ।'

'ମୋତେ ନୁହେଁ । ଆସିଷ୍ଟେଣ୍ଟ ମେନେଜର ଏକଥା କେମିତି ଜାଣିବେ ।' ଉତ୍ପାଦକ କହିଲା ।

'ତୁମେ ଏକଥା କେମିତି ଜାଣିଲ ?' କେ' ପଚାରିଲା ।

'ମୁଁ କୋର୍ଟର ଖବର ଟିକିଏ ଟିକିଏ ରଖିଥାଏ ।' ଉତ୍ପାଦକ କହିଲା । 'ମୁଁ ଦେଖୁଚି ଅନେକ ଲୋକ କୋର୍ଟ ସହ ସମ୍ପୃକ୍ତ ।' ମୁଣ୍ଡ ନୁଆଁଇ କେ' କହିଲା ଆଉ ଉତ୍ପାଦକକୁ ଟେବୁଲ୍ ପାଖକୁ ନେଇଗଲା । ପୂର୍ବପରି ସେମାନେ ବସିଲେ ଏବଂ ଉତ୍ପାଦକ ଆରମ୍ଭ କଲା—'ଦୁର୍ଭାଗ୍ୟବଶତଃ ମୁଁ ବେଶୀ କହିପାରିବିନି । କିନ୍ତୁ ଏସବୁ ବିଷୟରେ ସାମାନ୍ୟତମ ଘଟଣାକୁ ମଧ୍ୟ ଅବହେଳା କରିବା କଥା ନୁହେଁ, ତାଛଡ଼ା ଆପଣଙ୍କୁ ସାହାଯ୍ୟ କରିବାକୁ ମୋର ଖୁବ୍ ଇଚ୍ଛା । ସେ ସାହାଯ୍ୟ ଯେତେ ତୁଚ୍ଛ ହେଉନା କାହିଁକି ଆମେ ସବୁଦିନେ ଆଜିପର୍ଯ୍ୟନ୍ତ ଖୁବ୍ ଭଲ ବ୍ୟବସାୟୀ ବନ୍ଧୁ, ନୁହେଁ କି ?'

ଅଧିକନ୍ତୁ କେ' ତା'ର ସକାଳର ବ୍ୟବହାର ପାଇଁ ଦୁଃଖପ୍ରକାଶ କଲା । ମାତ୍ର ଉତ୍ପାଦକ ତାକୁ ନଶୁଣି ତା' ଅଟେଚିକୁ ଗୋଡ଼ତଳେ ଜାକିଧରିଲା । ଯେମିତି ଦେଖାଇବାକୁ ଚାହୁଁଥିଲା ସେ ଯିବାପାଇଁ ଖୁବ୍ ବ୍ୟସ୍ତ । ତା'ପରେ ପୁଣି ଆରମ୍ଭକଲା—'ଆପଣଙ୍କ କେଶ୍ ବିଷୟ ମୁଁ ଟିଟୋରେଲି ନାମକ ଜଣେ ଲୋକ ପାଖରୁ ଶୁଣିଥିଲି । ସେ ଜଣେ ଶିଳ୍ପୀ । ଟିଟୋରେଲି କେବଳ ତା'ର ବ୍ୟବସାୟିକ ଛଦ୍ମନାମ । ତା'ର ପ୍ରକୃତ ନାମ କଅଣ ମୁଁ ଜମା ଜାଣେନି । ବର୍ଷ ବର୍ଷ ଧରି ମୋ' ଅଫିସ୍‌କୁ ଆସିବା ତାର ଗୋଟେ ଅଭ୍ୟାସରେ ପରିଣତ ହୋଇଯାଇଛି । ସେ ପ୍ରାୟ ମୋ' ଅଫିସ୍‌କୁ ତା' ଛବି ଧରି ମଝିରେ ମଝିରେ ଆସେ ଯାହା ପାଇଁ ମୁଁ ସାମାନ୍ୟ ଟଙ୍କା ଦେଇ ଥାଏ । ମୋ' ଟଙ୍କା ପ୍ରାପ୍ତ ଭିକ୍ଷାପରି ସେ ଯେମିତି ଗୋଟେ ଭିକାରି । ତା ଛବି-ଗୁଡ଼ିକ କିନ୍ତୁ ଖରାପ ନୁହେଁ । ମୁକ୍ତ ପ୍ରାନ୍ତର, ବଣୁଆ ଲୋକ, ଆଜିର ଛବିଗୁଡ଼ିକ ବେଶ୍ ସୁନ୍ଦର । ଏ କାମ ବେଶ୍ ଭଲରେ ଆମ ଭିତରେ ଚାଲିଥିଲା । ସମସ୍ତ

Digitized by srujanika@gmail.com

ଆସିଲା ଯେତେବେଳେ କି ସେ ବାରମ୍ବାର ଆସିବାକୁ ଲାଗିଲା । ମୋ' ଛବି ବାହାରକୁ ଚାଲିଗଲା । ଏ କଥା ମୁଁ ତାକୁ କହିଲି । ଆମର କଥାବାର୍ତ୍ତା ଚାଲିଲା । ସେ କେବଳ ଛବି ଆଙ୍କି କେମିତି ଚଳୁଛି, ଏକଥା ଜାଣିବାକୁ ମୋର କୌତୂହଳ ହେଲା । ମୋର ଆଶ୍ଚର୍ଯ୍ୟର ସୀମା ରହିଲାନି ଯେତେବେଳେ ମୁଁ ଜାଣିଲି ଯେ ପ୍ରକୃତରେ ଆଙ୍କି ସେ ତା'ର ଜୀବିକା ନିର୍ବାହ କରିଥାଏ । ଅଦାଲତ ପାଇଁ କାମକରେ ବୋଲି ସେ କହିଲା । 'କେଉଁ କୋର୍ଟ ?' ମୁଁ ପଚାରିଲି । ସେ ଏହି କୋର୍ଟ କଥା କହିଲା । 'ଆପଣଙ୍କ ନିଜ ଅନୁଭୂତିରୁ ବେଶ୍ ବୁଝି ପାରୁଥିବେ, ତା କଥାଶୁଣି ମୁଁ କେତେ ବିସ୍ମିତ ହୋଇନଥିବି । ସେହି ଦିନଠାରୁ ସେ ଯେବେ ଆସେ ଆଦାଲତ ବିଷୟରେ ସବୁଠାରୁ ତାଜା ଖବର ନେଇ ଆସେ । ଏବଂ ଏହିପରି ଭାବେ ମୋର ସେ କୋର୍ଟର କାମ ବିଷୟରେ ଗୋଟେ ଧାରଣା ହୋଇଗଲା । ଅବଶ୍ୟ ଟିଟୋରେଲି ଗୁଡ଼ାଏ ଅଯଥା କଥା କହେ । ତେଣୁ ତା କଥାରେ ଅନେକ ସମୟରେ ମୁଁ ବାଧା ଦିଏ । କାହିଁକି ନା ପ୍ରଥମତଃ ସେ ଯେ ଗୋଟିଏ ମିଛୁଆ ତା ନୁହେଁ । ମୁଖ୍ୟତଃ ମୋ' ପରି ଜଣେ ବ୍ୟବସାୟୀର ନିଜର ଅନେକ ଜଞ୍ଜାଳ, ତେଣୁ ମୋର ବା ଅନ୍ୟର କଥା ଶୁଣିବା ପାଇଁ ସାମର୍ଥ୍ୟ କାହିଁ ? ତେଣୁ ତାହାହିଁ ଏକମାତ୍ର ଉପାୟ । ହୁଏତ ଟିଟୋରେଲି ତୁମର କିଛି କାମରେ ଆସି-ପାରେ ମୁଁ ଭାବିଲି । ସେ ଅନେକ ବିଚାରପତିଙ୍କୁ ଜାଣେ । ଯଦିଓ ତାର ବେଶୀ ପ୍ରଭାବ ନାହିଁ ତଥାପି ତ ସେ କହି ଦେଇପାରିବ କେମିତି ପ୍ରଭାବଶାଳୀ ଲୋକଙ୍କୁ ଧରିବାକୁ ପଡ଼ିବ । ଯଦି ତାକୁ ଭବିଷ୍ୟତ ବକ୍ତାଭାବେ ଗ୍ରହଣ ନ କରିପାର ତଥାପି ତାର ଖବର ସବୁ ତୁମପାଇଁ ବହୁତ ଦରକାରରେ ଆସିବ । କାହିଁକି ନା ତୁମେତ ପ୍ରାୟ ନିଜେ ଜଣେ ଓକିଲ । ମୁଁ ତ ସବୁବେଳେ କହେ ଆମ ହେଡ଼କିରାଣୀ ଜଣେ ଓକିଲ । ତୁମ କେଉଁ ବିଷୟରେ ମୋର ଅଦୌ ଚିନ୍ତା ନାହିଁ । ଆଚ୍ଛା ତୁମେ କଅଣ ଟିଟୋରେଲିକୁ ଦେଖା କରିବାକୁ ଚାହଁ ? ମୁଁ କହିଲେ ତା ଦ୍ୱାରା ଯାହା ସମ୍ଭବ ସେ ଆପଣଙ୍କ ପାଇଁ କରନ୍ତା । ମୁଁ କିନ୍ତୁ ପ୍ରକୃତରେ ଚାହେଁ ଯେ ଆପଣ ଯାଆନ୍ତୁ ଅବଶ୍ୟ ଆଜି ନୁହେଁ । ଯେବେ ଇଚ୍ଛା ଯିବେ ଏ ସମ୍ପର୍କରେ ମୁଁ କହିରଖେ, ମୁଁ କହୁଚି ବୋଲି ଯେ ଆପଣ ନିଶ୍ଚୟ ଯିବେ ତା' ନୁହେଁ । ସେକଥା ଆଦୌ ନୁହେଁ । ଆପଣ ଯଦି ଚାହାନ୍ତି ତାକୁ ସମ୍ପୂର୍ଣ୍ଣ ରୂପେ ବାଦ୍ ଦେଇପାରନ୍ତି । ଅବଶ୍ୟ ତାକୁ ସମ୍ପୂର୍ଣ୍ଣ ଭାବେ ଦୂରେଇ ଦେବା ଭଲ । ହୁଏତ ଆପଣ ନିଜର ଗୋଟେ ଯୋଜନା କରିଥିବେ ଯାହାକୁ ଟିଟୋରେଲି ହୁଏତ ପୂରା ନଷ୍ଟ କରି ଦେଇପାରେ । ସେ କ୍ଷେତ୍ରରେ ତା ସହିତ ଦେଖା କରିବା ଅଧିକ ଭଲ । କାରଣ ତା ସହିତ ଦେଖା କଲେ ନିଜ ସମ୍ମାନରେ ଆଞ୍ଚ ଆସିପାରେ । ସେ ଯାହା ହେଉ ଆପଣଙ୍କୁ ଯାହା ଭଲ ଲାଗିବ ତା' କରିବେ । ଏଇଟି ମୋର ତା ପାଖକୁ ଚିଠି, ହେଲା ତାର ଠିକଣା ।'

Digitized by srujanika@gmail.com

'କେ ଚିଠିଟି ନେଇ ପକେଟ୍‌ରେ ରଖିଲା । ସେ ପୂରା ଭାଙ୍ଗି ପଡ଼ିଲା । ଏ ଚିଠି ଯେତେ ସୁଯୋଗ ଦେଲା ତା'ଠାରୁ ଅଧିକ କ୍ଷତି କଲା । କାହିଁକି ନା ଏହା ସୂଚାଇ ଦେଲା ଯେ ଉତ୍ପାଦକ ମଧ୍ୟ ତା' କେଶ୍ ବିଷୟରେ ଜାଣେ । ସେ ଧନ୍ୟବାଦଟିଏ ବି ଉତ୍ପାଦକଙ୍କୁ ଦେଇ ପାରିଲାନି । ସେତେବେଳକୁ ସେ ପ୍ରାୟ ଯିବା ଉପରେ ।

'ମୁଁ ସେ ଲୋକସହ ଦେଖା କରିବାକୁ ଯିବି କିମ୍ବା ଯଦି ଖୁବ୍ ବ୍ୟସ୍ତ ରହେ ତେବେ ତାଙ୍କୁ ଏଠାକୁ ଆସିବା ପାଇଁ ଲେଖିବି ।' ଦ୍ୱାର ପାଖରେ କରମର୍ଦ୍ଦନ କରୁକରୁ କେ' କହିଲା ।

'ମୁଁ ଜାଣେ ତା' ଉପରେ ନିର୍ଭର କରାଯାଇ ପାରେ ବା ତା ପାଟିରୁ ଦୃଢ଼ ବାହାରିପାରେ । ତଥାପି ମୁଁ କହିବି ଟିଟୋରେଲି ପରି ଲୋକ ସହ ବ୍ୟାଙ୍କରେ ଦେଖା କରିବା ଉଚିତ ହେବ ନାହିଁ । ତା ସହ କେଶ୍ କଥା ଆଲୋଚନା କରିବା ପାଇଁ ବ୍ୟାଙ୍କ ଆଦୌ ଠିକ୍ ସ୍ଥାନ ନୁହେଁ । ତା'ଛଡ଼ା ଆପଣଙ୍କ ଚିଠି ତା'ପରି ଲୋକ ହାତରେ ପଡ଼ିବା ବି ଉଚିତ୍ ନୁହେଁ । କିନ୍ତୁ ମୁଁ ନିଶ୍ଚିତ ଯେ ଏସବୁ ବିଷୟରେ ଆପଣ ଚିନ୍ତା କରି କ'ଣ କରିବା ଉଚିତ୍ ତା' ଠିକ୍ କରିବେ ।' କେ' ମୁଣ୍ଡ ଝୁଙ୍କାଇଲା ଏବଂ ପ୍ରତୀକ୍ଷାଳୟ ଭିତର ଦେଇ ତାଙ୍କୁ ଆଉ ଟିକିଏ ଆଗଯାଏ ବଳାଇ ଦେଇ ଆସିଲା । ବାହାରର ଧୀର ସ୍ଥିର ଭାବ ସତ୍ତ୍ୱେ ସେ ଭିତରେ କିନ୍ତୁ ଖୁବ୍ ବେଶୀ ଡରି ଯାଇଥିଲା । ନିଜର ସାଧାରଣ ଜ୍ଞାନର ଅଭାବ ଯୋଗୁଁ ହିଁ ସେ ଡରି ଯାଇଥିଲା । ଟିଟୋରେଲିକୁ ଲେଖିବା ବିଷୟରେ ସୂଚନା ଦେବାର ଉଦ୍ଦେଶ୍ୟ ହେଉଛି ଖାଲି ଉତ୍ପାଦକଙ୍କୁ ଦେଖାଇବା ଯେ ସେ ତାର ସୁପାରିସକୁ ଗ୍ରହଣ କରିଛି ଆଉ କାଳ ବିଳମ୍ବ ନ କରି ସେ ଶିଳ୍ପୀ ସହ ଦେଖା କରିବ । କିନ୍ତୁ ଟିଟୋରେଲିର ସାହାଯ୍ୟ ନିହାତି ଦରକାର ବୋଲି ସେ ଯଦି ଭାବୁଥାଆନ୍ତା ତେବେ ସେ ତା ପାଖକୁ ଲେଖିବାକୁ ପଛାନ୍ତା ନାହିଁ । ତଥାପି ଏପରି ଲେଖିବା ପଛରେ କି ବିପଦ ଲୁଚି ରହିଛି ସେ ବିଷୟରେ ଉତ୍ପାଦକଙ୍କୁ ଜଣାଇ ଦେବା ଦରକାର ବୋଲି ସେ ମନେ କଲା । ତାର ବିଚାର ଶକ୍ତି କଅଣ ଏତେ ତଳକୁ ଖସି ଯାଇଛି ? ଗୋଟିଏ ସନ୍ଦେହ ପୂର୍ଣ୍ଣ ଚରିତ୍ରକୁ ବ୍ୟାଙ୍କକୁ ଡାକି ଆସିଷ୍ଟେଣ୍ଟ ମାନେଜରଙ୍କ ପାଖରେ ନିଜ କେଶ୍ ବିଷୟରେ ଉପଦେଶ ମାଗିବା ଯଦି ସମ୍ଭବ ତେବେ ଏହା କ'ଣ ସତ ନୁହେଁ ଯେ ସେ ଅନ୍ୟସବୁ ବିପଦଗୁଡ଼ିକୁ ଦେଖିପାରୁନି ବା ଜାଣିଶୁଣି ସେଗୁଡ଼ିକ ଭିତରେ ନିଜକୁ ଧରା ଦେଇଛି । ତା' ପାଖରେ ରହି ସବୁବେଳେ କେହି ତାକୁ ସତର୍କ କରି ଦେବେନି । ବର୍ତ୍ତମାନ ହିଁ ପ୍ରକୃଷ୍ଟ ସମୟ । ସେହି ବ୍ରାହ୍ମ ମୁହୂର୍ତ୍ତ ଯେତେବେଳେ କି ସେ ତାର ସମସ୍ତ ଶକ୍ତିକୁ

Digitized by srujanika@gmail.com

ଏ କେଶ୍ ପାଇଁ ଭୁଲ କରିବ । ଅଫିସ କାମ କରିବାରେ ସେ ଯେଉଁ ଅସୁବିଧାର ସମ୍ମୁଖୀନ ହେଉଛି ତା' କ'ଣ ଏ କେଶ୍ ଉପରେ ପ୍ରଭାବ ପକାଉଛି ? ଟିଗ୍ରେଣ୍ଟେଲ୍‌କୁ ବ୍ୟାଙ୍କକୁ ଆସିବା ପାଇଁ ଲେଖିବା କଥା ସେ କେମିତି ଭାବି ପାରିଲା ଏକଥା କେମିତି ନିଜେ ବୁଝିପାରିଲାନି ।

ତଥାପି ଏ ବିଷୟରେ ମୁଣ୍ଡ ଖେଳାଉଥିଲା ବେଳେ ପିଅନ ଆସି କହିଲା ଯେ ତିନିଜଣ ଭଦ୍ରଲୋକ ଅପେକ୍ଷା ଘରେ ବେଞ୍ଚ୍‌ରେ ବସିଛନ୍ତି । କେ'ଙ୍କୁ ଭେଟିବା ପାଇଁ ସେମାନେ ଅନେକ ସମୟ ହେଲା ଅପେକ୍ଷା କଲେଣି । ଯେତେବେଳେ ପିଅନ ଆସି କେ'ଙ୍କୁ ଏକଥା କହିଲା ସେମାନେ ସମସ୍ତେ ଠିଆହୋଇ ପଡିଲେ ଆଉ ପ୍ରତ୍ୟେକ କେ'ର ଦୃଷ୍ଟି ଆକର୍ଷଣ କରିବାକୁ ଚେଷ୍ଟା କଲେ । ଯଦି ବ୍ୟାଙ୍କର କର୍ମଚାରୀମାନେ ବିଚାରବନ୍ତ ନ ହୋଇ ଲୋକଙ୍କ ସମୟ ଏପରି ନଷ୍ଟ କରନ୍ତି ବୋଲି ପଡିଲେ ସେହି ଲୋକମାନେ ଏହିପରି ବିଚାରଶୂନ୍ୟ ଭାବରେ ବ୍ୟବହାର କରିବାକୁ ଭାବୁଥାଆନ୍ତି ।

'ମିଷ୍ଟର୍ କେ' ସେମାନଙ୍କ ଭିତରୁ ଜଣେ ଡାକିଲା ।

ମାତ୍ର କେ'—ତା' ଓଭରକୋଟ୍ ମଗାଇ ପଠାଇଲା ଏବଂ ପିଅନ୍ ତାକୁ ତା' କୋଟ୍ ପିନ୍ଧିବାରେ ସାହାଯ୍ୟ କରୁଥିଲା ବେଳେ ସେ ସମସ୍ତଙ୍କୁ କହିଲା—'ମୋତେ ଆପଣମାନେ କ୍ଷମା କରନ୍ତୁ । ବଡ଼ ଦୁଃଖର ସହିତ ମୁଁ କହୁଛି ଯେ ଆପଣମାନଙ୍କ ସହ ଦେଖା କରିବା ପାଇଁ ବର୍ତ୍ତମାନ ମୋର ସମୟ ନାହିଁ । ସେଥିପାଇଁ ମୁଁ କ୍ଷମା ମାଗି ନେଉଛି । ମୋତେ ବର୍ତ୍ତମାନ ଗୋଟିଏ ନିହାତି ଦରକାରୀ କାମରେ ବାହାରକୁ ଯିବାକୁ ପଡ଼ିବ । ଆପଣମାନେ ନିଜେ ଦେଖିଛନ୍ତି ଶେଷ ବ୍ୟକ୍ତିଙ୍କ ସହ ମୋର କେତେ ସମୟ ଗଲାଣି । ଆପଣମାନେ ଯଦି କାଲି କିମ୍ବା ଆଉ କେତେବେଳେ ଆସନ୍ତେ ଖୁବ୍ ଭଲ ହୁଅନ୍ତା । ନହେଲେ ଫୋନ୍‌ରେ ଏ ବିଷୟରେ କଥାବାର୍ତ୍ତା କଲେ କେମିତି ହୁଅନ୍ତା ? ନହେଲେ ଆପଣମାନେ ଆପଣଙ୍କ କାମ କ'ଣ ଅଳ୍ପରେ ଲେଖି ଦେଇଗଲେ ମୁଁ ପରେ ଟିକିନିଖି କରି ଲେଖି ଆପଣଙ୍କୁ ଜଣାଇ ଦିଅନ୍ତି । ତେବେ ଆଉ କେବେ ଆସିଲେ ନିଶ୍ଚିତ ଭାବେ ସବୁଠାରୁ ଭଲ ହୁଅନ୍ତା ।' ଏତେ ସମୟ ନଷ୍ଟ କରି ସାରିଲା ପରେ ସେ ତିନିଜଣ ଯେତେବେଳେ କେ'ର ଏକଥା ଶୁଣିଲେ ହତାଶ ହୋଇ ଖାଲି ଜଣେ ଜଣକୁ ଚାହିଁ ରହିଲେ ।

'ତା'ହେଲେ ଏଇକଥା ଠିକ୍ ହେଲା ?' ତା ଟୋପି ଆଣୁଥିବା ପିଅନ୍‌କୁ ଚାହିଁ କେ' କହିଲା । ଖୋଲାଦ୍ୱାର ଦେଇ ସେ ଦେଖି ପାରୁଥିଲା ଯେ ସେତେବେଳେ ବରଫ ଆହୁରି ଜୋର୍‌ରେ ପଡୁଥିଲା । ଫଳରେ ସେ ତାର କୋଟ୍ ବୋତାମ୍ ସବୁ ବେକ ପର୍ଯ୍ୟନ୍ତ ଲଗାଇ ଦେଲା ।

Digitized by srujanika@gmail.com

ଠିକ୍ ସେଇ ସମୟରେ ଆସିଷ୍ଟେଣ୍ଟ ମ୍ୟାନେଜର ପାଖ ଘରୁ ବାହାରି ଆସିଲେ । ଓଭର୍ କୋଟ୍ ପିନ୍ଧି ହସହସ ମୁହଁରେ ମହାକଲମାନଙ୍କ ସହ କଥା ହେଉଥିବାର କେ'କୁ ଦେଖି ସେ ପଚାରିଲେ—'ଆପଣ ବାହାରକୁ ଯାଉଛନ୍ତି କି ?'

'ହଁ' ନିଜକୁ ସଳଖି କରି ନେଇ କେ' ଉତ୍ତର ଦେଲା ।

'କାମରେ ମୋତେ ବାହାରକୁ ଯିବାକୁ ପଡ଼ିବ ।'

କିନ୍ତୁ ସେତେବେଳକୁ ଆସିଷ୍ଟେଣ୍ଟ ମ୍ୟାନେଜର ସେ ତିନିଜଣ ଲୋକଙ୍କ ଆଡ଼କୁ ବୁଲି ପଡ଼ିଥିଲେ ।

'ଆଉ ଏ ତିନିଜଣ ଭଦ୍ରଲୋକ ?' ସେ ପଚାରିଲେ ।

'ମୋର ବିଶ୍ୱାସ ସେମାନେ ବହୁତ ସମୟ ଧରି ଅପେକ୍ଷା କଲେଣି ।'

'କଅଣ କରିବାକୁ ହେବ ସେସବୁ କଥାବାର୍ତ୍ତା ହୋଇଯାଇଛି ।' କେ' କହିଲା ।

କିନ୍ତୁ ସେ ମହାକଲମାନଙ୍କୁ ସମ୍ଭାଳି ରଖିବା ସମ୍ଭବ ହେଲାନି । ସେ କେ'ର ଚାରିପଟେ ଘେରି ଯାଇ ପ୍ରତିବାଦ କରିବାକୁ ଲାଗିଲେ । ଘଣ୍ଟା ଘଣ୍ଟା ଧରି ଅପେକ୍ଷା କରି ନ ଥାଆନ୍ତେ ଯଦି ତାଙ୍କ କାମ ଖୁବ୍ ଦରକାରି ହୋଇନଥାନ୍ତା । ଦୀର୍ଘ ଆଲୋଚନା, ତାହା ପୁଣି ଗୁପ୍ତରେ କରିବାର ପ୍ରୟୋଜନ ହୋଇନଥାନ୍ତା । ଆସିଷ୍ଟେଣ୍ଟ ମ୍ୟାନେଜର ଅଳ୍ପ ସମୟ ପାଇଁ ସେମାନଙ୍କ କଥା ଶୁଣିଲେ । ସେମାନଙ୍କୁ ଶୁଣୁଥିଲା ବେଳେ ସେ କେ' ଆଡ଼କୁ ଚାହିଁ ରହିଥିଲେ । ସେତେବେଳେ କେ' ତା' ଟୋପିଧରି ଛିଡ଼ା ହୋଇଥିଲା ଆଉ ରହିରହି ଟୋପିଟିକୁ ଝାଡୁଥିଲା । ତା'ପରେ ଆସିଷ୍ଟେଣ୍ଟ ମ୍ୟାନେଜର କହିଲେ—'ମହାଶୟ, ଏସବୁର ଅତି ସରଳ ସମାଧାନଟିଏ ଅଛି । ଆପଣମାନେ ଯଦି ହେଡ୍ କ୍ଲର୍କ ବଦଳରେ ଆପଣଙ୍କ କାମ ପାଇଁ ମୋତେ କହିବେ ତେବେ ଖୁସିରେ ମୁଁ ତା' କରିବା ପାଇଁ ପ୍ରସ୍ତୁତ ଅଛି । ଆପଣଙ୍କ କାମ ସାଙ୍ଗେ ସାଙ୍ଗେ କରିବା କଥା । ଆପଣମାନଙ୍କ ପରି ଆମେ ବି ବ୍ୟବସାୟୀ ଆଉ ବ୍ୟବସାୟୀଙ୍କ ପାଖରେ ସମୟର ମୂଲ୍ୟ କେତେ ସେକଥା ଜାଣୁ । ଆପଣମାନେ କ'ଣ ଦୟାକରି ମୋ' ସାଥିରେ ଆସିବେ କି ?' ଏହା କହି ସେ ନିଜ ଅଫିସ ଘରର ଦ୍ୱାର ଖୋଲିଦେଲେ ।

ଯେଉଁ ସୁଯୋଗକୁ କେ' ବାଧ୍ୟହୋଇ ଛାଡ଼ିଦେଲା, ଆସିଷ୍ଟେଣ୍ଟ ମ୍ୟାନେଜର ତାକୁ ବଡ଼ ଚତୁରତାର ସହ ନିଜର କରିନେଲେ । କିନ୍ତୁ ତାର ଯାହା ପ୍ରୟୋଜନ

Digitized by srujanika@gmail.com

ତା ଠାରୁ ଅନେକ ବେଶୀ ଜଣଣ କେ' ଗ୍ରହଣ କରିଥିଲ ? ଏକଥା ଅସ୍ୱୀକାର କରି ହେବନାହିଁ ଯେ ଅତି କ୍ଷୀଣ ପୁଣି ଅନିଶ୍ଚିତ ଆଶାଟିଏ ଧରି ସେ ଜଣେ ଅପରିଚିତ ଶିଳ୍ପୀ ସହ ଦେଖା କରିବାକୁ ଛୁଟିଥିଲ। କାରଣ ବ୍ୟାଙ୍କ୍‌ରେ ତାର ସମ୍ମାନ ଉପରେ ଅପୂରଣୀୟ ଆଞ୍ଚ ଆସିଛି। ସେ ଯଦି ଆଉଥରେ ତାର ଓଭରକୋଟ୍‌ଟିକୁ କାଢ଼ିଦେଇ ଆସିଷ୍ଟେଣ୍ଟ ମ୍ୟାନେଜରଙ୍କୁ ଭେଟିବାପାଇଁ ସେମାନଙ୍କ ଗାଳିକୁ ଅପେକ୍ଷା କରିଥିବା ଅନ୍ୟ ଦୁଇଜଣ ମହକିଲଙ୍କ ସାଙ୍ଗରେ ଅନ୍ତତଃ ଟିକଏ କଥାବାର୍ତ୍ତା କରନ୍ତା ତେବେ ତା ପକ୍ଷରେ ହୁଏତ ଖୁବ୍ ଭଲ ହୋଇଥାନ୍ତା। ହୁଏତ କେ' ଏହିକଥା କରିଥାନ୍ତା ଯଦି ତାର ଦୃଷ୍ଟି ଆସିଷ୍ଟାଣ୍ଟ ମ୍ୟାନେଜର ଉପରେ ପଡ଼ିନଥାନ୍ତା। ଯେତେବେଳେ ସେ କେ'ର କୋଠରୀ ଭିତରେ ପଶି ତା' ଫାଇଲସବୁ ଖେଳାଇବାରେ ଲାଗିଥିଲେ ଯେମିତିକି ସେସବୁ ତାଙ୍କ ନିଜର ଫାଇଲ୍। ଖୁବ୍ ବେଶୀ ଉତ୍ତେଜିତ ହୋଇ ଦ୍ୱାର ଆଡ଼କୁ କେ' ଆଗେଇ ଗଲାବେଳେ ଆସିଷ୍ଟାଣ୍ଟ ମ୍ୟାନେଜର କହିଲେ—'ଆରେ, ଆପଣ ଏତେପର୍ଯ୍ୟନ୍ତ ଯାଇନାହାନ୍ତି ?' ସେ କେ' ଆଡ଼କୁ ମୁହଁ ବୁଲାଇଲେ। ତାଙ୍କ ମୁହଁରେ ଗଭୀର ଗାରସବୁ ବୟସ ପରିବର୍ତ୍ତେ ଯେମିତି କ୍ଷମତାର ସୂଚନା ଦେଉଥିଲା। ସେ ଅଳ୍ପ କିଛି ନକଲି ଫାଇଲ ଘାଣ୍ଟିବାରେ ଲାଗିଲେ। 'ମୁଁ ଆମ ଫର୍ମର ଗୋଟିଏ ନକଲ ଖୋଜୁଛି। ସେ ନକଲ ଆପଣଙ୍କ ଫାଇଲ୍‌ରେ ଅଛି ବୋଲି ଫାର୍ମର ଏ ଲୋକ କହୁଛି। ଆପଣ ମୋତେ ଟିକେ ଖୋଜିବାରେ ସାହାଯ୍ୟ କରିବେନି ?' କେ' ପାଦେ ଆଗେଇଗଲା। କିନ୍ତୁ ଆସିଷ୍ଟେଣ୍ଟ ମ୍ୟାନେଜର କହିଲେ—'ଧନ୍ୟବାଦ୍! ମୁଁ ପାଇଗଲି।' ଏତିକି କହି ଗୋଟିଏ ବଡ଼ ଗୋଟେ କାଗଜ ବଣ୍ଡଲ୍, ଯାହାକି କେବଳ ଫର୍ମ୍‌ର ନକଲ ନୁହେଁ ଅନ୍ୟାନ୍ୟ ଅନେକ କାଗଜପତ୍ର ତା'ଭିତରେ ଅଛି, ସବୁକୁ ଧରି ନିଜ ଅଫିସ୍ ଭିତରକୁ ପଶିଗଲେ।

'କେ' ନିଜକୁ ନିଜେ କହିଲା—'ବର୍ତ୍ତମାନ ମୁଁ ତାଙ୍କ ସମାନ ନୁହେଁ; କିନ୍ତୁ ଥରେ ମୋ' ନିଜର ଅସୁବିଧାଗୁଡ଼ିକ ସୁଧୁରିଗଲେ ଇଏ ପ୍ରଥମ ଯିଏକି ମୋତେ ଜାଣିବେ। ତାଙ୍କୁ ମୁଁ ନିଶ୍ଚୟ ପାନେ ଦେବି। ମୋ'ପରି ସିଏବି ଅସୁବିଧା ଭୋଗିବେ।'

ଏପରି ଚିନ୍ତା ତାକୁ ଟିକଏ ଶାନ୍ତି ଦେଲା। ସିଏ ଯେ ବ୍ୟବସାୟିକ କାମରେ ବାହାରକୁ ଯାଉଛି ଏହିକଥା ମ୍ୟାନେଜରଙ୍କୁ ସୁବିଧା ଦେଖି କହିଦେବାକୁ ଆଦେଶ ଦେଲା। ସିଅନ ବହୁ ସମୟ ଧରି ଅଲିନ୍ଦଦ୍ୱାର ଖୋଲି ଠିଆ ହୋଇଥାଏ। ଏହାପରେ ଖୁବ୍ ଖୁସିହୋଇ ନିଜ କେଶ୍ କାମରେ ନିଜକୁ ପୁରି ନିୟୋଜିତ କରିବା ପାଇଁ କେ' ବ୍ୟାଙ୍କ୍ ଛାଡ଼ିଲା।

Digitized by srujanika@gmail.com

(୭)

ସାଙ୍ଗେ ସାଙ୍ଗେ ସେ ଚଷଶିଲ୍ପୀର ଠିକଣାରେ ଗାଡ଼ି ଛୁଟାଇଲା । କୋର୍ଟ ଅଫିସ୍‌ର ଠିକ୍ ବିପରୀତ ଦିଗରେ ଥିବା ଗୋଟିଏ ପଦ୍ମରତଳରେ ଚଷଶିଲ୍ପୀର ଘର । ଏ ଅଞ୍ଚଳଟି ଖୁବ୍ ବେଶୀ ଦରିଦ୍ର । ଘରଗୁଡ଼ିକ ବେଶୀ ଅନ୍ଧାରୁଆ । ତରଳ ବରଫ ଉପରେ ତେଲ ଶକଟ। କାଦୁଅସବୁ ରାସ୍ତାକୁ ପଚପଚ କରିଦେଇଛି । ଭଙ୍ଗା ଲାଗିଥିବା ବିରାଟ ଘରଟିର ଯେଉଁ ପାଖରେ ଶିଲ୍ପୀଟି ରହୁଥାଏ ତହିଁରେ ଥିବା ଦୁଇଟି ବିରାଟ ଦ୍ୱାରରୁ ଗୋଟିଏ ଦ୍ୱାର ଖୋଲିଥିଲା । ଅନ୍ୟ ପାଖରେ ଭୂଇଁକୁ ଲାଗିଥିବା ପଥର କଡ଼ରେ ଗୋଟିଏ ବିରାଟ କଣା ଥିଲା । କେ' ପଶୁ ପଶୁ ଦେଖିଲା ଯେ ସେଇ କଣା ଭିତରୁ ହଠାତ୍ ହାଲଦିଆ ହାଲଦିଆ ଗରମ କଦର୍ଯ୍ୟ ତରଳ ଜିନିଷ ବୋହି ଆସିଲା ପୁଣି ସେହି କଣା ଭିତରୁ କେତୋଟି ମୂଷା ପାଖ ନାଳ ଭିତରକୁ ଦୌଡ଼ି ପଳାଇଲେ । ସିଡ଼ି ତଳେ ଗୋଟେ ଛୋଟ ଛୁଆ ମୁହଁ ତଳକୁ କରି ଖେଳୁଥିଲା । ଆଉ ଭେଁ ଭେଁ ରଡ଼ି ଛାଡ଼ୁଥିଲା । କିନ୍ତୁ ଘର ଆରପାଖେ ଟିଣଶାଳର କାନ ଫଟା ବିକଟ ଶବ୍ଦରେ ପିଲାଟିର କାନ୍ଦ କିଛି ଶୁଭୁନଥିଲା । ଟିଣଶାଳର ଦ୍ୱାର ଖୋଲା ଥିଲା । ତିନିଜଣ କମାର କିଛିଗୋଟେ ଜିନିଷ ଅର୍ଦ୍ଧ ବୃତ୍ତାକାରରେ ଛିଡ଼ାହୋଇ ତାକୁ ନିଜ ନିଜ ହାତୁଡ଼ିରେ ପିଟୁଥିଲେ । କାନ୍ଥରେ ଟଙ୍ଗା ହୋଇଥିବା ଗୋଟିଏ ବିରାଟ ଟିଣ ସ୍ଲେଟର ଦେହରୁ ମିଞ୍ଜିମିଞ୍ଜି ଆଲୁଅ ବାହାରି ଦୁଇଜଣ କମାରଙ୍କ କପାଳ ଉପରେ ପଡୁଥିଲା ଆଉ ତାଙ୍କ ମୁହଁକୁ ଉଜ୍ଜ୍ୱଳ କରୁଥିଲା । କେ' ତରତର ହୋଇ କେବଳ ଏମାନଙ୍କୁ ଥରେ ଚାହିଁଦେଲା । ଏଠାରେ ସେ ତା'ର କାମ ଖୁବ୍ ସହଜରେ ସାରିଦେବାକୁ ଚାହିଁଥିଲା । ତା'ର ଉଦ୍ଦେଶ୍ୟଥିଲା ଶିଲ୍ପୀକୁ ଭେଟି କେତୋଟି ପ୍ରଶ୍ନ ପଚାରି ବ୍ୟାଙ୍କ୍ ଫେରିଯିବ । ଏହି ଦେଖାରୁ ଯଦି କିଛି ଶୁଭ ସୂଚନା ମିଳେ ତେବେ ଇଟାଲୀୟ ବ୍ୟାଙ୍କ୍‌ରେ ତାର କାମ ଲାଭଜନକ ହେବ । ତୃତୀୟ ମହଲାରେ ପହଞ୍ଚିଲା ବେଳକୁ କେ' ତା'ପାଦକୁ ଟିକିଏ ଧୀର କରିଦେଲା । ସେତେବେଳକୁ ସେ ପ୍ରାୟ ଧଇଁସଇଁ ହୋଇଯାଇଥିଲା । ଏ ଘରର ପାହାଚ ଆଉ ମହଲାଗୁଡ଼ିକ କେମିତି ଅତି ବେଶୀ ଉଚ୍ଚ ଉଚ୍ଚ । ପୁଣି ଶିଲ୍ପୀ ଯାଇ ରହୁଥିଲେ ସବାଉପର ଛାତର ଗୋଟିଏ ଘରେ । ଏ ଘରେ ଖୋଲା ପବନର ଅଭାବ । ଲୋକ ଅଣନିଶ୍ୱାସୀ ହୋଇଯିବ । ସିଡ଼ିରେ ପବନ ଯିବାପାଇଁ ବାଟ ନାହିଁ । ପାଚେରୀ ଦ୍ୱାରା ଏହା ନିରୁଜ । ମଝିରେ ମଝିରେ ବହୁ ଉଚ୍ଚରେ ଛୋଟ ଛୋଟ ଝରକା ଯାହା ଦେଖିବାକୁ ମିଳେ । କେ' ଯେତେବେଳେ ଏଠାକୁ ଆସି ଟିକିଏ ଦମ୍ ନେଉଥାଏ ଗୁଡ଼ାଏ ଝିଅ ଗୋଟିଏ ଘରୁ ବାହାରି ହସିହସି ତା'ପାଖ ଦେଇ ସିଡ଼ି ଚଢ଼ିଗଲେ । କେ' ସେଇମାନଙ୍କ ପଛେ ପଛେ ଚାଲିଲା । ଝିଅମାନଙ୍କ ଭିତରୁ ଯେଉଁ ଝିଅଟି ହଠାତ୍ ହାମୁଡ଼ି ପଡ଼ି ପଛରେ ପଡ଼ିଯାଇଥିଲା ତାହାରି ସାଥିରେ ଯାଉଁ ଯାଉଁ କେ' ପଚାରିଲା—'ଟିଗ୍ରେଟେଲି ନାମରେ କେହି ଚଷଶିଲ୍ପୀ ଏଠାରେ ରହନ୍ତି କି ?' ସେଇ ଝିଅଟି ପ୍ରାୟ ତେର,

Digitized by srujanika@gmail.com

ଚଉଦ ବର୍ଷର । ସେ ସାମାନ୍ୟ କୁଜା । ସେ କେ'କୁ ଗୋଟିଏ ଜନ୍ତୁଣୀକୁଟ ମାତ୍ର ଜାଣିଶୁଣି ନଦେଖି ଚାହିଁଲା । ତା'ର ଯୌବନ କମ୍ରା ତା'ର ସକଳାଙ୍ଗ ଦେହ କେହ ତାକୁ ଅସମୟରେ ଖରାପ ଅବା ଚରଫସ୍ଥନା ହେବାରୁ ରକ୍ଷା କରିପାରି ନ ଥିଲେ । ଝିଅଟି ଟିକିଏ ବି ହସିଲାନି । କିନ୍ତୁ ବଡ଼ ବଡ଼ ଧୂର୍ତ୍ତ ଆଖିରେ କେ'କୁ ଚାହିଁ ରହିଲା । ତାର ବ୍ୟବହାରରୁ ଲକ୍ଷ୍ୟ କରିନଥିବାର ଛଳନା କରି କେ' ପଚାରିଲା— 'ତୁମେ ଶିଲ୍ପୀ ଟିରେଟେଲ୍ଲିକୁ ଜାଣ ?'

ଝିଅଟି ମୁଣ୍ଡ ହଲାଇଲା ଆଉ ପଚାରିଲା—'କ'ଣ ପାଇଁ ଦରକାର ?'

କେ' ଦେଖିଲା ସମସ୍ତ ଥାଉଁ ଥାଉଁ ଟିରେଟେଲି ବିଷୟରେ ଅଧିକ କିଛି ଜାଣିବାର ଏହା ସୁଯୋଗ । 'ମୋ' ନିଜ ଛବି ଆଙ୍କିବାପାଇଁ ତାଙ୍କଠାରେ ମୋର ଦର୍କାର ।' ସେ କହିଲା ।

'ତୁମ ଛବି ଆଙ୍କିବା ପାଇଁ ?' ପାଟିକୁ ପୂରା ମେଲା କରି ଝିଅଟି ବାରମ୍ବାର ଏହି କଥା କହିବାକୁ ଲାଗିଲା । ତା'ପରେ ଯେମିତି ଗୋଟିଏ ଅସମ୍ଭବ, ଆଶାତୀତ ଅବା ନିହାତି ନିର୍ବୋଧ କଥାଟିଏ କହୁଥିବା ଦୃଷ୍ଟିରେ କେ'କୁ ମୃଦୁ ଚାପୁଡ଼ାଟିଏ ମାରି ତାର ଛୋଟ ସ୍କର୍ଟଟିକୁ ଦୁଇ ହାତରେ ଟିକିଏ ଟେକି ଧରି ଅନ୍ୟ ଝିଅଙ୍କ ପଛରେ ଯେତେ ଶୀଘ୍ର ପାରେ ଧାଇଁ ଧାଇଁ ଚାଲିଗଲା । ସେତେବେଳକୁ ଅନ୍ୟ ଝିଅ-ମାନଙ୍କର ପାଟିତୁଣ୍ଡ ଦୂରରେ ମିଳେଇ ଆସୁଥିଲା । ତଥାପି ସିଡ଼ିର ପରବର୍ତ୍ତୀ ବାଙ୍କରେ କେ' ସେମାନଙ୍କୁ ଭେଟିଲା । ନିଶ୍ଚିତ ଭାବରେ ସେଇ କୁଜା ଝିଅଟି କେ' ବିଷୟରେ ସେମାନଙ୍କୁ କହିଥିଲା । ସେଥିପାଇଁ ସେମାନେ ତାକୁ ସେଇଠି ଅପେକ୍ଷା କରିଥିଲେ । ସେମାନେ ସିଡ଼ିର ଦୁଇପାଖରେ କାନ୍ଥକୁ ଆଉଜି ଠିଆ ହୋଇଥିଲେ । କେ'ର ଯିବାପାଇଁ ଯେମିତି ବାଟ ଥାଏ ସେଥିପାଇଁ ସେମାନେ ତାଙ୍କ ସ୍କର୍ଟଗୁଡ଼ିକୁ ଚାପି ଧରିଥିଲେ । ସମସ୍ତଙ୍କ ମୁହଁରେ ପିଲାକିଆ ଦୁଷ୍ଟାମିର ଛାପ । ସେମାନେ କେ'କୁ ଟିଟ୍‌କାରି ମାରୁଥିଲେ ଫଳରେ ଗୋଟିଏ କଷ୍ଟଦାୟକ ପରିବେଶ ସୃଷ୍ଟି ହେଉଥିଲା । କେ'ର ଠିକ୍ ପଛରେ ଠିଆ ହୋଇଥିବା ସିଡ଼ିର ଉପରମୁଣ୍ଡର ଝିଅମାନେ ହସି ହସି କେ' ଆଡ଼କୁ ଛିଡ଼ିଆସୁଥିଲେ । ସେମାନଙ୍କର ଅଗ୍ରଣୀ ଥିଲା ସେଇ କୁଜା ଝିଅଟି । ଯା'ହେଉ ତାହାରି ଯୋଗୁଁ କେ' ଦକ୍ଷିଣ ଦ୍ୱାର ପାଖକୁ ଯାଇପାରିଲା । ତା'ର ଉଦ୍ଦେଶ୍ୟ ଥିଲା ପ୍ରଧାନ ସିଡ଼ିର ମୁଣ୍ଡ ପର୍ଯ୍ୟନ୍ତ ଆଗେଇ ଚାଲିବା। ମାତ୍ର ସେଇ ଝିଅଟି ଡାହାଣ ଆଡ଼କୁ ଯାଇଥିବା ଆଉ ଗୋଟିଏ ସିଡ଼ି ଆଡ଼କୁ ହାତ ଦେଖେଇ ଦେଲା । ସେଇ ସିଡ଼ି ଟିରେଟେଲିର ଦ୍ୱାରକୁ ଲମ୍ବିଛି ।

ଏହି ସିଡ଼ିଟି ଖୁବ୍ ଅଣଓସାରିଆ ଆଉ ଲମ୍ବା । ଆଦୌ ବାଙ୍କ ନଥିବାରୁ ମୂଳରୁ ଶେଷଯାଏ ପୂରା ଦେଖିହୁଏ । ଏହି ଦୀର୍ଘ ସିଡ଼ିଟି ଟିରେଟେଲିର ଦ୍ୱାର

Digitized by srujanika@gmail.com

ପାଙ୍ଗରେ ସୃଣଛୁ । ସିଡ଼ିର ମୋଡଠାରୁ ପୁବ ଅଲଗା ଏକ ଦ୍ୱାରଟି ଟିକଏ ଅଧିକ ଉଜ୍ଜ୍ୱଳ କାନ୍ଥିକନା କଣେଇ କଣ ଲଗିଥିବା ଗୋଟିଏ ବଡ଼ଦ୍ୱାର ଏହା ଅଲୋକତ ହେଉଛୁ । ଦ୍ୱାରଟି ରଙ୍ଗମଗ୍ନ ହୋଇନଥିବା କାଠରେ ତଆର । ଏହା ଉପରେ ଟିଗ୍ରେଟେଲର ନାମ ତୂଳି ମୂନରେ ନାଲି ଅକ୍ଷରରେ ଲେଖା । ତା' ସାଥିରେ ଆସୁଥିବା ଝିଅମାନଙ୍କ ସାଥିରେ କେ' ସିଡ଼ିର ଅଧା ପର୍ଯ୍ୟନ୍ତ ଆସିଛୁ କ ନାହିଁ କେହି ଜଣେ ଉପରେ କବାଟ ଖୋଲିଦେଲି । ଏତେଗୁଡ଼ିଏ ପାଦଶବ୍ଦ ଶୁଣି ସେ କବାଟ ଖୋଲିଲି ଓ ଆସି କବାଟ ପାଖରେ ଠିଆ ହେଲି । କେବଳ ଘର ପୋଷାକ ଛଡ଼ା ସେ ବ୍ୟକ୍ତି ଆଉ କଛୁ ପିନ୍ଧି ନଥିଲି । ଏତେ ଲୋକକୁ ଦେଖି ସେ ଲୋକଟି କେବଳ 'ଓଃ' କହି ସାଙ୍ଗେ ସାଙ୍ଗେ ଅଦୃଶ୍ୟ ହୋଇଗଲି । କୁଜାଝିଅଟି ଖୁସିରେ ତାଳି ମାରିଲି ଏବଂ ଅନ୍ୟ ଝିଅମାନେ କେ'କୁ ତରତରରେ ଉଠିବାପାଇଁ ପଛକୁ ଘେରଗଲେ ।

ତଥାପି କେ' ଉପରକୁ ଉଠୁଥିଲି । ମାତ୍ର ହଠାତ୍ ଶିଲ୍ପୀ ତାଙ୍କ ଦ୍ୱାର ଖୋଲିଦେଲେ ଏବଂ ସମ୍ମାନରେ ନଇଁପଡ଼ି ତାକୁ ଘରଭିତରକୁ ପାଛୋଟି ନେଲେ । ତା'ପରେ ସେ ଝିଅମାନଙ୍କୁ ସେଠାରୁ ଘୁଞ୍ଚିଯିବାପାଇଁ କହିଲି । ଘରଭିତରକୁ ଯିବା ପାଇଁ ସେ ଝିଅମାନେ ଯେତେ କାକୁତି ମିନତି ହେଲେ, ଯେତେ ବାଧ ବାଧକତା କଲେ, ଏମିତକ ଜବରଦସ୍ତ ପଶିବା ପାଇଁ ବଳକ୍ରାର କଲେ, ଶିଲ୍ପୀ କଛୁ ଶୁଣିଲାନ । ସେମାନଙ୍କ ଭିତରୁ ଜଣକୁ ହେଲେ ସେ ଘରଭିତରକୁ ପଶିବାକୁ ଦେଲି ନାହିଁ । ସେଇ କୁଜା ଝିଅଟି କନ୍ତୁ ଶିଲ୍ପୀର ପ୍ରସାରିତ ହାତ ତଳଦେଇ ଚପ୍ କରି ଗଳି ଯିବାକୁ ସମର୍ଥ ହୋଇଥିଲି । କନ୍ତୁ ଶିଲ୍ପୀ ତା' ପଛେ ପଛେ ଧାଇଁଯାଇ ତା' ସ୍କାର୍ଟ୍‌କୁ ଧରି ନିଜ ଘୂରପଟେ ଥରେ ବୁଲେଇ ଦେଇ ଅନ୍ୟ ସବୁଝିଅଙ୍କ ସାଙ୍ଗରେ ତାକୁ ଦ୍ୱାର ଆଗରେ ବସାଇଦେଲା । ଯଦିଓ ଶିଲ୍ପୀ ତା'ର ସ୍ଥାନ ଛାଡ଼ି ଘୁଞ୍ଚିଯାଇ ଥିଲି ତଥାପି ଅନ୍ୟ ଝିଅମାନେ ଦ୍ୱାରବନ୍ଧ ଡେଇଁ ଘର ଭିତରକୁ ପଶିବାକୁ ସାହସ କଲେନାହିଁ । ଏସବୁ କାହିଁକ ହେଉଛୁ କେ' ବୁଝି ପାରୁନଥିଲି । କାହିଁକନା ଶିଲ୍ପୀ ସହ ସେ ଝିଅମାନଙ୍କ ସମ୍ପର୍କ ବେଶ୍ ବନ୍ଧୁତ୍ୱପୂର୍ଣ୍ଣ ଥିଲି । ଦ୍ୱାର ବାହାରେ ସେ ଝିଅ-ଗୁଡ଼ିକ ଜଣକ ପରେ ଜଣେ ସେମାନଙ୍କ ବେକ ଲମ୍ବାଇ ଦେଇଥିଲେ ଆଉ ଶିଲ୍ପୀ ପ୍ରତି ଅନେକ ପ୍ରକାର ମଜା ମଜା ଟିଟ୍‌କାରି ମାରୁଥିଲେ ।

କେ' ଏସବୁ କଛୁ ବୁଝିପାରୁନଥିଲି । ସେ କୁଜା ଝିଅଟିକୁ ଘରୁ ବାହାର କରି ଦେଲାବେଳେ ମଧ୍ୟ ଶିଲ୍ପୀ ଖୁବ୍ ହସୁଥିଲେ । ଏହାପରେ ସେ ଦ୍ୱାର ବନ୍ଦକରି ଦେଲି । ଆଉ ଥରେ ମୁଣ୍ଡ ନୁଆଇଁ କେ'କୁ ସ୍ୱାଗତ କଲି ଏବଂ ନିଜ ହାତକୁ ତା'

Digitized by srujanika@gmail.com

ଆଡ଼କୁ ଲମ୍ବାଇ ଦେଇ ନଜର ପଣତସ୍ବ ଦେବାକୁ ଯାଇ କହିଲି—'ମୁଁ ଆଙ୍କା ଚଳଣିଲୀ ଟିଗେଟେଲ ।' ଯେଉଁ ଦ୍ଵାର ପଛପଟେ ଝିଅମାନେ ଫୁସୁର୍‌ଫାସର୍ ହେଉଥିଲେ ସେ ଆଡ଼କୁ ଆଙ୍ଗୁଳି ଦେଖାଇ କେ' କହିଲା—

'ଜଣାପଡ଼ୁଛି ଆପଣ ଏଠାରେ ସମସ୍ତଙ୍କର ଖୁବ୍ ପ୍ରିୟ ।'

'ଓଃ ସେଇ ବଦମାସଗୁଡ଼ାକ' ଏତକ କହି ଗିଲି ନିଜ ଗୃହ ପୋଷାକର ଗୋଟିଏ ବୋତାମ ବେକ ପାଖରେ ଲଗାଇବାକୁ ଚେଷ୍ଟା କରି ଅସଫଳ ହେଲା । ତା' ପାଦ ଖାଲିଥିଲା ଏବଂ ଗୃହ ପୋଷାକ ଛଡ଼ା ସେ କେବଳ ଗୋଟେ ହଳଦିଆ ରଙ୍ଗର ଢିଲା ଲିନେନ୍ ପାଇଜାମା ପିନ୍ଧିଥିଲା । ଅଣ୍ଟାରେ ଗୋଟିଏ ବେଲ୍‌ଟ ବନ୍ଧା ହୋଇଥିଲା ଆଉ ଗୋଡ଼ ପାଖରେ ଢିଲା ପାଇଜାମା ଏପାଖ ସେପାଖ ଢ଼ଳ ଢ଼ଳ ହେଉଥିଲା ।

ସେ କହି ଚାଲିଲା—'ସେ ଦୁଷ୍ଟ ଝିଅଗୁଡ଼ାକ ପ୍ରକୃତରେ ବିରକ୍ତିକର' ସେତେବେଳକୁ ଉପର ବୋତାମଟି ଖସିଯିବାରୁ ସେ ଆଉ ବୋତାମ ସହ ଅଯଥା ବ୍ୟସ୍ତ ନହୋଇ ଚୌକିଟିଏ ଆଣି ପକାଇଦେଲା ଆଉ କେ'କୁ ବସିବାକୁ କହିଲା— 'ଯେତେ ସବୁ ଝିଅ ଏଠାରେ ଆପଣ ଦେଖିଲେ ସେ ସମସ୍ତଙ୍କର ଛବି ମୁଁ ଆଙ୍କି-ନାହିଁ । ସେମାନଙ୍କ ଭିତରୁ ମାତ୍ର ଜଣଙ୍କର ଛବି ମୁଁ ଆଙ୍କିଛି ଏବଂ ସେହି ଛବି ଅଙ୍କିବା ଦିନଠୁ ସେମାନେ ସମସ୍ତେ ମୋତେ ହଇରାଣ କରୁଛନ୍ତି । ମୁଁ ଏଇଠି ଏକୁଟିଆ ଥିଲାବେଳେ ସେମାନଙ୍କୁ ଗୁଡ଼ଲେ ଯାଇ ସେମାନେ ଭିତରକୁ ଆସନ୍ତି । ମାତ୍ର କୁଆଡ଼େ କେତେବେଳେ ମୁଁ ଚାଲିଗଲେ ବି ସେମାନେ କେବେ ଗୁଡ଼ି ଯାଆନ୍ତି ନାହିଁ । ସେମାନଙ୍କ ଭିତରୁ ଜଣେହେଲେ ଏଠାରେ ରହିଥାଏ । ଏ ଘରର ଚାବିପାଇଁ ଅଲଗା ଚାବିଟିଏ ବି ସେମାନେ ଗଢ଼ିଛନ୍ତି ଆଉ ନିଜ ନିଜ ପାଖରେ ପାଳିକରି ରଖିଥାନ୍ତି । ଏହା କେତେ ବିରକ୍ତିକର ଆପଣ କଳ୍ପନା ବି କରିପାରିବେ ନାହିଁ । ଗୋଟିଏ ଉଦାହରଣ ଦେଉଛି । ଯଦି ମୁଁ ଛବି ଆଙ୍କିବା ପାଇଁ କୌଣସି ସ୍ତ୍ରୀ ଲୋକଙ୍କୁ ଘରକୁ ଆଣେ ଆଉ ନିଜ ଚାବି କାଠିରେ ଘର ଖୋଲି ପଶେ ମୁଁ ଦେଖେ ଯେ ସେ କୁଜା ଝିଅଟି ଘର ଭିତରେ ସେଇ ଟେବୁଲ ପାଖରେ ମୋ' ତୂଳିରେ ତା' ଓଠ ରଙ୍ଗାଉଛି । ଆଉ ତାର ଛୋଟ ଭଉଣୀମାନେ, ଯାହାଙ୍କୁ ଜଗିବା ଏ ଝିଅର କାମ, ସେମାନେ ସମସ୍ତେ ଏ ଘର ଭିତରେ ଏଣେ ତେଣେ ଧାଇଁ ଘରର ସବୁ ଏପାଖ ସେପାଖ କରି ଅସ୍ତବ୍ୟସ୍ତ କରି ଦେଉଛନ୍ତି । ଏସବୁ କାଲି ରାତିରେ ବି ହୋଇଛି । କାଲି ରାତିରେ ମୁଁ ବହୁତ ଡେରିରେ ଫେରିଲି । ମୋତେ କ୍ଷମା କରିବେ, ସେଇଥି ପାଇଁ ବର୍ତ୍ତମାନ ମୁଁ ଏପରି ଅପ୍ରସ୍ତୁତ ଅବସ୍ଥାରେ ରହିଛି ।

Digitized by srujanika@gmail.com

ମୋ କୋଠରୀ ମଧ୍ୟ ସେଇଥିପାଇଁ ଏମିତି ଅସଜଡ଼ା ହୋଇପଡ଼ିଛି । ହଁ କଅଣ କହୁଥିଲି—ମୁଁ କାଲି ରାତିରେ ବହୁତ ଡେରିରେ ଫେରିବା ଯାଙ୍ଗେ ଯାଙ୍ଗେ ସିଧା ବିଛଣା ଉପରକୁ ଚଢ଼ିଗଲି କିନ୍ତୁ ମୋ' ଗୋଡ଼କୁ କିଏ ଟାଣି ଧରିଲା । ମୁଁ ବିଛଣା ତଳକୁ ଚାହିଁ ଏହି ବଦମାସଙ୍କ ଭିତରୁ ଗୋଟାକୁ ବାହାର କଲି । ସେମାନେ କାହିଁକି ଯେ ମୋତେ ଏମିତି ହଇରାଣ କରନ୍ତି ମୁଁ ଜାଣେ ନାହିଁ । ଆପଣତ ନିଶ୍ଚୟ ଦେଖିଥିବେ ମୁଁ ସେମାନଙ୍କୁ କେବେ ମୁହଁ ଦିଏ ନାହିଁ । ଅବଶ୍ୟ ଏମାନେ ମୋ' କାମରେ ବହୁତ ବାଧା ସୃଷ୍ଟି କରନ୍ତି । ଏଠାରେ ଷ୍ଟୁଡିଓ ପାଇଁ ମାଗଣାରେ ଘରଟିଏ ପାଇନଥିଲେ କେବେଠୁ ମୁଁ ଏ ଜାଗା ଛାଡ଼ି ଗ୍ଲଲିଯାଆନ୍ତିଣି ।

ଠିକ୍ ଏତିକି ବେଳେ ଗୋଟିଏ ପିଲାଳିଆ ସ୍ୱର ଖୁସିରେ ପାଟି କରି ଉଠିଲା – 'ଟିବ୍ରେଟେଲ । ଆମେ ବର୍ତ୍ତମାନ ଭିତରକୁ ଆସିପାରିବା ?'

'ନା' ଶିଳ୍ପୀ କହିଲା ।

'ମୁଁ ବି ଯାଇ ପାରିବିନି ?' ସେହି ସ୍ୱର ଆଉଥରେ ପଚାରିଲା ।

'ନା, ତୁମେ ନୁହେଁ ।' ଏତିକି କହି ଶିଳ୍ପୀ ଦ୍ୱାର ପାଖକୁ ଯାଇ କବାଟ ବନ୍ଦ କରି ଦେଲା ।

ଇତି ମଧ୍ୟରେ କେ' ପୁରାପୁରି ଘରଟିକୁ ଦେଖୁଥିଲା । ଏହି ଛୋଟ କଦର୍ଯ୍ୟ ଘରଟିକୁ ଜଣେ ଯେ ଷ୍ଟୁଡ଼ିଓ କରିପାରିବ ଏକଥା ତା' ମୁଣ୍ଡକୁ ଜୁଟୁ ନଥିଲା । ଘର ଭିତରେ ଯେ କୌଣସି ଦିଗରେ ଜଣେ ଖୁବ୍ ବେଶୀରେ କେବଳ ଦୁଇପାଦ ଯାଇ ପାରିବ । ଯାସ୍ତ କୋଠରୀ, ତାର ଚଟାଣ, କାନ୍ଥ ଛାତ ସବୁ କେବଳ ଗୋଟିଏ କାଠପଟାର ବାକ୍ସ ଯେମିତି । ଯାହାର ମଝିରେ ମଝିରେ ଖାଲି ଫାଟ । କେ'ର ସାମ୍ନାରେ କାନ୍ଥକୁ ଲାଗି ଗୋଟିଏ ବିଛଣା । ତା' ଉପରେ ପଡ଼ିଛି କେତେ ପ୍ରକାରର ଜିନିଷ । ଘର ମଝିରେ ଗୋଟିଏ ଷ୍ଟାଣ୍ଡରେ ଲାଗିଛି ଛବି ଆଙ୍କିବା ପାଇଁ ଗୋଟିଏ କ୍ୟାନ୍‌ଭାସ୍ । ସେ କ୍ୟାନ୍‌ଭାସଟି ଗୋଟିଏ ସାର୍ଟ ଦ୍ୱାରା ଢଙ୍କା ହୋଇଛି ଯାହାର ହାତଗୁଡ଼ିକ ଚଟାଣ ଉପରେ ଝୁଲୁଛି । କେ'ର ପଛରେ ଥିବା ଝରକା ଦେଇ ଲୁହୁଡ଼ି ବେଳେ ପାଖଘରର ବରଫ ଢଙ୍କା ଛାତ ବ୍ୟତୀତ ଆଉ ବେଶୀ କିଛି ଦିଶେ ନାହିଁ ।

କୋଳପରେ ଗ୍ରାବି ଦେବାରୁ କେ'ର ହଠାତ୍ ମନେ ପଡ଼ିଗଲା ଯେ ସେ ଏଠାରେ ବେଶୀ ସମୟ ରହିପାରିବ ନାହିଁ । ଏଇ ଭିତରେ ନିଜ ପକେଟ୍‌ରୁ ଉତ୍ପାଦକର ଚିଠିଟି କାଢ଼ି ଚିତ୍ରକରକୁ ଦେଲା ଏବଂ କହିଲା—'ଆପଣଙ୍କର ଏଇ ପରିଚିତ ଭଦ୍ରଲୋକଙ୍କଠାରୁ ଆପଣଙ୍କ ବିଷୟ ଜାଣିଲି ଏବଂ ତାଙ୍କର କଥାରେ

Digitized by srujanika@gmail.com

ଏଠାକୁ ଆସିଛୁ ।' ଖୁବ୍ ତରତରରେ ଚନ୍ଦନର ଚଠିଟିକୁ ପଢ଼ିଗଲା ଆଉ ବିଛଣା ଉପରକୁ ଘୁଞ୍ଚିଦେଲା । ତା ତାନରେ ଚଳୁଥିବା ଦାଶରଥି ଚନ୍ଦନର ଟିଗ୍ରେଟେଲର କଥା, ତା ସହ ତାଙ୍କ ପରିଚୟର କଥା ସବୁ ଉତ୍ପାଦକ କହୁ ନଥାନ୍ତେ କମ୍ବା ଏସବୁ ଉପରେ ଏତେ ଗୁରୁତ୍ୱ ଦେଇ ନଥାନ୍ତେ ତେବେ ଟିଗ୍ରେଟେଲର ବ୍ୟବହାର ଦେଖି ଜଣେ ଭାବନ୍ତା ଯେ ସେ ଉତ୍ପାଦକଙ୍କୁ ଆଦୌ ଚହ୍ନେନାହିଁ । ଅନ୍ତତଃ ମନେ ପକାଇ ପାରୁନାହିଁ । ଏ ପ୍ରସଙ୍ଗରେ ଚନ୍ଦନର ପଗ୍ଭରିଲା ।

'ଆପଣ ଚନ୍ଦ କିଣିବାକୁ ଆସିଛନ୍ତି ନା ନିଜ ଛବି ଅଙ୍କାଇବା ପାଇଁ ଆସିଛନ୍ତି ।'

ଆଶ୍ଚର୍ଯ୍ୟ ହୋଇ କେ' ତା ଆଡ଼କୁ ଗ୍ଭହିଁ ରହିଲା । ସେ ଚଠିରେ ତା'ହେଲେ କଅଣ ଲେଖା ହୋଇଛି ? ସେ ‧ଭାବିଥିଲା ଯେ ଉତ୍ପାଦକ ସେ ଚଠିରେ ଲେଖି-ଥିବ ଯେ ତା ମକଦ୍ଦମା ବିଷୟରେ ବୁଝିବା ପାଇଁ ସେ ଆସିଛି । କେ' ଭାବିଲା କିଛି ନବୁଝି ନଶୁଝି ସେ ଖୁବ୍ ଶୀଘ୍ର ଟିଗ୍ରେଟେଲ ପାଖକୁ ଗ୍ଭଲିଆସିଛି । ତଥାପି ତା ପ୍ରଶ୍ନର କିଛି ଗୋଟେ ଯୁକ୍ତିଯୁକ୍ତ ଉତ୍ତର ଦେବ ବୋଲି ଭାବି କାଠର ଫ୍ରେମ ଆଡ଼କୁ ଗ୍ଭହିଁ କେ' କହିଲା—'ବର୍ତ୍ତମାନ କଅଣ ଆପଣ ଗୋଟେ ଛବି ଅଙ୍କିବାରେ ବ୍ୟସ୍ତ ଅଛନ୍ତି ? କାଠ ଫ୍ରେମ୍ ଉପରୁ ଝୁଲୁଥିବା ସାର୍ଟଟିକୁ କାଢ଼ି ଚଠି ପରେ ପରେ ସେଟାକୁ ବି ଶିଳ୍ପୀ ସେ ବିଛଣା ଉପରକୁ ଘୁଞ୍ଚିଦେଲା ଆଉ କହିଲା—'ହଁ' ।

'ଏହା ଜଣଙ୍କର ପ୍ରତିଛବି । ସୁନ୍ଦର କଳାପୂର୍ଣ୍ଣ । କିନ୍ତୁ ଏବେବି ପୂରା ସରିନି ।'

କେ'ର ଭାଗ୍ୟ ଭଲ । କଚେରୀ କଥା ପକାଇବା ପାଇଁ ତାକୁ ଗୋଟେ ସୁଯୋଗ ମିଳିଗଲା । ଛବିଟିକୁ ଦେଖି ତା' ମୁଣ୍ଡ ଭିତରକୁ ଯେମିତି ଏକଥା ଜୁଟିଗଲା କାରଣ ସେ ଛବିଟି ନିଶ୍ଚିତ ଭାବେ ଜଣେ ବିଗ୍ଭରପତିଙ୍କର । ପୁଣି ଓକିଲଙ୍କ ବସାରେ ଝୁଲୁଥିବା ଛବିସହ ଏହାର ଅପୂର୍ବ ମେଳ । ପ୍ରକୃତରେ ଏ ଜଣେ ଅଲଗା ବିଗ୍ଭରପତି । ବେଶ୍ ମୋଟାସୋଟା ପୁଣି ଚିବୁକ ପର୍ଯ୍ୟନ୍ତ ଲମ୍ବି ଆସିଛି ବହଳ କଳାଦାଢ଼ି । ଆଉ ଛବିଟି ତୈଳଚିତ୍ର ଥିଲା ମାତ୍ର ଏ ଛବିଟି ରଙ୍ଗୀନ ପେନ୍-ସିଲରେ ହୋଇଥିବାରୁ ବେଶ୍ ହାଲୁକା ଏବଂ ଅସ୍ପଷ୍ଟ । ତଥାପି ଅନ୍ୟସବୁ ଛବି ମୁହଁ ଏହାର ସାମ୍ୟ ବାରିହୋଇ ପଡ଼େ । ଏଠି ମଧ୍ୟ ବିଗ୍ଭରପତି ଯେମିତି ତାଙ୍କ ଉଚ୍ଚାସନରୁ ବିପଦଜନକ ଭାବେ ଉଠିବାକୁ ଚେଷ୍ଟା କରୁଛନ୍ତି ଏବଂ ଦୃଢ଼ ଭାବରେ ଚୌକିର ହାତକୁ ଧରିଛନ୍ତି । 'ଇଏ ନିଶ୍ଚୟ ଜଣେ ବିଗ୍ଭରପତି' କେ'ର କହି ଦେବାକୁ ଇଚ୍ଛା ହେଉଥିଲା ମାତ୍ର କିଛି ସମୟ ପାଇଁ ନିଜକୁ ସମ୍ଭାଳି ନେଇ ଛବିଟିକୁ

Digitized by srujanika@gmail.com

ଅଧିକ ନିରୀକ୍ଷଣ କରିବା ବାହାନାରେ ସେ ଆଡ଼କୁ ଅନାଇଲା । ଛବିର ଠିକ୍ ମଝିରେ ସେଇ ବିରାଟ ଚୌକିର ପଛପଟୁ ଆଉ ଗୋଟିଏ ବିରାଟ ଲୋକର ଆକୃତି ଗଢି ଉଠିଛି । ତାକୁ କିନ୍ତୁ କେ’ ଚିହ୍ନି ପାରିଲାନି । ତେଣୁ ସେ ତାହାର ଛବି ବୋଲି କେ’ ଚନ୍ଦ୍ରକରଙ୍କୁ ପଚାରିଲା । ଏହାକୁ ଆଦୁରି ଆଙ୍କିବାକୁ ପଡ଼ିବ ଏତିକି କହି ଚନ୍ଦ୍ରକର ଟେବୁଲ ଉପରୁ ଗୋଟିଏ ରଙ୍ଗୀନ ପେନ୍‌ସିଲ୍ ଉଠାଇ ଦେଇ ଛବିଟିର ବାହାର ଆକୃତିକୁ ଆଙ୍କିବାରେ ଲାଗିଲା ସିନା କିନ୍ତୁ ଚିହ୍ନି ପାରିବା ଭଳି ଅଧିକ କିଛି କଲା ନାହିଁ ।

‘ଏ ହେଉଛନ୍ତି ଜଣେ ବିଚାରପତି ।’ ଶେଷରେ ଚନ୍ଦ୍ରକର କହିଲା ।

‘ମୁଁ ବର୍ତ୍ତମାନ ଚିହ୍ନିପାରୁଛି ।’ କେ’ କହିଲା ।

‘ଆଖିରେ ପଟି ବନ୍ଧା ଆଉ ଏଠାରେ ତରାଜୁର ଛବି । ଛବିଟିର ପାଦରେ ସେଗୁଡ଼ିକ କ’ଣ ତେଣା ନୁହେଁ ? ଛବିଟି କ’ଣ ଉଡ଼ୁନାହିଁ ?’

‘ହଁ’ ଚନ୍ଦ୍ରକର କହିଲା । ଏହିପରି ଆଙ୍କିବାକୁ ତ ମୋତେ କୁହାହୋଇଛି । ପ୍ରକୃତରେ ଏ ଛବିଟିରେ ଏହା ନ୍ୟାୟ ଏବଂ ବିଜୟର ଦେବୀ ।’

କେ’ ହସିହସି କହିଲା—‘ନିଶ୍ଚିତ ଭାବେ ଗୋଟିଏ ଭଲ ମିଶ୍ରଣ ନୁହେଁ । ନ୍ୟାୟ ଦେବୀ ନିଶ୍ଚିତ ଭାବେ ସ୍ଥିର, ନିଶ୍ଚଳ ହେବା ଉଚିତ । ତା’ ନହେଲେ ସେ ତରାଜୁ ଦୋହଲି ଯିବ ଆଉ ଠିକ୍ ବିଚାର ମିଳିବା ଅସମ୍ଭବ ହୋଇଯିବ ।’

‘ମୋତେ ମୋର ଖରିଦ୍‌ଦାରର ଆଦେଶ ମାନିବାକୁ ପଡ଼ିବ ।’ ଚନ୍ଦ୍ରକର କହିଲା ।

‘ଅବଶ୍ୟ’ କେ’ କହିଲା । ତା’ ନିଜ ମତାମତ ଦ୍ୱାରା ଅଧିକ ସମାଲୋଚନା କରିବାକୁ ଚାହୁଁ ନଥିଲା ।

‘ଉଚ୍ଚାସନରେ ଯେମିତି ସେ ଲୋକଟି ଠିଆ ହୋଇଛି । ସେଇମିତି ଆପଣ ଏ ଆକୃତିକୁ ଆଙ୍କିଛନ୍ତି ।’

‘ନା’, ଚନ୍ଦ୍ରକର କହିଲା । ‘ମୁଁ ଏ ଲୋକଙ୍କୁ ଦେଖି ନାହିଁ କିମ୍ବା ସେ ଉଚ୍ଚ ଆସନକୁ ଦେଖିନାହିଁ । ଏହା ସବୁ ମୋର କଳ୍ପନା । କିନ୍ତୁ କ’ଣ ଆଙ୍କିବାକୁ ହେବ ମୋତେ କୁହାଯାଇଥିଲା ଆଉ ମୁଁ ତାକୁ ଆଙ୍କିଛି ।’

Digitized by srujanika@gmail.com

'ଆପଣ କ'ଣ କହୁଛନ୍ତି ?' ଯେମିତି କିଛି ବୁଝିପାରିନି ଭାବି ଛଳନା କରି କେ' ପଚାରିଲା । ଏହାତ ନ୍ୟାୟାସନରେ ଉପବେଶିତ ଜଣେ ନ୍ୟାୟାଧୀଶଙ୍କ ଛବି ।

'ନିଶ୍ଚୟ, କିନ୍ତୁ ଏହା କେବେ ଜଣେ ବିଚାରପତିର ନୁହେଁ । ଆଉ ସେ କେବେ ତା' ଜୀବନରେ ଆସନରେ ବସିନାହିଁ ।' ଚଣକର କହିଲା ।

'ତଥାପି ଏମିତି ଗମ୍ଭୀର ଭଙ୍ଗିରେ ସେ ନିଜକୁ ଆଙ୍କିବାକୁ ଦେଇଛନ୍ତି ? ସେ ଏଠି ବସିଛନ୍ତି ଯେମିତି ପ୍ରକୃତରେ ସେ ବିଚାରାଳୟର ମୁଖ୍ୟ ସଭାପତି ।'

'ହଁ, ଏମାନେ ଖୁବ ଗର୍ବୀ ଏବଂ ଦାମ୍ଭିକ ।' ଚଣକର କହିଲା ।

'କିନ୍ତୁ ତାଙ୍କର ଉପର ହାକମମାନେ ତାଙ୍କୁ ଏମିତି ଆଙ୍କିବା ପାଇଁ ଅନୁମତି ଦେଇଛନ୍ତି । ସେମାନଙ୍କ ଛବି କେମିତି ଅଙ୍କା ହେବ ସେ ବିଷୟରେ ଉପରୁ ନିର୍ଦ୍ଦେଶ ଆସେ । ଏ ଛବିରୁ ସେମାନଙ୍କ ପୋଷାକ ଆଉ ଆସନ ବିଷୟରେ ଫୁଙ୍କାନୁଫୁଙ୍କ ବିଚାର କରିପାରିବେ ନାହିଁ । କାହିଁକିନା ରଙ୍ଗୀନ୍ ପେନ୍‌ସିଲ୍ ଏପରି ଛବି ଆଙ୍କିବାପାଇଁ ଉପଯୁକ୍ତ ନୁହେଁ ।'

'ନିଶ୍ଚୟ, ନିଶ୍ଚୟ ।' ଆପଣ ଯେ ରଙ୍ଗୀନ୍ ପେନ୍‌ସିଲ୍ ବ୍ୟବହାର କରୁଛନ୍ତି ଏହା ପ୍ରକୃତରେ ଆଶ୍ଚର୍ଯ୍ୟଜନକ ।' କେ' କହିଲା ।

'ମୋ ଗରାଖ ଏପରି ଚାହିଁଲେ । ସେ ଏ ଛବିଟି ଜଣେ ଭଦ୍ରମହିଳାଙ୍କ ପାଇଁ କରାଇଛନ୍ତି ।' ଚଣକର କହିଲେ ।

ଛବିଟି ଯେମିତି ଚଣକରର ଆବେଗକୁ ସ୍ପର୍ଶକଲା । ସେ ଅଧିକ ଆଗ୍ରହରେ ନିଜ ସାର୍ଟର ହାତକୁ ମୋଡ଼ି ଦେଇ ଗୁଡ଼ାଏ ରଙ୍ଗୀନ୍ ପେନ୍‌ସିଲ୍ ଧରି ଆଗେଇ ଗଲା । କେ' ଦେଖୁଥାଏ । ପେନ୍‌ସିଲ୍‌ର ରଙ୍ଗୀନ୍ ସ୍ପର୍ଶରେ କେମିତି ଧୀରେ ଧୀରେ ଏକ ନାଲିରଙ୍ଗର ଆଭା ବିଚାରପତିଙ୍କ ମୁଣ୍ଡକୁ ଘେରିଗଲା । ଆଉ ସେହି ଆଭା ଧୀରେ ଧୀରେ ଦୀର୍ଘ ଆଲୋକ ରେଖାରେ ବିଚ୍ଛୁରିତ ହୋଇ ଛବିର ଧାରରେ କ୍ଷୀଣ ହୋଇଗଲା । ଛାଇର ଏହି ଖେଳ ଧୀରେ ଧୀରେ ବିଚାରପତିଙ୍କ ମଥା ଚାରି-ପଟେ ସମ୍ମାନର ପ୍ରତୀକ ହୋଇ ବେଢ଼ି ଯାଇଥିଲା । ମାତ୍ର ନ୍ୟାୟର ପ୍ରତିମୂର୍ତ୍ତି ଉଜ୍ଜ୍ୱଳ ଦିଶୁଥିଲେ, ବାକି ହେଉନଥିଲେ କେବଳ ଗୋଟିଏ ଛାଇର ସ୍ପର୍ଶଯୋଗୁ । ଏହି ଉଜ୍ଜ୍ୱଳତା ସେ ଛବିଟିକୁ ଆକର୍ଷଣୀୟ କରି ଦେଉଥିଲା । ବର୍ତ୍ତମାନ ଏହା ଆଉ ନ୍ୟାୟର ଦେବୀ ଅବା ଏପରିକି ବିଜୟର ଦେବୀ ବୋଲି ସୂଚନା ଦେଉଥିଲା । ତା' ବର୍ତ୍ତମାନ ଦିଶୁଥିଲା ଯେମିତିକି ଶିକାରର ଦେବୀ ।

Digitized by srujanika@gmail.com

ନିଜ ଦର୍ପରେ ଚେଙ୍ଗିସ୍‌ଖାନ୍ ଚିତ୍ରକରର କାର୍ଯ୍ୟକଳାପ କେ'କୁ ତା' ଇଚ୍ଛା ବିରୁଦ୍ଧରେ ବାନ୍ଧିରଖିଥିଲା । ଏବଂ ଶେଷରେ ବିନା କାରଣରେ ଏମିତିକା ଯେଉଁଥିପାଇଁ ଆସିଥିଲା ସେ ବିଷୟରେ କିଛି ନକହି, ସେଠାରେ ଏତେ ସମୟ ନଷ୍ଟ କରିଦେଇଥିବାରୁ ନିଜକୁ ସେ ଧିକ୍କାର କଲା ।

'ଏହି ବିଚାରପତିଙ୍କ ନାମ କ'ଣ ? ହଠାତ୍ କେ' ପଚାରିଲା ।

'କହିବାକୁ ମୋର ଆଦେଶ ନାହିଁ ।' ଛବିଟି ଉପରେ ନଇଁପଡ଼ି ଏବଂ ଜାଣିଶୁଣି କେମିତି ଦାମ୍ଭିକ ଭାବରେ କେ'କୁ ଅବହେଳା କରି ଚିତ୍ରକର କହିଲା । ଅଥଚ ପ୍ରଥମେ ତାକୁ ସେ କେତେ ସ୍ୱାଗତ କରିନଥିଲା ! ଏପରି ବ୍ୟବହାରକୁ କେ' ଖିଆଲ୍ ବୋଲି ଭାବିଲା ଆଉ ତା'ର ସମୟ ନଷ୍ଟ ହେଉଛି ଦେଖି ବିରକ୍ତ ହେଲା ।

'ଆପଣ ବିଚାରାଳୟର ବିଶ୍ୱାସଭାଜନ ବୋଲି ଗ୍ରହଣ କରିବେ କି ?' କେ' ପଚାରିଲା ।

ଚିତ୍ରକର ସାଙ୍ଗେ ସାଙ୍ଗେ ତାର ରଙ୍ଗୀନ ପେନ୍‌ସିଲ ରଖିଦେଲା । ହାତ ଘଷି ଆଉ ଅଳ୍ପ ହସି କେ' ଆଡ଼କୁ ଚାହିଁଲା ।

'ସତକଥା କ'ଣ କୁହନ୍ତୁ । ଆପଣ ମୋ ପାଖରୁ କେତେକ ବିଷୟରେ କିଛି ଜାଣିବାକୁ ଚାହାନ୍ତି ? ଆପଣଙ୍କ ବିଷୟରେ ସୁପାରିସ୍ କରିଥିବା ଚିଠିରୁ ଅନ୍ତତଃ ଏହା ଜଣାପଡ଼େ । ଆପଣ କେବଳ ମୋ ମନ ଜାଣିବାପାଇଁ ମୋ ଛବି ବିଷୟରେ କହୁଛନ୍ତି ଏକଥା କ'ଣ ସତ ନୁହେଁ ? ତଥାପି ତାକୁ ମୁଁ ଖରାପ ଭାବିନି । ଆପଣ କେବେ ଜାଣିପାରିବେନି ଯେ ମୋ ପାଖରେ ଏସବୁ ଚଳିବନି । ଦୟାକରି ଦୁଃଖ ପ୍ରକାଶ କରନ୍ତୁ ନାହିଁ ।' କେ' ଦୁଃଖପ୍ରକାଶ କରିବାର ଉପକ୍ରମ କରୁଥିଲା ବେଳେ ଚିତ୍ରକର ହଠାତ୍ ଏତିକି କହିଲା ଏବଂ ପରେ ପରେ ପୁଣି କହି ଚାଲିଲା— 'ତା'ଛଡ଼ା ଆପଣ ଯାହା କହୁଛନ୍ତି ସତ କହୁଛନ୍ତି । ମୁଁ ଅଦାଲତର ବିଶ୍ୱାସଭାଜନ ।' ଏତିକି କହି ସେ ଟିକିଏ ରହିଗଲା । ଯେମିତି ସେ ଯାହା କହିଲା ତାକୁ ବୁଝିବାପାଇଁ କେ'କୁ ସମୟ ଦେଲା । ବର୍ତ୍ତମାନ ସେମାନେ ପୁଣି ଥରେ ଦ୍ୱାର ପଛରୁ ଝିଅମାନଙ୍କର ପାଟି ଶୁଣିଲେ । ଜଣା ପଡୁଥିଲା ଯେମିତିକି ଚାବିକଣା ପାଖରେ ସେମାନେ ଭିଡ଼ ବାନ୍ଧିଛନ୍ତି । କବାଟରେ ଥିବା ଫାଟ ଦେଇ ସେମାନେ ଘର ଭିତରକୁ ଦେଖି ପାରୁଥିଲେ । ଦୁଃଖ ପ୍ରକାଶ କରିବାକୁ କୌଣସି ଚେଷ୍ଟା ବି କେ' କଲାନି, କାରଣ ସେ କଥାବାର୍ତ୍ତାର ମୋଡ଼ ବଦଳାଇବାକୁ ଇଚ୍ଛା କରୁନଥିଲା । କିମ୍ବା ନିଜକୁ ଖୁବ୍ ବଡ଼ ବୋଲି ଭାବି ଚିତ୍ରକର ତା ହାତମୁଠାରୁ ବାହାରିଯାଉ

Digitized by srujanika@gmail.com

ଏକଥା ବି କେ' ବୁଝୁନଥିଲା । ତେଣୁ ସେ ପଚାରିଲା । 'ଆପଣଙ୍କର କ'ଣ ସରକାରୀ ଚାକିରୀ ?'

'ନା' ଅଳ୍ପରେ ଶିଳ୍ପୀ କହିଲା । ଯେମିତିକି ଏହି ପ୍ରଶ୍ନଟି ତାକୁ ସଂକୁଚିତ କରିଦେଇଛି ।

କେ' କହିଲା—'ସରକାରୀ ଚାକିରୀ ଅପେକ୍ଷା ଏପରି ବେସରକାରୀ ଆସନ ସେମାନଙ୍କ ପାଖରେ ଅଧିକ ପ୍ରଭାବଶାଳୀ ଓ ଗୁରୁତ୍ୱପୂର୍ଣ୍ଣ ।'

'ମୋ' ପାଖରେ ଠିକ୍ ଏଇଆ ।' ଭ୍ରୂକୁଟିକରି ମୁଣ୍ଡ ହଲାଇ ହଲାଇ ଚଉକିଦାର କହିଲା । 'ଉତ୍ପାଦକ ଆପଣଙ୍କ କେଶ୍ ବିଷୟରେ କାଲି ମୋତେ କହିଥିଲେ । ମୁଁ ଆପଣଙ୍କୁ ସାହାଯ୍ୟ କରିପାରିବି କି ବୋଲି ମୋତେ ପଚାରୁଥିଲେ । ମୁଁ ତାଙ୍କୁ କହିଥିଲି ସେ ଲୋକ ଆସି ମୋତେ କେତେବେଳେ ଦେଖାକରନ୍ତୁ । ଏତେ ଶୀଘ୍ର ଆପଣଙ୍କୁ ଦେଖି ମୁଁ ଖୁବ୍ ଆନନ୍ଦିତ । କେଶ୍‌ଟି ଆପଣଙ୍କୁ ନିହାତି କାବୁକରିଦେଇଛି । ଏହା ବ୍ୟତୀତ ଆପଣଙ୍କର ଆଉ କିଛି ଚିନ୍ତା ନାହିଁ । ଅବଶ୍ୟ ଏପରି ହେବାରେ ଆଶ୍ଚର୍ଯ୍ୟ କିଛି ନାହିଁ । ଆପଣ ଅଳ୍ପସମୟ ପାଇଁ ଆପଣଙ୍କ କୋଟ୍‌ଟି କାଢ଼ିବେନି ?'

ଯଦିଓ କେ' ସେଠାରେ ଅଳ୍ପସମୟ ରହିବାକୁ ଭାବିଥିଲା । ଏପରି ଅନୁରୋଧ ତା'ପାଇଁ ଖୁବ୍ ସ୍ୱାଗତଯୋଗ୍ୟ ହେଲା । ଘର ଭିତରର ପବନ ରୁଦ୍ଧହୋଇ ଯାଉଥିବାର ସେ ଅନୁଭବ କରୁଥିଲା । ଗୋଟିଏ ଗ୍ରେଟ ଲୁହାର ଷ୍ଟୋଭ୍‌କୁ ସେ ଅନେକ ଥର ଆଶ୍ଚର୍ଯ୍ୟ ହୋଇ ଦେଖିଲା । ଘର କୋଣରେ ସେ ଷ୍ଟୋଭ୍‌ଟି କାମ କଲାଭଳି ଅବସ୍ଥାରେ ନଥିଲା । ଘର ଭିତରର ଗୁଳୁଗୁଳି କେ'ର ସହିବା ବାହାରେ । ସେ ତାର ଓଭର୍‌କୋଟ୍‌କୁ କାଢ଼ିଦେଲା । ତା'ଫତେଇର ବୋତାମ ମଧ୍ୟ ଖୋଲିଦେଲା । ଚଉକିଦାର ଦୁଃଖ ପ୍ରକାଶ କରି ବିନମ୍ରଭାବେ କହିଲା—'ମୋର ଏଠି ଟିକିଏ ଉଷୁମ୍ ହେବା ଦରକାର । ଏହା ଭିତରଟି ବେଶ୍ ଆରାମଦାୟକ ନୁହେଁ କି ? ମୁଁ ସେ ଦୃଷ୍ଟିରୁ ବେଶ୍ ଭଲ ଅଛି ?'

କେ' କିଛି କହିଲାନି । କାହିଁକିନା ଘରର ଉଷୁମ୍ ତାକୁ ଯେତେ ଅପ୍ରୀତିକର ଲାଗୁଥିଲା ତା'ଠାରୁ ବେଶୀ ବିରକ୍ତିକର ଲାଗୁଥିଲା ଘର ଭିତରର ରୁଦ୍ଧହୋଇ ଯାଇଥିବା ଅବସ୍ଥା । ଅନେକ ସମୟ ଧରି ଘର ଭିତରକୁ ଯେମିତି ଖୋଲା ପବନ ଆସିନଥିଲା । କେ'ର ବିରକ୍ତି ଆହୁରି ବଢ଼ିଗଲା ଯେତେବେଳେ ଚଉକିଦାର ତାକୁ ତା' ବିଛଣା ଉପରେ ବସିବାକୁ କହି ନିଜ କୋଠରୀରେ ଥିବା ଗୋଟିଏ ମାତ୍ର ଚଉକିଟିକୁ ନେଇ କାଠ ଫ୍ରେମ୍ ଆଗରେ ବସିପଡ଼ିଲା । କେ' କାହିଁକି ବିଛଣାର ଧାରରେ ବସିଛି ତାର କାରଣ ଟିଟୋରେଲି ଠିକ୍ ବୁଝିପାରିଲା ନାହିଁ । ସେ

Digitized by srujanika@gmail.com

କେ'କୁ ଆସନରେ ବସିବାକୁ ଅନୁରୋଧ କଲା ଏବଂ ଅନିଚ୍ଛୁକ କେ'କୁ ବିଛଣା ମଝିରେ ଥିବା ତକିଆ ଆଉ ଗଦିର ଭିତରକୁ ପେଲି ଦେଲା । ତା'ପରେ ସେ ତା' ନିଜ ଚଉକି ପାଖକୁ ପୁଣି ଥରେ ଫେରି ଆସିଲା ଏବଂ ତାର ଶେଷ ଗମ୍ଭୀର ପ୍ରଶ୍ନ ପଚାରିଲା । ଯେଉଁ ପ୍ରଶ୍ନକୁ ଶୁଣି କେ' ଆଉ ସବୁକଥା ଭୁଲିଗଲା ।

'ଆପଣ କଣ ନିର୍ଦ୍ଦୋଷ ?' ସେ ପଚାରିଲା ।

'ହଁ' କେ' କହିଲା ।

ଏ ପ୍ରଶ୍ନର ଉତ୍ତର ଦେଲାବେଳେ କେ' ଆନନ୍ଦ ଅନୁଭବ କଲା । ଏ ଆନନ୍ଦ ବିଶେଷ ଭାବରେ ଅନୁଭବ କଲା ଯେତେବେଳେ ସେ ଜଣେ ବେସରକାରୀ ବ୍ୟକ୍ତି ସହ କଥାବାର୍ତ୍ତା ହେଉଛି ଏବଂ ଏହାର ପରିଣତି ବିଷୟରେ ଭୟ କରିବା କିଛି ନାହିଁ । ଏହା ବ୍ୟତୀତ ଏପରି ଖୋଲାଖୋଲି ପ୍ରଶ୍ନ ଆଜିପର୍ଯ୍ୟନ୍ତ କେହି ତାକୁ ପଚାରି ନଥିଲେ । ନିଜ ଆନନ୍ଦକୁ ଆଉ ଟିକିଏ ବଢ଼ାଇ ଦେବାକୁ ଯାଇ ସେ କହିଲା 'ମୁଁ ପୁରାପୁରି ନିର୍ଦ୍ଦୋଷ ।'

ଯେମିତି କି'ଣ ଭାବୁଛି ଏପରି ଭାବ ସୃଷ୍ଟି କରି ମଥା ନୁଆଇଁ ଟିଟୋରେଲି କହିଲା—'ଆଚ୍ଛା' । ତା'ପରେ ହଠାତ୍ ସେ ତା'ମଥା ଉଠାଇ କହିଲା—'ଯଦି ନିର୍ଦ୍ଦୋଷ, ତାହେଲେ ତ ସବୁକଥା ସହଜ ହୋଇଗଲା ।'

କେ'ର ଆଖି ନିଷ୍ପ୍ରଭ ହୋଇଗଲା । ସେ ଭାବିଲା ଯେଉଁ ଲୋକ ଅଦାଲତର ଅତି ନିକଟ ଏବଂ ବିଶ୍ୱାସଭାଜନ ବୋଲି କହୁହେଉଛି ସେ ପୁଣି କେମିତି ଗୋଟିଏ ଅଜ୍ଞାନ ଛୁଆ ପରି କଥା କହୁଛି । ମୋର ନିର୍ଦ୍ଦୋଷପଣିଆ ଘଟଣାକୁ କେବେ ସରଳ କରିନାହିଁ । ଯାହାହେଉ ସେ ନହସି ରହିପାରିଲାନି ଏବଂ ପରେ ଧୀରେ ଧୀରେ ମଥା ହଲାଇଲା । 'ମୋତେ ଅଦାଲତର ଅସଂଖ୍ୟ ସୂକ୍ଷ୍ମ ଜଟିଳତା ବିରୁଦ୍ଧରେ ଲଢ଼ିବାକୁ ପଡ଼ିବ ନହେଲେ କିଛି ନଥାଇ ଶେଷରେ ଶୂନ୍ୟରୁ ଦୋଷର ବିରାଟ ଜାଲ ମୋତେ ଛନ୍ଦିଦେବ ।'

'ଅବଶ୍ୟ, ଅବଶ୍ୟ' ଚିତ୍ରକର ଏଭଳି କହିଲା ଯେମିତିକି କେ' ବିନା କାରଣରେ ତା ଚିନ୍ତାରେ ବାଧା ସୃଷ୍ଟି କରୁଛି ।

'କିନ୍ତୁ ଯାହାହେଲେବି ତ ତୁମେ ନିର୍ଦ୍ଦୋଷ ?

'ନିଶ୍ଚୟ । କିନ୍ତୁ ଏ ପ୍ରଶ୍ନ କାହିଁକି ?'

'କାରଣ ତାହାହିଁ ତ ମୂଳକଥା ।' ଚିତ୍ରକର କହିଲା । ଯୁକ୍ତି ଦ୍ୱାରା ସେ ପ୍ରଭାବିତ ହେବାର ଲୋକ ନୁହେ । ତଥାପି ତାର ନିଷ୍ପତ୍ତି ନେବାର ଶକ୍ତି ସତ୍ତ୍ୱେ

Digitized by srujanika@gmail.com

ଟିପ୍ରେଟେଲି ଯେ ଏପରି କାହିଁକି କରୁଛନ୍ତି ତାହା ଜାଣିବା କେ' ପକ୍ଷରେ ସମ୍ଭବ ହେଉନଥିଲା ।

ଗମ୍ଭୀର ଅବବୋଧରୁ ଅବା ବିରକ୍ତ ଉଦାସୀନତାରୁ ସେ ଏପରି କରୁଛନ୍ତି କେ' ବୁଝିପାରୁନଥିଲା । ପ୍ରଥମେ କେ' ଏହି ବିଷୟରେ ନିଶ୍ଚିତ ହେବାକୁ ଚାହିଁଲା । ତେଣୁ ସେ କହିଲା—'ମୋ ଅପେକ୍ଷା ଆପଣ କୋର୍ଟ'କୁ ବେଶୀ ଭଲକରି ଜାଣନ୍ତି । ମୋର ଜ୍ଞାନ କେବଳ ମୁଁ ଯାହା ବିଭିନ୍ନ ଲୋକଙ୍କ ପାଖରୁ ଏ ବିଷୟରେ ଶୁଣିଛି ବା ସେମାନଙ୍କ ଅବସ୍ଥାରୁ ଜାଣିଛି । ବାସ୍ ଏତିକି । ତାହା ଅପେକ୍ଷା ଆଉ ଅଧିକ ଜାଣିନାହିଁ । କିନ୍ତୁ ସମସ୍ତେ ଗୋଟିଏ କଥାରେ ଏକମତ ଯେ କାହାର ବିରୁଦ୍ଧରେ ଅଯଥା ହାଲୁକା ଅଭିଯୋଗ ହୁଏ ନାହିଁ । କିନ୍ତୁ ଥରେ କାହା ବିରୁଦ୍ଧରେ ଅଦାଲତ ଦ୍ୱାରା ଅଭିଯୋଗ ଆସିଲେ ତାର ସତ୍ୟତା ଉପରେ ନିଶ୍ଚିତ ହେବାକୁ ପଡ଼େ ଏବଂ ସହଜରେ ସେ ଅଭିଯୋଗରୁ ମୁକ୍ତି ମିଳେ ନାହିଁ । ଯଦି ମିଳେ ବହୁ-କଷ୍ଟରେ ।'

'ବହୁକଷ୍ଟରେ' ଗୋଟଏ ହାତକୁ ଶୂନ୍ୟକୁ ଛାଟିଆଡ଼ି ଦେଇ ଚିତ୍ରକର ଚିତ୍କାର କରି ଉଠିଲା । 'କୋର୍ଟ ନିଜ ଧାରଣାରେ ସବୁବେଳେ ଅବିଚଳିତ । ତାର ଧାରଣା କେବେ ବଦଳିବ ନାହିଁ । ସବୁ ବିଚାରପତିଙ୍କ ଛବିଗୁଡ଼ିକୁ ଯଦି ଗୋଟିଏ ଚିତ୍ରପଟରେ ମୋତେ ଆଙ୍କିବାକୁ ପଡ଼ନ୍ତା ଆଉ ତୁମେ ତୁମ ମକଦମା ପାଇଁ ତାଙ୍କ ଆଗରେ ଓକିଲାତି କରନ୍ତ ତେବେ ହୁଏତ ଜିତିବାର ସମ୍ଭାବନା ତୁମର ଅଧିକ ରହନ୍ତା । କିନ୍ତୁ ପ୍ରକୃତ ଅଦାଲତରେ ଏହା କେବେ ସମ୍ଭବ ନୁହେଁ ।'

'ଆଚ୍ଛା' କେ' ନିଜକୁ ନିଜେ କହିଲା ଏବଂ ଭୁଲିଗଲା ଯେ ସେ ଚିତ୍ରକରକୁ କେବଳ ଟିକିଏ ଖୋସାମତ କରିବାକୁ ଚାହୁଁଥିଲା । ପୁଣିଥରେ ଗୋଟିଏ ଝିଅର ସ୍ୱର ଦ୍ୱାର ପଛପଟୁ ଶୁଭିଲା—'ଟିପ୍ରେଟେଲି ସେ କ'ଣ ଶୀଘ୍ର ଯିବେନାହିଁ ?'

'ସେଠି ପାଟିକରନି, ଚୁପ୍‌ରୁହ' ଚିତ୍ରକର ପାଟିକଲା । 'ତୁମେ କ'ଣ ଦେଖିପାରୁନ ଯେ ମୁଁ ଏ ଭଦ୍ରଲୋକଙ୍କ ସହ ବ୍ୟସ୍ତଅଛି ?' କିନ୍ତୁ ସେ ଝିଅ ଏତିକରେ ଚୁପ୍ ହେବାର ଜନ୍ତୁ ନୁହେଁ ।

ସେ ପୁଣି ପଚାରିଲା—'ତୁମେ କଅଣ ତାଙ୍କ ଛବି ଆଙ୍କିବାକୁ ଯାଉଛ ?' ଏ ପ୍ରଶ୍ନର ଉତ୍ତର ଚିତ୍ରକର ନ ଦେବାରୁ ସେ ପୁଣି କହି ଚାଲିଲା । 'ଦୟାକରି ତାପରି ଜଣେ କଦାକାର ଲୋକର ଛବି ଆଙ୍କନି ।' ଅନ୍ୟ ଝିଅମାନେ ସମସ୍ତେ ଏଥିରେ ଏକମତ ହୋଇ ପାଟି କରି ଉଠିଲେ । କବାଟ ଅଳ୍ପ ଖୋଲି ଚିତ୍ରକର ଦ୍ୱାର ଆଡ଼କୁ ପ୍ରାୟ ଡେଇଁ ପଡ଼ିଲା । କେ' ଝିଅମାନଙ୍କର ଅନୁନୟ ଭରା ଲମ୍ବି

Digitized by srujanika@gmail.com

ଆସୁଥିବା ହାତଗୁଡ଼ିକୁ ଦେଖି ପାରୁଥାଏ । ଚିତ୍ରକର କହିଲା—ଯଦି ତୁମେ ସବୁ ପାଟି ବନ୍ଦ ନ କର ତେବେ ତୁମକୁ ସବୁ ପିଟିଦେଇ ଫୋପାଡ଼ି ଦେବି । ଏଇ ପାହାଚରେ ଚୁପ୍‌କରି ବସ । ପ୍ରଥମେ କେହି ତା'କଥା ଶୁଣିଲେ ନାହିଁ । ତାପରେ ତାକୁ ଖୁବ୍ ଜୋର୍‌ରେ ପାଟି କରିବାକୁ ପଡ଼ିଲା—'ପିଟିଦେଇ ଫୋପାଡ଼ି ଦେବି ।' ଏପରି ପାଟି ପରେ ସବୁ ଚୁପ୍ ହୋଇଗଲେ ।

'ମୋତେ କ୍ଷମା କରିବେ ।' କେ' ପାଖକୁ ଫେରିଆସି ଚିତ୍ରକର କହିଲା । କେ' ଦ୍ୱାରଆଡ଼କୁ ପ୍ରାୟ ଚାହିଁନଥିଲା । ତା ରକ୍ଷଣାବେକ୍ଷଣ ଭାର ସେ ଚିତ୍ରକର ଉପରେ ଛାଡ଼ି ଦେଇଥିଲା । ସେ ତାକୁ ରକ୍ଷା କରିବ କି ନାହିଁ ଯଦି କରିବ କେମିତି କରିବ ସେସବୁ ଦାୟିତ୍ୱ ଯେମିତି ସବୁ ଚିତ୍ରକରର । ଏମିତିକି ଯେତେବେଳେ ସେ ତା ଆଡ଼କୁ ଢଳିପଡ଼ି, ଝିଅମାନେ ଯେମିତି ଶୁଣି ନ ପାରିବେ ସେମିତି ସ୍ୱରରେ ତା' କାନ ପାଖରେ ଫୁସ୍‌ଫୁସ୍ କରି କହିଲା—'ଏ ଝିଅମାନେ ବି କୋର୍ଟ ସହ ସମ୍ପୃକ୍ତ ।' ସେତେବେଳେ କେ' ଟିକିଏ ହଲଚଲ ନହୋଇ ଅବିଚଳିତ ରହିଥିଲା । ମାତ୍ର ପରେ ପରେ ହଠାତ୍ ଚଞ୍ଚଳ ହୋଇ ଉଠିଲା—'କଅଣ ?' ଆଉ ଚିତ୍ରକରକୁ ଦେଖିବ ବୋଲି ମୁହଁ ବୁଲାଇଲା । କିନ୍ତୁ ଟିଟୋରେଲି ଅଳସରେ ଚଉକିରେ ବସିପଡ଼ିଲା ଏବଂ ଅଧେ ଖୁସିରେ ଏବଂ ଅଧେ ବୁଝାଇବା ଭଙ୍ଗିରେ କହିଲା—'ତୁମେ ଭାବୁଛ ସବୁ ଜିନିଷ ଯେମିତି ଅଦାଲତର । ତୁମକୁ ସେମିତି ସବୁ ଦିଶୁଛି ।'

'ସେତିକି ଅନ୍ତତଃ ମୁଁ ଏ ପର୍ଯ୍ୟନ୍ତ ଭାବି ନଥିଲି ।' ଅଳ୍ପକେ କେ' କହିଲା । ଝିଅମାନଙ୍କ ସମ୍ପର୍କରେ ତା ମତାମତର ସମସ୍ତ ଗୁରୁତ୍ୱକୁ ଚିତ୍ରକରର ଏପରି ସାଧାରଣ ବକ୍ତବ୍ୟ ପୁରା ଲାଘବ କରି ଦେଲା । ତଥାପି କେ' ଦ୍ୱାର ଆଡ଼କୁ କିଛି ସମୟ ପାଇଁ ଅନାଇ ବସିଲା । କାରଣ ସେଇ ଦ୍ୱାର ପଛପଟେ ବର୍ତ୍ତମାନ ସେ ଝିଅମାନେ ସିଡ଼ିରେ ଚୁପ୍‌ଚାପ୍ ବସିଥାନ୍ତି । ସେମାନଙ୍କ ଭିତରୁ ଜଣେ ପଟା ଦେହରେ ହୋଇଥିବା ଫାଟ ଭିତର ଦେଇ ଗୋଟିଏ କୁଟାକୁ ଉପର ତଳ ଖେଳିବାରେ ଲାଗିଥାଏ ।

କେ' ସମ୍ମୁଖରେ ତା' ଗୋଡ଼କୁ ଲମ୍ବାଇ ଜୋତାରେ ଭୁଇଁକୁ ଠୁକଠୁକ ଚିତ୍ରକର କହିଲା—'କୋର୍ଟ ବିଷୟରେ ତୁମର ସାଧାରଣ ଧାରଣା ବି ନାହିଁ । ଯେହେତୁ ତୁମେ ନିର୍ଦ୍ଦୋଷ ତୁମର କିଛି ଜାଣିବାର ଦରକାର ମଧ୍ୟ ନାହିଁ । ମୁଁ ଏକା ତୁମକୁ ଏଥିରୁ ମୁକୁଳାଇ ପାରିବି ।'

'ଆପଣ କେମିତି ତା' ପାରିବେ ?' କେ' ପଚାରିଲା ।

Digitized by srujanika@gmail.com

‘ମାତ୍ର ଠିକ୍ କେତେ ମିନିଟ୍ ଆଗରୁ ତୁମେ ନିଜେ କହୁଥିଲ ଯେ ପ୍ରମାଣ ପ୍ରତି କୋର୍ଟ ପୂରା ଅବଚଳିତ । ଆଦୌ ପ୍ରଭାବିତ ହୁଏ ନାହିଁ ।’

‘କେବଳ ସେଇ ପ୍ରମାଣଗୁଡ଼ିକ ପ୍ରତି ଅବିଚଳିତ, ଅପ୍ରଭାବିତ ଯେଉଁଗୁଡ଼ିକ ଅଦାଲତ ସମ୍ମୁଖକୁ ଅଣାଯାଏ । ଗୋଟିଏ ଆଙ୍ଗୁଳି ଟେକି ଚିତ୍ରକର ବୁଝାଇବାକୁ ଚେଷ୍ଟାକଲା ଯେମିତିକି କେ’ ଗୋଟିଏ ଦୃଷ୍ଟ ପାର୍ଥକ୍ୟକୁ ବୁଝିପାରୁ ନାହିଁ ।

କିନ୍ତୁ ପର୍ଦ୍ଦା ପଛରେ ଜଣେ ଲୋକର ଚେଷ୍ଟା ଦ୍ୱାରା ଏହା ଭିନ୍ନ ରୂପ ଧରିଥାଏ । ଅର୍ଥାତ୍ ଆଲୋଚନା ପ୍ରକୋଷ୍ଠ, ବାରନ୍ଦା ଏମିତିକି ଏହି ସ୍ତମ୍ଭଓ ଭିତରେ ହିଁ ତାହା ଭିନ୍ନ ରୂପ ଧରିଥାଏ । ଚିତ୍ରକର ବର୍ତ୍ତମାନ ଯାହା କହିଲା ତାହା କେ’ ପାଇଁ ବିଶ୍ୱାସଯୋଗ୍ୟ ହେଲା ନାହିଁ । ଯଦିଓ ଅନ୍ୟମାନଙ୍କ ପାଖରୁ ମୁଖ୍ୟତଃ ସେ ଯାହା ଶୁଣିଥିଲା ତାହା ସହିତ ଚିତ୍ରକରର ଏପରି କଥାର ଅନେକ ମେଳ ଅଛି । ଅଧିକନ୍ତୁ ଏହା ଅତି ବେଶୀ ଆଶାପ୍ରଦ । ଓକିଲଙ୍କ କହିବାନୁସାରେ ଯଦି ଜଣେ ବିଚାରପତି ଏମିତି ସହଜରେ ବ୍ୟକ୍ତିଗତ ସମ୍ପର୍କୀୟମାନଙ୍କ ଦ୍ୱାରା ପ୍ରଭାବିତ ହୋଇଯାଆନ୍ତି ତେବେ ଏହି ଫମ୍ପା ବିଚାରପତିମାନଙ୍କ ସହ ଏହି ଚିତ୍ରକରର ସମ୍ପର୍କ ନିଶ୍ଚିତଭାବେ ଗୁରୁତ୍ୱପୂର୍ଣ୍ଣ । ତାକୁ ଏତେ ସହଜରେ ଏଡ଼ାଇ ଦେଇ ହେବନାହିଁ । ଏହାହିଁ କେ’ ପାଖରେ ଚିତ୍ରକରର ମୂଲ୍ୟକୁ ବଢ଼ାଇ ଦେଲା । ତାକୁ ସାହାଯ୍ୟ କରିବା ଲୋକଙ୍କ ଭିତରେ ଏହାର ଯୋଗଦାନ ଅତ୍ୟନ୍ତ ପ୍ରୟୋଜନୀୟ । କେ’ ପାଖରେ ସେ ଏକ ମୂଲ୍ୟବାନ ପ୍ରାପ୍ତି । ତାର ପରିକଳ୍ପନା କରିବାର ଯୋଗ୍ୟତା ଉଚ୍ଚକୋଟୀର ବୋଲି ବ୍ୟାଙ୍କରେ ସ୍ୱୀକୃତ । ବର୍ତ୍ତମାନ ଯେହେତୁ ତାକୁ ନିଜ ଦାୟିତ୍ୱରେ ସବୁକାମ କରିବାକୁ ପଡ଼ିବ ଏହାହିଁ ତାର ଯୋଗ୍ୟତା ପ୍ରମାଣିତ କରିବାର ଏକ ଅପୂର୍ବ ସୁଯୋଗ । କେ’ ଉପରେ ତା’ କଥାର କପଟ ପ୍ରଭାବ ପଡୁଛି ଟିଟୋରେଲି ତାକୁ ନିରୀକ୍ଷଣ କରୁଥିଲା ଏବଂ ସାମାନ୍ୟ ଅସ୍ୱସ୍ତି ସହ କହିଲା—‘ବୋଧହୁଏ ତୁମକୁ ଲାଗିଲା ଯେମିତି ମୁଁ ନୂଆ ପରି କଥାବାର୍ତ୍ତା କରୁଛି ? କୋର୍ଟର ଲୋକମାନଙ୍କ ସହ ନିରବଚ୍ଛିନ୍ନ ସମ୍ପର୍କ ଯୋଗୁ ହିଁ ମୁଁ ଏମିତି ହୋଇଯାଇଛି । ଏହାଦ୍ୱାରା ମୋର ଅନେକ ଲାଭ ହେଉଛି ମାତ୍ର ଶିଳ୍ପୀ ହିସାବରେ ମୁଁ ମୋର ଛବି ଆଙ୍କିବାର ଶକ୍ତି ହରାଇ ବସୁଛି ।’

‘ପ୍ରଥମେ ଆପଣ କେମିତି ଏହି ବିଚାରପତିମାନଙ୍କ ସମ୍ପର୍କରେ ଆସିଲେ ?’ କେ’ ପଚାରିଲା । ଚିତ୍ରକରର ସାହାଯ୍ୟ ନେବା ପୂର୍ବରୁ ତାର ବିଶ୍ୱାସଭାଜନ ହେବା ପାଇଁ କେ’ ଚାହୁଁଥିଲା ।

‘ସେ ଅତି ସହଜ ।’ ଚିତ୍ରକର କହିଲା । ମୁଁ ଏ ସମ୍ପର୍କ ଦାୟାଦ ସୂତ୍ରେ ପାଇଛି । ବାପା ମୋ ପୂର୍ବରୁ ଅଦାଲତର ଚିତ୍ରକର ଥିଲେ । ତେଣୁ ଏହା ଏକ-

Digitized by srujanika@gmail.com

ପ୍ରକାର ବଂଶାନୁକ୍ରମିକ ଆସନ । ନୂଆ ଲୋକମାନେ ଏଠି କିଛି କାମରେ ଆସନ୍ତି ନାହିଁ । ବିଭିନ୍ନ ସ୍ତରର କର୍ମକର୍ତ୍ତାଙ୍କ ଛବି ଆଙ୍କିବା ପାଇଁ କେତେ ବିଭିନ୍ନ ପ୍ରକାରର ଜଟିଳ ପୁଣି ଗୋପନୀୟ ନିୟମ କାନୁନ୍‌ସବୁ ରହିଛି ସେସବୁର ଜ୍ଞାନ କେବଳ କେତୋଟି ବଂଶ ଭିତରେ ହିଁ ସୀମାବଦ୍ଧ । ସେଠି, ସେଇ ଭଣ୍ଡାରରେ ମୁଁ ମୋର ବାପାଙ୍କ ଦ୍ୱାରା ଅଙ୍କା ସବୁ ଛବିଗୁଡିକୁ ରଖିଛି । ମୁଁ କେବେ କାହାରିକି ସେସବୁ ଦେଖାଏ ନାହିଁ । ସେସବୁକୁ ଅନୁଧ୍ୟାନ କରୁଥିବା ଜଣେ ବ୍ୟକ୍ତି କେବଳ ବିଚାରପତି ମାନଙ୍କର ଛବି ସବୁ ଆଙ୍କିପାରିବ । ଯଦି କେବେ ସେସବୁକୁ ମୁଁ ହଜାଇଦିଏ ତେବେବି ମୋ' ମଥା ଭିତରେ ଏତେସବୁ ନିୟମ କାନୁନ ମୁଁ ଖୁନ୍ଦି ରଖିଛି ଯେ ମୋ ଚାକିରିକୁ ସୁରକ୍ଷିତ କରିବାରେ ସେସବୁ ଯଥେଷ୍ଟ ହେବ । କୌଣସି ନବାଗତ ସହଜରେ ମୋ' ପାଖରୁ ମୋ' ଚାକିରିକୁ କାଢ଼ି ନେଇ ପାରିବ ନାହିଁ । କାରଣ ସବୁ ବିଚାରପତି ଚାହାନ୍ତି ଯେ ସେମାନଙ୍କର ପ୍ରତିଛବି ପୂର୍ବତନ ପ୍ରସିଦ୍ଧ ବିଚାରପତିଙ୍କ ପରି ଅଙ୍କାଯାଉ ଏବଂ ଏହି କାମଟି ମୋ' ବ୍ୟତୀତ ଆଉ କେହି କରିପାରିବା ସମ୍ଭବ ନୁହେଁ ।'

'ତୁମର ସ୍ଥାନ ପାଇଁ ମନରେ ଈର୍ଷା ଆସେ ।' ବ୍ୟାଙ୍କରେ ନିଜ ଅବସ୍ଥା କଥା ଭାବୁ ଭାବୁ କେ' କହିଲା । 'ତେବେ ତୁମ ସ୍ଥାନ ଏଠି ବେଶ୍ ମଜଭୁତ ?'

'ବେଶ୍ ମଜ୍‌ଭୁତ' ଗର୍ବର ସହିତ ଚିତ୍ରକର କହିଲା । 'ଆଉ ଏଇଥିପାଇଁ ମୁଁ ବେଳେ ବେଳେ ଗରିବ ଲୋକମାନଙ୍କୁ ସେମାନଙ୍କ ବିଚାରରେ ସାହାଯ୍ୟ କରିଥାଏ ।'

'କେମିତି ସାହାଯ୍ୟ କରନ୍ତି ?' ନିଜେ ଜଣେ ଗରିବ ଲୋକ ଭାବେ ବଞ୍ଚିତ ହୋଇନାହିଁ ଏହିକଥା ଭାବି କେ' ପଚାରିଦେଲା । କିନ୍ତୁ ଟିଟୋରେଲି କଥାର ମୋଡ଼ ବଦଳାଇବାକୁ ପ୍ରସ୍ତୁତ ନୁହେଁ ।

'ଆପଣଙ୍କ କଥା ଧରିଯାଉ । ଯେହେତୁ ଆପଣ ପୂର୍ବ ନିର୍ଦ୍ଦୋଷ ଆପଣଙ୍କ ପାଇଁ ମୁଁ ଏହିବାଟ ଧରିବି ।'

ସେ ଯେ ନିର୍ଦ୍ଦୋଷ ଏହିକଥା ବାରମ୍ବାର କୁହାଯାଉ ଥିବାରୁ କେ' ଅଧୈର୍ଯ୍ୟ ହୋଇ ପଡୁଥିଲା । ବେଳେବେଳେ ତାକୁ ଲାଗୁଥିଲା ଯେମିତି ଚିତ୍ରକର ଜାଣିଛି ଏବିଷୟରେ କିଛି ହେବ ନାହିଁ ତେଣୁ ତାର ସାହାଯ୍ୟ ଅପ୍ରୟୋଜନୀୟ । ତାର ସମସ୍ତ ସନ୍ଦେହ ସତ୍ତ୍ୱେ କେ' ତାର ପାଟି ବନ୍ଦ କରି ରଖିଥିଲା । ଆଉ ଚିତ୍ରକରର କଥାରେ କିଛି ବାଧା ଦେଉନଥିଲା । କାରଣ ସେ ତାର ସାହାଯ୍ୟକୁ କୌଣସି ପ୍ରକାରେ ହାତଛଡ଼ା କରିପାରିବ ନାହିଁ । ଏ ବିଷୟରେ ସେ ନିଶ୍ଚିତ ଥିଲା ।

Digitized by srujanika@gmail.com

ତା' ଉକିଲ୍ ପରି ଏ ଚନ୍ଦ୍ରକର ବି ଜଣେ ବନ୍ଧୁ । ଏ ବିଷୟରେ ଆଉ ସନ୍ଦେହ ନାହିଁ । ପ୍ରକୃତରେ ସେ ଚନ୍ଦ୍ରକରର ସାହାଯ୍ୟକୁ ବେଶୀ ପସନ୍ଦ କରେ କାରଣ ସେ ଅତି ନିଷ୍କପଟ ଆଉ ଖୋଲଖୋଲି ଭାବରେ ସାହାଯ୍ୟ କରିବାକୁ ପ୍ରସ୍ତୁତ ।

ବିଛଣା ପାଖକୁ ଟିପେଇଟେଲି ତା ଚଉକିକୁ ଟାଣି ଆଣିଲା ଏବଂ ଅତି ଧୀର ସ୍ୱରରେ ଆରମ୍ଭ କଲା—'ପ୍ରଥମେ ମୁଁ ପଚାରିବାକୁ ଭୁଲିଯାଇଛି ଯେ ଆପଣ କେଉଁ ପ୍ରକାର ଖଲାସ ହେବାକୁ ଚାହାନ୍ତି ? ଖଲାସ ହେବାର ତିନୋଟି ବାଟ ଅଛି । ପ୍ରଥମେ ପୂରା ଖଲାସ । ଦ୍ୱିତୀୟରେ ଗୁପ୍ତଭାବେ ଖଲାସ ଏବଂ ଶେଷରେ ବିଚାରକୁ ଅନିର୍ଦ୍ଦିଷ୍ଟ କାଳପାଇଁ ଘୁଞ୍ଚେଇ ଦେବା, ପୂରା ଖଲାସ ଅବଶ୍ୟ ସବୁଠାରୁ ଉତ୍ତମ । ମାତ୍ର ସେଥିପାଇଁ ମୋର ପ୍ରଭାବ କାମ କରିବ ନାହିଁ । ମୁଁ ଯେତେଦୂର ଜାଣେ ଆଜି ପର୍ଯ୍ୟନ୍ତ ଜଣେ ହେଲେ କେହି ପ୍ରଭାବ ପକାଇ ପୂରା ଖଲାସ ହୋଇପାରି ନାହିଁ । ଏଥିପାଇଁ ଅଭିଯୋଗର ନିର୍ଦ୍ଦୋଷତା ହିଁ ଏକମାତ୍ର ବାଟ । ଯେହେତୁ ଆପଣ ନିର୍ଦ୍ଦୋଷ ତେଣୁ ଆପଣଙ୍କ ପକ୍ଷରେ କେବଳ ତାକୁଇ ପୁଞ୍ଜିକରି ମକଦ୍ଦମା ଲଢ଼ିବା ସମ୍ଭବ ହେବ । ତେବେ ସେ କ୍ଷେତ୍ରରେ ଆପଣ ମୋର ଅବା ଅନ୍ୟ କାହାରି ସାହାଯ୍ୟ ଦରକାର କରନ୍ତି ନାହିଁ ।

ଏପ୍ରକାର ଅତି ପ୍ରାଞ୍ଜଳ ବିଶ୍ଳେଷଣ ପ୍ରଥମେ କେ' ମନରେ ଏକ ଧକ୍କା ଦେଲା । ମାତ୍ର ପୂର୍ବପରି ଚନ୍ଦ୍ରକର ଯେମିତି ଧୀର ସ୍ୱରରେ କହୁଥିଲା ସେହିପରି ଭାବରେ କେ' କହିଲା—'ଆପଣ ନିଜେ ନିଜର ବିରୋଧ କରୁଛନ୍ତି ବୋଲି ମୋତେ କେମିତି ଲାଗୁଛି ।'

'କେମିତି ?' କାନ୍ଥକୁ ଡେରିଯାଇ ହସହସ ମୁହଁରେ ଅତି ଧୈର୍ଯ୍ୟର ସହ ଚନ୍ଦ୍ରକର ପଚାରିଲା । ତାର ହସ କେ' ମନରେ ସନ୍ଦେହ ଆଣିଦେଲା । ତାର ସନ୍ଦେହ ହେଲା ଯେ ସେ ଚନ୍ଦ୍ରକରର କଥାରେ ଥିବା ବିରୋଧାଭାଷକୁ ସୂଚାଇବାକୁ ଯାଇ ବିଚାର ପଦ୍ଧତିରେ ଥିବା ବିରୋଧାଭାଷର ହୁଏତ ସୂଚନା ଦେବ । ଯାହାହେଉ ସେ ଏଥିରୁ ପଛାଇ ଗଲାନାହିଁ । ସେ କହି ଚାଲିଲା—'ଆପଣ ପୂର୍ବରୁ ପରା ଜୋର୍ ଦେଇ କହିଥିଲେ ଯେ ଅଦାଲତ ପ୍ରମାଣକୁ ଖାତିର କରେ ନାହିଁ । ତା ଦ୍ୱାରା ପ୍ରଭାବିତ ହୁଏ ନାହିଁ । ତାପରେ ପୁଣି କହୁଛନ୍ତି ଯେ ଏହା କେବଳ ମୁକ୍ତ ବିଚାରାଳୟ ଭିତରେ ସୀମିତ ଏବଂ ବର୍ତ୍ତମାନ କହୁଛନ୍ତି ଯେ ନିର୍ଦ୍ଦୋଷ ଲୋକର କୌଣସି ସାହାଯ୍ୟର ପ୍ରୟୋଜନ ନାହିଁ । କେବଳ ଏହି କଥା ହିଁ ଆପଣଙ୍କର ବିରୋଧା-ଭାଷର ସୂଚକ । ଅଧିକନ୍ତୁ ଆପଣ ପୁଣି କହିଲେ ଯେ ବିଚାରପତିମାନଙ୍କୁ ବ୍ୟକ୍ତିଗତ ସମ୍ପର୍କ ଦ୍ୱାରା ପ୍ରଭାବିତ କରିହେବା ସମ୍ଭବ କିନ୍ତୁ ବର୍ତ୍ତମାନ ଅସ୍ୱୀକାର କରୁଛନ୍ତି ଯେ

Digitized by srujanika@gmail.com

ପୂରା ଟଲସ ହେବା ବ୍ୟକ୍ତିଗତ ପ୍ରଭାବ ଦ୍ୱାରା କେବେ ହେଲେ ମିଳିପାରିବ ନାହିଁ । ଏହା ଆପଣଙ୍କର ଦ୍ୱିତୀୟ ବିରୋଧାଭାଷ ।'

'ଏହିସବୁ ପରସ୍ପର ବିରୋଧି କଥାଗୁଡ଼ିକୁ ସହଜରେ ବୁଝାଇ ହେବ ।' ଚନ୍ଦକର କହିଲା । 'ଦୁଇଟି ଜିନିଷ ଭିତରେ ଥିବା ପାର୍ଥକ୍ୟଟିକୁ ପ୍ରଥମେ ବୁଝିବାକୁ ହେବ । ଆଇନରେ କଅଣ ଲେଖା ହୋଇଛି ଏବଂ ମୁଁ ମୋର ବ୍ୟକ୍ତିଗତ ଅଭି-ଜ୍ଞତାରୁ କଅଣ ଜାଣିଛି । ଆପଣ ଏହି ଦୁଇଟିକୁ ମିଶାଇ ଦେଉନାହାନ୍ତି । ଗୋଟିଏ ଢଗରେ ଆଇନରେ ଲେଖାଅଛି, ଯାହା ମୁଁ କେବେ ପଢ଼ିନାହିଁ । ଯେ ନିର୍ଦ୍ଦୋଷ ନିଶ୍ଚିତ ଭାବେ ଟଲସ ହେବ କିନ୍ତୁ ଅନ୍ୟ ଢଗରେ ଏହା ଲେଖା ହୋଇନାହିଁ ଯେ ବିଚାରପତିମାନେ ପ୍ରଭାବ ଦ୍ୱାରା ବଶୀଭୂତ ହେବେ । ବର୍ତ୍ତମାନ ମୋର ଅନୁଭୂତି ଏହାର ଠିକ୍ ଓଲଟା । ମୁଁ ଗୋଟିଏ ବି ପୂରା ଖଲସ ହେବାର କେଶ୍ ଦେଖିନାହିଁ । କିନ୍ତୁ ଅନେକ କେଶ୍ ଦେଖିଛି ଯହିଁରେ ପ୍ରଭାବଶାଳୀ ବ୍ୟକ୍ତିଙ୍କ ପ୍ରଭାବ ବେଶ୍ କାମ କରିଛି । ଅବଶ୍ୟ ଏହା ସମ୍ଭବ ଯେ ମୋତେ ଜଣାଥିବା ସବୁ ମକଦମାରେ ଜଣେ ହେଲେ ଅଭିଯୁକ୍ତ ବ୍ୟକ୍ତି ପୂରା ନିର୍ଦ୍ଦୋଷ ନୁହେଁ । କିନ୍ତୁ ଏହା କଅଣ ଅସମ୍ଭବ କଥା ନୁହେଁ ? ଏତେ ମକଦ୍ଦମା ଭିତରୁ ଗୋଟିଏ ହେଲେ ନିର୍ଦ୍ଦୋଷ ବ୍ୟକ୍ତି ନାହିଁ । ପିଲାବେଳେ ବାପା କହୁଥିବା ମକଦ୍ଦମାର କାହାଣୀଗୁଡ଼ିକୁ ମୁଁ ବଡ଼ ମନଯୋଗ ଦେଇ ଶୁଣୁଥିଲି । ତାଙ୍କ ଷ୍ଟୁଡ଼ିଓକୁ ଆସୁଥିବା ଜଜ୍‌ମାନେ ବି କଚେରୀ ଗପ ସବୁ ଗପୁଥିଲେ । ଆମ ପରିସର ଭିତରେ ଏହାହିଁ ଥିଲା ଆଲୋଚନାର ଏକମାତ୍ର ବିଷୟବସ୍ତୁ । କଚେରୀକୁ ଯିବାର ସୁଯୋଗ ପାଇବା ମାତ୍ରେ ମୁଁ ଏହାର ପୂରା ସୁଯୋଗ ନେଲି । ଅସଂଖ୍ୟ ମକଦ୍ଦମାର ଯତ୍ତସନ୍ଧି ବେଳେ ସେମାନଙ୍କର ଶୁଣାଣି ଶୁଣିଲି । ଯେତେଦୂର ସମ୍ଭବ ସେ କେଶ୍‌ଗୁଡ଼ିକର ଅନୁଧ୍ୟାନ କଲି, ସେମାନଙ୍କ ଉପରେ ଲକ୍ଷ୍ୟ ରଖିଲି । ତଥାପି ମୋତେ ସ୍ୱୀକାର କରିବାକୁ ପଡ଼ିବ, ଏମିତି ଗୋଟିଏ ବି ମକଦ୍ଦମା ମୁଁ ପାଇନାହିଁ ଯେଉଁଠି ଅଭିଯୁକ୍ତ ବ୍ୟକ୍ତି ପୂରା ସମ୍ପୂର୍ଣ୍ଣ ଭାବେ ଖଲସ ହୋଇଛି ।'

'ତାହାହେଲେ କଅଣ ଗୋଟିଏ ବି ଖଲସ ହେବାର କେଶ୍ ନାହିଁ ?' କେ' ଯେମିତି ନିଜସହ ଏବଂ ନିଜ ଭାବନା ସହ କଥା ହେଉଥିଲା । ଏହି କୋର୍ଟ ବିଷୟରେ ଗଢ଼ିଉଠୁଥିବା ମୋର ଧାରଣାକୁ ତ ଏହା ସ୍ୱୀକାର କରୁଛି । ଯେ କୌଣସି ଢଗରୁ ବିଚାର କଲେ ମଧ୍ୟ ଏହା ଏକ ଲକ୍ଷ୍ୟହୀନ ଅନ୍ଧ ଅନୁଷ୍ଠାନ । ଏଠି ଯାହା ଦରକାର ତାହା ଗୋଟିଏ ଘାତକ କରି ଦେଇପାରେ ।'

'ଆପଣ ଏତେଶୀଘ୍ର ସବୁକଥାକୁ ଗୋଟିଏ ସାଧାରଣ ନିୟମରେ ପକାଇ ଦେଉନାହିଁ ।' ବିରକ୍ତିର ସହ ଚନ୍ଦକର କହିଲା । 'ମୁଁ ମୋର ବ୍ୟକ୍ତିଗତ ଅନୁଭୂତିକୁ ଉଦ୍ଧାର କରି କହୁଥିଲି ।'

Digitized by srujanika@gmail.com

'ତାହାହିଁ ତ ଯଥେଷ୍ଟ' କେ' କହିଲା । ବହୁ ଆଗକାଳରେ ଖଳାସ ହେବା କଥା କଅଣ ଆପଣ ଶୁଣିଥିଲେ ?'

'ସେପରି ଖଳାସ ଆଗରୁ ଅବଶ୍ୟ ହୋଇଛି । କିନ୍ତୁ ତାକୁ ପ୍ରମାଣ କରିବା କଷ୍ଟକର । କୋର୍ଟର ଶେଷ ସିଦ୍ଧାନ୍ତ କେବେ ଲେଖା ହୋଇ ରହେନାହିଁ । ଏପରିକି ଜଜ୍‌ମାନେ ମଧ୍ୟ ତାହା ପାଇ ପାରନ୍ତିନାହିଁ । ଫଳରେ ପୁରୁଣା କେଶ୍‌ଗୁଡିକ ବିଷୟରେ ଆମେ ଖାଲି ଚଳିଆସୁଥିବା କାହାଣୀ ଶୁଣୁ । ଏସବୁ କାହାଣୀ ଅବଶ୍ୟ ନିଶ୍ଚିତ ଭାବେ ଖଳାସ ହେବାର ନଜିର ଦିଅନ୍ତି । ଅବଶ୍ୟ ସେମାନେ ବେଶୀଭାଗ ଖଳାସ ହେଉଥିବା କଥାହିଁ କହିଥାନ୍ତି । ସେମାନଙ୍କୁ ବିଶ୍ୱାସ କରିପାରି କିନ୍ତୁ ପ୍ରମାଣ କରିପାରିବ ନାହିଁ । ପୁଣି ସେମାନଙ୍କୁ ବି ହସି ଉଡ଼ାଇ ଦେଇ ପାରିବ ନାହିଁ । ସେମାନଙ୍କଠାରେ କିଛି ନା କିଛି ସତ୍ୟତା ଅଛି । ଅଧିକନ୍ତୁ ସେ କାହାଣୀଗୁଡ଼ିକ କେତେ ସୁନ୍ଦର । ସେମାନଙ୍କୁ ନେଇ ମୁଁ ତ ଅନେକ ଛବି ଅଙ୍କିଛି ।'

'କେବଳ କାହାଣୀ ମୋ ମନକୁ ବଦଳାଇ ପାରିବନି । ମୁଁ ଭାବୁଛି କୋର୍ଟ ଆଗରେ ଏହି କାହାଣୀକୁ ନେଇ କେହି ଅପିଲ୍ କରିପାରିବ ନାହିଁ ।' ଚିତ୍ରକର ହସିଲା । ଆଉ କହିଲା—'କେହି ତାହା କରି ପାରିବେନି ।'

'ତେବେ ସେସବୁ କଥା ଏଠାରେ ପକାଇବାର କିଛି ଅର୍ଥ ନାହିଁ ।' କେ' କହିଲା । ତଥାପି ଚିତ୍ରକରର ମତାମତକୁ ଅପାତତଃ ଗ୍ରହଣ କରିନେବାକୁ କେ' ରାଜି ହୋଇଗଲା । ଯଦିଓ ତାହା ତାକୁ ଅସମ୍ଭବ ମନେ ହେଉଥିଲେ ଏବଂ ତାକୁ ଆଗରୁ ମିଳିଥିବା ରିପୋର୍ଟର ସେମାନେ ବିରୁଦ୍ଧାଚରଣ କରୁଥିଲେ । ଚିତ୍ରକର କଥାର ସତ୍ୟାସତ୍ୟକୁ ପରୀକ୍ଷା କରିବାପାଇଁ ତାର ଏବେ ବେଳନାହିଁ । ତାକୁ ବିରୋଧ କରିବାର ସମସ୍ତ ମଧ୍ୟ ଇଏ ନୁହେଁ । ତାପାଇଁ ସବୁଠାରୁ ଭଲ ହେବ ଯଦି ଚିତ୍ରକର ତାକୁ କେମିତି କିଛି ସାହାଯ୍ୟ କରେ ତାର କିଛି ବ୍ୟବସ୍ଥା କରିପାରେ । ଯଦିଓ ସେ ଜାଣେ ତାର ସାହାଯ୍ୟ ନିଷ୍ପତ୍ତିମୂଳକ ହେବ ନାହିଁ । ତେଣୁ କେ' କହିଲା—

'ବର୍ତ୍ତମାନ ପୂରା ଖଳାସ ହେବା କଥା ଭୁଲିଯିବା । ଏବେ ତାର ପ୍ରଶ୍ନ ଉଠୁନି । ଆପଣତ ଆଉ ଦୁଇଟି ସମ୍ଭାବନାର କଥା କହୁଥିଲେ ? ସ୍ପଷ୍ଟ ଖଳାସ ଏବଂ ଅନିର୍ଦ୍ଦିଷ୍ଟ କାଳପାଇଁ ବିଚାରକୁ ଘୁଞ୍ଚାଇ ଦେବା କଥା କହୁଥିଲେ ।'

'ସେଗୁଡିକ କେବଳ ସମ୍ଭାବନା' ଚିତ୍ରକର କହିଲା । କିନ୍ତୁ ସେସବୁ ବିଷୟ କହିବା ଆଗରୁ ଆପଣ କଣ ଆପଣଙ୍କ ଫତେଇଟି ଖୋଲିବେ ନାହିଁ ? ଜଣା-ଯାଉଛି ଆପଣଙ୍କୁ ଖୁବ୍ ଗରମ ହେଉଛି ।' ବର୍ତ୍ତମାନ ପୁଣି ସେ କେବଳ ଚିତ୍ରକର

Digitized by srujanika@gmail.com

ଖପସ୍ଥରେ ସଚେତ ଥିଲା । ଆଉ କୌଣସି ଖପସ୍ଥ ପ୍ରତି ଦୃଷ୍ଟି ଦେଇନଥିଲା ।' ସେତେ-ବେଳେ ଚନ୍ଦକର ଗ୍ରୀଷ୍ମର ସୂଚନା ଦେଲା ସେ ତାର କପାଳରେ ହାତ ବୁଲାଇ ଆଣିଲା । ସେ ପୂର୍ବ ଝାଳରେ ବୁଡ଼ିଯାଇଥାଏ ।

'ଗରମ, ଅସହ୍ୟ ଗରମ ।' ଚନ୍ଦକର ଏକଥାରେ ମୁଣ୍ଡ ହଲାଇଲା । ସେମିତକ କେ'ର ଅସୁବିଧାକୁ ସେ ଉତ୍ତମରୂପେ ଅନୁଭବ କରିପାରୁଛି ।

'ଆମେ କଅଣ ଝରକା ଖୋଲି ପାରିବାନି ?' କେ' ପଚାରିଲା ।

'ନା', ଚନ୍ଦକର ଉତ୍ତର ଦେଲା । 'ଏହା ଝରକା ନୁହେଁ, ଖାଲି କାଚ-ଝଣ୍ଡିଏ ଗ୍ଲାସ ଉପରେ ଖଞ୍ଜା ହୋଇଛି । ଏହାକୁ ଖୋଲି ହେବ ନାହିଁ ।'

ବର୍ତ୍ତମାନ ପୂର୍ବା କେ' ଖାଲି ଭାବୁଥିଲା ଯିଏ କମ୍ବା ଚନ୍ଦକର କେହି ଜଣେ ଝରକା ଖୋଲନ୍ତାକ ?

ଯିଏ ଭାବୁଥିଲା ଯଦି ତାକୁ ଟିକିଏ ପବନ ମିଳନ୍ତା ତେବେ ତାପାଇଁ ପାଟିଏ କ୍ରୁଦ୍ଧ ଦିଇଦେବାକୁ ସେ ପ୍ରସ୍ତୁତ ଅଛି । ଖୋଲାପବନ ଠାରୁ ପୂରା ବିଚ୍ଛିନ୍ନ ହୋଇ-ଯିବାରୁ ତା ମଥା ବୁଲାଇ ଦେଲା । ବିଛଣା ଉପରେ ନିଜ ହାତକୁ ଥରେ ବୁଲାଇ ଆଣି କ୍ଷୀଣ ସ୍ୱରରେ କେ' କହିଲା 'ଏଠିକାର ଅବସ୍ଥା ଉଭୟ ଅସ୍ୱାସ୍ଥ୍ୟକର ଏବଂ କଷ୍ଟଦାୟକ ।'

'ନା, ନା' ଝରକାର ସପକ୍ଷରେ ଚନ୍ଦକର ପାଟି କରି ଉଠିଲା । ସେ କହିଲା ଯଦିଓ ଏହା ଖାଲି କାଚଝଣ୍ଡିଏ ତଥାପି ନବୁଜ କରି ଏହା ଜୋଡ଼ା ହୋଇଥିବାରୁ ଘରର ଉଷ୍ଣତାକୁ ଏହା ଅଧିକ ଭଲ ରଖିପାରେ । ଖୋଲା ଦୁଇଟିକିଆ ଝରକା ପାଖରୁ ଏହା ବହୁତ ଭଲ । ଯଦି କେବେ ମୁଁ ଘର ଭିତରକୁ ପବନ ଆସିବାକୁ ଚାହେଁ— ଅବଶ୍ୟ ଏପରି କେବେ ଦରକାର ପଡ଼େନାହିଁ । କାରଣ ସବୁ ଫାଙ୍କ ଦେଇ ପ୍ରଚୁର ପବନ ଆସେ, ସେତେବେଳେ ମୁଁ ଗୋଟିଏ କମ୍ବା ଦୁଇଟି କବାଟ ଖୋଲିଦିଏ ।'

ଏପରି ଉତ୍ତରରେ ଟିକିଏ ସାନ୍ତ୍ୱନା ପାଇ କେ' ଚାରିଆଡ଼କୁ ଦ୍ୱିତୀୟ କବାଟ ଉଦ୍ଦେଶ୍ୟରେ ଚାହିଁଲା । ଚନ୍ଦକର ବୁଝିପାରିଲା କେ' କଅଣ ଖୋଜୁଛି । ସେ କହିଲା—'କବାଟଟି ଠିକ୍ ତୁମ ପଛପଟେ । ତା ଆଗରେ ବିଛଣା ପକାଇ ତାକୁ ବନ୍ଦ କରିଦେଇଛି ।'

ଏତେବେଳେ ଯାଇ କାନ୍ଥରେ ଗୋଟିଏ ଛୋଟିଆ ଦ୍ୱାର ଥିବାର କେ' ଦେଖିଲା । କେ' କୌଣସି ସମାଲୋଚନା କରିବା ପୂର୍ବରୁ ଚନ୍ଦକର କହିଲା—

Digitized by srujanika@gmail.com

ଗୋଟିଏ ଷ୍ଟୁଡ଼ିଓ ପାଇଁ ଏ ଘରଟି ଅତି ଶ୍ରେଷ୍ଠ । ଯେତେ ପାରେ ଏହାକୁ ନେଇ ମୁଁ ଚଳିବାକୁ ଚେଷ୍ଟାକରେ । ଅବଶ୍ୟ ଠିକ୍ ସେହି ଦ୍ୱାର ସାମ୍ନାରେ ବିଛଣାଟିଏ ପକାଇବା ଅତ୍ୟନ୍ତ ଖରାପ । ଯେଉଁ ଜଜ୍‌ଙ୍କ ପ୍ରତିମୂର୍ତ୍ତି ଏବେ ମୁଁ ଆଙ୍କୁଛି ସେ ପ୍ରାୟ ସବୁବେଳେ ଏଇ ଦ୍ୱାର ଦେଇ ଆସନ୍ତି । ତାଙ୍କୁ ମୋତେ ଏଘରର ଗୋଟିଏ ଚାବି ଦେବାକୁ ପଡ଼ିଛି । କାହିଁକନା ମୁଁ ନଥିଲି ବେଳେ ଆସିଲେ ତାଙ୍କୁତ ଏଇଠି ଅପେକ୍ଷା କରିବାକୁ ପଡ଼େ । ଅବଶ୍ୟ ସାଧାରଣତଃ ସେ ବଡ଼ ସକାଳୁ ଆସନ୍ତି, ଯେତେବେଳେ ମୁଁ ଉଠିନଥାଏ । କିନ୍ତୁ ଯେତେ ଗାଢ଼ ନିଦରେ ଶୋଇଥିଲେ ବି ମୋ' ବିଛଣା ପଛ ଦ୍ୱାର ହଠାତ୍ ଖୋଲିଗଲେ ମୁଁ ଚମକି ଉଠି ପଡ଼େ । ଯଦି ସକାଳେ ମୋ' ବିଛଣା ଉପରକୁ ଉଠି ଆସୁଥିଲାବେଳେ ମୋର ଯେଉଁ ଗାଳି ତାଙ୍କୁ ସ୍ୱାଗତ ଜଣାଏ ତାକୁ ଯଦି ଥରେ ଶୁଣନ୍ତେ ତେବେ ସେମାନଙ୍କ ପ୍ରତି ଧର୍ମର ଥିବା ସବୁ ସମ୍ମାନ କୁଆଡ଼େ ଚାଲିଯାଆନ୍ତା । ତାଙ୍କ ପାଖରୁ ମୁଁ ଚାବି ଫେରାଇ ଆଣି ପାରନ୍ତି । କିନ୍ତୁ ତା'ଦ୍ୱାରା ଅବସ୍ଥା ଆହୁରି ଖରାପ୍ ହେବ । ଏଠି ଯେ କୌଣସି କବାଟ ଜୋର୍ କରି ଖୋଲିଦେବା ଖୁବ୍ ସହଜ ।'

ଏହିସବୁ ଆଲୋଚନା ଚାଲିଥିଲା ବେଳେ କେ' ଭାବୁଥିଲା, ସେ ତାର ଫଟେଇ ଖୋଲିବ ନା ନାହିଁ । ଯଦି ନଖୋଲେ ତେବେ ଏ କୋଠରୀ ଭିତରେ ଘଡ଼ିଏ ରହିବା ତା ପକ୍ଷରେ ଆଉ ସମ୍ଭବ ନୁହେଁ । ତେଣୁ ସେ ତା ଫଟେଇ ଖୋଲିଦେଲା ଏବଂ ଆଣ୍ଠୁ ଉପରେ ତାକୁ ରଖିଲା । ଏପରି କରିବାର ଉଦ୍ଦେଶ୍ୟ କଥାବାର୍ତ୍ତା ସରିଲା ପରେ ଯେମିତି ତାକୁ ପିନ୍ଧିବା ପାଇଁ ଆଉ ଅଧିକ ସମୟ ନଲାଗେ । କେ' ତାର ଫଟେଇ ଖୋଲିଛି କି ନାହିଁ ଝିଅମାନେ ପାଟିକଲେ— 'ହେଇ ବର୍ତ୍ତମାନ ସେ ତାଙ୍କ ଫଟେଇ ଖୋଲିଦେଲେ ।' କେ ଶୁଣିପାରୁ ଥାଏ ଯେ ସେମାନେ କାଚର ଫାଟ ପାଖରେ ତାକୁ ଦେଖିବାକୁ ଜମା ହୋଇଛନ୍ତି । ''ଝିଅମାନେ ଭାବୁଛନ୍ତି ମୁଁ ଆପଣଙ୍କ ଛବି ଆଙ୍କିବି । ସେଇଥିପାଇଁ ପୁଣି ଆପଣ ଫଟେଇ ଖୋଲିଲେ ।' ଚିତ୍ରକର କହିଲା ।

'ଆଚ୍ଛା' ଅଦୌ ଉତ୍ସାହିତ ନହୋଇ କେ' କହିଲା । କାହିଁକନା ଫଟେଇ ଖୋଲିଲା ପରେ ବି ତାକୁ ଅଦୌ ଭଲ ଲାଗୁ ନଥାଏ । ଯଦିଓ ବର୍ତ୍ତମାନ ସେ ଖାଲି ସାର୍ଟଟିକୁ ପିନ୍ଧି ବସିଥାଏ ।

'ଅନ୍ୟ ଦୁଇଟି ସମ୍ଭାବନା ବିଷୟ ଆପଣ କ'ଣ କହୁଥିଲେ ? ସେଗୁଡ଼ିକୁ କ'ଣ ଲୁହାହୋଇ ବର୍ଣ୍ଣନା କରାଯାଉଥିଲା କେ' ପୂରା ଭୁଲିଯାଇଥିଲା ।' 'ଗୁପ୍ତ ଖଲାସ ଏବଂ ଅନିର୍ଦ୍ଦିଷ୍ଟ କାଳପାଇଁ ବିଚାରକୁ ପଛାଇଦେବା' ଚିତ୍ରକର କହିଲା । 'ଏ ଭିତରୁ ଗୋଟାକୁ ବାଛିବା ତୁମ ଉପରେ ନିର୍ଭର କରେ । ଏ ଦୁଇଟି ପାଇଁ

Digitized by srujanika@gmail.com

ତୁମକୁ ମୁଁ ସାହାଯ୍ୟ କରିବି । ଅବଶ୍ୟ ଏଥିପାଇଁ ମୋତେ କଷ୍ଟ କରିବାକୁ ପଡ଼ିବ ନାହିଁ ଏମିତ ନୁହେଁ । ଏ ଦୁଇଟି ଭିତରେ ତଫାତ୍‌ଟା ହେଉଛି—ଗୁପ୍ତ ମୁକ୍ତିପାଇଁ ପ୍ରୟୋଜନ । ଅସ୍ଥାୟୀ ଭାବରେ ହେଲେବି, ପ୍ରଚେଷ୍ଟାର ଆନ୍ତରିକତା କିନ୍ତୁ ରହିତାବସ୍ଥା ତୁମ ଶକ୍ତି ଉପରେ କମ୍ ଆଞ୍ଚ ଆଣିଲେବି ଦୀର୍ଘକାଳ ଧରି ପରିଶ୍ରମ କରିବାକୁ ପଡ଼େ । ପ୍ରଥମେ ତେଣୁ ଗୁପ୍ତ ମୁକ୍ତିକଥା ବିସ୍ତାର କରିବା । ତୁମେ ଯଦି ଏହାକୁ ଗ୍ରହଣ କରିବାକୁ ମନସ୍ଥ କର ତେବେ ପ୍ରଥମେ ମୁଁ ଗୋଟିଏ କାଗଜରେ ତୁମ ନିର୍ଦ୍ଦୋଷତା ବିଷୟରେ ଏକ ସତ୍ୟପାଠ ଲେଖିଦେବି । ଏପରି ସତ୍ୟପାଠରେ କ'ଣ ଲେଖିବାକୁ ହେବ ସେ ବିଷୟରେ ବାପା ମୋତେ ଶିଖାଇ ଦେଇଛନ୍ତି । ତାଙ୍କ ଲେଖା ନିର୍ଭୁଲ ଏବଂ ଅଭେଦ୍ୟ । ତା ପରେ ଏହି ସତ୍ୟପାଠକୁ ନେଇ ମୁଁ ଜାଣିଥିବା ଜଜ୍‌ମାନଙ୍କ ପାଖକୁ ଯିବି । ଏଇ ଧରନ୍ତୁ, ଯେଉଁ ଜଜ୍‌ଙ୍କ ଛବି ମୁଁ ଅଙ୍କୁଛି ତାଙ୍କରି ପାଖରୁ ଆରମ୍ଭ କରିବି । ଅଙ୍କା ଗୃହରେ ସେ ଯେତେବେଳେ ତାଙ୍କ ଛବି ପାଇଁ ବସିବାକୁ ଏଠାକୁ ଆସିବେ ମୁଁ ତାଙ୍କ ଆଗରେ ଏହି ସତ୍ୟପାଠକୁ ଉପସ୍ଥାପିତ କରିବି । ତାଙ୍କୁ ବୁଝାଇ ଦେବି ଯେ ତୁମେ ନିର୍ଦ୍ଦୋଷ ଆଉ ମୁଁ ନିଜେ ତୁମ ନିର୍ଦ୍ଦୋଷତା ପାଇଁ ଗ୍ୟାରେଣ୍ଟି ରହିବି । ଏହା ଖାଲି ଲୋକ ଦେଖାଣିଆ ଗ୍ୟାରେଣ୍ଟି ନୁହେଁ । ଏହା ପ୍ରକୃତ ଏବଂ ମୋତେ ତାକୁ ମାନିବାକୁ ପଡ଼ିବ ।' ଚିତ୍ରକରର ଆଖିରେ ବିରକ୍ତିର ସାମାନ୍ୟ ସୂଚନା ଫୁଟି ଉଠିଥିଲା । କାହିଁକି ନା କେ' ତା' ଉପରେ ଏପରି ଏକ ଦାୟିତ୍ୱର ବୋଝ ଲଦି ଦେଉଛି ।

'ଏହା ଆପଣଙ୍କର ଅପାର ଦୟା' କେ' କହିଲା । 'ଜଜ୍ ଆପଣଙ୍କୁ ବିଶ୍ୱାସ କରିବେ ଅଥଚ ମୋତେ ପୂର୍ଣ ମୁକ୍ତି ମିଳିବ ନାହିଁ ।'

'ମୁଁ ପରା ଆପଣଙ୍କୁ ବୁଝାଇ କହୁଛି । ପୁଣି ଏହା କେବେ ନିଶ୍ଚିତ ନୁହେଁ ଯେ ସବୁ ଜଜ୍‌ମାନେ ମୋତେ ବିଶ୍ୱାସ କରିବେ । ଉଦାହରଣ ସ୍ୱରୂପ ଅନେକ ଜଜ୍ ଆପଣଙ୍କୁ ବ୍ୟକ୍ତିଗତ ଭାବେ ଦେଖିବାକୁ ଚାହିଁବେ ସେତେବେଳେ ଆପଣଙ୍କୁ ନେଇ ମୁଁ ସେମାନଙ୍କ ସହ ଦେଖା କରିବି । ଯେତେବେଳେ ଏପରି ଦେଖା ସାକ୍ଷାତ ହେବ ଆପଣ ଧରିନେବେ ଯେ କାମ ଅଧା ହାସଲ୍ ହୋଇଗଲା । ତଥାପି ମୋତେ ଆଗରୁ କହି ରଖିବାକୁ ହେବ କେଉଁ ଜଜ୍‌ଙ୍କ ପାଖରେ ଆମକୁ କଅଣ କରିବାକୁ ହେବ । ଯେଉଁ ଜଜ୍‌ମାନେ ମୋତେ ପ୍ରଥମରୁ ଦୂରେଇ ଦେବେ ସେମାନଙ୍କ ପାଖରୁ ଆମର ପ୍ରକୃତ ଅସୁବିଧା ଆରମ୍ଭ ହେବ । ଏପରି ହେବା ମଧ୍ୟ ନିଶ୍ଚିତ । ସେମାନଙ୍କ ପାଖରେ ଆମେ ପ୍ରାର୍ଥନା କରି ଚାଲିଥିବୁ ତଥାପି ସେମାନଙ୍କୁ ଛାଡ଼ି ଆମକୁ କାମ ହାସଲ କରିବାକୁ ପଡ଼ିବ । ଏହା କରିବା ସମ୍ଭବ କାହିଁକି ନା ଜଜ୍‌ମାନଙ୍କ ବ୍ୟକ୍ତିଗତ ମତ ପାର୍ଥକ୍ୟ ଫଳାଫଳ ଉପରେ କୌଣସି ପ୍ରଭାବ ପକାଇ

Digitized by srujanika@gmail.com

ପାରିବ ନାହିଁ । ଯେତେବେଳେ ଅଧିକାଂଶ ଜଜ୍‌ଙ୍କୁ ମୁଁ ମୋର ସତ୍ୟପାଠ ଦ୍ୱାରା ପ୍ରଭାବିତ କରି ଦେବି ସେତେବେଳେ ଯାଇ ତୁମ କେଶ୍ ବିଚାର କରୁଥିବା ଜଜ୍‌ଙ୍କୁ ଛାଡ଼ି ଦେବ । ଖୁବ୍ ସମ୍ଭବ ତାଙ୍କ ଦସ୍ତଖତ୍ ପାଇବାରେ ମଧ୍ୟ ମୁଁ ସଫଳ ହୋଇ-ପାରିବି । ସେତେବେଳେ ଯାଇ ସବୁ କାମ ଶୀଘ୍ର ଶୀଘ୍ର ହୋଇଯିବ । ହୁଏତ ଟିକିଏ ଅଧିକ ସହଜ ବି ହୋଇ ଯାଇ ପାରେ । ଏହାପରେ ଆଉ କିଛି ଅସୁବିଧା ନାହିଁ କହିଲେ ଚଳେ । ଅଭିଯୁକ୍ତ ବ୍ୟକ୍ତି ଏପରି ଅବସ୍ଥାରେ ଆତ୍ମବିଶ୍ୱାସ ଫେରିପାଇ ଥାଏ । ପ୍ରକୃତରେ ଏହା ବେଶ୍ ଆକର୍ଷଣୀୟ । ଏହା ସତ ଯେ ଏହି ଅବସ୍ଥାରେ ହିଁ ମୋକଦ୍ଦମାରେ ଆତ୍ମବିଶ୍ୱାସ ଅଧିକ ଥାଏ, ଏମିତିକି ମୁକ୍ତି ପାଇଲା ପରଠାରୁ ବି ଅଧିକ । ଆଉ ଅଧିକ କିଛି କରିବାର ପ୍ରୟୋଜନ ନଥାଏ । ସତ୍ୟପାଠ ଉପରେ ଅନ୍ୟ ଜଜ୍‌ମାନଙ୍କ ଗ୍ୟାରେଣ୍ଟି ବିଚାର କରୁଥିବା ଜଜ୍‌ଙ୍କ କାମକୁ ଲାଘବ କରିଦିଏ । ତେଣୁ ସହଜ ଭାବରେ ଖୋଲା ମନ ନେଇ ସେ ଖଲାସ କରିଦେଇ ପାରନ୍ତି । ଅବଶ୍ୟ କେତୋଟି ନୀତି ନିୟମ କେତୋଟି ଉପଚାର ରକ୍ଷା କରିବାକୁ ପଡ଼େ । ତଥାପି ସେ ନିଶ୍ଚିତ ଭାବରେ ମୋତେ ଏବଂ ତାଙ୍କର ଅନ୍ୟ ବନ୍ଧୁମାନଙ୍କୁ ଖୁସି କରିବା ପାଇଁ ଖଲାସ ଆଦେଶ ଦିଅନ୍ତି । ସେତେବେଳେ ଆପଣ କୋର୍ଟକୁ ଜଣେ ମୁକ୍ତ ମଣିଷ ଭାବେ ଯାଇପାରନ୍ତି ।

'ତା' ହେଲେ ମୁଁ ଖଲାସ' ସନ୍ଦେହ ଭରା ସ୍ୱରରେ କେ' କହିଲା ।

'ନିଶ୍ଚୟ' ଚିତ୍ରକର କହିଲା । 'କିନ୍ତୁ ଗୁପ୍ତଭାବରେ କିମ୍ବା ଆହୁରି ଠିକ୍ ଭାବରେ କହିବାକୁ ଗଲେ ଅସ୍ଥାୟୀ ଭାବରେ ମୁକ୍ତ ହେବେ । କାରଣ ଯେଉଁ ସବୁ ତଳପାହ୍ୟାର ଜଜ୍‌ମାନଙ୍କ ସହ ମୋର ପରିଚୟ ସେମାନେ ପୂରା ଖଲାସ କରି ପାରିବାର କ୍ଷମତା ନାହିଁ । ଏପରି କ୍ଷମତା କେବଳ ସର୍ବୋଚ୍ଚ ବିଚାରାଳୟର ଅଛି ଯେଉଁଠିକି ଆପଣଙ୍କର ମୋର ବା କାହାରି ଯିବାର କ୍ଷମତା ନାହିଁ । ସେଠାରେ ଆମ ଭାଗ୍ୟ କଅଣ ଆମେ ଜାଣୁନା, କହିବାକୁ ଗଲେ ଜାଣିବାକୁ ଚାହୁଁନା । ଜଣକୁ ଦୋଷରୁ ପୂରା ମୁକ୍ତ କରିଦେବାର କ୍ଷମତା ଆମ ଜଜ୍‌ମାନଙ୍କର ନାହିଁ କିନ୍ତୁ ଜଣଙ୍କର ମୁଣ୍ଡରୁ ଅଭିଯୋଗର ବୋଝକୁ ଖସାଇ ଦେବାର ଅଧିକାର ନିଶ୍ଚିତ ଭାବେ ଏମାନଙ୍କର ଅଛି । ଅର୍ଥାତ୍ କହିବାକୁ ଗଲେ ଏପରି ଭାବରେ ଖଲାସ ହେବାର ଅର୍ଥ ଆପଣଙ୍କ ଉପରୁ ଅଭିଯୋଗ କେବଳ ଅସ୍ଥାୟୀ ଭାବରେ କାଢ଼ିନିଆ ହୋଇଥାଏ ସିନା କିନ୍ତୁ ଆପଣଙ୍କ ମୁଣ୍ଡ ଉପରେ ତାହା ସବୁବେଳେ ଝୁଲି ରହିଥାଏ । ଯେତେ-ବେଳେ ଉପରୁ ଆଦେଶ ଆସି ପହଞ୍ଚେ ସାଙ୍ଗେ ସାଙ୍ଗେ ପୁଣି ଥରେ ବିଚାର ଆରମ୍ଭ ହୋଇଯାଏ । କୋର୍ଟ ସହିତ ମୋର ସମ୍ପର୍କ ଅତି ଘନିଷ୍ଠ ହୋଇଥିବାରୁ କୋର୍ଟର ଆଇନ୍ ଅନୁସାରେ ନିଶ୍ଚିତ ଖଲାସ ଓ ଗୁପ୍ତ ଖଲାସ ବିଷୟରେ ଥିବା ପାର୍ଥକ୍ୟକୁ

Digitized by srujanika@gmail.com

କିପରି ଦେଖାଯାଏ ତାହା ମୁଁ ଆପଣଙ୍କୁ କହିପାରେ । ନଥିପତ୍ର ଯେଉଁଠି ରହିବାର କଥା ରହେ । ସେଥିରେ ଆପଣଙ୍କ ସତ୍ୟପାଠ ଏବଂ ଖଲାସ ହେବାର ନିର୍ଦ୍ଦେଶ ଆଉ ଖଲାସ ହେବାର କାରଣ ସବୁ ଯାହା ଯୋଡ଼ାଯାଏ । ଆପଣଙ୍କର ସବୁ ନଥିପତ୍ର ନିରବଚ୍ଛିନ୍ନ ନିୟମାନୁସାରେ ତଳ କୋର୍ଟରୁ ଉପର କୋର୍ଟ ଏବଂ ପୁଣି ଉପର କୋର୍ଟରୁ ତଳ କୋର୍ଟକୁ ଯିବା ଆସିବା କରୁଥାଏ । କେତେବେଳେ ଅଧିକ ବେଗରେ, କେତେବେଳେ ରହିରହି । ନଥିପତ୍ରର ତଳୁ ଉପରେ ଏବଂ ଉପରୁ ତଳ, ଯାହା ଅସରନ୍ତି, ଅନନ୍ତ । ଜଣେ ଉଦାସୀନ ଅଜ୍ଞ ଦର୍ଶକ ହୁଏତ ଭାବିପାରେ ଯେ ସମସ୍ତ ମକଦ୍ଦମାଟି ପୂରା ବିସ୍ମୃତ, କାଗଜପତ୍ର ହଜିଗଲାଣି ତେଣୁ ମୁକ୍ତି ସମ୍ପୂର୍ଣ୍ଣ । କିନ୍ତୁ କୋର୍ଟ ସହ ପ୍ରକୃତ ପରିଚୟ ଥିବା କୌଣସି ଲୋକ କେବେ ଏମିତି ଭାବି ପାରିବ ନାହିଁ । ଏଠାରେ କୌଣସି କାଗଜ କେବେ ହଜେ ନାହିଁ । କୋର୍ଟ କେବେ କିଛି ଭୁଲେ ନାହିଁ । ଜଣାନାହିଁ, ଶୁଣାନାହିଁ ଦିନେ ହଠାତ୍ ଜଣେ ଜଜ୍ ନଥିପତ୍ର ସବୁ ମାଗିନେଇ ଅତି ମନଯୋଗ ସହ ପଢ଼ିବା ଆରମ୍ଭ କରି ଦେବେ । ଯେତେବେଳେ ଜାଣିବେ ଯେ ଏହି କେଶ୍‌ର ଅଭିଯୋଗଗୁଡ଼ିକ ତଥାପି କାଏମ୍ ରହିଛି ସାଙ୍ଗେ ସାଙ୍ଗେ ଗିରଫ୍ କରିବା ପାଇଁ ଆଦେଶ ଦେବେ । ଏମିତି କହିଲା ବେଳେ ମୁ ଧରି ନେଇଛି ଯେ ଅସ୍ଥାୟୀ ଖଲାସ ହେବା ଆଉ ନୂଆ ଗିରଫ୍ ହେବା ଭିତରେ ଗୁଡ଼ାଏ ସମୟ କଟିଯାଏ । ଏପରି ଘଟିବାର ଅନେକ ମକଦ୍ଦମା କଥା ମୁଁ ଜାଣିଛି । କିନ୍ତୁ ଏମିତି ବି ହେବାର ମୁଁ ଜାଣିଛି ଯେ ଆପଣ ଖଲାସ ହୋଇ ସିଧା ଘରକୁ ଯାଇ ପହଞ୍ଚିଲା ବେଳକୁ ଦେଖିବେ ଯେ ସେଠି ଆପଣଙ୍କୁ ଗିରଫ୍ କରିବା ପାଇଁ କର୍ମଚାରୀ ମାନେ ଅପେକ୍ଷା କରି ରହିଥିବେ । ସେତେବେଳେ ଅବଶ୍ୟ ସବୁ ସ୍ୱାଧୀନତାର ସମାପ୍ତି ଘଟିଥାଏ ।'

ତାହାହେଲେ କ'ଣ 'ସେ କେଶ୍ ଆଉଥରେ ନୂଆ କରି ଆରମ୍ଭ ହୁଏ ?' ସନ୍ଦେହ ମନରେ କେ' ପଚାରିଲା ।

'ନିଶ୍ଚୟ' ଚିତ୍ରକର କହିଲା । 'ସେ କେଶ୍ ଆଉଥରେ ନୂଆ କରି ଆରମ୍ଭ ହୁଏ । ତଥାପି ଏହା ସନ୍ଦେହ ଯେ ଆଗର ପରି ଆଉଥରେ ଅସ୍ଥାୟୀ ଖଲାସ ପାଇଁ ଆଦେଶବି କରିଯାଇ ପାରେ । ଜଣେ ତାର ସମସ୍ତ ଶକ୍ତି ଖଟାଇବା ଉଚିତ୍ । କେବେ ଭାଙ୍ଗିପଡ଼ିବା ଉଚିତ ନୁହେଁ ।' ଶେଷ କଥା ପଦକ ସେ କହିଲେ କାରଣ ସେତେବେଳକୁ କେ' ହତାଶ ହୋଇ ଭାଙ୍ଗିପଡ଼ିବା ଭଳି ଦିଶୁଥିଲା ।

କିନ୍ତୁ ଏ ବିଷୟରେ ଆଉ ନୂଆ କଥା ବୁଝାଇ ନଦେବାକୁ ଇଚ୍ଛାକରି କେ' ଆରମ୍ଭ କଲା 'ଆଉଥରେ ସବୁ କଥା ନେଇ ଆଣି ଥୋଇବା କ'ଣ ପୂର୍ବାପେକ୍ଷା କଷ୍ଟକର ନୁହେଁ ?'

Digitized by srujanika@gmail.com

'ଏ କ୍ଷେତ୍ରରେ କୌଣସି ନିଶ୍ଚିତ ଭାବରେ କିଛି କହିପାରିବ ନାହିଁ । ମୁଁ ଭାବୁଛି, ଆପଣ ଭାବୁଛନ୍ତି ଯେ ଏହି ଦ୍ୱିତୀୟଥର ଗିରଫ୍ ହେବା ଅଭିଯୁକ୍ତ ବିରୁଦ୍ଧରେ ଜଜ୍‌ମାନଙ୍କ ମନକୁ ପ୍ରଭାବିତ କରିଦେବ । କିନ୍ତୁ ସେମିତି କିଛି ନୁହେଁ । ଏମିତି ଯେତେବେଳେ ଜଜ୍‌ମାନେ ପ୍ରଥମ ଖଲାସ ପାଇଁ ଆଦେଶ ଦିଅନ୍ତି ସେତେବେଳେ ବି ସେମାନେ ଦ୍ୱିତୀୟଥର ଗିରଫ ହେବାର ସମ୍ଭାବନାକୁ ଜଳ ଜଳ ଦେଖିପାରନ୍ତି । ତେଣୁ ଏପରି ଭାବିବାର ପ୍ରଶ୍ନ ଉଠେନା । ତେବେ ଏମିତି ହୋଇପାରେ ଯେ ଏହି ଦ୍ୱିତୀୟଥର ଗିରଫ ବେଳେ ବିଚାରପତିଙ୍କ ମାନସିକ ଅବସ୍ଥାରେ ହଜାରେ କାରଣ ଯୋଗୁଁ ପରିବର୍ତ୍ତନ ଆସିଥାଇ ପାରେ । ଆଇନର ବିଶ୍ଳେଷଣ ଓ ତର୍ଜମା କରି-ବେଳେ ଏ ପରିବର୍ତ୍ତନ ପରିଲକ୍ଷିତ ହୋଇପାରେ । ଏପରି କ୍ଷେତ୍ରରେ ଦ୍ୱିତୀୟ ଖଲାସ ପାଇଁ ଜଣକର ଚେଷ୍ଟା ଏହି ପରିବର୍ତ୍ତିତ ପରିସ୍ଥିତିକୁ ଲକ୍ଷ୍ୟ ରଖି ହେବା ଉଚିତ । ପୁଣି ପୂର୍ବର ଉତ୍ସାହରେ ଯେପରି ଟିକିଏ ହେଲେ ଅଭାବ ନରହିବା ଉଚିତ୍ । ଅଧିକନ୍ତୁ ପ୍ରଥମ ଥର ଅପେକ୍ଷା ଅଧିକ ତେଜରେ ଲାଗିବା ଉଚିତ୍ ।' ଚିଟକର କହିଲା ।

'କିନ୍ତୁ ଏହି ଦ୍ୱିତୀୟ ଖଲାସ ବି ଚୂଡ଼ାନ୍ତ ନୁହେଁ ।' ନିଜ ମୁହଁକୁ ଆଗ୍ରହାନ୍ୱିତ ଭାବେ ବୁଲାଇ କେ' କହିଲା ।

ଚିଟକର କହିଲା—'ଅବଶ୍ୟ ନୁହେଁ । ଦ୍ୱିତୀୟ ଖଲାସ ପରେ ତୃତୀୟ, ଏବଂ ତୃତୀୟ ପରେ ଚତୁର୍ଥ ଗିରଫ୍‌ଦାରୀ ମଧ୍ୟ ହୋଇପାରେ । ଏହିପରି ଗିରଫ୍ ପରେ ଗିରଫ ମଧ୍ୟ ଚାଲିପାରେ । ଅସ୍ଥାୟୀ ଖଲାସର ମାନେ ଏଇଆ ।'

କେ' କିଛି ନକହି ଚୁପ୍‌ରହିଲା । 'ଅସ୍ଥାୟୀ ଖଲାସ ଆପଣଙ୍କର ପସନ୍ଦ ହେଉ ନାହିଁ ।' ଚିଟକର କହିଲା । 'ବୋଧହୁଏ ରହିତାବସ୍ଥା ଆପଣଙ୍କୁ ବେଶୀ ସୁହାଇବ । ରହିତାବସ୍ଥା କେମିତି ହୁଏ କଅଣ ଆପଣଙ୍କୁ କହିବି ?' କେ' ମୁଣ୍ଡ ଝୁଙ୍କାଇଲା । ଚିଟକର ନିଜ ଚଉକି ଉପରେ ଟିକିଏ ଢଳିପଡ଼ିଲା । ତାର ଗାଉନର ଜାମାଟି ଖୋଲି ଗଲା । ସେଇ ଫାଙ୍କ ଦେଇ ଗୋଟିଏ ହାତ ଭର୍ତ୍ତିକରି ସେ ନିଜ ଛାତିକୁ ସାଉଁଳି-ବାରେ ଲାଗିଲା । ରହିତାବସ୍ଥା ଏତିକି କହି ଚିଟକର କେ' ଆଡ଼କୁ ସିଧା କିଛିସମୟ ଚାହିଁ ରହିଲା । ଯେମିତିକି ସେ ଏକ୍‌ବାରେ ସଠିକ୍ ଅର୍ଥଟିକୁ ଖୋଜିବୁଲୁଛି । ତା' ପରେ କହିଲା—'ରହିତାବସ୍ଥା ହେଉଛି କେଶ୍‌ଟି ପ୍ରଥମେ ଯେଉଁ ଅବସ୍ଥାରେ ଅଛି, ଆଉ ଆଗକୁ ଯିବାକୁ ନଦେଇ ସେଇଠି ସେଇ ଅବସ୍ଥାରେ ତାକୁ ରଖିଦେବା । ଏପରି କରିବାକୁ ହେଲେ ଅଭିଯୁକ୍ତ ବ୍ୟକ୍ତି କିମ୍ବା ତାର ଏଜେଣ୍ଟ ବିଶେଷ କରି ତା ଏଜେଣ୍ଟକୁ କେଶ୍ ସହ ସବୁବେଳେ ପ୍ରତ୍ୟକ୍ଷ ବ୍ୟକ୍ତିଗତ ସଂପର୍କ ରଖିବାକୁ ପଡ଼ିବ । ଆଉଥରେ କହି ରଖେ, ଏପରି କରିବାକୁ ହେଲେ ଅସ୍ଥାୟୀ ଖଲାସବେଳେ ଯେମିତି

Digitized by srujanika@gmail.com

ଶକ୍ତିର ଦରକାର ସେପରି ଅଧିକ ଶକ୍ତିର ପ୍ରୟୋଜନ ନାହିଁ । ଏଠି ଦରକାର ସବୁବେଳେ ସତର୍କ ଦୃଷ୍ଟି । ଆପଣଙ୍କ ହାତ ମୁଠାରୁ କେଶ୍‌ଟିକୁ କେବେହେଲେ ବାହାରକୁ ଯିବାକୁ ଦେବେନାହିଁ । ନିୟମିତ ଭାବରେ, ମଝିରେ ମଝିରେ ପୁଣି ଦରକାର ପଡିଲେ ଯାଇ ଜଜ୍‌ମାନଙ୍କ ସହ ଦେଖା କରିବାକୁ ପଡ଼ିବ । ଏବଂ ଆପଣଙ୍କର ସବୁ ଶକ୍ତି ଖଟାଇ ସବୁବେଳେ ତାଙ୍କ ସହ ବନ୍ଧୁତ୍ୱ ରଖିବାକୁ ପଡ଼ିବ । ଯଦି ବ୍ୟକ୍ତିଗତ ଭାବେ ଜଜ୍‌ଙ୍କ ସହ ଆପଣଙ୍କର ପରିଚୟ ନାହିଁ ତେବେ ଆପଣ ଜାଣିଥିବା ଜଜ୍‌ଙ୍କ ସାହାଯ୍ୟରେ ତାଙ୍କୁ ପ୍ରଭାବିତ କରିବାକୁ ଚେଷ୍ଟା କରିବେ । କିନ୍ତୁ ବ୍ୟକ୍ତିଗତ ସାକ୍ଷାତ ପାଇଁ ସବୁବେଳେ ଚେଷ୍ଟା କରୁଥିବେ । ସେଥିରୁ ଯେମିତି ହଟି ନଯାଆନ୍ତି । ଟିକିଏ ବି ହେଲା ନକରି ଯଦି ଏସବୁ ଯଥାସମ୍ଭବ କରୁଥାନ୍ତି ତେବେ ଆପଣ ନିଶ୍ଚିତ ହେବେ ଯେ ଆପଣଙ୍କ କେଶ୍ ପ୍ରଥମ ପର୍ଯ୍ୟାୟରୁ କେବେ ଉପରକୁ ଉଠିବ ନାହିଁ । ଏହା ନୁହେଁ ଯେ ଆପଣଙ୍କ ବିରୁଦ୍ଧରେ ଥିବା ଅଭିଯୋଗଗୁଡ଼ିକୁ ଉଠାଇ ନିଆଯିବ କିନ୍ତୁ ଆପଣ ମନଖୁସିରେ ଦଣ୍ଡ ନପାଇ ବୁଲିପାରିବେ । ଯେମିତି ଆପଣ ଜଣେ ନିର୍ଦ୍ଦୋଷ ବ୍ୟକ୍ତି । ଅସ୍ଥାୟୀ ମୁକ୍ତି ଅପେକ୍ଷା ରହିତାବସ୍ଥାରେ ଏହି ଲାଭ । ଯଦିଓ ଜଣଙ୍କର ଭବିଷ୍ୟତ ଏଥିରେ ଅନିଶ୍ଚିତ ତଥାପି ହଠାତ୍ ଗିରଫ୍‌ହେବା ଭୟରୁ ସେ ମୁକ୍ତ । ଏପରି ଅବସ୍ଥାରେ ଜଣକୁ ଅସମୟରେ, ଏମିତିକି ସବୁଠାରୁ ଅଧିକ ଅସୁବିଧା ସମୟରେ ମାନସିକ ଉତ୍ତେଜନା ଆଉ ଦ୍ୱନ୍ଦ୍ୱ ଭିତରେ ଗତିକରିବାକୁ ପଡିବ ନାହିଁ । ମାତ୍ର ଅସ୍ଥାୟୀ ଖଲାସ ହେଲେ ଏପରି ହେବା ନିଶ୍ଚିତ । ରହିତାବସ୍ଥାରେ ଅନେକ ଅସୁବିଧା ଏବଂ ସେଗୁଡ଼ିକୁ ଛୋଟକରି ଦେଖିବା ଉଚିତ୍ ନୁହେଁ । ଏମିତି କହିଲାବେଳେ ମୁଁ ଭାବୁଛି ଯେ ଅଭିଯୁକ୍ତ ବ୍ୟକ୍ତି କେବେ ପୁରା ମୁକ୍ତ ବୋଲି । ପ୍ରକୃତ ପକ୍ଷରେ ସେ କେବେ ମୁକ୍ତ ନୁହେଁ । ଏମିତିକି ଅସ୍ଥାୟୀ ଖଲାସରେ ବି । ଏହାଛଡ଼ା ଏହାର ଅନ୍ୟାନ୍ୟ ଅସୁବିଧା ମଧ୍ୟ ଅଛି । କୌଣସି ବିଶ୍ୱାସଯୋଗ୍ୟ କାରଣ ନଦେଖାଇ ମକଦ୍ଦମାକୁ ଅନିର୍ଦ୍ଦିଷ୍ଟ କାଳ ପାଇଁ ରହିତାବସ୍ଥାରେ ରଖିବା ସମ୍ଭବ ନୁହେଁ । ତେଣୁ କିଛିନା କିଛି କାରଣ ଦେଖାଇବାକୁ ପଡ଼ିବ । ବିଭିନ୍ନ ବ୍ୟବସ୍ଥାମାନ କରିବାକୁ ପଡ଼ିବ । କେତେବେଳେ ଅଭିଯୁକ୍ତକୁ ପଚରା ଉଚରା କରାଯିବ, କେତେବେଳେ ପ୍ରମାଣ ସବୁ ସଂଗ୍ରହ କରାଯିବ । ଏହା ଦ୍ୱାରା କାମ ଚାଲିଛି ବୋଲି ଦେଖାଇବାକୁ ପଡିବ । ତେଣୁ ସବୁବେଳେ ବିଚାର କାମ ଚାଲିଥିବ ଯଦିଓ କୃତ୍ରିମ ଭାବରେ ଯେଉଁ ଛୋଟ ଦଳଟି ଭିତରେ ଏହା ସୀମିତ ସେହି ଦଳଟି ଭିତରେ ଏସବୁ କାମ ହେଉଥିବ । ଏଥିପାଇଁ ଅଭିଯୁକ୍ତକୁ କେବେକେବେ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିବ । କିନ୍ତୁ ଏସବୁ ଅସୁବିଧାକୁ ଅଭିଯୁକ୍ତ ଅତିବେଶୀ ଅସୁବିଧା ବୋଲି ଭାବିବା ଠିକ୍ ନୁହେଁ । କାହିଁକିନା ଏହା କେବେ ଗୋଟିଏ ଉପଚାର ଗୋଟିଏ ବ୍ୟବସ୍ଥା ମାତ୍ର । ଏହି ଧରନ୍ତୁ ଯେମିତି ପ୍ରଶ୍ନ

Digitized by srujanika@gmail.com

ପଗ୍ଭରବା କାମ ଖୁବ୍ କମ୍ ସମସ୍ତ ପାଇଁ ହେବ । ଆଜି ଆପଣଙ୍କର ସମସ୍ତ କମ୍ପା ଇଚ୍ଛା ନଥାଏ ତେବେ ଆପଣ କୌଣସି କାରଣ ଦର୍ଶାଇନପାର ରହିଯାଇପାରନ୍ତି । କେତେକ ଜଜ୍ଙ୍କ ପାଖରେ ଆପଣଙ୍କର ସାକ୍ଷାତକାରର ଘନ ବହୁତ ଆଗରୁ ଠିକ୍ କରପାରନ୍ତି । ଏହା କେବଳ ଆପଣ ଯେ ଅଭିଯୁକ୍ତ ବ୍ୟକ୍ତି ଏହାର ସ୍ୱୀକୃତି ମାତ୍ର । ତେଣୁ ଜଜ୍ଙ୍କ ଆଗରେ ନିୟମିତ ହାଜର୍ ହେବା ଏକ ଉପଚାର ।' ଏହି ଶେଷ କଥା କହିବା ବେଳକୁ କେ' ତାର ଫତେଇକୁ ହାତରେ ଧର ଠିଆ ହୋଇସାର ଥିଲା । ଦ୍ୱାର ପଛରୁ ପାଟି ଶୁଭିଲା—

'ସେ ଏବେ ଉଠି ଠିଆ ହେଲେଣି ।'

'ଆପଣ କ'ଣ ପ୍ରକୃତରେ ଯାଉଛନ୍ତି ?' ଚାଙ୍କର ଯିଏକି ନିଜେ ଠିଆ ହୋଇ ସାରଥିଲା, ପଗ୍ଭରିଲା । 'ନିଶ୍ଚିତ ଯେ ଏଘରର ବାତାବରଣ ଆପଣଙ୍କୁ ଯିବାପାଇଁ ବାଧ୍ୟ କରୁଛି । ମୁଁ ସେଥିପାଇଁ ଦୁଃଖିତ । ମୋର ଆହୁରି ଅନେକ କହିବାର ଥିଲା । ମୋତେ ଖୁବ୍ ସଂକ୍ଷେପରେ କହିବାକୁ ପଡ଼ିଲା । କିନ୍ତୁ ମୋର ବିଶ୍ୱାସ ମୁଁ ବେଶ୍ ପ୍ରାଞ୍ଜଳ ହୋଇପାରିଛି ।'

'ନିଶ୍ଚୟ' କେ' କହିଲା । ଚାଙ୍କର କଥା ଶୁଣି ଶୁଣି ସେତେବେଳକୁ ତାର ମଥା ବିନ୍ଧିବାକୁ ଲାଗିଲାଣି । କେ' ଏପରି କହିବା ସତ୍ତ୍ୱେ ଚାଙ୍କର ଆଉଥରେ ତା କଥାର ସାରାଂଶଟି କହିବାକୁ ଚେଷ୍ଟା କଲା । ତାର ଉଦ୍ଦେଶ୍ୟ ଶେଷଥର ପାଇଁ ସେ କେ'କୁ ସାନ୍ତ୍ୱନାର ବାଣୀ ଶୁଣାଇବ । ଉଭୟ ବ୍ୟବସ୍ଥାରେ ଗୋଟିଏ ସାଧାରଣ କଥା ହେଉଛି ଯେ ସେମାନେ ଅଭିଯୁକ୍ତକୁ ଦଣ୍ଡ ପାଇବାରୁ ରକ୍ଷା କରନ୍ତି । କିନ୍ତୁ ସେମାନେ ଅଭିଯୁକ୍ତକୁ ପ୍ରକୃତ ଖଲାସ ହେବାକୁ ଦିଅନ୍ତି ନାହିଁ । ଅତି ଧୀର ସ୍ୱରରେ କେ' ଏତକ କହିଲା ଯେମିତିକି ନିଜ ତତ୍ତ୍ୱବୋଧ ଦ୍ୱାରା ସେ ନିଜେ ବିଚଳିତ ହୋଇପଡ଼ିଛି ।

'ହଁ, ଆପଣ ଠିକ୍ ମର୍ମଟିକୁ ଧରିଛନ୍ତି ।' ଚାଙ୍କର ଖୁବ୍ ଶୀଘ୍ର କହି ଉଠିଲା । କେ' ତାର ଓଭରକୋଟ୍‌ଟିକୁ ଧରିଲା । କିନ୍ତୁ ଫତେଇ ପିନ୍ଧିବ କି ନାହିଁ ଠିକ୍ କର ପାରିଲାନାହିଁ । ତାର ଇଚ୍ଛା ହେଉଥିଲା ସେସବୁକୁ ଏକା ସାଙ୍ଗରେ ପୁଡ଼ୁଳାଟିଏ କର ଏଘର ଭିତରୁ ବାହାରର ଖୋଲା ପବନକୁ ଧାଇଁ ପଳାଇବ । ଏମିତିକି ବାହାରେ ଝିଅମାନଙ୍କ ଅବସ୍ଥିତି, ସେମାନଙ୍କ ପାଟିତୁଣ୍ଡ କିଛି ତାକୁ ପୋଷାକ ପିନ୍ଧିବାକୁ ବାଧ୍ୟ କର ପାରିଲେନାହିଁ । କେ'ର ଉଦ୍ଦେଶ୍ୟ ଜାଣିପାରି ଚାଙ୍କର ବେଶ୍ ଚକିତ ହୋଇପଡି କହିଲା—'ମୁଁ ଆପଣଙ୍କୁ ଯାହା କହିଲି ସେଥିରୁ ଆପଣ କ'ଣ କରିବେ ବୋଧହୁଏ କିଛି ଠିକ୍ କରିପାରୁ ନାହାନ୍ତି । ତା' ସତ ।

Digitized by srujanika@gmail.com

ପ୍ରକୃତରେ ଆପଣ ଯଦି ଗୋଟିଏ ତରବରିଆ କିଛି କରିଦେବାକୁ ମନସ୍ଥ କରିଥା'ନ୍ତି ତେବେ ମୁଁ ତା ବିରୁଦ୍ଧରେ କହିଥାଆନ୍ତି । ଏହାର ସୁବିଧା ଅସୁବିଧା ଜାଣିବା ବଡ଼ କଠିନ କାମ । ସବୁ ଜିନିଷକୁ ଖୁବ୍ ଯତ୍ନରେ ହୁସିଆର୍ ହୋଇ ବିଚାର କରିବାକୁ ପଡ଼ିବ । ଅନ୍ୟପକ୍ଷରେ ଏଥିପାଇଁ ଅଯଥା ଗୁଡ଼ାଏ ସମୟ ମଧ୍ୟ ନଷ୍ଟ କରିବା କଥା ନୁହେଁ ।

'ଖୁବ୍ ଶୀଘ୍ର ମୁଁ ଆଉଥରେ ଆସିବି ।' କେ' କହିଲା ଏବଂ ହଠାତ୍ ତାର ଫତେଇ ଧରିଲା ଏବଂ କାନ୍ଧ ଉପରେ ଓଭରକୋଟ୍‌ଟିକୁ ପକାଇ ଦ୍ୱାର ଆଡ଼କୁ ତରତର ହୋଇ ଚାଲିଗଲା । ଦ୍ୱାର ପଛରେ ସଙ୍ଗେ ସଙ୍ଗେ ଝିଅମାନେ ପାଟିକରି ଉଠିଲେ । ଦ୍ୱାର ଦେଇ ସେମାନଙ୍କୁ ଦେଖିପାରୁଛି ବୋଲି କେ' ଅନୁଭବ କଲା ।

'ଦେଖନ୍ତୁ ଆପଣ ସେମିତି ଆପଣଙ୍କର କଥା ରଖନ୍ତୁ । ନହେଲେ କଅଣ ହେଲା ବୁଝିବାପାଇଁ ମୋତେ ବ୍ୟାଙ୍କ୍‌କୁ ଯିବାକୁ ପଡ଼ିବ ।' କେ' ପଛେ ପଛେ ଦ୍ୱାର ପର୍ଯ୍ୟନ୍ତ ନଆସି ଚିତ୍ରକର କହିଲା । ଦ୍ୱାରର କଡ଼ାକୁ ଧରି କେ' କହିଲା—'କବାଟ ବନ୍ଦ କରି ଦିଅନ୍ତୁ ।' କଡ଼ାକୁ ଧରି ସେ ଜାଣିପାରିଲା ଯେ ବାହାରୁ ଝିଅମାନେ ତାକୁ ଟାଣି ଧରିଛନ୍ତି ।

ଚିତ୍ରକର କହିଲା—'ଆପଣ ସେ ଝିଅଗୁଡ଼ାକ ପାଇଁ ଚିନ୍ତା କରନ୍ତୁ ନାହିଁ । ଆପଣ ବରଂ ଏହି ବାଟ ଦେଇ ଯାଆନ୍ତୁ ।' ଏହା କହି ସେ କେ'କୁ ଖଟ ପଛ-ପଟେ ଦ୍ୱାର ଦେଖାଇ ଦେଲା । କେ' ସାଙ୍ଗେ ସାଙ୍ଗେ ଖଟ ପଛକୁ ଖୁସିରେ ଦୌଡ଼ିଗଲା । କିନ୍ତୁ ଖଟ ପାଖ କବାଟକୁ ଖୋଲିବା ବଦଳରେ ଚିତ୍ରକର ଖଟତଳେ ପେଟେଇ ପଡ଼ି ଖଟତଳୁ କହିଲା—'ମିନିଟିଏ ଅପେକ୍ଷା କରନ୍ତୁ । ଆପଣ କଅଣ ଗୋଟେ ଦୁଇଟା ଛବି ଦେଖିବେ ନାହିଁ ? କେତୋଟିକୁ ହୁଏତ ଆପଣ କିଣିବାକୁ ଇଚ୍ଛା କରିପାରନ୍ତି ।' କେ' ଅଶାଳୀନ ହେବାକୁ ଚାହିଁଲା ବି ନାହିଁ । ଚିତ୍ରକର ପ୍ରକୃତରେ ତା ପାଇଁ ଆଗ୍ରହ ଦେଖାଇଛି ଏବଂ ତାକୁ ଭବିଷ୍ୟତରେ ସାହାଯ୍ୟ କରିବ ବୋଲି କଥା ଦେଇଛି । କେ'ର ଅମନୋଯୋଗିତା ଯୋଗୁଁ ଚିତ୍ରକର ପାଉଣା ବିଷୟ ଆଦୌ ଉଠିନାହିଁ । ତେଣୁ ସେ ତାର ଅନୁରୋଧକୁ ଉପେକ୍ଷା କରିପାରିବନି । ତେଣୁ ସେ ଚିତ୍ରଗୁଡ଼ିକୁ ଦେଖିବ ବୋଲି ହଁ ଭରିଲା ଯଦିଓ ସେଠାରୁ କେମିତି ବାହାରକୁ ଯିବ ସେଥିପାଇଁ ଅଧୈର୍ଯ୍ୟ ହୋଇ ପଡ଼ିଥାଏ । ଖଟତଳୁ ଗୁଚ୍ଛେ ଅବନ୍ଧା କ୍ୟାନ୍‌ଭାସ୍ ଛବି ଚିତ୍ରେଟେଲ ବାହାର କରି ଆଣିଲା । ସେ ଛବିଗୁଡ଼ିକ ଉପରେ ଏତେ ବହଳରେ ଧୂଳି ଜମିଯାଇଥାଏ ଯେ ଧୂଳି ଝାଡ଼ିଦେଲା ମାତ୍ରେ କେ' ପ୍ରାୟ

Digitized by srujanika@gmail.com

ଅନେକଣ୍ଣାପୀ ଆଉ ଅନ୍ଧ ହୋଇଗଲା । 'ବର୍ଣ୍ଣ ପ୍ରକୃତ ଗୋଟିଏ ପ୍ରାନ୍ତରର ଛବି ।' ଗୋଟିଏ ଛବି କେ'ଙ୍କୁ ବଢ଼ାଇ ଦେଉଁ ଦେଉଁ ଚନ୍ଦକର କହିଲା—'ଛବିରେ ଦୁଇଟି ଧୂଣ୍ଡା ଗଛ, ବହଳ ଅନ୍ଧାରୁଆ ଘାସ ମଝିରେ ବହୁତ ଢଙ୍ଗରେ ଛିଡା ହୋଇଛନ୍ତି । ସେମାନଙ୍କ ପଛରେ ବର୍ଣ୍ଣାଢ୍ୟ ଗୋଟିଏ ହରରଙ୍ଗୀ ସୂର୍ଯ୍ୟାସ୍ତ ।'

'ସୁନ୍ଦର', କେ' କହିଲା । 'ମୁଁ ଏହାକୁ କିଣିବ ।'

କେ'ର ଉଦାସ ସ୍ୱଳ୍ପ ଉତ୍ତର ପ୍ରକୃତରେ ବିଶ୍ୱାସଯୋଗ୍ୟ ନୁହେଁ । କିନ୍ତୁ ସେଥିରେ କ୍ଷୁଣ୍ଣ ନ ହୋଇ ଚନ୍ଦକର ଆଉ ଗୋଟିଏ ଛବି ତଳୁଉଠାଇ ଦେଖାଇଲା । ସେଥିରେ କେ' ଖୁସି ହୋଇଗଲା । ଏହା ଆରଚନ୍ଦର ଯୋଡ ଚନ୍ଦ । ଏହାର ଉଦ୍ଦେଶ୍ୟ ଆଗ ଚନ୍ଦ ସହ ଯୋଡି ହୋଇ ଟଙ୍ଗା ହେବା ପାଇଁ । କିନ୍ତୁ ଏ ଦୁଇଟି ଭିତରେ କଣେ ଆଦୌ ତଫାତ୍ ଦେଖି ପାରିବ ନାହିଁ । 'ହେଇ ଏଇଠି ସେ ଗଛ, ଏଠି ସେ ଘାସ ଆଉ ପଛରେ ସେ ସୂର୍ଯ୍ୟାସ୍ତ ।' ମାତ୍ର କେ' ସେ ବିଷୟରେ ଆଦୌ ଚିନ୍ତା କରୁନଥିଲା ।

'ଏଗୁଡ଼ିକ ଖୁବ୍ ସୁନ୍ଦର । ମୁଁ ଏ ଦୁଇଟିଯାକ କିଣି ମୋ' ଅଫିସ୍ ଘରେ ଟାଙ୍ଗିବ ।' ତୃତୀୟ ଛବିଟିକୁ କାଢ଼ୁ କାଢ଼ୁ ଚନ୍ଦକର କହିଲା—

'ଆପଣଙ୍କୁ ତା'ହେଲେ ଛବିର ବିଷୟବସ୍ତୁ ଭଲ ଲାଗିଲା । ଭାଗ୍ୟକୁ ମୋ' ପାଖରେ ଆଉ ଗୋଟିଏ ଏହିପରି ଚନ୍ଦ ଅଛି । କିନ୍ତୁ ଏହା କେବଳ ସେଇ ଏକା ପ୍ରକୃତ ଚନ୍ଦ ନୁହେଁ, ଏହା ସେଇ ପ୍ରାନ୍ତରର ଛବି ମଧ୍ୟ ।' ତାର ପୁରୁଣା ଚନ୍ଦଗୁଡ଼ିକୁ ବିକ୍ରି କରିବା ପାଇଁ ଏ ସୁଯୋଗକୁ ଚନ୍ଦକର ପୁରାମାତ୍ରାରେ ବ୍ୟବହାର କରୁଥିଲା ।

'ମୁଁ ସେ ଛବିଟିକୁ ମଧ୍ୟ ନେବ ।' କେ' କହିଲା । 'ଏହି ତିନୋଟି ଛବି ପାଇଁ କେତେ ଦେବ ?'

'ଆଉଥରେ ଆସିଲେ ସେ କଥା କହିବ ।' ଚନ୍ଦକର କହିଲା ।

'ଆପଣ ଆଜି ଖୁବ୍ ବ୍ୟସ୍ତ ଅଛନ୍ତି । ଯେମିତି ହେଲେ ତ ଆମ ଭିତରେ ଏବେ ସମ୍ପର୍କ ରହିବ । ଏଥର ଆମେ ପ୍ରାୟ ଭେଟିବା । ମୋତେ ଖୁବ୍ ଖୁସି ଲାଗିଲା ଯେ ଆପଣଙ୍କୁ ଏ ଛବିଗୁଡ଼ିକ ଭଲ ଲାଗିଲା । ଅନ୍ୟ ଛବିଗୁଡ଼ିକୁ ମୁଁ ଖଟ-ତଳକୁ ଫୋପାଡ଼ି ଦେବ । ସେଗୁଡ଼ିକ ସବୁ ସେଇ ପ୍ରକୃତର ଛବି । ଜୀବନରେ ସେମିତିକା ଛବି ତିନନେ ଆଙ୍କିଛି । କେତେକ ଲୋକ ଏ ଛବିକୁ ଭଲ ପାଆନ୍ତି ନାହିଁ । କାହିଁକି ନା ସେଗୁଡିକ ଉଜ୍ଜ୍ୱଳ ନ ହୋଇ କେମିତି ଗୁରୁସ୍ୱାଦନ ଆଉ ଗମ୍ଭୀର ହୋଇଥାଏ । କିନ୍ତୁ ସବୁବେଳେ ଆପଣଙ୍କ ପରି ଅନେକ ଅଛନ୍ତି ଯେଉଁମାନେ

Digitized by srujanika@gmail.com

ଏହିପରି ଗମ୍ଭୀର ଛବିଗୁଡ଼ିକୁ ପସନ୍ଦ କରନ୍ତି । ଏହି ସାଧାରଣ ଚନ୍ଦ୍ରକରର ବ୍ୟବସାୟିକ କଥାସବୁ ଶୁଣିବା ପାଇଁ କେ'ର ଆଦୌ ଇଚ୍ଛା ନଥିଲା । ଟିଗ୍ରେଟେଲ୍‌ର ବକ୍‌ବକ୍ ମଝିରେ ହଠାତ୍ ବାଧା ସୃଷ୍ଟିକରି କେ' କହି ଉଠିଲା—'ଛବିଗୁଡ଼ିକ ଗୁଡ଼ାଇ ଦିଅନ୍ତୁ । ମୋର ପିଅନ ଆସି ଏଗୁଡ଼ିକୁ କାଲି ନେଇଯିବ ।'

'ପିଅନ ଆସିବା ଦରକାର ନାହିଁ । ମୁଁ ଗୋଟିଏ କୁଲି ଠିକ୍ କରି ଦେଉଛି । ସେ ଆପଣଙ୍କ ସାଥିରେ ବର୍ତ୍ତମାନ ଏଗୁଡ଼ିକୁ ନେଇଯିବ ।' ଚନ୍ଦ୍ରକର କହିଲା ଏବଂ ଶେଷରେ ବିଛଣା ପାଖକୁ ଯାଇ ଦ୍ୱାର ଖୋଲି ଦେଲା ।

'ବିଛଣା ଉପରକୁ ଉଠିବାକୁ ଡରନ୍ତୁ ନାହିଁ । ଏଠାକୁ ଯିଏ ଆସେ ଏହାହିଁ କରେ ।' ଚନ୍ଦ୍ରକର କହିଲା । ଏହା କହିବା ପୂର୍ବରୁ ହୁଏତ କେ' ବିଛଣା ଉପରେ ଗୋଡ଼ ରଖିବାକୁ ଟିକିଏ ବି ଦ୍ୱିଧା କଲା ନାହିଁ । ପ୍ରକୃତ ପକ୍ଷରେ ଚନ୍ଦ୍ରକର କହିବା ଆଗରୁ ସେ ଗୋଟିଏ ପାଦ ବିଛଣା ମଝିରେ ରଖି ସାରିଥିଲା । କିନ୍ତୁ ଯେତେବେଳେ ଦ୍ୱାର ଦେଇ ସେ ବାହାରକୁ ଚାହିଁଲା ସେ ହଠାତ୍ ତା' ପାଦକୁ ଉଠାଇ ଆଣିଲା । 'ଏହା କ'ଣ ?' ସେ ଚନ୍ଦ୍ରକରକୁ ପଚାରିଲା । 'କଅଣ ଦେଖି ଆପଣ ଏମିତି ଆଶ୍ଚର୍ଯ୍ୟ ହୋଇଗଲେ ?' ନିଜେ ଆଶ୍ଚର୍ଯ୍ୟ ହୋଇ ଚନ୍ଦ୍ରକର ପଚାରିଲା ।

'ଏଗୁଡ଼ିକ ସବୁ ଅଦାଲତ ଅଫିସ୍ । ଆପଣ କଅଣ ଜାଣିନାହାନ୍ତି ଯେ ଏଠି ଅଦାଲତ ଅଫିସ୍ ଅଛି ବୋଲି ? ସବୁ ପ୍ରାୟ କୋଠାରେ ଅଦାଲତ ଅଫିସ୍ ଅଛି । ଏ ଘର ବା କାହିଁକି ତାର ବ୍ୟତିକ୍ରମ ହେବ ? ମୋ' ଷ୍ଟୁଡ଼ିଓଟି ପ୍ରକୃତରେ କୋର୍ଟ ଅଫିସ୍‌ର । ତାହା ମୋ' ମାର୍ଫତ୍‌ରେ ଦିଆ ହୋଇଛି ।'

ସେଠାରେ ଅଦାଲତ ଅଫିସ ଆବିଷ୍କାର କେ'କୁ ଯେତେ ବିଚଳିତ କରି ନଥିଲା ତାଠୁ ବେଶୀ ବିଚଳିତ କରୁଥିଲା କୋର୍ଟ ସମ୍ପର୍କରେ ନିଜର ଅଜ୍ଞତା ବିଷୟରେ ସଚେତନ ହୋଇ । ଜଣେ ଅଭିଯୁକ୍ତ ବ୍ୟକ୍ତି ପାଖରେ ସବୁବେଳେ ସଜାଗ ହୋଇ ରହିବା ଗୋଟିଏ ମୂଳ ନୀତି । କେତେବେଳେ ହେଲେ ଅସତର୍କ ଅବସ୍ଥାରେ ଧରା ନ ପଡ଼ିବା ଯେମିତି ମୂଳକଥା । ସବୁବେଳେ ଜାଗତ୍ରଥାଇ ରହି ଯେତେବେଳେ ତାର ବାମ କଡ଼ରେ ଜଜ୍‌ମାନେ ଥିବେ ସେତେବେଳେ ତାହାଙ୍କୁ କେବେ ନ ଚାହିଁବା । ଏସବୁ ହେଉଛି ଅଭିଯୁକ୍ତ ବ୍ୟକ୍ତିର ମୂଳ ମନ୍ତ୍ର । ଅଥଚ ଏହି ନୀତି ପାଖରେ ସେ ବାରମ୍ବାର ଅପ୍ରସ୍ତୁତ ହେବାରେ ଲାଗିଛି ।

କେ' ଦେଖିଲା ତା ଆଗରେ ଦୀର୍ଘ ଗଳି ଲମ୍ବିଯାଇଛି । ସେ ଗଳିର ରୁଦ୍ଧ ପବନ ତୁଳନାରେ ଏ ଷ୍ଟୁଡ଼ିଓରେ ପବନ ବରଂ ବେଶୀ ପରିଷ୍କାର, ହାଲୁକା ।

Digitized by srujanika@gmail.com

ରଜାର ଦୁଇପଟରେ ବେଞ୍ଚ୍ ସବୁ ପଡ଼ିଛି । ଠିକ୍ ଯେମିତି କେ'ର ବସ୍ତ୍ର ହେଉଥିବା ଅଦାଲତ ଅଫିସ୍‌ର ବାରନ୍ଦାରେ ପଡ଼ିଥିଲା । ଏଘର ମଧ୍ୟ ସେହି ପୂର୍ବ ନକ୍ସମାନୁସାରେ ସଜ୍ଜିତ ହୋଇଛି । ସବୁ ଅଫିସ ଘରର ରୂପ ଯେମିତି ଏକପ୍ରକାରର । ଏହି ମୁହୂର୍ତ୍ତରେ ଅବଶ୍ୟ ମକ୍କେଲମାନଙ୍କର ବେଶୀ ଯିବା ଆସିବା ଚାଲିନଥାଏ । ଜଣେ ଲୋକ ଗୋଟିଏ ବେଞ୍ଚ୍ ଉପରେ ଅଧା ବସା ଅଧା ଶୁଆ ଅବସ୍ଥାରେ ଥାଏ । ତାର ମଥା ଦୁଇହାତ ମଝିରେ ମାଡ଼ି ହୋଇ ରହିଥାଏ । ଲାଗୁଥାଏ ଯେମିତି ସେ ଶୋଇ ପଡ଼ିଛି । ଗଳି ମୁଣ୍ଡରେ ଆଉ ଜଣେ ଲୋକ ଗୋଧୂଳିର ଅନ୍ଧାରରେ ଠିଆ ହୋଇଛି । କେ' ବର୍ତ୍ତମାନ ବଛଣା ଉପରକୁ ଉଠିଗଲା । ତା ପଛେ ପଛେ ଚିତ୍ରକର ଛବିଗୁଡ଼ିକୁ ଧରି ଉଠିଲା । ଅଳ୍ପ ସମୟ ପରେ ସେମାନେ ଜଣେ ଅର୍ଡ଼ଲିକୁ ପାଇଗଲେ । ଆଜିକାଲି କେ' ସେମାନଙ୍କୁ ସେମାନଙ୍କର ସୁନା ବୋତାମ ଯୋଗୁଁ ଚିହ୍ନିପାରେ । ସେ ସୁନା ବୋତାମକୁ ସେମାନେ ତାଙ୍କ ସାଧାରଣ ପୋଷାକର ବୋତାମ ସାଙ୍ଗରେ ଲଗାଇଥାଆନ୍ତି । ଚିତ୍ରକର ତାଙ୍କୁ କେ'ର ଛବି ଧରି ଯିବା ପାଇଁ କହିଲା । ଭଲ କରି ଚାଲିବା ବଦଳରେ କେ' ପ୍ରାୟ ଟଳିଟଳି ଚାଲୁଥାଏ । ମୁହଁରେ ତାର ରୁମାଲକୁ ଚାପି ଧରିଥାଏ । ସେମାନେ ପ୍ରାୟ ଗଳି ମୁଣ୍ଡରେ ପହଞ୍ଚିଲା ବେଳକୁ ସେଇ ଝିଅମାନେ ତାଙ୍କୁ ଭେଟିବା ପାଇଁ ଧାଇଁ ଆସିଲେ । ତେଣୁ ସେମାନଙ୍କ ସହ ଏପରି ଭେଟିବାରୁ କେ'ର ମୁକ୍ତି ମିଳିଲା ନାହିଁ । ଝିଅମାନେ ଏହି ଦ୍ୱିତୀୟ ଦ୍ୱାର ବିଷୟରେ ନିଶ୍ଚୟ ଜାଣିଥିଲେ ତେଣୁ ଏହିଠାରେ କେ'କୁ ଧରିବା ପାଇଁ ଅନ୍ୟ ବାଟଦେଇ ପୁରା ଦମ୍‌ରେ ଧାଇଁ ଧାଇଁ ଆସିଥିଲେ । ଝିଅମାନେ ଯେତେବେଳେ ଘେରିଗଲେ ଚିତ୍ରକର ହସି ହସି କହିଲା—

‘ମୁଁ ଆଉ ଆପଣଙ୍କ ପାଇଁ ବେଶୀ ବାଟ ଆସିପାରିବି ନାହିଁ । ଆଉ ଥରେ ଦେଖା ହେଲେ ସବୁ । ଆପଣ ଏସବୁ ବିଷୟ ଭାବିବା ପାଇଁ ବେଶୀ ସମୟ ନିଅନ୍ତୁ ନାହିଁ ।’

କେ' ପଛକୁ ଫେରି ଚାହିଁଲାନି । ଯେତେବେଳେ ସେ ରାସ୍ତାରେ ପହଞ୍ଚିଲା ପ୍ରଥମ ଟ୍ଟକା ଦେଖିବା ମାତ୍ରେ ତାକୁ ଅଟକାଇଲା । ସେ ଏହି ଅର୍ଡ଼ଲି ପାଖରୁ ମୁକ୍ତି ଚାହେଁ । ତାର ସୁନା ବୋତାମ ଆଉ କାହାରି ଆଖିରେ ପଡ଼ୁନଥିଲେ ହେଁ କେ'ର ଆଖିକୁ ବଡ଼ ଦୃଷ୍ଟିକଟୁ ହେଉଥିଲା । ଅର୍ଡ଼ଲି ଅତି କର୍ତ୍ତବ୍ୟ ପରାୟଣ ହୋଇ ଗାଡ଼ିର ଗାଡୁଆନ୍ ପାଖରେ ବସିପଡ଼ିଲା । କିନ୍ତୁ କେ' ତାକୁ ଓହ୍ଲାଇ ଦେଲା । ଯେତେବେଳେ କେ' ବ୍ୟାଙ୍କରେ ପହଞ୍ଚିଲା ସେତେବେଳକୁ ମଧ୍ୟାହ୍ନ ବହୁତ ବେଳୁ ଗଡ଼ି ଗଲାଣି । ଛବିଗୁଡ଼ିକୁ ସେ ଗାଡ଼ିରେ ହିଁ ଛାଡ଼ିଦେବାକୁ ଚାହୁଁଥିଲା । କିନ୍ତୁ କାଳେ

Digitized by srujanika@gmail.com

ପରେ ସେ ନିଜେ ଚଫକର ସହ୍ବ ତାର ସମ୍ପର୍କ ସ୍ଥାପନ ପାଇଁ ସେଗୁଡ଼ିକୁ ଦରକାର କରିପାରେ ସେଇଥିପାଇଁ ସେ ସେଗୁଡ଼ିକୁ ଅଫିସକୁ ଆଣି ତଳ ଡ୍ରୟାର୍‌ରେ ବନ୍ଦ ଦେଇ ରଖିଲ । ତାର ଉଦ୍ଦେଶ୍ୟ ଅନ୍ୟତଃ କିଛିଦିନ ପାଇଁ ସେଠାରେ ସେଗୁଡ଼ିକ ଥାଉ । କିନ୍ତୁ ସେ ଖୁବ୍ ବେଶୀ ସତର୍କ ହୋଇଉଠିଲା ଯେମିତିକି ସେଗୁଡ଼ିକ ଆସିଷ୍ଟେଣ୍ଟ ମ୍ୟାନେଜରଙ୍କ ନଜରରେ ନ ପଡ଼େ ।



Digitized by srujanika@gmail.com

## ଅଷ୍ଟମ ପରିଚ୍ଛେଦ

# ବ୍ଲକ୍ ଶସ୍ୟବେପାରୀ, ଓକିଲକୁ ପରିତ୍ୟାଗ

ଓକିଲଙ୍କ ହାତରୁ ତା' କେଶ୍‌କୁ କାଢ଼ି ଆଣିବାକୁ ଶେଷରେ କେ' ମନସ୍ଥ କଲା। ଏପରି ପଦକ୍ଷେପର ଯଥାର୍ଥତା ବିଷୟରେ ଥିବା ସନ୍ଦେହରୁ ନିଜକୁ ସେ ମୁକ୍ତ କରି ପାରିଲାନି ସିନା କିନ୍ତୁ ଏହାର ପ୍ରୟୋଜନୀୟତା ବିଷୟରେ ସେ ନିଃସନ୍ଦେହ ଥିଲା। ତାର ଏହି ସିଦ୍ଧାନ୍ତକୁ .ଶେଷ ପର୍ଯ୍ୟନ୍ତ ଧରି ରଖିବାରେ କେ'କୁ ଅନେକ ଶକ୍ତି ନଷ୍ଟ କରିବାକୁ ପଡ଼ିଛି। ଯେଉଁଦିନ ସେ ତାର ଓକିଲ ସହ ଦେଖା କରିବାକୁ ଠିକ୍ କଲା ଅଫିସରେ ତାର କାମ ପଛାଇଗଲା। ଅଫିସ୍‌ରେ ତାକୁ ବହୁତ ଡେରି ପର୍ଯ୍ୟନ୍ତ ରହିବାକୁ ପଡ଼ିଲା । ତେଣୁ ଦଶଟା ବାଜିବା ଆଗରୁ ସେ କୌଣସି ମତେ ଓକିଲ ଘରେ ପହଞ୍ଚି ପାରିଲାନି। ଡାକିବା ଘଣ୍ଟି ବଜାଇବା ପୂର୍ବରୁ ସେ ଆଉଥରେ ଭାବିଲା—ଓକିଲକୁ ଛାଡ଼ିଦବା କାମଟି ଫୋନ୍ ଦ୍ୱାରା କହିଦେଇ ହୁଅନ୍ତା, ଚିଠିଟିଏ ଲେଖି ଜଣାଇ ଦେଇ ହୁଅନ୍ତା, ବ୍ୟକ୍ତିଗତ ଭାବେ ଆସି କହିବା ବଡ଼ କଷ୍ଟଦାୟକ। ତଥାପି ବ୍ୟକ୍ତିଗତ ସାକ୍ଷାତରେ ଯେଉଁ ଲାଭ ଅଛି ତାକୁ ହେଳା କରିବାର ନୁହେଁ। ଅନ୍ୟ ଯେ କୌଣସି ଉପାୟରେ ଏପରି କଥା ଜଣାଇ ଦେଲେ ହୁଏତ ଅନ୍ୟ ଆଡୁ କେବଳ ନୀରବତା ଦ୍ୱାରା ଗ୍ରହଣ କରି ନଆସିବ କିମ୍ବା ଗୋଟିଏ ଦୁଇଟା ଅତି କୃତ୍ରିମ ଚରିତ୍ରଗତ ଶବ୍ଦରେ ଜଣାଇ ଦିଆଯିବ। ଯେପର୍ଯ୍ୟନ୍ତ ଲୋକ ପାଖରୁ ସେ ସମ୍ବାଦ ସଂଗ୍ରହ ନ କରିଛି ସେ ଜାଣି ପାରିବନି ଏମିତି ତ୍ୟାଗ କଲେ ଓକିଲମାନେ କିପରି ପ୍ରତିକ୍ରିୟା ଦେଖାଇବେ ଏବଂ ଓକିଲଙ୍କ ମତରେ ତାକୁ କିପରି ଫଳ ଭୋଗିବାକୁ ପଡ଼ିବ, ସେସବୁ ଜାଣି ପାରିବନି। ଯଦିଓ ଏହା ଜାଣିବା ତା ପକ୍ଷରେ ନିତାନ୍ତ ଜରୁରୀ । ଓକିଲଙ୍କ ସମ୍ମୁଖରେ ତତ୍କ୍ଷଣ ଏପରି ତ୍ୟାଗ କରିବା ଓକିଲଙ୍କୁ ଆଶ୍ଚର୍ଯ୍ୟ କରିଦେବ।

Digitized by srujanika@gmail.com

ଓକଲ ଯେତେ ସତର୍କ ହେଲେବି ତା ମୁହଁର ଭଙ୍ଗିରୁ କେ' ଯାହା ଜାଣିବାକୁ ଚାହୁଁଥିଲା ତା' ସହଜରେ ଜାଣିନେବ । ଓକଲ ହାତରେ କେଶ୍‌କୁ ଛାଡ଼ିଲେ କଅଣ ଆଉ ହେବ ସେ ବିଷୟରେ ମଧ୍ୟ ତାର ଜ୍ଞାନ ହେବ ଏବଂ ଶେଷରେ ହୁଏତ ଏପରି ସିଦ୍ଧାନ୍ତକୁ ସେ ବଦଳାଇ ଦେବେ ।

ଓକଲଙ୍କ ଘରେ ପ୍ରଥମ ଥର ଘଣ୍ଟି ବଜାଇଲେ ସାଧାରଣତଃ ଯାହା ଘଟେ, କୌଣସି ଫଳ ହେଲନି । କେ' ଭାବିଲା ଲୋକ ଟିକିଏ ଅଧିକ ଚଞ୍ଚଳ ହୋଇପାରନ୍ତା କିନ୍ତୁ ନିଜକୁ ଭାଗ୍ୟବାନ ମନେ କରିବା ଯଥେଷ୍ଟ କାରଣ ଥିଲା । କାରଣ ସେଠାରେ କୌଣସି ତୃତୀୟଦଳ ଉଙ୍କିମାରୁ ନଥିଲେ । ସବୁଦିନ ପରି ସେ ଗାଉନପିନ୍ଧା ଲୋକଟି କିମ୍ବା ବିଭିନ୍ନ ବାଧା ସୃଷ୍ଟି କରୁଥିବା ଲୋକଗୁଡ଼ାକୁ ସେଠାରେ ନଥିଲେ । କେ' ଦ୍ୱିତୀୟ ଥର ପାଇଁ ଘଣ୍ଟି ବଜାଇଲା ବେଳେ ଆର ମୁଣ୍ଡର ଦ୍ୱାର ଆଡ଼କୁ ଲକ୍ଷ୍ୟ କଲା ମାତ୍ର ଏଥରବି କବାଟ ସବୁ ବନ୍ଦ ରହିଥିଲା । ଶେଷରେ କବାଟରେ ଥିବା ଜଳାବାଟରେ ଦୁଇଟି ଆଖି ଦେଖାଦେଲା । ମାତ୍ର ସେ ଆଖି ଲୋକର ନଥିଲା । କେହି ଜଣେ ଛୁଟିକିଣି ଖୋଲିଲା ସତ କିନ୍ତୁ କବାଟ ବନ୍ଦ ରଖି ସତର୍କ କରିବା ପାଇଁ ଡାକଗୁଡ଼ କହିଲା—'ସେଇବାବୁ ଆସିଛନ୍ତି ।' ଏତିକ କହି କବାଟ ଖୋଲି ଦେଲା । କେ' କବାଟକୁ ଲଗିଠିଆ ହୋଇଥିଲା । ପାଖ ଘରର ଲୁଚି ଖୋଲିବା ସେ ଶୁଣିଲା । ଯେତେବେଳେ ହଠାତ୍ କବାଟ ଖୋଲିଗଲା, ସେ ପ୍ରାୟ ହଲ ଭିତରକୁ ହାମୁଡ଼ି ହୋଇ ପଶିଗଲା ଆଉ ଲୋକକୁ ସେଠାରେ ଦେଖି ପାରିଲା । ତାହାର ପାଇଁତ ସେ ସତର୍କ ଡାକଟି ଦିଆ ହୋଇଥିଲା, ଆଉ ସିଏ ତରତରରେ ଧାଇଁ ଆସୁଥିଲା । କେ' ପ୍ରଥମେ ତାକୁ ଧଡ଼କ ପାଇଁ ଅନାଇ ରହିଲା ଏବଂ ପରେ କିଏ କବାଟ ଖୋଲିଲା ତାକୁ ଦେଖିବା ପାଇଁ ପଛକୁ ଘୁରି ଚାହିଁଲା । ସେ ଜଣେ ଲମ୍ବାଦାଢ଼ି ଥିବା ଚେମଡ଼ା ଛୋଟ ଲୋକଟି, ଗୋଟିଏ ହାତରେ ବତିଟିଏ ଧରିଥାଏ ।

'ତୁମେ କଅଣ ଏଇଠି କାମ କର ?' କେ' ପଚାରିଲା ।

'ନା, ମୁଁ ଏ ଘରର କେହି ନୁହେଁ । ମୁଁ ଜଣେ ମହକିଲର ମକଦମା କାମରେ ଏଠାକୁ ଆସିଛି ।' ଲୋକଟି କହିଲା । ଲୋକଟିର ଅବାଗିଆ ପୋଷାକକୁ ଦେଖାଇ କେ' କହିଲା—'ତୁମ ସାର୍ଟର ଏ ହାତରେ····?'

'କ୍ଷମା କରିବେ ।' ବତି ଆଲୁଅରେ ନିଜକୁ ଚାହିଁ ଲୋକଟି କହିଲା । ତା' କଥାରୁ ଜଣା ଯାଉଥିଲା ଯେମିତି ସେ ନିଜ ଅବସ୍ଥା ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ ଅଛି ।

Digitized by srujanika@gmail.com

'ଲେନ୍ କଅଣ ତୁମର ରକ୍ଷିତା ?' କେ' ସଂକ୍ଷେପରେ ପଚାରିଲା । ଗୋଡ଼ ଦୁଇଟିକୁ ସାମାନ୍ୟ ଫରକଟା କରି ସେ ଠିଆ ହୋଇଥିଲା । ଯେଉଁ ହାତରେ ସେ ଟୋପିଟିକୁ ଧରିଥିଲା ତା ପିଠିପାଖେ ତାକୁ ଛାଡ଼ିଦେଇଥିଲା । ଖାଲି ବଗ୍‌ଟ କୋଟ୍ ଥିବାରୁ ଯାହା ସାଧାରଣ ଲୋକଙ୍କଠାରୁ ତାର ଗାମ୍ଭୀର୍ଯ୍ୟ ଜଣା ପଡ଼ୁଥିଲା ।

'ହେ ଭଗବାନ୍ ।' ଲୋକଟି ଗୋଟିଏ ହାତ ତା ମୁହଁ ଉପରକୁ ଅତି ଭୟଙ୍କର ଭାବେ ଟେକି କହିଲା—'ନା.ନା ଆପଣ କ'ଣ ଭାବୁଛନ୍ତି ? ଆପଣ ଜଣେ ସଚ୍ଚୋଟ ଲୋକ ପରି ମନେ ହେଉଛନ୍ତି ।' କେ' ହସି ହସି କହିଲା ।

'କିନ୍ତୁ ତଥାପି....ଆସନ୍ତୁ ଆସନ୍ତୁ ।' ସେ ତା ଟୋପି ହଲାଇ କେ'ଙ୍କୁ ଆଗେ ଯିବାପାଇଁ କହିଲା । ଯାଉଁ ଯାଉଁ କେ' ପଚାରିଲା 'ଆପଣଙ୍କ ନାମ କ'ଣ ?'

'ବ୍ଲକ୍ ଶସ୍ୟବେପାରୀ' ଏତିକି କହି ସେ ଲୋକଟି ନିଜକୁ ପରିଚିତ କରିବା ପାଇଁ ଘୂରିପଡ଼ିଲା । ମାତ୍ର କେ' ଆଉ ସେଠାରେ ଅଟକି ରହିଲା ନାହିଁ । 'ଏହା କଅଣ ଆପଣଙ୍କର ପ୍ରକୃତ ନାମ ?'

'ଅବଶ୍ୟ' ଉତ୍ତର ଆସିଲା । 'ଆପଣଙ୍କର ସନ୍ଦେହ କରିବାର କାରଣ ?'

'ମୁଁ ଭାବୁଥିଲି କୌଣସି କାରଣରୁ ଆପଣ ନିଜ ନାମ ଲୁଚାଇ ରଖୁଛନ୍ତି ।' କେ' କହିଲା । କେ' ନିଜକୁ ଖୁବ୍ ସ୍ୱଚ୍ଛନ୍ଦ ମନେକରୁଥିଲା । ବାହାରେ କୌଣସି ବିଦେଶୀ ଲୋକ ସହିତ କଥା ହେଲାବେଳେ ସେ ଯେମିତି ସ୍ୱଚ୍ଛନ୍ଦ ଅନୁଭବ କରେ ଠିକ୍ ସେମିତି । ନିଜ କଥା ନିଜ ଭିତରେ ରଖି ଅନ୍ୟର ସମସ୍ୟାକୁ ଧୀରସ୍ଥିର ଭାବେ ଆଲୋଚନା କଲାବେଳେ ଯେମିତି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିହୁଏ ଅଥଚ ଇଚ୍ଛାନୁସାରେ ସେଥିରୁ ଦୂରେଇ ଯାଇହୁଏ ସେହିପରି ଭାବରଖି କେ' କଥା ହେଉଥିଲା । ଓକିଲଙ୍କ ପଢ଼ାଘରକୁ ଆସିଲାରୁ କେ' ଠିଆ ହୋଇ ରହିଗଲା । ସେ ଦ୍ୱାର ଖୋଲିଲା ଆଉ ଆରଲୋକଟିକୁ ଡାକିଲା । ସେତେବେଳେ ଲୋକଟି ଅତି ଧୀର ସ୍ଥିର ଭାବରେ ବାରଣ୍ଡାରେ ଆସୁଥିଲା ।

'ଏତେଶୀଘ୍ର ପଶିବାନି, ଏଠି ଟିକେ ଆଲୁଅ ଦେଖାଅ' କେ' ଭାବିଲା ସେ ଲେନି କେଉଁଠି ପଢ଼ାଘରେ ଲୁଚି ରହିଛି । ସେ ଶସ୍ୟବେପାରୀକୁ ଘରର ସବୁ କୋଣକୁ ଆଲୁଅ ଦେଖାଇବାକୁ କହିଲା । ଘରଟା କିନ୍ତୁ ପୂରା ଫାଙ୍କା ଥିଲା । କିନ୍ତୁ ବିଛଣା ସାମ୍ନାରେ କେ' ଲୋକଟିକୁ ପଛରୁ ତା କାନ୍ଧପିଠା ଧରି ଟାଣିଦେଲା । 'ଇଏ କିଏ ତୁମେ ଜାଣିଛ ?' ଉପର ଛବିଟିକୁ ଦେଖାଇ କେ' ପଚାରିଲା । ଲୋକଟି

Digitized by srujanika@gmail.com

ଆଲୁଅ ଝେକ ଛବିଟିକୁ ମିଟି ମିଟି କରି ଗ୍ୱହିଁ କହିଲା 'ଇଏତ ଜଣେ ଜଜ୍ ।' ଲୋକଟି ଉପରେ ଛବି କି ପ୍ରକାର ପ୍ରଭାବ ପକାଉଛି ତାହା ଲକ୍ଷ୍ୟ କରିବାପାଇଁ କେ' ତାହାର ପାଖରେ ଠିଆହୋଇ ଆଉ ପଗ୍ୱରିଲା—

'ଜଣେ ବଡ଼ ଜଜ୍ ?' ଲୋକଟି ସମ୍ମାନର ସହିତ ଉପରକୁ ଗ୍ୱହିଁ କହିଲା 'ହଁ, ବଡ଼ ଜଜ୍, ତୁମର ଟିକିଏ ବୁଦ୍ଧିଶୁଦ୍ଧି ନାହିଁ । ଇଏ ହେଉଛନ୍ତି କେସ କରୁଥିବା ତଳ ତଳିଆ ଜଜ୍ ଗୁଡ଼ିକ ଭିତରେ ସବାତଳ ।' ବତୀଟିକୁ ତଳକୁ କରି ଲୋକଟି କହିଲା 'ବର୍ତ୍ତମାନ ମୋର ମନେ ପଡ଼ୁଛି । ପୂର୍ବରୁ ମୁଁ ଏହା ଶୁଣିଥିଲି ।' 'ଅବଶ୍ୟ' କେ' ପାଟିକରି ଉଠିଲା । 'ମୁଁ କେମିତି ଭୁଲିପାରି, ତୁମେ ନିଶ୍ଚୟ ଆଗରୁ ଶୁଣିଥିବ ।' ଲୋକଟି ଦ୍ୱାର ଆଡ଼କୁ ଆଗେଇ ଆସୁଥିଲା । କାହିଁକନା କେ' ତାକୁ ପଛରୁ ପେଲୁ-ଥିଲା । ଏମିତି ଆଗେଇ ଆସୁ ଆସୁ ଲୋକଟି ପଗ୍ୱରିଲା—'କିନ୍ତୁ କାହିଁକି ? କାହିଁକି ମୁଁ ନିଶ୍ଚୟ ଶୁଣିଥିବି ?' ଯେତେବେଳେ ସେମାନେ ବାହାର ଘରେ ପହଁଚିଲେ କେ' କହିଲା 'ମୁଁ ଭାବୁଛି କେଉଁଠି ଲେନି ଅଛି ତୁମେ ଜାଣ, ଲୁଚଉଛ' । ସେ କହିଲା—'ନା, ନା, ସେ ବର୍ତ୍ତମାନ ରୋଷେଇ ଘରେ । ଓକିଲଙ୍କ ପାଇଁ ସୁପ୍ ତିଆରି କରୁଛି ।' 'ତୁମେ ପ୍ରଥମେ ଏକଥା କାହିଁକି କହିଲନି' କେ' ପଗ୍ୱରିଲା ।

'ମୁଁ ତ ତୁମକୁ ସେଠିକି ନେଇଯାଉଥିଲି କିନ୍ତୁ ତୁମେତ ମୋତେ ପଛରୁ ଡାକିଲ ।' ଲୋକଟି ଯେମିତିକି କେ'ର ବିଭିନ୍ନ ପ୍ରକାର ବିରୋଧୀ ଦାବିଗୁଡ଼ିକରେ ସେ ପୁରା ବିଚଳିତ ହୋଇପଡ଼ିଲା । 'ତୁମେ ଖୁବ୍ ଚତୁର ବୋଲି ଭାବୁଛ ମୋତେ ତେବେ ନେଇଗ୍ୱଲ' କେ' କହିଲା । ଆଗରୁ କେ' ତେବେ ରୋଷେଇ ଘରକୁ ଯାଇନଥିଲା । ରୋଷେଇ ଘରଟି ଆଶ୍ଚର୍ଯ୍ୟଜନକ ଭାବେ ଖୁବ୍ ବଡ ଆଉ ସୁମଜ୍ଜିତ । ସେଠିକାର ରନ୍ଧନ ଷ୍ଟୋଭ୍‌ଟି ସାଧାରଣ ଷ୍ଟୋଭ୍‌ଠାରୁ ତିନିଗୁଣ ବଡ଼ । ଅନ୍ୟ ସରଞ୍ଜାମ ଗୁଡିକୁ ପୁରା ଦେଖିହେଉ ନଥିଲା କାହିଁକନା ଦ୍ୱାର ପାଖରେ ଝୁଲୁଥିବା କେବଳ ଗୋଟେ ଛୋଟ ଆଲୁଅ ଦ୍ୱାରା ଘରଟି ସାମାନ୍ୟ ଆଲୋକିତ ହେଉଥିଲା । ଗୋଟିଏ ଧଳା ପୋଷାକ ପିନ୍ଧି ଲେନି ଷ୍ଟୋଭ୍ ପାଖରେ ଠିଆ ହୋଇଥିଲା । ସବୁ ଦିନପରି ସେ ଅଣ୍ଡା ଭାଙ୍ଗି ସ୍ପିରିଟ୍ ଷ୍ଟୋଭ୍ ଉପରେ ଥାଉଥିବା ଡ଼ାବା ଉପରେ ପକାଉଥିଲା । କାନ୍ଧଉପର ଦେଇ ଗ୍ୱହିଁ ସେ କହିଲା—'ଶୁଭସଂଧ୍ୟା, ଜୋସେଫ୍' ଅବଶ୍ୟ ସେବକଟିକୁ ଗୋଟିଏ ଚୌକି ଦେଖାଇ ଦେଇ କେ' କହିଲା—'ଶୁଭସଂଧ୍ୟା' ସେବକଟିବି ବଡ଼ ବାଧ୍ୟ ହୋଇ ଚୌକି ଉପରେ ବସିପଡ଼ିଲା । ତା ପରେ କେ' ଲେନିର ଖୁବ୍ ନିକଟକୁ ଯାଇ ତା କାନ୍ଧଉପରେ ନଇଁପଡ଼ିଲା ଆଉ ପଗ୍ୱରିଲା—'ଏ ଲୋକଟି କିଏ ?' ଗୋଟିଏ ସୁପ୍ ଘାଣ୍ଟୁ ଘାଣ୍ଟୁ ଆର ଖାଲିହାତଟିକୁ କେ' ଦେହରେ ବେଢ଼ାଇ ଦେଇ ସେ କେ'କୁ ଆଗକୁ ଟିକିଏ ଟାଣିନେଲା । ବିଚରା ବଡ଼

Digitized by srujanika@gmail.com

ଦୁଃଖୀ ଲୋକଟେ । ଅବଶ୍ୟ ବେପାରୀଟିଏ, ତା ନାମ ବ୍ଲକ୍ । ତାକୁ ଖାଲି ଚିନ୍ହେ ଦେଖ ନା ।' ଲେନ କହିଲା । ତାପରେ ଦୁହେଁ ପଛକୁ ଘୁରି ଚାହିଁଲେ । କେ' ଦେଖାଇ ଦେଇଥିବା ଚୌକିରେ ସେ ବେପାରୀ ବସିଥିଲା । ଆଲୁଅର ଦରକାର ନଥିବାରୁ ବତୀଟିକୁ ଲିଭାଇଦେଇଥିଲା । ଆଉ ତାର ସଳିତାଟିକୁ ଆଙ୍ଗୁଳରେ ଦଳୁଥିଲା ।

'ତୁମେ ତୁମର କାମରେ ଅଛ ?' ଲେନରମଥାକୁ ଜବରଦସ୍ତ ଷ୍ଟୋଭ୍ ଆଡକୁ ବୁଲାଇ କେ' କହିଲା ଏବଂ ପୁଣି ପଗ୍ଭରିଲା—'ଲୋକଟି କଅଣ ତୁମର ପ୍ରେମିକ ?' ଲେନ ଚୁପ୍ ଜାଗାଟି ଆଡ଼କୁ ହାତ ବଢ଼ାଉଥିଲା ।

ମାତ୍ର କେ' ତାର ଦୁଇଟିଯାକ ହାତକୁ ଧରି କହିଲା—'ମୋତେ ଗୋଟେ ଜବାବ ଦିଅ ।'

ସେ କହିଲା—'ପଢ଼ାଘରକୁ ଆସ ସବୁ ବୁଝାଇ ଦେବି ।'

'ନା,' ତୁମେ ମୋତେ ଏଇଠି କୁହ । କେ' କହିଲା ।

ସେ ତାର ବାହୁଟି କେ'ର ହାତଭିତରେ ଛନ୍ଦି ଚୁମାଟିଏ ଦେବାକୁ ଚେଷ୍ଟା କଲା । କିନ୍ତୁ କେ' ଏଥିରୁ ନିଜକୁ ଦୂରେଇ ନେଇ କହିଲା—

'ମୁଁ ଚାହେଁ ନାହିଁ ଯେ ତୁମେ ବର୍ତ୍ତମାନ ଚୁମାଦିଅ ।'

ଅତି ବିନମ୍ର ହୋଇ ଅଥଚ ଖୋଲାଖୋଲି ଭାବରେ ଲେନ କହିଲା—'ଜୋସେଫ୍ ତୁମେ ନିଶ୍ଚୟ ବ୍ଲକ୍‌କୁ ଈର୍ଷା କରୁନାହଁ ?' ତାପରେ ସେ ବେପାରୀ ଆଡ଼କୁ ଚାହିଁ କହିଲା 'ରେଡ଼ି ମୋତେଟିକେ ସାହାଯ୍ୟ କର । ମୋତେ କେମିତି ସମସ୍ତେ ସନ୍ଦେହ କରୁଛନ୍ତି ତୁମେ ଦେଖିପାରୁଥିବ । ବତୀଟିକୁ ତଳେ ରଖିଦିଅ ।' ଜଣେ ଖାଉପାରିବଯେ ସେ ଲୋକଟି କୌଣସି ଜିନିଷରେ ଦୃଷ୍ଟି ଦେଉନାହିଁ । କିନ୍ତୁ ଲେନ କଅଣ ଚାହେଁ ଲୋକଟି ସାଙ୍ଗେ ସାଙ୍ଗେ ବୁଝିଗଲା । 'ତୁମକୁ ଈର୍ଷାନ୍ୱିତ ହେବାର କାରଣ କିଛି ଦେଖୁନାହିଁ ।' ଲୋକଟି ଖୁବ୍ ତୀକ୍ଷ୍ଣତାର ସହ କହିଲା ।

'ମୁଁ ମଧ୍ୟ ଜାଣିପାରୁ ନାହିଁ ।' ଅଳ୍ପହସି କେ' କହିଲା ।

ଲେନ ହସି ଉଠିଲା ଆଉ କେ'ର ସାମାନ୍ୟ ଅନ୍ୟମନସ୍କତାର ସୁଯୋଗ ନେଇ ତାକୁ ନିଜ ବାହୁରେ ଛନ୍ଦିପକାଇ ଧୀରେ ଧୀରେ କହିଲା ।

Digitized by srujanika@gmail.com

'ତାକୁ ବର୍ତ୍ତମାନ ଏକୁଟିଆ ଗ୍ରୁଡ଼ିଦଅ । ସେ କେମିତି ଜୀବ ତୁମେ ଜାଣି ପାରିବ । ମୁଁ ତାକୁ ଟିକେ ଦୟା ଦେଖାଉଚି କାରଣ ନା ସେ ଓକିଲଙ୍କର ସବୁଠୁ ବଡ଼ ମହୁକିଲ । ଏହାହିଁ ମୋର ଦୟା ଦେଖାଇବାର ଏକମାତ୍ର କାରଣ । ଆଉ ତୁମର କଅଣ ହେଲା ? ଆଜି ରାତିରେ କଅଣ ଓକିଲଙ୍କ ସହ ଦେଖା କରିବାକୁ ଚାହୁଁ ? ତାଙ୍କ ଦେହ ଆଦୌ ଭଲ ନାହିଁ । ତଥାପି ଯଦି ଚାହୁଁ ତେବେ ତୁମେ ଆସିଚ ବୋଲି ତାଙ୍କୁ କହିବ । କିନ୍ତୁ ନିଶ୍ଚିତ ଭାବେ ଆଜି ମୋ ସାଥିରେ ରାତି କଟାଇବ । ସେଇ ଯେ ଆସିଥିଲ ତାପରେ ଆଉ କେତେଦିନ ହେଲା ଯେ ତୁମେ ଆସିନ, ଏମିତିକି ଓକିଲ ବି ତୁମକଥା ପଚାରୁଥିଲେ । ମୁଁ ତୁମକୁ କେଶ୍ରରେ ହେଲା ହେବାକୁ ଦେବିନି । ତୁମକୁ ମୋର କିଛି ଖବର ଦେବାର ଅଛି । ସବୁ ଜିନିଷ ମୁଁ ଏ ଭିତରେ ଯୋଗାଡ଼ କରିଚି । କିନ୍ତୁ ପ୍ରଥମ କଥା ହେଉଚି ତୁମେ ଆଗେ ତୁମର କୋଟ ଖୋଲ ।' ସେ କୋଟ କାଢ଼ିବାରେ ସାହାଯ୍ୟ କଲା ତା ପାଖରୁ ଟୋପିଟି ନେଇ ଟାଙ୍ଗିବା ପାଇଁ ହଲ୍‌କୁ ଧାଇଁଲା ଏବଂ ତାପରେ ସୁପ୍‌କୁ ଦେଖିବା ପାଇଁ ଧାଇଁ ଧାଇଁ ଫେରିଆସିଲା । 'ତୁମକଥା ତାଙ୍କୁ ଆଗେ କହିବ ନା ଆଗେ ସୁପ୍ ଦେବ ।'

'ଆଗେ ମୋ କଥା କୁହ'—କେ' କହିଲା । କେ' ସାମାନ୍ୟ ବିରକ୍ତି ଅନୁଭବ କଲା କାରଣ ଲେନି ସହିତ ପ୍ରଥମେ ସେ ମକଦ୍ଦମା ବିଷୟ ପୁରା ଆଲୋଚନା କରିବାକୁ ଚାହୁଁଥିଲା । ବିଶେଷତଃ ଏହି ଓକିଲଙ୍କୁ ଗ୍ରୁଡ଼ିବା ସମ୍ପର୍କରେ । ମାତ୍ର ବେପାରୀର ଉପସ୍ଥିତି ସବୁ ନଷ୍ଟ କରି ଦେଲା । ପରେ ସେ ଭାବିଲା ତା ମକଦ୍ଦମା ବିଷୟ ଗୋଟିଏ ତୁଚ୍ଛ ବେପାରୀ ଶୁଣୁ ଏକଥା ଠିକ୍ ହେବନି । ତେଣୁ ସେ ଲେନିକୁ ପଛରୁ ଡାକିଲା । ଲେନି ସେତେବେଳେ ହଲଘରେ ପହଞ୍ଚି ସାରିଥିଲା ।

'ନା, ତାଙ୍କୁ ପ୍ରଥମେ ସୁପ୍ ଦିଅ । ତାହା ତାଙ୍କୁ ମୋ ସହିତ କଥା ହେବାକୁ ବଳ ଦେବ । ଏହା ତାଙ୍କର ଦରକାର ।' କେ' କହିଲା ।

'ତାହେଲେ ଆପଣ ଜଣେ ଓକିଲଙ୍କ ମହୁକିଲ' ଧୀରସ୍ଥିର ସ୍ୱରରେ ବସିଥିବା ବେପାରୀ କୋଣରୁ କହିଲା । ତା ପଚାରିବାରେ ଯେମିତି ଗୋଟିଏ କଥାର ସତ୍ୟତା ସେ ଜାହିର କରୁଚି । କିନ୍ତୁ ତା କଥାକୁ ଆଗ୍ରହରେ କେହି ଶୁଣିଲେ ନାହିଁ ।

'ସେଥିରେ ତୁମର କଅଣ ଯାଏ ଆସେ' କେ' କହିଲା । ତା ସାଥିରେ ଲେନି ମଧ୍ୟ ଯୋଡ଼ି ଦେଲା ।

'ତୁମେ ଚୁପ୍‌ରହିବନା । ଠିକ୍ ଅଛି ମୁଁ ପ୍ରଥମେ ସୁପ୍ ଦେଉଚି ।' ଏହା କହି ବାଟିରେ ସେ ସୁପ୍ ଢାଳିଲା ।

Digitized by srujanika@gmail.com

'ଏଥିରେ ବିପଦ ହେଉଛି ଯେ, ସୁପ୍ ଖାଇ ସାରିଲା ପରେ ସେ ଶୋଇପଡ଼ି ପାରନ୍ତି । ଖାଇ ସାରିଲା ପରେ ସବୁବେଳେ ସେ ଶୋଇପଡ଼ନ୍ତି ।'

ମୁଁ କିନ୍ତୁ ଯାହା କହିବି ତାଙ୍କ ନିଦ ନିଶ୍ଚୟ ଭାଙ୍ଗିଯିବ । କେ'ର ଉଦ୍ଦେଶ୍ୟ ହେଲା ସେ ଜଣାଇ ଦେବାକୁ ଚାହେଁ ଯେ ତାର କଥା ହେବା ଖୁବ୍ ଦରକାରୀ ସେ ଚାହୁଁଥିଲା ଲୋକ ଏ ବିଷୟରେ ତାକୁ ପ୍ରଶ୍ନ କରୁ । ତେବେ ଯାଇ ସେ ତାର ଉପଦେଶ ମାଗିବ । କିନ୍ତୁ ସେ ଯାହା ଯାହା କହୁଥିଲା ଲୋକ ତାକୁ ଅକ୍ଷରେ ଅକ୍ଷରେ ପାଳିବାକୁ ଲାଗିଲା । ସୁପ୍ ନେଇ ତା ପାଖରେ ଦେଇଗଲା ବେଳେ ଲୋକ ଜାଣିଶୁଣି ତା ଦେହରେ କହୁଣି ବାଜାଇ ଧୀରେ, ଧୀରେ କହିଲା 'ସେ ସୁପ୍ ଖାଇ-ସାରିବା ମାତ୍ରେ ତୁମ ଆସିବା କଥା ତାଙ୍କୁ କହିବି । ଯାହା ଫଳରେ କି ଯେତେ ଶୀଘ୍ର ସମ୍ଭବ ତୁମକୁ ସେଠାରୁ ନେଇ ଆସି ପାରିବ ।' ଆଚ୍ଛା ଯାଅ କେ' କହିଲା, ଯାହା କରିବାର କର । ତୁମ ସାଥୀରେ ଯିବି ?

'ଏମିତି ଚାଲନ୍ତୁ' ସୁପ୍ ବାଟିକୁ ଧରି ଦ୍ୱାର ପାଖରେ ପଛକୁ ବୁଲି ଲୋକ କହିଲା ।

କେ' ଆଶ୍ଚର୍ଯ୍ୟ ହୋଇ ତା ଆଡ଼କୁ ଚାହିଁରହିଲା । ସେ ନିଶ୍ଚିତ ଭାବେ ଠିକ୍ କରି ନେଲା ଯେ, ସେ ଓକିଲକୁ ଛାଡ଼ିଦେବ । ଏହା ମଧ୍ୟ ଠିକ୍ ଯେ ଲୋକ ସହ ଏ ବିଷୟରେ ଆଲୋଚନା କରିବାର ଆଶା ନାହିଁ । ସବୁ ଘଟଣା ତା ହାତ ବାହାରେ ପୁଣି ହୁଏତ ସେ ଏପରି ନ କରିବାକୁ ପ୍ରବର୍ତ୍ତାଇ ପାରେ । ଏମିତି କି ଏପରି ପ୍ରବର୍ତ୍ତାଇବାରେ ସେ ଜିତିଯାଇ ପାରେ ମଧ୍ୟ । ଫଳରେ ଭୟ ଓ ସନ୍ଦେହର ଶୀକାର ହୋଇ ସେ ଖାଲି ଯାହା ସନ୍ତୁଳ ହେଉଥିବ । ତାର ଯାହା କରିବା କଥା ଶେଷରେ ତାହା କରିବ ବୋଲି ଠିକ୍ କଲା । କାରଣ ଏପରି ଦରକାରୀ ସିଦ୍ଧାନ୍ତକୁ ନିଆଯାଏ ଯେତେ ଭଲ । ସେ ସେତେ କମ୍ କଷ୍ଟ ଭୋଗିବ । ହୁଏତ ଏ ବେପାରୀ ଏ ବିଷୟରେ କିଛି ଆଲୋକପାତ କରିପାରେ ।

କେ' ସେହି ଲୋକ ଆଡ଼କୁ ଚାହିଁଲା । ସେ ଚାହିଁବା ମାତ୍ରକେ ଲୋକଟି ଚମକି ପଡ଼ିଲା । ତା ପାଖକୁ ଗୋଟେ ଚୌକି ଟାଣି ଆଣି ଆଣି କେ' କହିଲା 'ବନ୍ଧୁ, ଆପଣ ଏ ଓକିଲଙ୍କର ଜଣେ ପୁରୁଣା ମହକିଲ ନୁହେଁ କି ?'

'ହଁ, ଜଣେ ଖୁବ୍ ପୁରୁଣା ମହକିଲ' – ଶସ୍ୟବେପାରୀ କହିଲା । 'ତୁମ ମକଦ୍ଦମା ଦାୟିତ୍ୱରେ ଇଏ କେତେଦିନ ହେଲା ରହିଛନ୍ତି ?' କେ' ପଚାରିଲା । 'କେଉଁ ବିଷୟକଥା ଆପଣ ପଚାରୁଛନ୍ତି ମୁଁ ଠିକ୍ ଧରିପାରୁନି । ମୋ ବ୍ୟବସାୟ ବିଷୟ ହୋଇଥିଲେ ମୁଁ ଜଣେ ଶସ୍ୟବେପାରୀ ଆଉ ଏ ଓକିଲ ମୂଳରୁ ହିଁ ମୋର

Digitized by srujanika@gmail.com

ପ୍ରତିବନ୍ଧ । ଅର୍ଥାତ୍ ଧରନ୍ତୁ କୋଡ଼ିଏ ବର୍ଷ ହେବ । ଆଉ ମୋର ବ୍ୟକ୍ତିଗତ କେଶ୍ କଥା ଯଦି କହୁଥାଆନ୍ତି ବୋଧହୁଏ ତାହାହିଁ ଆପଣଙ୍କର ଜାଣିବାର ଉଦ୍ଦେଶ୍ୟ, ତେବେ ସେଥିରେ ବି ସେ ମୋର ଓକିଲ ସେଇ ମୂଳରୁ ଯାହାକି ପାଞ୍ଚବର୍ଷ ତଳର କଥା । ହଁ, ଆଜିଠାରୁ ପାଞ୍ଚବର୍ଷରୁ ବେଶୀହେବ ।' ଏହା କହି ସେ ତାର ପକେଟ୍‌ରୁ ଗୋଟେ ଟିପାଖାତା ବାହାର କରି ତା କଥାର ସତ୍ୟାସତ୍ୟକୁ ଆଉଥରେ ଦେଖି ନେଲା ଏବଂ ଜାହିର କଲା ।

'ସବୁକଥା ଏଇ ଖାତାରେ ଲେଖିଅଛି । ଯଦି ଚାହିଁବେ ଠିକ୍ ତାରିଖ ବି ଆପଣଙ୍କୁ କହିଦେଇ ପାରେ । ଏତେ ସବୁକଥା ମନେ ରଖିବା ବଡ଼ କଷ୍ଟ । ମୋ ମକଦ୍ଦମା ବୋଧହୁଏ ମୋ କହିବା ଠାରୁ ଆହୁରି ପୁରୁଣା । ଏହା ମୋ ସ୍ତ୍ରୀର ମୃତ୍ୟୁ ପରେ ପରେ ହିଁ ଆରମ୍ଭ ହୋଇଥିଲା । ତେଣୁ ନିଶ୍ଚୟ ପାଞ୍ଚବର୍ଷ ୬ ମାସ ଆଗର ଘଟଣା ।' କେ' ତାର ଚୌକିକୁ ଲେକଟିର ଆହୁରି ପାଖକୁ ଟାଣି ବସିଲା । 'ତେବେ ଏ ଓକିଲ ବ୍ୟବସାୟ ମଧ୍ୟ କରନ୍ତି ।' କେ' ପଚାରିଲା—କୋର୍ଟ ଆଉ ଆଇନ ତନ୍ତ୍ରର ଏ ସମ୍ପର୍କ ତାକୁ କେମିତି ଅସାଧାରଣ ଭାବେ ସାନ୍ତ୍ୱନାଦାୟକ ଲାଗିଲା । ଅବଶ୍ୟ ଗୁପ୍ତ ଗଳାରେ ବେପାରୀ କହିଲା—'ଲୋକ କହନ୍ତି—ସେ ସାଧାରଣ ଆଇନ ବ୍ୟବସାୟରେ ସେ ଅଧିକ ଭଲ ।' ଏତେ କଥା କହିଦେଇ ଥିବାରୁ ତା ପରେ ଉପରଠାଉରିଆ ଭାବରେ ଦୁଃଖ ପ୍ରକାଶ କଲା । ତା ପରେ ସେ କେ'ର କାନ୍ଧରେ ତାର ହାତ ରଖି କହିଲା 'ମୁଁ ଅନୁରୋଧ କରୁଛି, ମୋତେ ଭସେଇ ଦେବନି ।' କେ' ତା ଜଙ୍ଘରେ ଥାପୁଡ଼ାଇ କହିଲା—'ନା, ମୁଁ କାହାରିକୁ ଖବର ଦିଏନି ।' 'ତୁମେ ଜାଣ ସେ ଭାରି ପ୍ରତିଶୋଧ ପରାୟଣ', ବ୍ଲକ୍ କହିଲା । 'ତୁମପରି ଜଣେ ବିଶ୍ୱସ୍ତ ମହକିଲର ସେ କ୍ଷତି କରିବେ ନାହିଁ ।' କେ' କହିଲା ।

'ନିଶ୍ଚୟ କରିବେ । ଥରେ ସେ ରାଗିଲେ ତାଙ୍କର ତ ଆଉ ବାଛବିଚାର ରହେନି, ତା ଛଡ଼ା ମୁଁ ପ୍ରକୃତରେ ତାଙ୍କର ବିଶ୍ୱସ୍ତ ନୁହେଁ ।' 'ଏହା କେମିତି ?' କେ' ପଚାରିଲା ।

ଦ୍ୱନ୍ଦରେ ପଡ଼ି ବ୍ଲକ୍ କହିଲା—'ବୋଧହୁଏ ତୁମକୁ କହିବା ମୋର ଉଚିତ୍ ହେବନି ।'

'ତୁମେ ଭୟ ନକରି ଖୋଲାଖୋଲି ମତେ କହିପାର ।' କେ' କହିଲା । 'ଆଚ୍ଛା, ମୁଁ ମୋ କଥା କିଛି କହୁଛି । କିନ୍ତୁ ତୁମେ ବି ତୁମର ଗୋଟିଏ ଗୁପ୍ତକଥା ମତେ କହିବ । ଯାହା ଫଳରେ କି ଦୁହିଁଙ୍କ ଉପରେ ଦୁହିଁଙ୍କର ଜୋର ରହିବ ।' ବ୍ଲକ୍ କହିଲା ।

Digitized by srujanika@gmail.com

'ତୁମେ ଖୁବ୍ ହୁସିଆର ଦେଖୁଚ । କିନ୍ତୁ ତୁମକୁ ମୁଁ ମୋର ଏମିତ ଗୋଟିଏ ଗୁପ୍ତକଥା କହିବ ଯାହାକି ତୁମର ସବୁ ସନ୍ଦେହକୁ ଦୂରକରି ଦେବ । ତେବେ କେଉଁ ଭାବରେ ତୁମେ ଓକିଲଙ୍କ ବିଶ୍ବାସୀ ନୁହଁ ?'

ଯେମିତ କୌଣସି ଏକ ଅସମ୍ଭାବନୀୟ ଘଟଣା ଖୋଲି କହୁଚ ସେହିପରି ଢଙ୍ଗରେ ବେପାରୀ କହିଲି । 'ତା'ପରି ମୋର ଅନ୍ୟ ଓକିଲ ବି ଅଛୁ । ଏହାତ ଏମିତ କିଛୁ ଖୁବ୍ ବେଶୀ ଖରାପ ବା ଭୟଙ୍କର ନୁହେଁ ।' ଟିକିଏ ହତାଶ ହୋଇ କେ' କହିଲି । କିନ୍ତୁ ବେପାରୀ ଜଣକ, ଏକ୍‌ବାରେ ଯେମିତ କଥାଟି କହିବା ପରଠୁ ଅଣବିଶ୍ବାସୀ ହୋଇପଡ଼ିଚ ଆଉ କେ'ର କଥାରୁ ଯେମିତ କିଛୁ ସାନ୍ତ୍ବନା ପାଇ ନ ପାରି କହିଲି—'କିନ୍ତୁ ଏହା ଭୟାନକ ବୋଲି ଧରାଯାଏ । ଏମିତ କରିବାକୁ ଦିଆଯାଏ ନାହିଁ ।'

'ସରକାରୀ ଓକିଲଙ୍କ ମହକିଲ ଥିଲି ବେଳେ ମୋଟ ଗ୍ରେଟ କଥାରେ ବ୍ୟସ୍ତଥିବା ଅନାମଧେୟ ଓକିଲଙ୍କ ସହ ଆଲୋଚନା କରିବା ସବୁଠାରୁ ବଡ଼ ଦୋଷ, ଏପରି କରିବାକୁ ଆଦୌ ଅନୁମତି ମିଳେ ନାହିଁ । ଏହା ଅତ୍ୟନ୍ତ ଦୋଷା-ବହ । ମାତ୍ର ଠିକ୍ ଏହାହିଁ ମୁଁ କରିଛୁ । ତାଙ୍କ ଛଡ଼ା ମୋର ଆଉ ପାଞ୍ଚଜଣ ତଳତଳିଆ ଓକିଲ ଅଛନ୍ତି ।'

'ପାଞ୍ଚଜଣ' ଏହି ସଂଖ୍ୟାରେ ଆଶ୍ଚର୍ଯ୍ୟ ହୋଇ କେ' ପାଟିକରି ଉଠିଲି । 'ପାଞ୍ଚଜଣ ଏହାଙ୍କୁ ଗୁଡ଼ା ।'

ବ୍ଲକ୍ ମୁଣ୍ଡ ଟୁଙ୍ଗାରିଲି ଆଉ କହିଲି—'ମୁଁ ବର୍ତ୍ତମାନ ଷଷ୍ଠ ଓକିଲଙ୍କ ସହ କଥାବାର୍ତ୍ତା କରୁଛୁ ।'

'ଏତେ ଓକିଲ ତୁମର କଅଣ ଦରକାର ?' କେ' ପଚାରିଲି ।

'ମୁଁ ସମସ୍ତଙ୍କୁ ଜଣ, ଜଣ କରି ଦରକାର କରେ ।' ବ୍ଲକ୍ କହିଲି ।

'କିନ୍ତୁ କାହିଁକି, ମତେ କହିବେ କି ?' କେ' ପଚାରିଲି ।

'ଖୁସିରେ କରିଛୁ । ତୁମେ ଏହା ଠିକ୍ ବୁଝିପାରୁଥିବ । ତେଣୁ ମୋତେ ଯେଉଁଠୁ ଟିକିଏ ସାହାଯ୍ୟ ମିଳିବ ତାକୁ ମୁଁ ହେଲା କରିପାରିବିନି । କେଉଁଠି ଯଦି ଲଭର କ୍ଷୀଣତମ ଆଶାର ସୂଚନା ମିଳେ ମୁଁ ତାକୁ କେବେ ଗୁଡ଼ି ପାରିବିନି । ତେଣୁ ମୋର ଥିବା ଶେଷ କଉଡ଼ିତକ ଏଇ ମକଦ୍ଦମା ପାଇଁ ଖର୍ଚ୍ଚ କରି ସାରିଦେଲିଣି । ଉଦାହରଣ ସ୍ୱରୂପ, ମୋ ବେପାରରୁ ସବୁ ଟଙ୍କା କାଢ଼ି ଆଣିଲିଣି । ମୋ ବ୍ୟବ-ସାୟର ଅଫିସ ଦିନେ ଗୋଟେ ଘରର ପୂରା ତଳମହଲା ସାରିଥିଲି କିନ୍ତୁ ଏବେ

Digitized by srujanika@gmail.com

କେବଳ ଗେଷ୍ଟ ଘରଟି ଭିତରେ ସୀମିତ । ଏସବୁକୁ ଦେଖାଶୁଣା କରିବା ପାଇଁ ଜଣେ ନୂଆ ଶିକ୍ଷାର୍ଥୀଟିଏ । ଟଙ୍କା କାଢ଼ି ଆଣିବା ଯୋଗୁଁ ମୋ ବ୍ୟବସାୟ କମିଗଲା ନାହିଁ । ଏହାର କ୍ଷତି ହେଲା ମୋର ଶକ୍ତି ଆଉ ବ୍ୟବସାୟରେ ନଖଟି ଏ ମକଦ୍ଦମାରେ ଲାଗିଲା । ତୁମ କେଶ୍ ପାଇଁ ତୁମେ ଯେତେବେଳେ ଲାଗିବ ସେତେବେଳେ ତୁମେ ଆଉ କିଛି କରିପାରିବ ନାହିଁ । ତୁମ ଶକ୍ତିକୁ ଅନ୍ୟ କାମରେ ଲଗାଇ ପାରିବ ନାହିଁ ।'

‘ତେବେ ତୁମେ ତୁମ ନିଜ ତରଫରୁ ଲାଗିପଡ଼ିଚ । ଠିକ୍ ଏହାହିଁ ମୁଁ ତୁମ ମାଙ୍କରୁ ଜାଣିବାକୁ ଚାହୁଁଥିଲି ।' କେ' କହିଲା ।

‘ତୁମକୁ ବେଶୀ କିଛି ମୋର କହିବାକୁ ନାହିଁ ।' ବେପାରି କହିଲା ।

‘ପ୍ରଥମେ ମୁଁ ନିଜେ ଚେଷ୍ଟା କରୁଥିଲି କିନ୍ତୁ ଖୁବ୍ ଶୀଘ୍ର ମତେ ଛାଡ଼ି ଦେବାକୁ ପଡ଼ିଲା । ଏହା ଭାରି କଷ୍ଟକର ଏବଂ ପରିଣତି ହତାଶାପୂର୍ଣ୍ଣ । ନିଜ କେଶ୍ ଉପରେ ଖାଲି ନଜର ରଖିବା ପାଇଁ ବାରମ୍ବାର କଚେରି ଆସିବା ମୋ ପାଇଁ ଅସମ୍ଭାଳ ହୋଇପଡ଼ିଲା । ନିଜ ପାଳି ପଡ଼ିବା ପର୍ଯ୍ୟନ୍ତ ଅପେକ୍ଷା କରିକରି ଜଣେ ଥୋବରା ହୋଇଯିବ । ତଥାପି କେଉଁ ପାଣି କେଉଁ ଆଡ଼କୁ ଯାଉଛି ତାହା ଅନ୍ତତଃ ତୁମେ ନିଜେ ଜାଣିପାରିବ ।'

‘ମୁଁ ସେଠାରେ ଥିଲି ବୋଲି କେମିତି ଜାଣିଲ ?' କେ' କହିଲା । ‘ତୁମେ ଯେତେବେଳେ ସେବାଟେ ଦେଇ ଯାଉଥିଲ ମୁଁ ବସିବା ଘରେ ଥିଲି ।'

‘କି ସୁନ୍ଦର ଯୋଗାଯୋଗ !' କେ' ପାଟି କରି ଉଠିଲା ।

ତା ବକ୍ତୃର ଦ୍ୱାରା ଶସ୍ୟ ବେପାରି କେତେ ହାସ୍ୟାସ୍ପଦ ହେଲା ସେ ବିଷୟକୁ ଆଦୌ ବିଚାର ନ କରି ସେ ପାଟିକରି ଉଠିଲା ।

‘ତାହେଲେ ତୁମେ ମତେ ଦେଖିଥିଲ । ସେ ବାଟେ ଦେଇଗଲାବେଳେ ତୁମେ ବସିବା ଘରେ ଥିଲ । ହଁ ମୁଁ ଥରେ ବସିବା ଘରଦେଇ ଯାଇଥିଲି ।'

‘ଏହା ଏତେ ବଡ଼ ଯୋଗାଯୋଗ ନୁହେଁ, କାରଣ ମୁଁ ସେଠି ପ୍ରାୟ ସବୁଦିନେ ଥାଏ ।' ବେପାରି କହିଲା ।

‘ଏହାପରେ ମୁଁ ମଧ୍ୟ ସବୁବେଳେ ସେଠାରେ ରହିବ । ଅବଶ୍ୟ ସେଦିନ ପରି ଆଉ କେବେ ସେମିତି ସମ୍ମାନର ସହ ଗୃହୀତ ହେବି ନାହିଁ । ମତେ ଦେଖି ସମସ୍ତେ ଠିଆହୋଇ ପଡିଲେ ମୁଁ ଭାବୁଚି ମତେ ଜଣେ ଜଜ୍ ବୋଲି ସେମାନେ ଭାବି ନେଲେ ।' କେ' କହିଲା ।

Digitized by srujanika@gmail.com

'ନା, ଆମେ ସେ ଅର୍ଡ଼ର ପାଇଁ ଠିଆ ହୋଇଥିଲୁ । ଆମେ ଜାଣୁ ଆପଣ ଜଣେ ଅଭିଯୁକ୍ତ ବ୍ୟକ୍ତି । ଏସବୁ ଖବର ଖୁବ୍ ଶୀଘ୍ର ପ୍ରଚାର ହୁଏ ।' ହେପାଶ୍ଚି କହିଲି ।

'ତାହେଲେ ତୁମେ ଅଗରୁ ଜାଣିଛ । ବୋଧହୁଏ ତୁମେ ମତେ ଖୁବ୍ ଅଭିଯାତ ଏବଂ ଶକ୍ତିଶାଳୀ ବୋଲି ଭାବିଥିବ । କେହି କଅଣ ଏ ବିଷୟରେ ମତାମତ ଦେଇ ନଥିଲେ ?' କେ' ପଚାରିଲା ।

'କେହି ଖରାପ ମତ ଦେଇ ନଥିଲେ । ତେବେ ଏସବୁ ଅର୍ଥହୀନ ।'

'ଅର୍ଥହୀନ କଅଣ ?' କେ' ପଚାରିଲା ।

'ଆପଣ ଅଯଥା ସବୁବେଳେ ପଚାରୁଣ ହେଉଚନ୍ତି ।' ବିରକ୍ତ ହୋଇ ହେପାଶ୍ଚି କହିଲି । 'ଜଣାଯାଉଚି ସେଠାକାର ଲୋକଙ୍କୁ ଆପଣ ଏବେବି ଚିହ୍ନି ନାହାନ୍ତି । ଏଥର ହୁଏତ ଭୁଲ କରି ବସିବେ । ଆପଣଙ୍କର ମନେରଖିବା ଉଚିତ୍ ଯେ, ଯୁକ୍ତି ବାହାରେ ଥିବା ଜିନିଷଗୁଡ଼ିକ ହିଁ ଆଲୋଚନା ପାଇଁ ଆସିବ । ଲୋକମାନେ ଏତେ କ୍ଳାନ୍ତ ଆଉ ବିଭ୍ରାନ୍ତ ଯେ ସେମାନେ କିଛି ଭାବିପାରନ୍ତି ନାହିଁ । ତେଣୁ ସେମାନେ ଅନ୍ଧବିଶ୍ୱାସ ଆଉ କୁସଂସ୍କାରର ଆଶ୍ରୟ ନେଇଥାଆନ୍ତି । ଅନ୍ୟମାନଙ୍କ ପରି ମୁଁ ମଧ୍ୟ ଏଇ ଦୋଷରେ ଦୋଷୀ । ଅନ୍ଧବିଶ୍ୱାସ ହେଉଚି ଯେ ଗୋଟିଏ ଲୋକର ମୁହଁରୁ ଏବଂ ବିଶେଷତଃ ଓଠର ଦାଗରୁ ତା ମକଦ୍ଦମାର ଭବିଷ୍ୟତ ବିଷୟ ଜଣାଯାଏ । ଲୋକ-ମାନେ କହିଲେଣି ଯେ, ତୁମ ଓଠ ତୁମକୁ ଦୋଷୀ ବୋଲି ଜଣାଇ ଦେଉଚି ଏବଂ ନିକଟ ଭବିଷ୍ୟତରେ ତାହା ନିଶ୍ଚୟ ପ୍ରତିପାଦିତ ହେବ । ମୁଁ ତୁମକୁ କହି ରଖୁଚି ଏହା ଗୋଟିଏ ବାଜେ ଅନ୍ଧବିଶ୍ୱାସ ଏବଂ ଅଧିକାଂଶ କ୍ଷେତ୍ରରେ ସତ୍ୟ ସହି ଏହାର କୌଣସି ସମ୍ପର୍କ ନାହିଁ । କିନ୍ତୁ ଏ ଲୋକଙ୍କ ସାଙ୍ଗରେ ରହିଲେ ସେମାନଙ୍କ ମତକୁ ଏଡ଼ାଇ ଦେବା ସମ୍ଭବ ହେବ ନାହିଁ । ଏପରି ଅନ୍ଧବିଶ୍ୱାସର ପ୍ରଭାବ କେତେ ଭୀଷଣ ତାହା ଆପଣ କଳ୍ପନା ବି କରି ପାରିବେନାହିଁ । ସେଠାରେ ଗୋଟିଏ ଲୋକ ସାଙ୍ଗରେ ଆପଣ କଥା କହୁଥିଲେ ନା ? କିନ୍ତୁ ସେ ଆପଣଙ୍କ ସହ ପଦେଟିଏ କଥା କହିଲା ନାହିଁ ଆପଣଙ୍କ ପ୍ରଶ୍ନର ଗୋଟିଏ ବି ଜବାବ୍ ଦେଲାନି । ଅବଶ୍ୟ ସେଠାରେ ବିଚଳିତ ହେବାର ଅନେକ କାରଣ ଅଛି । ତଥାପି ତାର ଜବାବ ନ ଦେବାର ଅନେକ କାରଣ ଭିତରୁ ଗୋଟିଏ ମୁଖ୍ୟ କାରଣ ହେଉଚି ଯେ, ସେ ଆପଣଙ୍କ ଓଠକୁ ଦେଖି ଚମକି ପଡ଼ିଥିଲା । ପରେ ସେ କହୁଥିଲା ଯେ ଆପଣଙ୍କ ଓଠରେ ସେ ତା ନିଜ ଧ୍ୱଂସର ଲକ୍ଷଣ ଦେଖି ପାରିଥିଲା ।'

Digitized by srujanika@gmail.com

'ମୋ ଓଠରେ ?' ନିଜ ପକେଟ୍‌ରୁ ଗୋଟିଏ ପକେଟ ଦର୍ପଣ କାଢ଼ି ସେଥିରେ ନିଜ ଓଠକୁ ଦେଖି ଦେଖି କେ' ପଚାରିଲା । 'ମୁଁ ତ ମୋ ଓଠରେ କିଛି ବିଶେଷତ୍ୱ ଦେଖୁନି । ତୁମେ କଅଣ କିଛି ଦେଖୁଚ ?'

'ମୁଁ ବି କିଛି ଦେଖୁନି, ଏତେଟିକେ ବି ନୁହେଁ ।' ବେପାରୀ କହିଲା ।
'ଏ ଲୋକଗୁଡ଼ାକ ଏତେ ଅନ୍ଧବିଶ୍ୱାସୀ ।' କେ' କହିଲା ।

'ମୁଁ କଅଣ ସେକଥା କହିନଥିଲି ?'

'ସେମାନେ କଅଣ ବାରମ୍ବାର ଏକାଠି ହୋଇ ଏଇ ସବୁବିଷୟ ଆଲୋଚନା କରନ୍ତି ?' କେ' ପଚାରିଲା ।

'ମୋର ସେମାନଙ୍କ ପାଖରେ କିଛି କାମ ପଡ଼ିନାହିଁ । ସାଧାରଣତଃ ନିଜ ନିଜ ଭିତରେ ବେଶି ମିଳାମିଶା କରନ୍ତିନି । ଏହା ସମ୍ଭବ ମଧ୍ୟ ନୁହେଁ, କାରଣ ସେମାନଙ୍କର ସ୍ୱାର୍ଥ ମଧ୍ୟ ଭିନ୍ନଭିନ୍ନ । ବେଳେ ବେଳେ ଗୋଟିଏ ଦଳ ଭାବନ୍ତି ଯେ, ସେମାନଙ୍କ ସ୍ୱାର୍ଥ ଏକ ଆଉ ଅଭିନ୍ନ । ମାତ୍ର ଅଳ୍ପ ସମୟ ଭିତରେ ସେମାନେ ତାଙ୍କ ଭୁଲ ବୁଝିପାରନ୍ତି । କଚେରି ବିରୁଦ୍ଧରେ ଏକତାବଦ୍ଧ ହୋଇ ସମୂହ ଆକ୍ରମଣ କରିବା ଅସମ୍ଭବ । ପ୍ରତ୍ୟେକ ମକଦ୍ଦମା ତା ନିଜ ସ୍ୱଗୁଣ ଦ୍ୱାରା ହିଁ ବିଚାର ହୋଇ-ଥାଏ । ଏ ବିଷୟରେ କଚେରି ଖୁବ୍ ସତର୍କ ଏବଂ ସଚେତ । ତେଣୁ ଗୋଟିଏ ସାଧାରଣ କାର୍ଯ୍ୟକ୍ରମର ପ୍ରଶ୍ନ ଉଠୁନାହିଁ । ଜଣେ ଅଧେ କେହି ହୁଏତ ଗୁପ୍ତରେ କିଛି ଲାଭ ପାଇପାରୁ ଥାଆନ୍ତି କିନ୍ତୁ କେହି ଯାଙ୍କ ଯାଙ୍କ ସେ ବିଷୟରେ କିଛିଜାଣି ପାରନ୍ତିନି । ପୁଣି ତାହା କେମିତି ସମ୍ଭବ ହେଲା ତା କେବେ କେହି ଜାଣି ପାରନ୍ତିନି । ତେଣୁ ଏଠାରେ କୌଣସି ଦଳ ନାହିଁ । ଲୋକମାନେ ବସିବା ଘରେ ପରସ୍ପରକୁ ଭେଟନ୍ତି । ମାତ୍ର ସେମାନଙ୍କ ଭିତରେ କଥାବାର୍ତ୍ତା କମ୍ ହୋଇଥାଏ । ସେହି ଅନ୍ଧବିଶ୍ୱାସ ଗୋଟିଏ ପୁରୁଣା ପରମ୍ପରା ଏବଂ ଏହା ଆପେ ଆପେ ଗଢ଼ି ଉଠେ ।'

'ବସିବା ଘରେ ଅପେକ୍ଷା କରିଥିବା ଲୋକମାନଙ୍କୁ ଦେଖି ମୋର ମନେ ହେଲା, ଏପରି ବସିବା ତାଙ୍କ ପାଖରେ କେତେ ଉଦ୍ଦେଶ୍ୟହୀନ ।' କେ' କହିଲା ।

'ଏହା କେବେ ଉଦ୍ଦେଶ୍ୟହୀନ ନୁହେଁ, କେବଳ ସ୍ୱାଧୀନ ଭାବେ କିଛିକରିବା ଚେଷ୍ଟାହିଁ ଉଦ୍ଦେଶ୍ୟହୀନ । ମୁଁ ଆଗରୁ କହିନଥିଲି ଏ ଓକିଲଙ୍କୁ ଛାଡ଼ି ମୋର ଆହୁରି ପାଞ୍ଚ ଜଣ ଓକିଲ ଅଛନ୍ତି । ଏ କେଶ୍‌ରୁ ପୁରା ମୁକୁଳିଯିବ, ନିର୍ଭୟରେ ସବୁ ଝାଡ଼

ଝୁଡ଼ି ସଫା ହୋଇପାରିବ ବୋଲି ମୁଁ ଯେମିତି ଥରେ ଭାବିଥିଲି, ଆପଣ ବି ସେମିତି ଭାବିପାରନ୍ତି । ମାତ୍ର ସେମିତି ଭାବିବା ଆପଣଙ୍କ ପାଖରେ ଭୁଲ୍ ହେବ । ଜଣେ ଓକିଲଥିଲେ ମତେ ଯେତେ ସତର୍କ ହେବାକୁ ପଡ଼ିନଥାନ୍ତା ବର୍ତ୍ତମାନ ତାଠାରୁ ଅଧିକ ସତର୍କ ହେବାକୁ ପଡ଼ୁଛି । ସବୁକଥାକୁ ଅଧିକ ନଜର ଦେବାକୁ ପଡୁଛି । ମୋର ବିଶ୍ୱାସ ଆପଣ ଏବେବି ଏ ଅବସ୍ଥାକୁ ବୁଝିପାରିନାହାଁନ୍ତି ।' ବ୍ଲକ୍ କହିଲା ।

ବଡ଼ ଶ୍ରଦ୍ଧାର ସହିତ କେ' ନିଜ ହାତକୁ ବ୍ଲକ୍ ଉପରେ ରଖିଲା । ତାର ଉଦ୍ଦେଶ୍ୟ ଯେମିତି ସେ ତର, ତରରେ କଥା ନ କହୁ । ତାପରେ ସେ କହିଲା—'ନା, ମୁଁ ତୁମକୁ ଅନୁରୋଧ କରୁଛି ଟିକେ ଧୀରେ, ଧୀରେ କୁହ । ତୁମେ ଯାହା କହୁଚ ସେଗୁଡିକ ମୋ ପାଇଁ ଖୁବ୍ ଦରକାରୀ, କିନ୍ତୁ ତୁମେ ଏତେ ତର, ତରରେ କହିଯାଉଛ ଯେ, ମୁଁ ତାକୁ ବୁଝିପାରୁ ନାହିଁ ।'

'ମୋତେ ଏକଥା ମନେ ପକାଇ ଦେବାରୁ ମୁଁ ଖୁସି । ଅବଶ୍ୟ ଆପଣ ଏଠି ନୂଆ । ଏସବୁ କାମରେ ଖୁବ୍ କଞ୍ଚା ।'

'ଆପଣଙ୍କ କେଶ୍‌ଟି ମୋଟେ ଛଅ ମାସର, ନୁହେଁ କି ?'

'ହଁ, ଏ ବିଷୟରେ ଶୁଣିଛି, କେଶ୍ ଭିତରେ ଶିଶୁଟିଏ । କିନ୍ତୁ ମୋତେ ଏ ସବୁବିଷୟରେ ଭାବିବାକୁ ପଡ଼ିବ । ଜାଣେନା କେତେଥର ବେଶୀ ଭାବିବା ମୋର ପ୍ରକୃତି ହୋଇଗଲାଣି ।'

ବେପାରୀ କହିଲା—'ଆପଣଙ୍କ ମକଦ୍ଦମା ଏତେବାଟ ଆଗେଇ ଗଲାଣି ଭାବି ଆପଣତ ଆଶ୍ୱସ୍ତ ହେଉଥିବେ, କୃତଜ୍ଞ ମନେ କରୁଥିବେ ?' ତା ମକଦ୍ଦମା ବିଷୟରେ ସିଧାସଳଖ କିଛି ନପଚାରି ବେପାରୀର ମକଦ୍ଦମା କେତେବାଟ ଆଗେଇଲାଣି ଜାଣିବା ପାଇଁ କେ' ପଚାରିଲା । କିନ୍ତୁ ସେ ବି ସେମିତି ସିଧାସଳଖ ଉତ୍ତର ପାଇଲାନି ।

'ଅବଶ୍ୟ ମୁଁ ପାଞ୍ଚବର୍ଷ ଧରି ଏ ମକଦ୍ଦମାର ବୋଝକୁ ମୁଣ୍ଡାଇ ବୁଲୁଛି । ଏହା କିଛି କମ୍ କଥା ନୁହେଁ ।' ମୁଣ୍ଡ ନୁଆଁଇ ବ୍ଲକ୍ କହିଲା ।

ତାପରେ କିଛି ସମୟ ସେ ଚୁପ୍‌ଚାପ୍ ବସିଗଲା । କାଲେ ଲେନି ଫେରି-ଆସୁଛନ୍ତି କି ତା ଶୁଣିବା ପାଇଁ କେ' କାନ ଡେରିଲା । ଗୋଟେ ଢଙ୍ଗରେ ସେ ଚାହୁଁ ନଥିଲା ଯେ, ସାଙ୍ଗେ ସାଙ୍ଗେ ଲେନି ଫେରିଆସୁ ବୋଲି । କାରଣ ତାର ଆହୁରି ଅନେକ ପ୍ରଶ୍ନ ପଚାରିବାର ଅଛି । ପୁଣି ଲେନି ଯେମିତି ତାକୁ ବେପାରୀ ସହିତ ଏପରି ଘନିଷ୍ଠ ଭାବେ କଥାବାର୍ତ୍ତା କରୁଥିବା ନଦେଖୁ । ଏ କଥା ବି ସେ ଚାହୁଁନଥିଲା ।

Digitized by srujanika@gmail.com

ଲେନି ଖାଲି କପେ ସୁପ୍ ଦେବାକୁ ଓକିଲଙ୍କ ପାଖରେ ଏତେ ସମୟ ନେଉଛି, କେ’ ଘରେ ଥିବା କଥା ଜାଣି । ସେ କଥା ଭାବି ସେ ବିରକ୍ତ ହେଉଥିଲା ।

‘ମୋର ଆଜି ବି ଠିକ୍ ମନେ ଅଛି ଯେତେବେଳେ ମୋ ମକଦ୍ଦମା ଆପଣଙ୍କ ପରି ନୂଆ ଆରମ୍ଭ ହୋଇଥିଲା ।’ ବେପାରୀ ପାଖରୁ ଏତିକି ଶୁଣିବା ମାତ୍ରେ କେ’ ଦୃଷ୍ଟି ଫେରାଇଲା ।

‘ସେତେବେଳେ ମୋର କେବଳ ଏଇ ଏକମାତ୍ର ଓକିଲ ଥିଲେ ଆଉ ମୁଁ ତାଙ୍କ କାମରେ ନିର୍ଦ୍ଦିଷ୍ଟ ଭାବେ ସନ୍ତୁଷ୍ଟ ହୋଇ ପାରୁନଥିଲି ।’

‘ଏବେ ମୁଁ ସବୁ ଜାଣିପାରୁଛି ।’ କେ’ କହିଲା । ସେ ତାର ମୁଣ୍ଡ ଏମିତି ଝୁଙ୍କାଇ କହିଲା ଯେମିତି କି ବେପାରୀ ଆହୁରି ଉତ୍ସାହିତ ହୋଇ ସବୁ ଠିକ୍ ଖବର ଦେଇଦେବ । ବ୍ଲକ୍ କହି ଚାଲିଲା ।

‘ମୋ ମକଦ୍ଦମା ସେହିପରି ଜମା ଆଗେଇ ପାରିଲାନି । ଅବଶ୍ୟ ଅନେକ ଥର ଜେରା ଚାଲିଲା । ମୁଁ ସବୁଥର ଆସି ହାଜର ହେଲି । ସାକ୍ଷୀ ପ୍ରମାଣ ଯୋଗାଡ଼ କଲି । ଏମିତିକି ମୋର ସବୁ ହିସାବ ଖାତା କୋର୍ଟରେ ଦାଖଲ କଲି । କିନ୍ତୁ ପରେ ଜାଣିଲି ଏହା ଆଦୌ ଦରକାର ନଥିଲା । ମୋ ଓକିଲ ପାଖକୁ ଖାଲି ଧାଇଁବାରେ ଲାଗିଲି । ସେ ବାରମ୍ବାର ବିଭିନ୍ନ ଦରଖାସ୍ତ ଦେଲେ ।’

‘ବିଭିନ୍ନ ଦରଖାସ୍ତ ?’ କେ’ ପଚାରିଲା । ‘ହଁ ନିଶ୍ଚୟ’ ବ୍ଲକ୍ କହିଲା । ‘ମୋ ପାଇଁ ତା ଖୁବ୍ ଜରୁରୀ । ମୋ ମକଦ୍ଦମାରେ ସେ ବର୍ତ୍ତମାନ ତାଙ୍କ ପ୍ରଥମ ଦରଖାସ୍ତ ଉପରେହିଁ କାମ କରୁଛନ୍ତି ତାଛଡ଼ା ସେ ଆଜିପର୍ଯ୍ୟନ୍ତ ଆଉ କିଛି କରି ନାହାନ୍ତି । ମୁଁ ବର୍ତ୍ତମାନ ଜାଣୁଛି କି ଭୟଙ୍କର ଭାବରେ ସେ ମୋତେ ଅବହେଳା କରିଛନ୍ତି । ହୁଏତ ଅନେକ ସୁନ୍ଦର କାରଣ ଥାଇପାରେ ଯାହାପାଇଁ ମୋର ଦରଖାସ୍ତ ପ୍ରସ୍ତୁତ ହୋଇପାରି ନାହିଁ ।’ ବ୍ଲକ୍ କହିଲା—‘ମୁଁ ପୁଣି ଆପଣଙ୍କୁ କହି ରଖୁଛି ପରେ ମୋର ଦରଖାସ୍ତଗୁଡ଼ିକ ଅଦରକାରୀ ବୋଲି ଜଣାଗଲା । ଜଣେ କଚେରି କର୍ମଚାରୀଙ୍କ ଦୟାରୁ ମୁଁ ଗୋଟେ ଦରଖାସ୍ତକୁ ଦେଖିପାରିଛି । ସେଗୁଡ଼ିକ ଖୁବ୍ ପାଣ୍ଡିତ୍ୟପୂର୍ଣ୍ଣ ମାତ୍ର ସେଥିରେ ଦରକାରୀ କଥା କିଛି ନାହିଁ । ତାର ପ୍ରଥମ ଭାଗରେ ଖାଲି ଗୁଡ଼ାଏ ଲାଟିନ୍ ଶବ୍ଦ । ତାର ବିନ୍ଦୁବିସର୍ଗ ମୁଁ କିଛି ବୁଝିପାରିଲିନି ! ତାପରେ ସାରା ପୃଷ୍ଠା କଚେରୀ ପାଖରେ ପ୍ରାର୍ଥନା । ପରେ ପରେ କୌଣସି ଏକ ନିର୍ଦ୍ଦିଷ୍ଟ କର୍ମଚାରୀ ପ୍ରତି ଖୋସାମତିଆ ଚାଟୁକାରପଦ କଥା । ସେ କର୍ମଚାରୀମାନଙ୍କ ନାମ ସିଧାସଳଖ ନାହିଁ, ମାତ୍ର ଯିଏ ଏ ବିଷୟରେ ପୂରୁଖା ବା ସେମାନେ କିଏ ଜାଣିବା କଷ୍ଟକର ହେବ ନାହିଁ । ତାପରେ ଗୋଟିଏ ପରିଚ୍ଛେଦରେ କେବଳ ନିଜର

Digitized by srujanika@gmail.com

ପ୍ରଶଂସା । ଏବଂ ଏସବୁ ଲେଖିବା କେବଳ ଅତି ଅଣୁ ମଣ୍ଡା ବିନସ୍ତ ସହ୍ର କଟେଣ୍ଟଙ୍କୁ ସଂବୋଧନ, ଶେଷରେ ପୂର୍ବକାଳର ଆଜିପର୍ଯ୍ୟନ୍ତ ଅନେକ ମକଦ୍ଦମାର ବିଶ୍ଳେଷଣ ଯେଉଁଗୁଡ଼ିକର ମୋ ମକଦ୍ଦମା ସହିତ ସାମଞ୍ଜସ୍ୟ ଅଛି । ମୁଁ ଯେତେଦୂର ବୁଝିଛି ଏହି ବିଶ୍ଳେଷଣ ଖୁବ୍ ସତର୍କତାପୂର୍ଣ୍ଣ ଏବଂ ପୁଙ୍ଖାନୁପୁଙ୍ଖ । ତୁମର ଭାବିବା ଉଚିତ୍ ନୁହେଁ ଯେ ଓକିଲଙ୍କ କାମ ଉପରେ ମୁଁ ମୋର ରାୟ ଦେଉଛି । ସେହି ଦରଖାସ୍ତଟି ଅବଶ୍ୟ ଅନେକ ଭିତରୁ ଗୋଟିଏ କେବଳ ଏବଂ ଏଥିପାଇଁ ମୁଁ କହୁଛି ଯେ, ମୋ କେଶ୍ ଆଦୌ ଆଗେଇନି ଭଳି ମୋର ମନେ ହେଉନି ।’

‘କେମିତି ଆଗେଇବା ତୁମେ ଚାହୁଁଛ ଯେ ?’ କେ’ ପଚାରିଲା ।

‘ଭଲ ପ୍ରଶ୍ନଟିଏ ।’ ଅଳ୍ପ ହସି ବେପାରୀ କହିଲା । ଏ ସବୁ ମକଦ୍ଦମା କେତେ ଆଗେଇଲା ତା ଆଦୌ ବାହାରକୁ ଜଣାପଡ଼ୁନାହିଁ । କିନ୍ତୁ ସେତେବେଳେ ଏ କଥା ଜାଣିନଥିଲି । ମୁଁ ଜଣେ ବେପାରୀ ଆଉ ସେତେବେଳେ ଆଜି ଅପେକ୍ଷା ଆହୁରି ବେଶୀ ବ୍ୟବସାୟିକ ଥିଲି । ମୁଁ ଚାହୁଁଥିଲି ଆଖିଦୃଶିଆ ଫଳ । ସବୁ କଥାବାର୍ତ୍ତା ଯେମିତି ସରେ କିମ୍ବା ଯେମିତି ନିର୍ଦ୍ଦିଷ୍ଟ ଭାବେ ଆଗେଇ ଚାଲେ ସେ କଥା ଚାହୁଁଥିଲି । କିନ୍ତୁ ଏ ସବୁ ବ୍ୟତୀତ ଗୋଟେ ପରେ ଗୋଟେ ଖାଲି ସାକ୍ଷାତକାର ପର୍ବ । ଅଧିକାଂଶ ଗୁଡ଼ିକ ସେଇ ଏକା ଧରଣର ଆଉ ମୋଟତ ଖାଲି ଯନ୍ତ୍ର ପରି, ସଙ୍ଗୀତର ଘୋଷା ପରି ସେଇ ଏକା କଥା ବାରମ୍ବାର କହିବାକୁ ପଡ଼ିଲା । ସପ୍ତାହରେ ଅନେକ ଥର କଟର ପିଅନ ମୋ ଦୋକାନକୁ ଘରକୁ କିମ୍ବା ସାଧାରଣତଃ ମୁଁ ଯେଉଁଠି ଥାଏ, ସେଠିକି ଆସିଲା । ଏହା ଅବଶ୍ୟ ଗୋଟେ ବଡ଼ ବିରକ୍ତିକର କଥା । ଆଜି ସେଦିନ ଅପେକ୍ଷା ବହୁତ ଭଲଅଛି । ଆଜି ଆଉ ଫୋନରେ ଡ଼ାକରା ଆସି ମୋତେ ବିରକ୍ତ କରୁନି । ଏସବୁ ବ୍ୟତୀତ ମୋ ମକଦ୍ଦମା ବିଷୟରେ ନାନା ଗୁଜବ ମୋ’ ବ୍ୟବସାୟୀ ବନ୍ଧୁଙ୍କ ଭିତରେ ବ୍ୟାପିଗଲା । ବିଶେଷତଃ ମୋ ଆତ୍ମୀୟମାନଙ୍କ ଭିତରେ, ତେଣୁ ସବୁଦିଗରୁ ମୁଁ ବ୍ୟତିବ୍ୟସ୍ତ ହୋଇପଡ଼ିଲି । ତଥାପି କୋର୍ଟ ତରଫରୁ ବିଚାର ଆରମ୍ଭ କରିବାର ସାମାନ୍ୟତମ ସୂଚନାବି ମିଳିଲା ନାହିଁ । ନିକଟ ଭବିଷ୍ୟତରେ ଯେ, ଆରମ୍ଭ ହେବ ସେମିତିକିଛି ଜଣାଗଲାନି । ଫଳରେ ମୁଁ ଓକିଲ ପାଖକୁ ଯାଇ ମୋର ଆପତ୍ତି ଜଣାଇଲି । ସେ ମୋତେ ଦୀର୍ଘ ସମୟ ଧରି ବୁଝାଇଲେ । କିନ୍ତୁ ମୁଁ ଯେମିତି କହୁଥିଲି ସେମିତି କିଛି କରିବାକୁ ପୁରା ମନା କରି ଦେଲେ । ସେ କହିଲେ ଯେ କଟରକୁ ଯାଇ ମକଦ୍ଦମାର ଗୋଟିଏ ଶୁଣାଣି ତାରିଖ ଠିକ୍ କରିବାପାଇଁ ବାଧ୍ୟ କରି ପାରିବନି । ଆଉ ମୁଁ ଯେମିତି କହୁଥିଲି ସେ ସବୁ ଲେଖି ଯଦି ଗୋଟେ ଦରଖାସ୍ତ ଦିଆଯାଏ ତାକୁତ କେହି ପଢ଼ିବେନି ବରଂ ତାହା ମୋ ମକଦ୍ଦମା ଆଉ ଓକିଲ ଉଭୟଙ୍କର କ୍ଷତି କରିବ । ମୁଁ ଭାବିଲି ଏହି ଓକିଲ

Digitized by srujanika@gmail.com

ଯାହା କରିବେନାହିଁ ବା କରିପାରିବେ ନାହିଁ ଅନ୍ୟଜଣେ ଓକିଲ ତାହା କରି-
ପାରେ । ତେଣୁ ଅନ୍ୟ ଓକିଲମାନଙ୍କୁ ଖୋଜିଲି । ବର୍ତ୍ତମାନ ମୁଁ ତୁମକୁ କହିପାରେ
ଯେ ସେମାନଙ୍କ ଭିତରୁ କେହି ଜଣେହେଲେ ତାଙ୍କର ଧାର୍ଯ୍ୟ କରିବା ପାଇଁ ବା
ବିଚାର ପାଇଁ ପ୍ରାର୍ଥନା କଲେନାହିଁ । ଏହା ପ୍ରକୃତରେ ଅସମ୍ଭବ । ଏହାର କେବଳ
ଗୋଟିଏ ଗୁଣ ଯାହା ପରେ ମୁଁ ଆପଣଙ୍କୁ ବୁଝାଇବି । ଏ ଓକିଲ ମୋତେ ଏଇଠି
ଭୁଲ୍‌ବାଟ ଦେଖାଇ ନାହାନ୍ତି । କିନ୍ତୁ ଯଦିଓ ଅନ୍ୟ ଓକିଲଙ୍କ ପରାମର୍ଶ ନେଇ
ଥିବାରୁ ମୁଁ ଦୁଃଖିତ ନୁହେଁ । ମୋର ବିଶ୍ୱାସ ଡ଼ : ହୁଲ୍‌ଡ୍ ଏହି ଛୋଟିଆରୁ ସ୍ୱେପା
ଛଡ଼ା ଓକିଲଙ୍କ ବିଷୟରେ ଅନେକ କହିଥିବେ । ଘୃଣ୍ୟ ଜୀବ ହିସାବରେ
ସେମାନଙ୍କୁ ବର୍ଣ୍ଣନା କରିଥିବେ ଏବଂ ଗୋଟିଏ ଦୃଷ୍ଟିରୁ ବିଚାର କଲେ
ସେମାନେ ସେଇଆ । କିନ୍ତୁ ନିଜ ବିଷୟରେ ଏବଂ ନିଜ ଦଳ ଓକିଲଙ୍କ
ବିଷୟରେ କହିବାକୁଯାଇ ଏବଂ ସେମାନଙ୍କୁ ଏହି ସ୍ୱେପାଛଡ଼ା ଓକିଲଙ୍କଠାରୁ
ତଫାତ୍‌ଟା ଦେଖାଇବାକୁ ଯାଇ ଗୋଟେ ଗ୍ରେଟ ଭୁଲ୍ କରିବସିଛି । କଥା
ପ୍ରସଙ୍ଗରେ ଆପଣଙ୍କୁ ମୁଁ ସେଇ କଥା ଦେଖାଇ ଦେଉଛି । ସେ ସବୁବେଳେ ନିଜକୁ
ଏବଂ ନିଜ ଦଳର ଓକିଲଙ୍କୁ 'ବଡ଼ ଓକିଲ' ବୋଲି କୁହନ୍ତି । କିନ୍ତୁ ବର୍ତ୍ତମାନ ତା'
ଠିକ୍ ନୁହେଁ । ଅବଶ୍ୟ ଇଚ୍ଛାକଲେ ଯେ, କେହି ନିଜକୁ ବଡ଼ ଓକିଲ କହିପାରେ
ମାତ୍ର ଏସବୁ କ୍ଷେତ୍ରରେ କଚେରି ଏହା ଠିକ୍ କରିବା କଥା । ଆଉ କଚେରିତ ଉଭୟ
ଗ୍ରେଟ ଏବଂ ବଡ଼ ସବୁ ଓକିଲଙ୍କୁ ସ୍ୱୀକାର କରେ । କଚେରିର ପରମ୍ପରା ଅନୁସାରେ
ଆମ ଓକିଲ ଆଉ ତାଙ୍କ ସହକର୍ମୀମାନେ ତଳସ୍ତରର । ପ୍ରକୃତରେ ବଡ଼ ଓକିଲ
ମାନଙ୍କୁ ମୁଁ କେବେ ଦେଖିନି । ସେମାନଙ୍କ ବିଷୟରେ ଖାଲି ଯାହା ଶୁଣିଛି, ଏଇ
ବଡ଼ ଓକିଲମାନେ ତଳଓକିଲଙ୍କ ପାଖରୁ ଯେତିକି ଉପରେ ତଳ ଓକିଲମାନେ
ତାଙ୍କ ତଳେଥିବା ଘୃଣ୍ୟ ଗ୍ରେଟ ଓକିଲଙ୍କ ପାଖରୁ ସେତିକି ଉପରେ ।'

'ପ୍ରକୃତରେ ବଡ଼ ଓକିଲ ? ସେମାନେ ତେବେ କିଏ ? ତାଙ୍କୁ ଜଣେ
କେମିତି ପାଇବ ?' କେ' ପଚାରିଲା ।

'ଓଃ ଆପଣ ତେବେ ସେମାନଙ୍କ ବିଷୟରେ କିଛି ଶୁଣିନାହାନ୍ତି ?' ବ୍ଲକ୍
କହିଲା । ସେମାନଙ୍କ ବିଷୟରେ ଶୁଣିଲା ପରେ ଏମିତି ଜଣେହେଲେ ଅଭିଯୁକ୍ତ
ବ୍ୟକ୍ତି ନାହିଁ ଯିଏକି ସେମାନଙ୍କ ବିଷୟରେ ସ୍ୱପ୍ନ ଦେଖିବ ନାହିଁ । ଆପଣଙ୍କର କ'ଣ
ସେ ଲୋଭ ହୋଇନାହିଁ । ପ୍ରକୃତ ବଡ଼ ଓକିଲ ସବୁକିଏ ମୋର ଧାରଣା ନାହିଁ ।
ସେମାନଙ୍କୁ ଯେ ପାଇହେବ ଏ ବିଶ୍ୱାସ ମୋର ନାହିଁ । ମୁଁ ତ ଗୋଟିଏ ବି
ମକଦ୍ଦମା ଜାଣେନି ଯହିଁରୁ କି ସେମାନଙ୍କ ହସ୍ତକ୍ଷେପ କରିବା ବିଷୟ ଜୋର୍ ଦେଇ
କହିହେବ । ସେମାନେ ନିଶ୍ଚୟ କେତେକ କେଶ୍‌ପାଇଁ ଲଢନ୍ତି । କିନ୍ତୁ ଜଣେ ତା

Digitized by srujanika@gmail.com

କେବେ ପାଇପାରିବେନି । ଯେଉଁଠି ସେମାନେ ଇଚ୍ଛାକରନ୍ତି ସେଇଠି କେବଳ ସେମାନେ ଲଢ଼ନ୍ତି । ଆଉ ତଳ କଚେରିରୁ ଉପରକୁ ନ ଉଠିଲେ ସେମାନେ କେବେ ମକଦ୍ଦମା ହାତକୁ ନିଅନ୍ତିନି । ପ୍ରକୃତରେ ସେମାନଙ୍କ କଥା ମନରୁ ପୂର୍ଣ୍ଣ ପୋଛି-ଦେବା ଉଚିତ୍ ନହେଲେ ଏଇ ସାଧାରଣ ଓକିଲଙ୍କ ସହ ସାକ୍ଷାତ୍ କରି ସେମାନଙ୍କର ବାଜେ ଡ଼ରକୁଲା ଉପଦେଶ ଆଉ ପ୍ରସ୍ତାବକୁ ଗ୍ରହଣ କରିବାକୁ ପଡ଼ିବ । ମୋର ଅନୁଭୂତି ଅଛି । ଯେତେବେଳେ ତାଙ୍କର ଉପଦେଶ ଶୁଣିବ ସେଗୁଡ଼ିକ ଏତେ ଘୃଣା ଆଉ ବେକାର ଲାଗିବ ଯେ ସବୁ ଜିନିଷକୁ ଭୁଲି କାନ୍ଥ ଆଡ଼କୁ ମୁହଁ କରି ଶୋଇପଡ଼ିବାକୁ ଇଚ୍ଛା ହେବ । ଅବଶ୍ୟ ଏପରି କରିବା ବି ଆହୁରି ବୋକାମି । କାହିଁକି ନା ବିଛଣାରେ ବି ଜଣେ ଶାନ୍ତି ପାଇପାରିବନି ।'

'ତୁମେ କେବେ ସେ ବଡ଼ ଓକିଲଙ୍କ ପାଖକୁ ଯିବାକୁ ଇଚ୍ଛା କରିନ ?' କେ' ପଚାରିଲା ।

'ବେଶୀଦିନ ପାଇଁ ନୁହେଁ' ହସି ହସି ବ୍ଲକ୍ ପୁଣି କହିଲା । 'ଦୁର୍ଭାଗ୍ୟ-ବଶତଃ ଜଣେ ସେମାନଙ୍କ ବିଷୟ କେବେ ଭୁଲି ପାରିବନି, ବିଶେଷତଃ ସ୍ୱପ୍ନରେ । କିନ୍ତୁ ସେତେବେଳେ ଆଶୁଫଳ ପାଇଁ ଆଗ୍ରହୀ ଥିଲି, ତେଣୁ ଏହି ଛଳଛଳିଆ ଓକିଲଙ୍କ ପାଖକୁ ଗଲି ।'

'କେତେ ଆପଣାର ହୋଇଗଲଣି ?' ସୁପ୍ ପାତ୍ର ହାତରେ ଧରି ଦ୍ୱାର ପାଖରେ ଲେନି ଠିଆହୋଇ କହିଲା । ସେମାନେ ଏତେ ପାଖାପାଖି ବସିଥିଲେ ଯେ, ସାମାନ୍ୟ ମୁଣ୍ଡ ହଲାଇଲେ ମୁଣ୍ଡ ବାଜିଯିବ । ବ୍ଲକ୍ ଶ୍ରେଷ୍ଠ ଲୋକଟିଏ ନୁହେଁ । ମାତ୍ର ବସିଲାବେଳେ ଆଗକୁ ନଇଁ ବସିଥାଏ ଆଉ ଏତେ ଧୀରେ ଧୀରେ କଥା କୁହେ ଯେ, ତାର ଗୋଟିଏ ଗୋଟିଏ କଥା ଶୁଣିବାକୁ ହେଲେ କେ'କୁ ବାଧ୍ୟହୋଇ ଆଗକୁ ଝୁଙ୍କି ପଡ଼ିବାକୁ ହୁଏ ।

'ଆମକୁ ଟିକେ ସମୟ ଦିଅ ।' ଲେନିକୁ ଯିବାପାଇଁ ସତର୍କ କରି ଦେଇ କେ' କହିଲା । ସେତେବେଳେ ପର୍ଯ୍ୟନ୍ତ ସେ ବେପାରୀର ହାତ ଧରିଥିଲା । ବିରକ୍ତିରେ ହଠାତ୍ ସେ ତାର ହାତ ଛୁଆଁଡ଼ି ଦେଲା ।

'ମୋ କେଶ୍ ବିଷୟରେ ତାଙ୍କୁ ସବୁ କହିବାକୁ ମତେ କହିଛନ୍ତି ।' ଲେନିକୁ ବେପାରୀ କହିଲା ।

'ଭଲକଥା କହୁନା' ଲେନି କହିଲା । ତା ସ୍ୱରରେ ବ୍ଲକ୍ ପ୍ରତି ଦୟା ଭରି ରହିଥିଲା । ସେ ଯେମିତି ତାକୁ ଟିକେ କରୁଣା ଦେଖାଉଥିଲା । ଏହାହିଁ କେ'ର

Digitized by srujanika@gmail.com

ବିରକ୍ତିର କାରଣ ହେଲା । କେ' ଯେମିତି ଭାବେ ତାକୁ ଜାଣିଚି ସେ ନିଶ୍ଚିତ ଯେ, ସେ ଲୋକଟିର କିଛି ହେଲେ ମୂଲ୍ୟବୋଧ ଅଛି । କିଛି ଅନୁଭୂତି ଅଛି ଏବଂ ସେ ସବୁକୁ କେମିତି ପ୍ରକାଶ କରିବାକୁ ହେବ ସେ ବିଷୟ ମଧ୍ୟ ତାକୁ ଜଣାଅଛି । ବୋଧ-ହୁଏ ଲେନ ତାକୁ ଭୁଲ ବୁଝିଚି । କେ'ର ରାଗିବାର ଅନ୍ୟ କାରଣ ହେଲା, ଏତେ ସମୟ ଧରି ସେ ଧରିଥିବା ବତିଟିକୁ ଲେନ ଆଡ଼େଇ ଦେଲା । ତା ଲୁଗା କାନିରେ ତା ହାତକୁ ପୋଛିଦେଲା ଏବଂ ଆଣ୍ଠେଇପଡ଼ି ତା ପାଇଜାମାରେ ପଡ଼ିଥିବା ତରଳ ମହମକୁ କୋରିବାରେ ଲାଗିଲା ।

'ତୁମେ ତୁମ ତଲତଳିଆ ଓକିଲଙ୍କ କଥା ପରି କହୁଥିଲ,' କିଛି ନକହି ଲେନର ହାତକୁ ଧୂଆଁଇ କେ' ପଚାରିଲା ।

'ତୁମେ କଅଣ କରୁଛ ବୋଲି ଭାବୁଛ ?' ଲେନ ପଚାରିଲା । କେ'କୁ ଗୋଟିଏ ଗ୍ରେଟ ଗୃପୁଡ଼ାଟେ ମାରି ସେ ପୁଣି ତା କାମରେ ଲାଗିଗଲା ।

'ହଁ ସେଇ ତଲତଳିଆ ଓକିଲ' ନିଜ କପାଳ ଉପରେ ଚନ୍ଦ୍ରା କଲାଭଳି ହାତକୁ ବୁଲାଇ ନେଇ ବ୍ଲକ୍ କହିଲା ।

ତାକୁ ତା କଥାର ଖିଅ ଧରାଇ ଦେବାକୁ ଯାଇ କେ' କହିଲା—

'ତୁମେ ଯାଙ୍ଗେ ଯାଙ୍ଗେ ଫଳ ଖୋଜୁଁଥିଲ ସେଥିପାଇଁ ସେ ତଲତଳିଆ ଓକିଲଙ୍କ ପାଖକୁ ଗଲ ।'

'ତା ସତ ।' ବ୍ଲକ୍ କହିଲା କିନ୍ତୁ ଆଉ ଅଧିକ କହିଲାନି ।

ବୋଧହୁଏ ଲେନ ଆଗରେ ସେ ବିଷୟରେ କହିବାକୁ ସେ ଚାହୁଁନାହିଁ । କେ' ଭାବିଲା ଓ ଯାଙ୍ଗେ ଯାଙ୍ଗେ ବାକି କଥାଟିକୁ ଶୁଣିବାର ଅଧୈର୍ଯ୍ୟ ଇଚ୍ଛାକୁ ଚାପିଦେଇ ବ୍ଲକ୍‌କୁ ସେ ବିଷୟରେ ଆଉ କିଛି ପଚାରିଲା ନାହିଁ ।

'ମୋ' ଆସିବା କଥା କହିଲ ?' ଲେନକୁ ବରଂ କେ' ପଚାରିଲା ।

'ନିଶ୍ଚୟ' ଲେନ କହିଲା । 'ଓକିଲତ ତୁମକୁ ଅପେକ୍ଷା କରିଚନ୍ତି । ବ୍ଲକ୍‌କୁ ଏକା ଛାଡ଼ିଦିଅ ତା' ସାଙ୍ଗରେ ତୁମେ ପରେ କଥା କହିବ । କାହିଁକି ନା ସେତ ଏଇଠି ରହୁଚି ।' କେ' ତଥାପି ଦୋ, ଦୋ ପାଞ୍ଚ ହେଲା ।

'ତୁମେ ଏଇଠି ରହୁଚ ?' କେ' ଶସ୍ୟ ବେପାରୀକୁ ପଚାରିଲା । ସେ ଚାହୁଁଥିଲା ଲୋକଟି ତା କଥା କହୁ । ଲେନ ଯେମିତି ତା' ବିଷୟରେ କହିଲା ଯେମିତିକି ସେ ସେଠାରେ ନାହିଁ । ଏହା କେ'କୁ ଭଲ ଲାଗିଲାନି । ଲେନ

Digitized by srujanika@gmail.com

ବିରୁଦ୍ଧରେ କେମିତି ଗୋଟିଏ ଅଜଣା ଭୟ ତା' ମନରେ ଭରିଗଲା । ପୁଣିଥରେ ଲେନି କଥା ଆରମ୍ଭ କଲା—'ସିଏତ ପ୍ରାୟ ଏଇଠି ଶୁଏ ।'

'ଏଇଠି ଶୁଏ ?' କେ' ପାଟି କରି ଉଠିଲା । କେ' ଭାବିଥିଲା ସେ ବେପାରୀ ଖାଲି ଓକିଲ ସହିତ ଦେଖା କରି ଶୀଘ୍ର କିଛି ଫଇସଲା କରିବାକୁ ସେଠାରେ ଅପେକ୍ଷା କରିଛି । ଏ କାମ ତାର ସରିଗଲେ ସେ ଦୁହେଁ କିରେଲା କେଉଁଠିକୁ ଯାଇ ଏ ବିଷୟରେ ଆଲୋଚନା କରିବେ । ଏତିକି ଥିଲା କେ'ର ଇଚ୍ଛା ।

'ହଁ' ଲେନି କହିଲା 'ସମସ୍ତେତ ଆଉ ତୁମ ଭଳି ନୁହଁନ୍ତି, ଯେକୌଣସି ସମୟରେ ଓକିଲଙ୍କ ସହିତ ଦେଖା କରିବାକୁ ଚାହିଁଲେ ସେମାନେ ଦେଖା କରି ପାରିବେ । ଜଣେ ସେରା ଓକିଲ ରାତି ଏଗାରଟା ପରେ ତୁମ ସହିତ ଦେଖା କରିବାକୁ ରାଜି ହେବେ ଏକଥା ତୁମକୁ କେମିତି ଆଶ୍ଚର୍ଯ୍ୟଜନକ ଲାଗିଲା ନାହିଁ ଯେ ? ତୁମ ବନ୍ଧୁମାନେ ତୁମ ପାଇଁ କଅଣ କଲେ ସେ ବିଷୟରେ ତୁମେ ଖୁବ୍ ବେଶୀ ଭାବି ନାହଁ । ମୁଁ କିମ୍ବା ତୁମର ଅନ୍ୟ ବନ୍ଧୁମାନେ ତୁମ ପାଇଁ ନିଶ୍ଚିତ ଭାବେ କିଛି କରିବାକୁ ଚାହୁଁ । ସେଥିପାଇଁ ଆମେ ଧନ୍ୟବାଦ ଚାହୁଁ ନାହିଁ । ମୁଁ ଧନ୍ୟବାଦ ଚାହେଁ ନାହିଁ । ମୁଁ ଚାହେଁ ତୁମେ ଟିକିଏ ମୋତେ ଶ୍ରଦ୍ଧା କର ।'

'ତୁମକୁ ଶ୍ରଦ୍ଧା କରିବି ?' କେ' ଭାବିଲା ଏବଂ ଏହି ପଦକ ମନରେ ଠିକ୍ କରୁକରୁ ତା ମନକୁ ଆସିଲା—'ମୁଁ ତାକୁ ଶ୍ରଦ୍ଧା କରେ ।' ତଥାପି ଲେନିର କଥାକୁ ଅସ୍ୱୀକାର କରି ସେ କହିଲା—'ସେ ମୋ ସହିତ ସାକ୍ଷାତ କରୁଛନ୍ତି କାରଣ ମୁଁ ତାଙ୍କ ମହକିଲ ।' ମୁଁ ଯଦି ମୋ' ଓକିଲଙ୍କ ସହିତ ଦେଖା କରିବାକୁ ଅନ୍ୟର ସାହାଯ୍ୟ ଚାହେଁ ତେବେ ତ ସବୁବେଳେ ମୋତେ ମୁଣ୍ଡ ନୁଆଁଇବାକୁ ପଡ଼ିବ ଅଥବା କଳି କରିବାକୁ ପଡ଼ିବ ।'

'ଆଜି କେମିତି ସେ ବେଶୀ ଅବାଗିଆ ମନେ ହେଉନାହାନ୍ତି ?' ବେପାରୀକୁ ଲେନି ପଚାରିଲା ।

'ମୁଁ ଯେମିତି ଏଠାରେ ନାହିଁ ସେମିତି ବ୍ୟବହାର କରିବା ମୋର ଏବେ ପାଳି ।' କେ' ଭାବିଲା । ପୁଣି ବେପାରୀ ଉପରେ ବି ସେ ରାଗିଗଲା । କାରଣ ଲେନିର ଦୁର୍ବ୍ୟବହାରକୁ ଅନୁକରଣ କରି ସେ କହିଲା—'ତାଙ୍କୁ ଦେଖା କରିବାକୁ ଓକିଲଙ୍କର ଅନ୍ୟ କାରଣ ଥାଇପାରେ । ମୋ' ମକଦ୍ଦମା ଅପେକ୍ଷା ତାଙ୍କ ମକଦ୍ଦମା ଆହୁରି ବେଶୀ ଆକର୍ଷଣୀୟ । ଏହାଛଡ଼ା ଏହା କେବଳ ଆରମ୍ଭ ହେଉଛି ମାତ୍ର ତେଣୁ ସମାଧାନ ହେବାର ଆଶା ବେଶୀ । ତେଣୁ ଓକିଲ ସେ ମକଦ୍ଦମାଟିକୁ ପରୀକ୍ଷା କରିବାକୁ ହୁଏତ ଚାହାନ୍ତି । ପରେ ଏଥିରୁ ତଫାତ୍‌ଟା ତୁମେ ଦେଖି ପାରିବ ।'

Digitized by srujanika@gmail.com

'ହଁ ହଁ' ଶଯ୍ୟ ବେପାରୀର କଥାରେ ହସିହସି ଲେନି କହିଲା । 'କେତେ କୁହାଳିଆଟେ ସେ ।' ତା'ପରେ କେ' ଆଡ଼କୁ ଚାହିଁ କହି ଚାଲିଲା—'ଏହାର ପଦଟିଏ କଥା ବି ବିଶ୍ୱାସ କରିବ ନାହିଁ । ସେଭଳି ଭଲ ମଣିଷଟିଏ ମାତ୍ର ତା' କଥାରେ ଟିକିଏ ବି ସତ ନାହିଁ । ବୋଧହୁଏ ଏଇଥିପାଇଁ ଓକିଲ ତାଙ୍କୁ ଦେଖି ପାରନ୍ତି ନାହିଁ । ଭଲ ମନରେ ନଥିଲେ କେବେ ଏହା ସଙ୍ଗେ ଦେଖା କରିବାକୁ ରାଜି ହୁଅନ୍ତି ନାହିଁ । ଏପରି ବ୍ୟବହାର୍ ବଦଳାଇବାକୁ ମୁଁ ବହୁତ ଚେଷ୍ଟା କଲିଣି କିନ୍ତୁ ହୋଇ ପାରୁନି । ଓକିଲ ଭାରି ଖିଆଲି । ବ୍ଲକ୍ ଏଠାକୁ ଆସିଛି ବୋଲି କହିଲେ ବେଳେ ବେଳେ ସେ ତିନିଦିନ ଧରି ତାକୁ ଦେଖା ଦିଅନ୍ତି ନାହିଁ । ଆଉ ବ୍ଲକ୍ ଯେତେବେଳେ ଏଠାରେ ନଥାଏ ତାକୁ ଖୋଜନ୍ତି । ଆଉ ଖୋଜିଲି ବେଳେ ନ ପାଇଲେ ସେ ତାର ସୁଯୋଗ ହରାଏ । ମୋତେ ଆଉଥରେ ତା' ଆସିବା କଥା ଓକିଲଙ୍କୁ କହିବାକୁ ପଡ଼େ । ସେଇଥିପାଇଁ ମୁଁ ବ୍ଲକ୍‌କୁ ଏଠାରେ ଶୋଇବାକୁ କହିଛି । କାରଣ ଆଗରୁ ଏମିତି ଅନେକଥର ଘଟିଛି, ରାତି ଅଧରେ ବ୍ଲକ୍‌କୁ ଖୋଜା ପଡ଼ିଛି । ତେଣୁ ବ୍ଲକ୍‌କୁ ଦିନରାତି ସବୁବେଳେ ପ୍ରସ୍ତୁତ ହୋଇ ରହିବାକୁ ପଡ଼ିଥାଏ । ଏମିତିବି ବେଳେବେଳେ ହୁଏ—ଓକିଲ ହଠାତ୍ ତାଙ୍କ ମନ ବଦଳାଇ ଦିଅନ୍ତି । ଥରେ ସେ ବ୍ଲକ୍‌କୁ ଦେଖିଲେ ଅଥଚ ଦେଖା କରିବାକୁ ମନା କରି ଦେଲେ ।' କେ' ପଚାରିଲା ପଚାରିଲା ଆଖିରେ ବ୍ଲକ୍‌କୁ ଚାହିଁଲା । ସେ ମୁଣ୍ଡ ଟେକାରି ସେହି ପୁରୁଣା ଖୋଲି ଖୋଲି ମନରେ କିମ୍ବା ଟିକିଏ ଲାଜରେ ବିବ୍ରତ ହୋଇ କହିଲା—'କାଳକ୍ରମେ ଜଣେ ନିଜ ଓକିଲ ଉପରେ ଖୁବ୍ ନିର୍ଭରଶୀଳ ହୋଇ ପଡ଼େ ।'

'ସେ ଖାଲି ଆପତ୍ତି କରିବାର ଛଳନା କରୁଛି । ଏଠି ଶୋଇବାକୁ ତାକୁ ଭଲ ଲାଗେ ବୋଲି ସେ ମୋତେ ବାରମ୍ବାର କହିଛି ।' ଲେନି କହିଲା । ଲେନି ଗୋଟିଏ ଛୋଟ ଦ୍ୱାର ପାଖକୁ ଯାଇ ତାକୁ ପେଲି ଖୋଲି ଦେଲା ।

'ତୁମେ ତାର ଶୋଇବା ଘର ଦେଖିବାକୁ ଚାହଁ ?' ଲେନି ପଚାରିଲା । କେ' ତା ପଛେ ପଛେ ଯାଇ ଦ୍ୱାର ପାଖରୁ ଗୋଟିଏ ଝରକା ନଥିବା ଅତି ନୁଆଁଣିଆ ଛାତର କୋଠରି ଦେଖିଲା । କୋଠରିଟି ପୁଣି ଏତେ ଅଣଓସାରିଆ ଯେ ସେଠାରେ ଗୋଟିଏ ବିଛଣାରୁ ଅଧିକ ପଡ଼ି ପାରିବନି । ଖଟ ଉପରକୁ ଯିବାକୁ ହେଲେ ଖଟ ଖୁରା ଦେଇ ଚଢ଼ି ଯିବାକୁ ପଡ଼ିବ । ଖଟର ମୁଣ୍ଡ ପାଖ ଠଣାରେ ଗୋଟିଏ ମହମବତୀ, ଦୁଆତ କଲମ ପାଖରେ ସଜା ହୋଇଥାଏ ବିଡ଼ାଏ କାଗଜ । ବୋଧହୁଏ ତା ମକଦ୍ଦମାର ନଥିପତ୍ର ।

Digitized by srujanika@gmail.com

'ତାହେଲେ ତୁମେ ଏହି ପରଗ୍ରହକାର ଘରେ ଶୁଅ ?'' କେ' ହେପାଗ୍ର ଆଡ଼କୁ ଚାହିଁ ପଚାରିଲା ।

'ଲେନ ମୋତେ ଏହା ଦେଇଛି । ମୋର ବହୁତ ସୁବିଧା ହେଉଛି ।' କେ' ତାକୁ ଅନେକ ସମସ୍ତ ଧରି ଚାହିଁ ରହିଲା । ତାକୁ ଦେଖି ପ୍ରଥମେ ତାର ଯେଉଁ ଧାରଣା ହୋଇଥିଲା ତାହା ବୋଧହୁଏ ଠିକ୍ । ବ୍ଲକ୍ ଜଣେ ପୁରୁଣା ଲୋକ । ତାର ଅନୁଭୂତି ଅନେକ କାହିଁକନା ତାର ମକଦ୍ଦମା ବର୍ଷ ବର୍ଷ ଧରି ଚାଲିଲାଣି । ଏହି ଅନୁଭୂତି ପାଇଁ ତାକୁ ହୁଏତ ବହୁତ ମୂଲ୍ୟ ଦେବାକୁ ପଡ଼ୁଛି । ହଠାତ୍ ଆଉ କେ' ସହି ପାରିଲାନି । 'ତାକୁ ଶୋଇବାକୁ ଦିଅ ।' କେ' ଲେନକୁ ପାଟିକରି କହି ଉଠିଲା । କେ' କଅଣ କହୁଛି ଲେନ ବୁଝି ପାରିଲାନି । ସେ ମନେ ମନେ ଭାବୁଥିଲା ସେ ଏହି ଓକିଲ ପାଖରୁ ଚାଲିଯାଆନ୍ତା ଆଉ ତା ଜୀବନରୁ କେବଳ ହୁଲଦ୍ଙ୍କୁ ନୁହେଁ, ଲେନ ଏବଂ ଏହି ଶଯ୍ୟ ହେପାଗ୍ରକୁ ବି ସବୁଦିନ ପାଇଁ ବିଦାୟ ଦିଅନ୍ତା । ତା କୋଠରୀକୁ ଯିବା ପୂର୍ବରୁ କିନ୍ତୁ ବ୍ଲକ୍ ଚୁପାଗଲାରେ କହିଲା—'କେ' ! ତୁମେ ତୁମର ଜବାବ ଭୁଲି ଯାଉଛ ।' କେ' ତା ଆଡ଼କୁ ରାଗିକରି ଚାହିଁଲା ।

'ତୁମେ ତୁମର ଗୋଟିଏ ଗୁପ୍ତକଥା ମୋତେ କହିବ ବୋଲି କହିଥିଲ ।'

'ସତକଥା' ଲେନ ଆଡ଼କୁ ଚାହିଁ କେ' କହିଲା । ଲେନ ମଧ୍ୟ ତା ଆଡ଼କୁ ଏକ ଦୃଷ୍ଟିରେ ଚାହିଁରହିଲା ।

'ତେବେ ଶୁଣ, ଯଦିଓ ବର୍ତ୍ତମାନ ଏହା ଏକ ଜଣାଶୁଣା କଥା । ମୁଁ ବର୍ତ୍ତମାନ ଓକିଲଙ୍କ ପାଖକୁ ଯାଉଛି । ମୁଁ ତାଙ୍କୁ ଆଉ ମୋ କେଶ୍‌ର ଓକିଲ ରଖିବି ନାହିଁ । ତାଙ୍କୁ ଛାଡ଼ିଦେବି ।' ଏତିକ କହି କେ' ଓକିଲଙ୍କ ଘର ଆଡ଼କୁ ଚାଲିଲା ।

'ତାଙ୍କୁ ଛାଡ଼ି ଦେବେ ?' ହେପାଗ୍ର କହିଲା । ସେ ହଠାତ୍ ତା ସ୍ଥାନରୁ ଡେଇଁପଡ଼ି, ହାତଟେକ ଟେଷେଇ ଘର ଦେଇ ଧାଇଁବାକୁ ଲାଗିଲା । ଧାଉଁଥିଲା ବେଳେ ପାଟି କରୁଥିଲା—'ସେ ଓକିଲଙ୍କୁ ଛାଡ଼ି ଦେଉଛନ୍ତି ।'

ଲେନ କେ'କୁ ଧରିବାକୁ ଚେଷ୍ଟା କଲା । ମାତ୍ର ବ୍ଲକ୍ ତା ବାଟରେ ଆସି ଛିଡ଼ା ହେଲା । ବାଧାମାରି ଲେନ ତାକୁ ବାଧା ଦେଲା । ତଥାପି ତା ମୁଠା ଟେକ ଲେନ କେ' ପଛରେ ଧାଇଁଲା । ସେତେବେଳେ କିନ୍ତୁ କେ' ଲେନର ବହୁତ ଆଗରେ ଥିଲା । ତାଙ୍କୁ ଧରିବା ପୂର୍ବରୁ କେ' ଓକିଲଙ୍କ କୋଠରୀ ଭିତରକୁ ପଶିଯାଇ ଥିଲା । ଆଉ ତା' ପଛେ ପଛେ ସେ ଦ୍ୱାର ବନ୍ଦ କରିବାକୁ ଚେଷ୍ଟା କରିଥିଲା ମାତ୍ର ସେତେବେଳକୁ ଲେନ ତାର ଗୋଟିଏ ଗୋଡ଼ କବାଟ ଫାଙ୍କରେ ରଖି କେ'ର

Digitized by srujanika@gmail.com

ହାତକୁ ଧରି ଟାଣିଆଣିଲା । କେ' ଲେନର ମଣିବନ୍ଧକୁ ଧରି ଏତେ ଜୋରରେ ମୋଡ଼ି ଦେଲା ଯେ ଯନ୍ତ୍ରଣାରେ ଚିତ୍କାର କରି ଲେନ ବାଧ ହୋଇ ହାତ ଛୁଗୁଲା କରିଦେଲା । ସେ ଆଉ ତା ପଛରେ ଘର ଭିତରକୁ ଯିବାକୁ ସାହସ କଲାନି ମାତ୍ର ଭିତରୁ କବାଟ ବନ୍ଦ କରି ଦେଲା ।

ବତୀ ଆଲୁଅରେ ପଢ଼ୁଥିବା କାଗଜଟିକୁ ଟେବୁଲ୍ ଉପରେ ରଖୁରଖୁ ଓକଲ ତାଙ୍କ ବିଛଣାରୁ କହିଲେ—'ବହୁତ ବେଳୁ ତୁମକୁ ଅପେକ୍ଷା କରିଛି । ତାଙ୍କ ଚଷମା ଦେଇ ସେ କେ'କୁ ତୀକ୍ଷ୍ଣ ଭାବରେ ଚାହିଁ ରହିଲେ । ଦୁଃଖ ପ୍ରକାଶ କରିବା ପରିବର୍ତ୍ତେ କେ' କହିଲା—'ଆପଣଙ୍କର ସମୟ ବେଶୀ ନେବ ନାହିଁ ।' ଏପରି କଥାରେ ଦୁଃଖ ପ୍ରକାଶିତ ହେଉ ନ ଥିବାରୁ ତାକୁ ଉପେକ୍ଷା କରି ଓକଲ କହିଲେ—'ତୁମକୁ ଏତେ ରାତିରେ ଆଉ ଥରେ କେବେ ଦେଖା କରିବ ନାହିଁ ।'

'ଏହାହିଁ ମୋର ଇଚ୍ଛା ।' କେ' କହିଲା ।

ପଚାରିବା ଆଖିରେ ଚାହିଁ ଓକଲ କହିଲେ 'ବସ' ।

ବିଛଣା ପାଖ ଟେବୁଲ ପାଖରୁ ଗୋଟିଏ ଚଉକି ଟାଣିଆଣି ସେଥିରେ ବସୁ ବସୁ କେ' କହିଲା—'ଆପଣ ଯେତେବେଳେ କହୁଛନ୍ତି ।'

'ତୁମେ ଆସିଲା ବେଳେ ଭିତରୁ କବାଟ ବନ୍ଦ କରି ଦେଲ ବୋଲି ମୋର ମନେ ହେଉଛି ।'

'ହଁ, କେବଳ ସେହି ଲେନ ପାଇଁ ।' କେ' କାହାରିକୁ ବିପଦରୁ ରକ୍ଷା କରିବାକୁ ଚାହୁଁ ନଥିଲା । ତଥାପି ଓକଲ ପଚାରିଲେ—'ସେ କଅଣ ତୁମକୁ ଆଉ ଥରେ ବିରକ୍ତ କଲା ?'

'ବିରକ୍ତ କଲା ?' କେ' ଦୋହରାଇଲା ।

'ହଁ', ଓକଲ କହିଲେ ଆଉ ପାଟି ବନ୍ଦ କରି ହସିବାକୁ ଲାଗିଲେ । ମାତ୍ର କାଶ ହେବାରୁ ହସ ବନ୍ଦ କଲେ ଏବଂ ପରେ ଆଗପରି ଗୁପିଗୁପି ହସିବାକୁ ଲାଗିଲେ ।

'ମୁଁ ଭାବୁଛି ତୁମକୁ ସେ ବାରମ୍ବାର ବିରକ୍ତ କରୁଛି । ତୁମେ ତାକୁ ଏଡ଼ାଇ ପାରୁନ ।' କେ'ର ହାତ ଆପୁଡ଼ି ଓକଲ କହିଲେ । ବିବ୍ରତ ହୋଇ କେ' ତା' ହାତକୁ ବିଛଣା ପାଖ ଟେବୁଲ୍ ଉପରେ ରଖି ଦେଇଥିଲା । ମାତ୍ର ବର୍ତ୍ତମାନ ସେ ତା' ହାତକୁ ଟାଣିନେଲା ।

Digitized by srujanika@gmail.com

କେ' କିଛି ନକହିବାରୁ ଓକିଲ କହିଚାଲିଲେ—'ତୁମେ ଯେ ତା' ଉପରେ ଗୁରୁତ୍ୱ ଦେଉନ ଏହା ଭଲକଥା । ତାହା ନହୋଇଥିଲେ ମୋତେ ତାପାଇଁ କ୍ଷମା ମାଗିବାକୁ ପଡ଼ିଥାଆନ୍ତା, ଏହା ତାର ଗୋଟେ ଅଦ୍‌ଭୁତ ନିଜସ୍ୱ ଢ଼ଙ୍ଗ । ବହୁତ ଦିନ ଧରି ତାକୁ କ୍ଷମା ଦେଇଆସୁଛି । ଆଜି ବି ଏ ବିଷୟରେ କିଛି କହିନଥା'ନ୍ତି ମାତ୍ର ତୁମର କବାଟ ବନ୍ଦ କରିଦେବା ଯୋଗୁଁ ଏକଥା କହିଲି । ତାର ଏହି ଅଦ୍ଭୁତ ଢ଼ଙ୍ଗ ବିଷୟରେ ତୁମେହିଁ ଶେଷ ଲୋକ ଯାହାକୁ ମୋତେ ବୁଝାଇବା ନିଶ୍ଚୟ ଦରକାର । ସବୁ ଅଭିଯୁକ୍ତ ବ୍ୟକ୍ତି ଲୋକପାଖରେ ଆକର୍ଷଣୀୟ ଏହା ତାର ଗୋଟିଏ ଅଦ୍‌ଭୁତ ପ୍ରକୃତି । ସେ ସମସ୍ତଙ୍କୁ ନିଜର କରି ଭଲପାଏ ଏବଂ ପ୍ରତିଦାନରେ ମଧ୍ୟ ସମସ୍ତେ ତାକୁ ଭଲ ପାଆନ୍ତି । ସେ ଅନୁମତି ପାଇଲେ ଖୁସି କରିବା ପାଇଁ ମୋତେ ତାର ଏହି ଭଲପାଇବା କଥା କହିଥାଏ । ଏକଥା ତୁମକୁ ଯେତେ ଆଶ୍ଚର୍ଯ୍ୟ ଲାଗୁଛି ମୋତେ ସେତେ ଲାଗୁନାହିଁ । ତୁମର ଯଦି ପ୍ରକୃତ ଆଖିଥାଏ ତୁମେ ଦେଖିପାରିବ ଯେ ଅଭିଯୁକ୍ତ ବ୍ୟକ୍ତିମାନେ ପ୍ରକୃତରେ ଆକର୍ଷଣୀୟ । ଏହା ପ୍ରକୃତରେ ଗୋଟିଏ ଆଶ୍ଚର୍ଯ୍ୟଜନକ ଘଟଣା, ଏକପ୍ରକାର ପ୍ରାକୃତିକ ନିୟମ । ଅବଶ୍ୟ ଅଭିଯୁକ୍ତ ହୋଇଥିବାରୁ ତାଙ୍କ ଚେହେରାରେ କିଛି ଆଖିଦୃଷ୍ଟିଆ ପରିବର୍ତ୍ତନ ଆସିଥାଏ ସେପରି ନୁହେଁ । ଏହି ମକଦ୍ଦମାଗୁଡ଼ିକ ତ ସାଧାରଣ ଫଉଜ୍-ଦାରୀ ମକଦ୍ଦମା ନୁହେଁ । ଅଧିକାଂଶ ଅଭିଯୁକ୍ତ ବ୍ୟକ୍ତି ସେମାନଙ୍କ କାମଦାମ କରୁନାହାନ୍ତି ଏବଂ ଯଦି ଭଲ ଓକିଲଙ୍କ ହାତରେ ପଡ଼ନ୍ତି ତେବେ ସେମାନଙ୍କ ସ୍ୱାର୍ଥରେ ବେଶୀ ଆଞ୍ଚ ଆସେ ନାହିଁ । ତଥାପି ଅଭିଜ୍ଞ ବ୍ୟକ୍ତି ଭିଡ଼ ଭିତରୁ ଅଭିଯୁକ୍ତ ବ୍ୟକ୍ତିମାନଙ୍କୁ ଗୋଟିକ ପରେ ଗୋଟିକୁ ଠିକ୍ ବାଛିଦେଇ ପାରିବ । ସେମାନେ ତାଙ୍କୁ କେମିତି ଚହ୍ନନ୍ତି ?' ତୁମେ ପଚାରିପାର । ମୋର ଭୟ ହେଉଛି, ମୋର ଉତ୍ତରରେ ତୁମ ମନ ମାନିବ ନାହିଁ । ଅଭିଯୁକ୍ତ ବ୍ୟକ୍ତିମାନେ ସମସ୍ତେ ଆକର୍ଷଣୀୟ ହୋଇଥିବାରୁ ସେମାନେ ତାଙ୍କୁ ଜାଣିପାରନ୍ତି । ତାଙ୍କ ଦୋଷ, ତାଙ୍କ ଅପରାଧ ତାଙ୍କୁ ଆକର୍ଷଣୀୟ କରି ନଥାଏ । ଓକିଲ ହିସାବରେ ମୋର କହିବା ଉଚିତ୍ ହେବ ଯେ ସେମାନେ ଅନ୍ତତଃ ସମସ୍ତେ ଦୋଷୀ ନୁହଁନ୍ତି । ତାଙ୍କ ଉପରେ ଝୁଲୁଥିବା ନ୍ୟାୟର ଯନ୍ତ୍ରଣାଦାୟକ ନିୟନ୍ତ୍ରଣରୁ ମୁକ୍ତିର ଆଶା ମଧ୍ୟ ତାଙ୍କୁ ଆକର୍ଷଣୀୟ କରେ ନାହିଁ । ତାଙ୍କ ବିରୁଦ୍ଧରେ ହେଉଥିବା ଅଭିଯୋଗ ହିଁ ତାଙ୍କୁ ଆକର୍ଷଣୀୟ କରିଥାଏ । ଅବଶ୍ୟ କେତେକ ଅଭିଯୁକ୍ତ ବ୍ୟକ୍ତି ଅନ୍ୟଠାରୁ ଅଧିକ ଆକର୍ଷଣୀୟ ହୋଇପାରନ୍ତି । ମାତ୍ର ସବୁ ଅଭିଯୁକ୍ତ ବ୍ୟକ୍ତି ଆକର୍ଷଣୀୟ ଏମିତିକି ସେ ହତଭାଗା ବ୍ଲକ୍ ମଧ୍ୟ ।'

ଓକିଲ ତାଙ୍କ ଦୀର୍ଘ ଭାଷଣ ଶେଷକଲା ବେଳକୁ କେ' ତାର ମାନସିକ ସ୍ଥିରତା ପାଇପାରିଥିଲା । ଓକିଲଙ୍କର ଶେଷ କଥା ପଦକୁ ସେ ମୁଣ୍ଡ ଟୁଙ୍କାର ସମ୍ମତି

Digitized by srujanika@gmail.com

ମଧ୍ଯ ଜଣାଇଲ । ତଥାପି ସେ ତାର ବନ୍ଧୁ ପୁରୁଣା ଧାରଣାକୁ ସାବ୍ୟସ୍ତ କରୁଥିଲ । ତାର ଧାରଣା ହେଲ ଓକଲମାନେ ଗୋଟିଏ ଅପ୍ରାସଙ୍ଗିକ ସାଧାରଣ ଉଦାହରଣ ଦେଇ ପ୍ରକୃତ ପ୍ରଶ୍ନରୁ ଲୋକଙ୍କ ଦୃଷ୍ଟିକୁ ଏଡ଼ାଇଦଅନ୍ତି । ସେ ପ୍ରଶ୍ନଟି ହେଲ ମକଦମା ପାଇଁ ପ୍ରକୃତ କେତେ କାମ ହୋଇଛୁ । ଓକଲ ଧର ନେଇଥିଲେ ଯେ ସବୁଦନ ଅପେକ୍ଷା କେ' ଆଜ ଅଧିକ ଶନ୍ଦୁଭବାପନ୍ନ ହୋଇପଡ଼ିଛୁ ତେଣୁ ସେ ତାକୁ କଛୁ କହବାପାଇଁ ସୁଯୋଗ ଦେଲେ । ମାତ୍ର କେ' କଛୁ ନକହବାରୁ ସେ ପଚ୍ଚରଲେ—'ଆଜ ଏଧାରେ କ'ଣ କଛୁ ନର୍ଦ୍ଦିଷ୍ଟ କାମପାଇଁ ଆସିଥିଲ ?'

ତା ହାତ ସାହାଯ୍ୟରେ କେ' ଜଳୁଥିବା ବଡ଼ ସାମାନ୍ୟ ଉହାଡ଼ କଲ ଯେମିତକ ସେ ଓକଲଙ୍କୁ ଭଲ ଭବରେ ଦେଖିପାରବ । ତା'ପରେ ଓକଲଙ୍କ ପ୍ରଶ୍ନରେ ହଁ ଭରଲ ଏବଂ କହଲ—'ଆପଣଙ୍କ ଦାୟିତ୍ୱରୁ ଆପଣଙ୍କୁ ଆଜଠାରୁ ଅବ୍ୟାହତ ଦେବାପାଇଁ ମୁଁ ଆସିଥିଲ ।' ଏକଥା ଉପରେ ହାତ ଭରଦେଇ ଅଧା ଉଠା ଅବସ୍ଥାରେ ଓକଲ ପଚ୍ଚରଲେ ।' ମୁଁ ତୁମକୁ ଠିକ୍ ବୁଝି ପାରୁଛୁ ତ ?'

କେ' ସିଧାସଳଖ ବସି ନଜକୁ ଜଗିରହ କହଲ 'ମୁଁ ସେଇଆ ଅନ୍ତତଃ ଆଶାକରୁଛୁ ।'

'ଏ ଯୋଜନା ବିଷୟରେ ଆମେ ଅନ୍ତତଃ ଆଲୋଚନା କରପାରବା ।' ଟିକଏ ରହ ଓକଲ କହଲେ ।

'ଏହା ଯୋଜନା ନୁହେଁ; ଏହା ସତ ଘଟଣା ।' କେ' କହଲ ।

'ହୋଇପାରେ । ମାତ୍ର ତରତର ହେବାର ଆମର କଛୁ ନାହିଁ ।' ଓକଲ କହଲେ । କେ'କୁ ଦୂରେଇ ଦେବାକୁ ଯେମିତ ତାଙ୍କର ଇଚ୍ଛା ନାହିଁ । ସେଥିପାଇଁ ସେ 'ଆମର' ଶବ୍ଦ ବ୍ୟବହାର କଲେ । ସରକାରୀ ଏଜେଣ୍ଟ୍ ନହେଲେବ ଅନ୍ତତଃ କେ'ର ଉପଦେଷ୍ଟା ହସାବରେ ସେ ରହବାକୁ ଚାହୁଁଥିଲେ । କେ' ଧୀରେ ଧୀରେ ଉଠିଲ ଆଉ ଚଉକ ପଛକୁ ଘୁଞ୍ଚଯାଇ କହଲ—'ଏହା ତରବରଆ ସିଦ୍ଧାନ୍ତ ନୁହେଁ । ଏ ବିଷୟରେ ମୁଁ ଅନେକ ଚନ୍ତା କରଛୁ, ଏଥିପାଇଁ ଅନେକ ସମୟ ଦେଇଛୁ । ଏହା ମୋର ଶେଷ ସିଦ୍ଧାନ୍ତ ।' ଶେଯକୁ ଫୋପାଡ଼ି ବିଛଣା କଡ଼ରେ ବସି ଓକଲ କହଲେ —'ତେବେ ମୋତେ କଛୁ କହବାକୁ ଦଅ ।'

ଧଳା ଲୋମରେ ଭର୍ତ୍ତି ତାଙ୍କର ଖୋଲ ଗୋଡ଼ ଥଣ୍ଡାରେ ଥର ଉଠିଲ । ସୋଫା ଉପରୁ ଗୋଟିଏ କମ୍ବଳ ଆଣିବାକୁ ସେ କେ'କୁ କହଲେ ।

କମ୍ବଳ ଆଣି କେ' କହଲ—'ଆପଣଙ୍କର ଥଣ୍ଡାରେ ଉଠିବା ଦରକାର ନାହିଁ । ମୋର ଏପର ସିଦ୍ଧାନ୍ତ ନେବାରେ ବଳିଷ୍ଠ କାରଣ ଅଛୁ ।'

Digitized by srujanika@gmail.com

ଶେଷରେ ହାଙ୍କିହୋଇ ପୁଣି ଗୋଡ଼କୁ କମ୍ବଳରେ ଢାଙ୍କି ଓକିଲ କହିଲେ 'ତୁମ କକା ମୋର ଜଣେ ବନ୍ଧୁ । ଘଟଣାକ୍ରମେ ମୁଁ ମଧ୍ୟ ତୁମକୁ ଧୀରେ ଧୀରେ ଭଲପାଇ ବସିଛି । ମୁକ୍ତ କଣ୍ଠରେ ମୁଁ ଏହା ସ୍ୱୀକାର କରିବି । ଏଥିରେ ଲଜ୍ଜା କରିବାର କିଛି ନାହିଁ ।' ବୁଢ଼ାଙ୍କ ପାଖରୁ ଆବେଗର ଏପରି ପ୍ରକାଶ କେ' ପାଇଁ ଆଦୌ ସ୍ୱାଗତଯୋଗ୍ୟ ନଥିଲା । କାରଣ ଏହା ତାର ମତକୁ ଆହୁରି ଖୋଲଖୋଲି ଭାବରେ ବ୍ୟକ୍ତ କରିବା ପାଇଁ ବାଧ୍ୟ କଲା । ସେପରି କରିବାକୁ କେ' ଅବଶ୍ୟ ଚାହୁଁ ନଥିଲା । ଏହା ପୁଣି ତାର ସ୍ଥିରତାରେ ବାଧା ସୃଷ୍ଟି କଲା । ଖୋଲଖୋଲି ଭାବରେ ସେ ଏହି ଦୁର୍ବଳତାକୁ ସ୍ୱୀକାର କଲେ ମଧ୍ୟ ତା ସିଦ୍ଧାନ୍ତରେ ପରିବର୍ତ୍ତନ ଆଣି ପାରିଲାନି ।

'ମୁଁ ଆପଣଙ୍କର ବନ୍ଧୁତ୍ୱପୂର୍ଣ୍ଣ ବ୍ୟବହାର ପାଇଁ କୃତଜ୍ଞ । ଆପଣ ମୋ'ପାଇଁ ଯାହା ଭଲ ଭାବିଛନ୍ତି ତାହା ଯେତେଦୂର ସମ୍ଭବ କରୁଛନ୍ତି । ଏହା ମୁଁ ସ୍ୱୀକାର କରୁଛି । କିନ୍ତୁ ବର୍ତ୍ତମାନ ଅନେକ କାରଣ ଯୋଗୁଁ ମୁଁ ନିଶ୍ଚିତ ଯେ ଆପଣଙ୍କର ଏ ସମସ୍ତ ଉଦ୍ୟମ ଯଥେଷ୍ଟ ନୁହେଁ । ମୋ'ଠାରୁ ବୟସ୍କ ଓ ଅଭିଜ୍ଞ ବ୍ୟକ୍ତିଠାରେ ମୁଁ ମୋର ମତକୁ ଜୋର୍‌ଜବରଦସ୍ତି ଲଦି ଦେବାକୁ ଚାହେଁ ନାହିଁ । ମୁଁ ଯଦି ଅଜ୍ଞତା ଯୋଗୁଁ ଏମିତି କରୁଛି ବୋଲି ଭାବୁଛନ୍ତି ତେବେ ମୋତେ କ୍ଷମା ଦେବେ । ଆପଣଙ୍କର କଥାନୁସାରେ ଏପରି କରିବାରେ ମୋର ଯଥେଷ୍ଟ କାରଣ ଅଛି । ଏ ବିଷୟରେ ମୁଁ ନିଶ୍ଚିତ ଯେ ମୋ ମକଦ୍ଦମା ପାଇଁ ଆଜିପର୍ଯ୍ୟନ୍ତ ଯାହା ପଦକ୍ଷେପ ନିଆ ହୋଇଛି ତା'ଠାରୁ ଯଥେଷ୍ଟ ଅଧିକ ଶକ୍ତିଶାଳୀ ପଦକ୍ଷେପ ନେବାକୁ ପଡ଼ିବ ।'

'ମୁଁ ବୁଝୁଛି, ତୁମେ ଅଧୈର୍ଯ୍ୟ ହୋଇପଡ଼ୁଛ ।'

'ମୁଁ ଅଧୈର୍ଯ୍ୟ ହେଉନି ।' ଟିକିଏ ଚିଡ଼ିଉଠି କେ' କହିଲା । ଚିଡ଼ିଯାଇ-ଥିବାରୁ ଭାଷା ବ୍ୟବହାରରେ ମଧ୍ୟ ସେ ସଚେତନ ହୋଇ ପାରିଲାନି । ସେ କହି ଚାଲିଲା—'କକାଙ୍କ ସହ ମୁଁ ଯେଉଁଦିନ ଏଠାକୁ ପ୍ରଥମ ଆସିଲି, ଆପଣ ଲକ୍ଷ୍ୟ କରିଥିବେ, ମୁଁ ମୋ ମକଦ୍ଦମା ଉପରେ ଏତେ ଗୁରୁତ୍ୱ ଦେଉନଥିଲି । ବାରମ୍ବାର ମୋତେ ଗମ୍ଭୀର ଭାବରେ ମୋ ମକଦ୍ଦମା ବିଷୟ ମନେ ପକାଯାଉ ନଥିଲେ ମୁଁ କେବେଠୁ ଏ ବିଷୟ ଭୁଲିସାରନ୍ତିଣି । ତଥାପି ମୋ କକା ଆପଣଙ୍କୁ ମୋର ଓକିଲ ହୋଇ ମକଦ୍ଦମା ଲଢ଼ିବାକୁ ବାଧ୍ୟ କଲେ । ଏବଂ କେବଳ ତାଙ୍କୁ ସନ୍ତୁଷ୍ଟ କରିବାପାଇଁ ମୁଁ ଆପଣଙ୍କୁ ମୋର ଓକିଲ ହିସାବରେ ଗ୍ରହଣ କରିଥିଲି । ଏପରି କରିବାପରେ ଜଣେ ଆଶା କରିବ ଯେ ଏହି ମକଦ୍ଦମା ଆଉ ତା ବିବେକକୁ ଦଂଶନ କରିବ ନାହିଁ । କାରଣ ତା କାନ୍ଧରୁ ବୋଝ କମାଇ ଦେବାପାଇଁ ଜଣେ

Digitized by srujanika@gmail.com

ଓକିଲ ନିଯୁକ୍ତ ହୋଇଛନ୍ତି । କିନ୍ତୁ ଠିକ୍ ଏହାର ଓଲଟା ଫଳ ହେଲା । ଆପଣଙ୍କୁ ନିଯୁକ୍ତ କଲା ପରଠାରୁହିଁ ମୁଁ ଏ ମକଦ୍ଦମା ଦ୍ୱାରା ବେଶୀ ହଇରାଣରେ ପଡ଼ିଲି । ଏକୁଟିଆ ଥିଲାବେଳେ ମକଦ୍ଦମା ପାଇଁ କିଛି କରିନଥିଲି ସତ ମାତ୍ର ଏହା ମୋତେ ଏତେ ହଇରାଣ କରିନଥିଲା । କିନ୍ତୁ ଜଣେ ଓକିଲଙ୍କୁ ପାଇ ଭାବିଥିଲି ଯେ ଏଥର କିଛି ଘଟିବ । ଅପରନ୍ତୁ ଆଶାନେଇ ଆପଣଙ୍କର ହସ୍ତକ୍ଷେପର ପରିଣତିକୁ ଅପେକ୍ଷା କରି ରହିଲି କିନ୍ତୁ ଆପଣ କିଛି କଲେନାହିଁ । ମୁଁ ମାନୁଛି ଆପଣ ମକଦ୍ଦମା ବିଷୟରେ ଅନେକ ଖବର ଦେଇଛନ୍ତି, ଯାହା ହୁଏତ ମୁଁ ଆଉ କେଉଁଠୁ ପାଇ ପାରି ନଥାନ୍ତି । କିନ୍ତୁ ଯେଉଁ ଲୋକ ଭାବୁଛି ଯେ ଏ କେଶ୍ ଅତି ଗୁପ୍ତଭାବରେ ତା ଜୀବନକୁ ଛନ୍ଦି ଦେଇଛି ଏବଂ ବସ୍ତୁତଃ ତା ଅସ୍ଥିମଜ୍ଜାକୁ କୋରି ଖାଇଯାଉଛି, ତା' ପାଖରେ ଏ ସାହାଯ୍ୟ ଯଥେଷ୍ଟ ନୁହେଁ ।' କେ' ଚୌକିକୁ ପଛକୁ ପେଲିଦେଇ ସିଧା ଠିଆ ହେଲା । ତା'ର ହାତ ଦୁଇଟି ଫତେଇ ପକେଟ୍ ଭିତରେ ଥାଏ ।

'ଓକିଲାତିରେ କିଛି ଅଭିଜ୍ଞତା ଆସିଗଲା ପରେ ଜଣକ ପାଖରେ ପ୍ରକୃତରେ କିଛି ନୂଆ ଘଟେ ନାହିଁ । ମୋର ମହକିଲମାନେ କେତେଜଣ ଯେ ତାଙ୍କ ମକଦ୍ଦମାରେ ଠିକ୍ ଏଇ ସ୍ତରରେ ପହଞ୍ଚିନଥିବେ ଆଉ ଠିକ୍ ତୁମପରି ମାନସିକ ଅବସ୍ଥାରେ ଆସି ଏଇ ପ୍ରଶ୍ନ ମୋତେ ପଚାରି ନଥିବେ ?' ଓକିଲ ବଡ଼ ଧୀର ସ୍ୱରରେ କହିଲେ ।

'ତାହାହେଲେ ସେମାନେ ବି ମୋପରି ଠିକ୍ କାମ କରିଥିଲେ । କିନ୍ତୁ ତା'ତ ମୋ ଯୁକ୍ତିର ବିରୋଧ କରୁନି ।' କେ' କହିଲା ।

'ମୁଁ ଯୁକ୍ତିର ବିରୋଧ କରୁନି । ମୁଁ ଖାଲି କହିବାକୁ ଚାହେଁ ଯେ, ତୁମ ପାଖରୁ ମୁଁ ଟିକେ ଅଧିକ ବିଚାରବୋଧ ଆଶା କରୁଥିଲି । କାରଣ ଅନ୍ୟ ମହକିଲ ମାନଙ୍କ ପାଖରୁ ତୁମକୁ କଚେରିର କାର୍ଯ୍ୟ ଧାରା ଆଉ ମୋର ପଦ୍ଧତି ଉପରେ ଅଧିକ କଥା କହିଥିଲି, ଅଧିକ ଧାରଣା ଦେଇଥିଲି, କିନ୍ତୁ ବର୍ତ୍ତମାନ ଦେଖୁଚି ଏସବୁ ସତ୍ତ୍ୱେ ତୁମର ମୋ ଉପରେ ଯଥେଷ୍ଟ ଆସ୍ଥାନାହିଁ । ତୁମେ ମୋ ପାଇଁ କାମକୁ ସହଜ କରି ଦେଲ ନାହିଁ ।' ଓକିଲ କହିଲେ । କେ' ଆଗରେ ଓକିଲ ନିଜକୁ କେତେ ନ୍ୟୁନ କରି ଦେଇଥିଲେ । ନିଜ ଜୀବିକାର ସମ୍ମାନକୁ ମଧ୍ୟ ଉପେକ୍ଷା କରି ଯାଇଥିଲେ, ଯାହାର ମୂଲ୍ୟ ଏପରି କ୍ଷେତ୍ରରେ ଖୁବ୍ ବେଶୀ । ଏମିତି କାହିଁକି ସେ କଲେ ? ତାହାକୁ ଯଦି ଠିକ୍ ଜାଣି ହୁଅନ୍ତା ତେବେ ଜଣାଯାଆନ୍ତା ଯେ, ଓକିଲ ହିସାବରେ ତାଙ୍କର ଭାରି ନାମଡାକ । ତାଙ୍କ ପାଖରେ ଅନେକ ଭିଡ଼ ଏବଂ ସେ ଖୁବ୍ ଧନଶାଳୀ ମଧ୍ୟ । ତେଣୁ ମହକିଲ ହିସାବରେ କେ'କୁ ହରାଇଲେ କିମ୍ବା

Digitized by srujanika@gmail.com

ତା ପାଖରୁ ଆସୁଥିବା ଅର୍ଥ ନ ଆସିଲେ ତାଙ୍କର ଖୁବ୍ ବେଶୀ କ୍ଷତି ହୁଅନ୍ତା ନାହିଁ । ଏହା ବ୍ୟତୀତ ସେତ ଅକର୍ମଣ୍ୟ ଏବଂ ବର୍ତ୍ତମାନ ମହକିଲମାନଙ୍କୁ ଛାଡ଼ିବା କଥା ଭାବିବା ତାଙ୍କର ଉଚିତ୍ । ତଥାପି ସେ କେ'ଙ୍କୁ ଜାବୁଡ଼ି ଧରିଥିଲେ । କାହିଁକି ? ଏହା କ'ଣ କେ'ର କକାଙ୍କ ପ୍ରତି ତାଙ୍କ ବ୍ୟକ୍ତିଗତ ସ୍ନେହ ପାଇଁ ? ଅବା ସେ ଏହି ମକଦ୍ଦମାଟିକୁ ଏତେ ଗୁରୁତ୍ୱପୂର୍ଣ୍ଣ ବୋଲି ଭାବୁଥିଲେ ଯେ କେ'ଙ୍କୁ ଜିତାଇ ପାରିଲେ କିମ୍ବା ଏହା ଦ୍ୱାରା କଚେରିର ବନ୍ଧୁମାନଙ୍କୁ ସାହାଯ୍ୟ କରି ପାରିଲେ ତାଙ୍କର ସମ୍ମାନ ବହୁଗୁଣ ବଢ଼ିଯିବ । ଏହି ଦ୍ୱିତୀୟ ସମ୍ଭାବନାଟିକୁ ମଧ୍ୟ କେବେ ଏଡ଼ାଇ ଦିଆଯାଇ ନ ପାରେ । ତାଙ୍କ ମୁହଁକୁ ନିରେଖି କେ' କିଛି ଜାଣିପାରିଲନି । କାରଣ ତାଙ୍କ ମୁହଁ ତାଙ୍କ ମନର ଝରକାଟି ନୁହେଁ । ଜଣେ ଧରି ନେଇ ପାରେ ଯେ, ଜାଣିଶୁଣି ତାଙ୍କ ମୁହଁର ଭଙ୍ଗିରେ ଫାଙ୍କା, ଫାଙ୍କା ଭାବ ଦେଖାନ୍ତି । ଆଉ ସେହି ଅବସ୍ଥାରେ ତାଙ୍କ କଥାର ପ୍ରଭାବକୁ ରକ୍ଷା କରନ୍ତି । କିନ୍ତୁ ଯେତେବେଳେ ସେ କହିବାକୁ ଲାଗିଲେ ନିଶ୍ଚିତ ଭାବରେ କେ'ର ନୀରବତାକୁ ସେ ବଡ଼ ସହାନୁଭୂତିଶୀଳ ହୋଇ ବିଶ୍ଳେଷଣ କରୁଥିଲେ ।

'ତୁମେ ଲକ୍ଷ୍ୟ କରିଥିବ ଯେ, ଯଦିଓ ମୋ' ଅଫିସ ଖୁବ୍ ବଡ଼ ତଥାପି ମୁଁ ସହକର୍ମୀ ନିଯୁକ୍ତ କରି ନାହିଁ । ଆଗରୁ ଏମିତି ନ ଥିଲା । ଦିନ ଥିଲା ଯେତେବେଳେ ଅନେକ ଆଇନ ଛାତ୍ର ମୋ ପାଇଁ କାମ କରୁଥିଲେ । କିନ୍ତୁ ଆଜି ମୁଁ ଏକୁଟିଆ ସବୁ କରୁଚି । ଏପରି ପରିବର୍ତ୍ତନ ମୋ ବ୍ୟବସାୟର ପରିବର୍ତ୍ତନ ସହ ଖାପ୍ ଖୁଆଇ ହୋଇଚି । କାହିଁକି ନା ଦିନକୁ ଦିନ ମୁଁ ତୁମରି ପରି ମକଦ୍ଦମାଗୁଡ଼ିକ ଅଧିକ ହାତକୁ ନେଉଛି । ମୋର ଧାରଣା ହେଉଛି ଯେ ଏପରି ମକଦ୍ଦମାର ଦାୟିତ୍ୱ ମୁଁ ଆଉ କାହାରିକୁ ଦେଇ ପାରିବିନି । ଏପରି କଲେ ମୋର ମହକିଲମାନଙ୍କ ପ୍ରତି ଅନ୍ୟାୟ ହେବ ଏବଂ ହାତକୁ ନେଇଥିବା ମକଦ୍ଦମାଗୁଡ଼ିକ ପ୍ରତି ବିପଦ ହେବ । ସବୁ କାମ ନିଜ ହାତରେ କଲେ ଯାହା ହୁଏ ତାହାହିଁ ହୋଇଛି । ମୋତେ ବାଧ୍ୟ ହୋଇ ଅନେକ ମକଦ୍ଦମାକୁ ଛାଡ଼ିବାକୁ ପଡ଼ୁଛି । ଫଳରେ ଯେଉଁ ମକଦ୍ଦମାଗୁଡ଼ିକ ମନକୁ ପାଉଚି ସେଇଗୁଡ଼ିକୁ ହିଁ ଗ୍ରହଣ କରୁଚି । ମୁଁ ତୁମକୁ କହିପାରେ ଯେ, ଆମର ଏଇ ପଡ଼ିଶାରେ ବି ହତଭାଗ୍ୟଙ୍କ ଅଭାବ ନାହିଁ । ସେମାନେ ମୋର ହାତ-ଟେକାକୁ ଚାହିଁ ବସିଚନ୍ତି । ଏହାପରେ ମୁଁ ଅଧିକ କାମର ଚାପରେ ଭାଙ୍ଗିପଡ଼ିଲି ତଥାପି ମୁଁ ମୋର ସିଦ୍ଧାନ୍ତ ପାଇଁ ଦୁଃଖିତ ନୁହେଁ । ମୋତେ ଏ ସିଦ୍ଧାନ୍ତରେ ଦୃଢ଼ ହେବାକୁ ପଡ଼ିବ ଏବଂ ଆହୁରି ଅନେକ ମକଦ୍ଦମା ଛାଡ଼ିବାକୁ ପଡ଼ିବ । କିନ୍ତୁ ଯେଉଁ ମକଦ୍ଦମାଗୁଡ଼ିକୁ ହାତକୁ ନେଇଚି ସେଗୁଡ଼ିକ ପାଇଁ ଏକାଗ୍ରଚିତ୍ତରେ ଲାଗିବାକୁ ପଡ଼ିବ । ଏହି ନୀତି ଏକାନ୍ତ ପ୍ରୟୋଜନୀୟ ଏବଂ ଏହା ମକଦ୍ଦମା ଫଳାଫଳରୁ ପ୍ରମାଣିତ ହୋଇଚି । ଭାରି ସୁନ୍ଦର ଭାଷାରେ ଲେଖା ହୋଇଥିବା ଗୋଟିଏ ବର୍ଣ୍ଣନା

Digitized by srujanika@gmail.com

ପଢ଼ିଥିଲି । ସେ ଲେଖାରେ ସାଧାରଣ ଓକିଲ ଏବଂ ମୋପରି ଏ ଭିନ୍ନ ସ୍ୱଭାବରେ ଲଢ଼ୁଥିବା ଓକିଲଙ୍କ ଭିତରେ ଥିବା ପାର୍ଥକ୍ୟକୁ ବର୍ଣ୍ଣନା କରାଯାଇଛି । ବର୍ଣ୍ଣନାଟି ଏହିପରି—ଜଣେ ଓକିଲ ତା ମକ୍କେଲକୁ ବିଚାରର ଶେଷ ଫଳାଫଳ ବାହାରିବା ପର୍ଯ୍ୟନ୍ତ ଗୋଟିଏ ସରୁ ସୂତାରେ ଟାଣୁଥାଏ । ଅନ୍ୟ ଜଣକ ତା ମକ୍କେଲକୁ ପ୍ରଥମରୁ ତା କାନ୍ଧରେ ବସାଇ ମକଦ୍ଦମା ଶେଷ ପର୍ଯ୍ୟନ୍ତ କିମ୍ବା ତାଠାରୁ ଅଧିକ ଯାଇଥାଏ । ବାସ୍ତବରେ ଥରେ ହେଲେ ତା ମକ୍କେଲକୁ କାନ୍ଧରୁ ଓହ୍ଲାଇ ନଥାଏ ଏହା ସତ । ଏହା କହିବା ମଧ୍ୟ ଠିକ୍ ସତ ନୁହେଁ ଯେ ଏପରି ମହାନ କାମରେ ନିଜକୁ ନିୟୋଜିତ କରି ମୁଁ କମ୍ ପସ୍ତେଇ ହୋଇ ନାହିଁ । ଏଇ ଧର ଯେମିତି ତୁମ ମକଦ୍ଦମାରେ ହେଲା—ଅର୍ଥାତ୍ ମୋର ସବୁ ପରିଶ୍ରମ ଚେଷ୍ଟାକୁ ଲୋକେ ଭୁଲ୍ ବୁଝିଲେ । ଏଇ ଭୁଲ ବୁଝିବା ହିଁ ମୋର ଦୁଃଖର ଏକମାତ୍ର କାରଣ ।' ଓକିଲଙ୍କ ଏଇ ଭାଷଣ ଦ୍ୱାରା କେ'ର ମନ ମାନିବା ପରିବର୍ତ୍ତେ ଏହା ତାକୁ ଅଧିକ ଅଧୈର୍ଯ୍ୟ କରି ଦେଲା । ଓକିଲଙ୍କ କଥାରୁ ଭବିଷ୍ୟତରେ ତା'ପାଇଁ କଅଣ ଅଛି କେ' ଜାଣି-ପାରିଲା । ସବୁ ପୁରୁଣା କଥାର ପୁଣି ପୁନରାବୃତ୍ତି ହେବ—ସେଇ ପୁରୁଣା ଉପଦେଶ, ତା' ଦେଇଥିବା ଦରଖାସ୍ତ ଉପରେ କେତେଦୂର କାମ ଆଗେଇଲା ତାର ହିସାବ, ବିଭିନ୍ନ ହାକିମଙ୍କ ବିଭିନ୍ନ ଖିଆଲ ସଙ୍ଗେ ସଙ୍ଗେ ଓକିଲଙ୍କ ଆଗରେ ଦେଖା ଦେଇଥିବା ପାହାଡ଼ ପ୍ରମାଣ ଅସୁବିଧା ସବୁର ବର୍ଣ୍ଣନା ହେବ । ସେଇ ଜଣାଶୁଣା ପୁରୁଣା କଥା କୁହାଯିବ । ହୁଏତ ତାକୁ ନୂଆ ଆଶାର ଭେଳକି ଦେଖାଇବା ପାଇଁ ଅବା ଅର୍ଥହୀନ ଭୟ ଦେଖାଇ ତାକୁ ଜର୍ଜରିତ କରି ଦେବା ପାଇଁ । ଏସବୁକୁ ସବୁଦିନ ପାଇଁ ବନ୍ଦ କରିବାକୁ ପଡ଼ିବ । ତେଣୁ କେ' କହିଲା—'ମୁଁ ଯଦି ଆପଣଙ୍କୁ ମୋର ଓକିଲ ହିସାବରେ ରଖେ ତେବେ ଆପଣ କଅଣ ବ୍ୟବସ୍ଥା କରିବେ ବୋଲି ଭାବୁଛନ୍ତି ?' ଓକିଲ ଏହି ଲକ୍ଷ୍ୟାକର ପ୍ରଶ୍ନକୁ ବି ଧୀରସ୍ଥିର ଭାବେ ଗ୍ରହଣ କରିନେଇ କହିଲେ—'ମୁଁ ଯେଉଁ ବ୍ୟବସ୍ଥା କରିଛି, ଯେଉଁ ଧାରାରେ କାମ ଆରମ୍ଭ କରିଛି ତାକୁ ହିଁ ଚାଲୁରଖିବି ।'

'ମୁଁ ତାହା ଜାଣେ । ସେ ବିଷୟରେ ଆଲୋଚନା କରି ଖାଲି ସମୟ ନଷ୍ଟ କରିବା କଥା ।' କେ' କହିଲା ।

'ଆଉ ଗୋଟିଏ ନୂଆ ଜିନିଷ ଆରମ୍ଭ କରିବି ।' ଓକିଲ କହିଲେ । ଯେମିତିକି କେ'ର ସବୁ ଭୁଲ ତାଙ୍କର କିଛି ଭୁଲ ନାହିଁ । ସେ ଆରମ୍ଭ କଲେ— 'ଖାଲି ମୋର କାମ ସମ୍ପର୍କରେ ନୁହେଁ, ତୁମ ସାଧାରଣ ବ୍ୟବହାରରେ କାହିଁକି ଏମିତି ଭୁଲ ବିଚାରବୋଧ ପଶିଯାଉଛି ସେ ବିଷୟରେ ଏବେ ମୋର ଧାରଣା ହେଲା । ଏପରି ଭୁଲ ଧାରଣା ତୁମ ମୁଣ୍ଡକୁ ପଶିବାର ପ୍ରଧାନ କାରଣ ହେଲା

Digitized by srujanika@gmail.com

ବର୍ତ୍ତମାନ ସୁଦ୍ଧା ତୁମକୁ ସମସ୍ତେ ଖୁବ୍ ଭଲ ବ୍ୟବହାର କରୁଛନ୍ତି । ଯଦିଓ ତୁମେ ଜଣେ ଅଭିଯୁକ୍ତ ବ୍ୟକ୍ତି ତଥାପି ଅବହେଳା କ୍ରମେ ତୁମେ ଭଲ ବ୍ୟବହାର ପାଉଛ । ଅବଶ୍ୟ ଏପରି ଅବହେଳା ପାଇଁ କାରଣ ଅଛି । ଅନେକ ସମୟରେ ଖୋଲି ରଖିବାଠାରୁ ବନ୍ଦୀ ହୋଇ ରଖିବା ଭଲ । ଅନ୍ୟ ଅଭିଯୁକ୍ତ ବ୍ୟକ୍ତିମାନଙ୍କୁ କେମିତି ବ୍ୟବହାର କରାଯାଏ ତାହା ମୁଁ ତୁମକୁ ଦେଖାଇବାକୁ ଚାହେଁ । ଅନ୍ତତଃ ସେଥିରୁ ତୁମେ କିଛି ଶିଖିପାରିବ । ମୁଁ ବର୍ତ୍ତମାନ ବ୍ଲକ୍‌କୁ ଡକାଇ ପଠାଉଛି । ତୁମେ ବରଂ କବାଟର ଚାବି ଖୋଲିଦିଅ ଆଉ ଖଟପାଖ ଟେବୁଲ ପାଖରେ ବସ ।'

'ଖୁସିରେ' ଏତିକି କହି କେ' ସବୁ ଆଦେଶ ପାଳନ କଲା । ସେ ସବୁବେଳେ ଜାଣିବାପାଇଁ ପ୍ରସ୍ତୁତ । ଯାହା ହେଉ ସତର୍କତାମୂଳକ ବ୍ୟବସ୍ଥାଭାବରେ ସେ ଆଉଥରେ ପଚାରିଲା—

'ଆପଣ କଅଣ ଅନୁଭବ କରୁଛନ୍ତି ଯେ ମୁଁ ଆପଣଙ୍କ ସାହାଯ୍ୟ ନନେବା ପାଇଁ ମନସ୍ଥ କରିଛି ?'

'ହଁ', କିନ୍ତୁ ତୁମେ ହୁଏତ ତୁମ ମନ ବଦଳାଇପାର ।' ଓକିଲ କହିଲେ । ସେ ପୁଣି ଥରେ ବିଛଣାରେ ଶୋଇପଡ଼ି ଶେଯକୁ ବେକ ପର୍ଯ୍ୟନ୍ତ ଟାଣିନେଲେ । କାନ୍ଥ ଆଡ଼କୁ ମୁହଁ ବୁଲାଇ ଘଣ୍ଟି ବଜାଇଲେ ।

ପ୍ରାୟ ଠିକ୍ ସେଇ ମୁହୂର୍ତ୍ତରେ ଲେନି ଆସି ସେଠାରେ ପହଞ୍ଚିଲା । ସେ ତରତର ହୋଇ ଏଣେ ତେଣେ ଚାହୁଁଥାଏ । ଓକିଲଙ୍କ ବିଛଣା ପାଖରେ କେ'କୁ ଚୁପ୍‌ଚାପ୍ ବସିଥିବାର ଦେଖି ସେ ସାମାନ୍ୟ ଆଶ୍ଚର୍ଯ୍ୟ ହେଲା । ଅଳ୍ପ ହସି କେ'କୁ ଚାହିଁ ସେ ମୁଣ୍ଡ ଟୁଙ୍ଗାଇଲା । ମାତ୍ର କେ' ତାକୁ ଫାଙ୍କା ଚାହାଣିରେ ଚାହିଁ ରହିଥିଲା ।

'ବ୍ଲକ୍‌କୁ ଡ଼ାକି ଦିଅ ।' ଓକିଲ କହିଲେ । ବ୍ଲକ୍‌କୁ ପାଖକୁ ନଯାଇ ସେ କେବଳ ଦ୍ୱାର ପାଖକୁ ଯାଇ ଡ଼ାକିଲା 'ବ୍ଲକ୍, ଓକିଲ ତୁମକୁ ଡ଼ାକୁଛନ୍ତି ।' କାନ୍ଥ ଆଡ଼କୁ ମୁହଁ କରି ଶୋଇଥିବାରୁ ଓକିଲ ଲେନି ଆଡ଼େ ନଜର ଦେଉନଥିଲେ । ଏହାର ସୁଯୋଗ ନେଇ ସେ ଧୀରେ ଧୀରେ କୌଶଳକ୍ରମେ କେ' ପଛକୁ ଚାଲି ଆସିଲା । ଆଜିପର୍ଯ୍ୟନ୍ତ ଏଇଠି ସେ କେ'ର ଚଉକିର ପଛରେ ଆଉଜିପଡ଼ି ଧୀରେ ଧୀରେ କେ'ର କପାଳ ଅବା ତା' ବାଳରେ ନିଜ ଆଙ୍ଗୁଳି ଚଳାଇ ତାର ମନକୁ ଏପାଖ ସେପାଖ କରୁଥିଲା । ଏପରି କରିବାକୁ ବାଧା ଦେବାପାଇଁ ଶେଷରେ କେ' ତାର ହାତକୁ ଧରିପକାଇଲା । ପ୍ରଥମେ ସାମାନ୍ୟ ବାଧା ଦେଇ ଶେଷରେ ଲେନି ତା ହାତକୁ କେ' ହାତରେ ଧରାଇ ଦେଲା ।

Digitized by srujanika@gmail.com

ଡାକରା ଶୁଣି ବ୍ଲକ୍ ଧାଇଁ ଧାଇଁ ଆସି ପହଞ୍ଚିଲା । ଦ୍ୱାର ପାଖରେ ସେ ସାମାନ୍ୟ ଇତସ୍ତତଃ ହେବାକୁ ଲାଗିଲା । ଘର ଭିତରକୁ ପଶିବ କି ନାହିଁ ବୋଧହୁଏ ଏହି ଦ୍ୱନ୍ଦ୍ୱରେ ସେ ପଡ଼ିଥାଏ । ସେ ତାର ଭ୍ରୂକୁ କୁଞ୍ଚାଇ ମୁଣ୍ଡକୁ ଟେକି ଆଉଥରେ ଡାକରା ପାଇଁ ଚାହିଁ ରହିଲା । କେ' ହୁଏତ ତାକୁ ଭିତରକୁ ଆସିବା ପାଇଁ ଉତ୍ସାହିତ କରିପାରିଥା'ନ୍ତା ମାତ୍ର ସେତ କେବଳ ଓକିଲଙ୍କ ପାଖରୁ ନୁହେଁ, ଏ ଘରର ସମସ୍ତଙ୍କଠାରୁ ସମ୍ପର୍କ ତୁଟାଇବାକୁ ବଦ୍ଧପରିକର । ତେଣୁ ସେ ଚୁପ୍‌ଚାପ୍ ବସି ରହିଲା । ଲୋକ ମଧ୍ୟ ଚୁପ୍‌ଚାପ୍ । ବ୍ଲକ୍ ଦେଖିଲା ସେ କେହି ଅନ୍ତତଃ ତାକୁ ଭିତରକୁ ଯିବାକୁ କହୁନାହାନ୍ତି । ସେ ଉତ୍କଣ୍ଠାର ସହିତ ପାଦ ଟିପିଟିପି ଘରକୁ ପଶିଲା । ପଶିଲାବେଳେ ସୁବିଧାରେ ବାହାରି ଯିବାପାଇଁ କବାଟକୁ ଖୋଲା ରଖି ଆସିଲା । କେ'କୁ ସେ ଚାହିଁଲାନି । ତାର ନଜର ନୋସ୍ ବୋସ୍ ହୋଇ ପଡ଼ିଥିବା ଶେଯଟି ଉପରେ ଲାଗିରହିଥିଲା । ତାଙ୍କୁ ଓକିଲ ବାହାରକୁ ଆଦୌ ଦିଶୁ ନଥିଲେ । ତାହିଁକିନା ସେତେବେଳକୁ ସେ କାନ୍ଥ ପାଖକୁ ଘୁରି ଲାଗିଯାଇଥିଲେ । ଯା'ହେଉ ବିଛଣାରୁ ଗୋଟିଏ ଶବ୍ଦ ଆସିଲା ।

'ବ୍ଲକ୍ ଆସିଲା କି ?' ଏ ପ୍ରଶ୍ନ ବ୍ଲକ୍‌କୁ ଯେମିତି ଆଘାତଟିଏ ଦେଲା । କିନ୍ତୁ ବାଟ ସେ ଆଗେଇ ଯାଇଥିଲା । ସେଇଠି ସେ ସ୍ଥିର ହୋଇଗଲା ଯେମିତିକି ତା ଛାତିରେ କିଏ ଆଘାତ କରୁଛି ପୁଣି ପଛରୁ ବାଡ଼ଉଛି । ସେ ଖୁବ୍ ନଇଁଯାଇ ଚୁପ୍‌ଚାପ୍ ଠିଆ ହୋଇ ଉତ୍ତର ଦେଲା—

'ଆପଣଙ୍କ ସେବାରେ ଅଛି ।'

“କଅଣ ଚାହୁଁ ?” ଓକିଲ ପଚାରିଲେ । 'ଭୁଲ୍ ସମୟରେ ତୁମେ ଆସିଲ ?'

'ମୋତେ କଅଣ ଡକା ହୋଇନଥିଲା ?' ଏ ପ୍ରଶ୍ନ ଯେମିତି ଓକିଲଙ୍କୁ ନୁହେଁ ନିଜକୁ ସେ ପଚାରୁଥିଲା । ସେ ତାର ହାତ ଲମ୍ବାଇ ଦେଇଥାଏ ଯେମିତି କି ନିଜକୁ ରକ୍ଷା କରିବାକୁ ଏବଂ ବାହାରକୁ ବାହାରି ଯିବାପାଇଁ ସେ ପ୍ରସ୍ତୁତ ।

'ତୁମକୁ ଡକାହୋଇଥିଲା ତଥାପି ତୁମେ ଭୁଲ୍ ବେଳରେ ଆସିଲ ।' ଓକିଲ କହିଲେ ଏବଂ ଟିକିଏ ରହି ପୁଣି ଆରମ୍ଭ କଲେ—'ତୁମେ ସବୁବେଳେ ଭୁଲ୍ ସମୟରେ ଆସ ।'

ଓକିଲଙ୍କ କଣ୍ଠ ଶୁଣିଲା ପାଖରୁ ବ୍ଲକ୍ ତା ଦୃଷ୍ଟି ଓକିଲଙ୍କ ବିଛଣା ଉପରୁ ଏଡ଼ାଇ ନେଉଥାଏ ଆଉ ଠିଆହୋଇ ଘରର ଗୋଟିଏ କୋଣକୁ ଚାହିଁ ଶୁଣୁଥାଏ ।

Digitized by srujanika@gmail.com

ଯେମିତ ଓକଲଙ୍କ ସାମ୍ନାରେ ତା ଆଖି ଝଲସି ଯାଉଛି । କିନ୍ତୁ ଓକଲଙ୍କ କଥା ବି ଶୁଣିବା ତା ପକ୍ଷରେ କଷ୍ଟକର ହେଲା । କାହିଁକିନା କାହିଁକି ଲାଗି ସେ ଖୁବ୍ ଧୀର ସ୍ୱରରେ ଅଥଚ ଖୁବ୍ ଚଞ୍ଚଳ ଚଞ୍ଚଳ କହୁଥିଲେ ।

'ଆପଣ କଅଣ ମୋତେ ଯିବାକୁ କହୁଛନ୍ତି ?' ବ୍ଲକ୍ ପଚାରିଲା ।

'ଯେହେତୁ ଆସିଛ, ବୁଝିହ ।' ଓକଲ କହିଲେ ।

ଜଣେ ଖୁସିରେ ଅନୁମାନ କରିବ ଯେ ବ୍ଲକ୍‌ର ଆଶା ପୂରଣ କରିବା ବଦଳରେ ଓକଲ ଯେମିତ ତାକୁ ମାଡ଼ ଦେବାର ଧମକ ଦେଉଛନ୍ତି । ବର୍ତ୍ତମାନ ବ୍ଲକ୍ ପ୍ରକୃତରେ ଥରିବାକୁ ଲାଗିଲା ।

'କାଲି ମୋର ବନ୍ଧୁ ତୃତୀୟ ଜଜ୍‌ଙ୍କ ସହ ଦେଖା ହୋଇଥିଲା । ଧୀରେ ଧୀରେ ତୁମ କେଶ୍ କଥା ପକାଇଲି । ସିଏ କଅଣ କହିଲେ ଶୁଣିବ ?' ଓକଲ ପଚାରିଲେ ।

'ଦୟାକରି କୁହନ୍ତୁ ।' ବ୍ଲକ୍ କହିଲା । ପରେ ପରେ ଓକଲ କିଛି ନ କହିବାରୁ ବ୍ଲକ୍ ଆଉଥରେ ଅନୁରୋଧ କଲା ।

ସେ ପ୍ରାୟ ଆଣ୍ଠେଇ ପଡ଼ି ଓକଲଙ୍କ ଗୋଡ଼ ଧରିବା ଅବସ୍ଥାକୁ ଆସିଯାଇ ଥିଲା ।

'ତୁମେ ଇଏ କଅଣ କରୁଛ ?' ଏତିକି ବଡ଼ପାଟିରେ କହି କେ' ଏଥିରେ ବାଧା ଦେଲା । ଲେନି ତା ପାଟି ବନ୍ଦ କରିବାକୁ ଚେଷ୍ଟାକଲା । ତେଣୁ ସେ ତାର ଆର ହାତଟିକୁ ମଧ୍ୟ ଧରିପକାଇଲା । ଏପରି ଧରିବାରେ ସ୍ନେହ ନଥିଲା । ଲେନି ମଝିରେ ମଝିରେ ଦୀର୍ଘଶ୍ୱାସ ଛାଡୁଥିଲା । ଆଉ ନିଜକୁ ମୁକୁଳାଇବାକୁ ଚେଷ୍ଟା କରୁ ଥିଲା । କିନ୍ତୁ କେ'ର ଚକ୍କାର ପାଇଁ ବ୍ଲକ୍‌କୁହିଁ ମୂଲ୍ୟ ଦେବାକୁ ପଡ଼ିଲା । ଓକିଲ ତାକୁ ପ୍ରଶ୍ନ କଲେ—'ତୁମର ଓକଲ କିଏ ?'

'ଆପଣ' ବ୍ଲକ୍ କହିଲା ।

'ଆଉ ମୋ ଛଡ଼ା ?' ଓକଲ ପଚାରିଲେ ।

'ଆପଣଙ୍କ ଛଡ଼ା ଆଉ କେହି ନାହାନ୍ତି ।' ବ୍ଲକ୍ କହିଲା ।

'ତାହେଲେ ଆଉ କାହା ଉପରେ ଗୁରୁତ୍ୱ ଦିଅ ନାହିଁ ।' ଓକଲ କହିଲେ । ଏହି କଥାରେ ଥିବା ସବୁ ଜୋର୍‌କୁ ଗ୍ରହଣ କରିନେଇ ବ୍ଲକ୍ କେ' ଆଡ଼କୁ ଲାଲ୍

Digitized by srujanika@gmail.com

ଆଖିରେ ଅନାଇଲା । ତାପରେ ତା ମଥାକୁ ଖୁବ୍ ଜୋର୍‌ରେ ହଲାଇଲା । ଯଦି ଏପରି ଉଙ୍ଗିକୁ ଭାଷା ଜରିଆରେ ପ୍ରକାଶ କରାଯାଏ ତେବେ ଏହା ବିରକ୍ତିକର ଗାଳିଛଡ଼ା ଆଉ କିଛି ହେବ ନାହିଁ । ଇଏ ହେଉଛି ସେହି ଲୋକ ଯାହା ସହି କେ' ତାର କେଶ୍‌ର ସବୁ କଥା ଅତି ବନ୍ଧୁତ୍ୱପୂର୍ଣ୍ଣ ଭାବରେ ଆଲୋଚନା କରୁଥିଲା ।

ତା' ଚହଟକୁ ଆଉକି ପଢ଼ି କେ' କହିଲା—'ମୁଁ ଆଉ କେବେ ବାଧା ସୃଷ୍ଟି କରିବ ନାହିଁ । ତୁମେ ଚଟାଣ ଉପରେ ଆଣ୍ଠୁଅ, ଅବା ଗୃହକାର ମେଲି ଭୂଇଁରେ ପଡ଼ିଯାଅ ମୋର ସେଥିରେ କିଛି ଯାଏଆସେ ନାହିଁ ।'

କେ' ପାଖରେ ଅନ୍ତତଃ ବ୍ଲକ୍‌ର କିଛି ଆତ୍ମସମ୍ମାନ ତଥାପି ଥିଲା । ତେଣୁ ତା' ହାତ ମୁଠାକରି ଓକିଲ ଆଗରେ ଯେତେଦୂର ପାଟି କରିବା ସମ୍ଭବ ସେତେ ଜୋର୍‌ରେ ପାଟି କରି କରି ସେ କେ' ଆଡ଼କୁ ମାଡ଼ି ଆସିଲା ।

'ସେପରି ଗଳାରେ ଆପଣ ମୋ' ସାଥିରେ କଥା କହିପାରିବେ ନାହିଁ । ସେମିତି କରିବାକୁ ଏଠାରେ ଦିଆଯିବ ନାହିଁ । ମୋତେ ଅପମାନ ଦେବେ, ଆପଣ କଅଣ ଭାବିଛନ୍ତି କି ? ପୁଣି ଏହି ଓକିଲଙ୍କ ସାମ୍ନାରେ ? ଯିଏ ଆମ ଦୁଇଜଣଙ୍କୁ ଏଠିକି ଆସିବା ପାଇଁ ଦେଇଛନ୍ତି କେବଳ ଦୟା ଦେଖାଇ ? ତୁମେ ମୋଠାରୁ କିଛି ଅଧିକା ନୁହଁ । ତୁମେ ମଧ୍ୟ ଜଣେ ଅଭିଯୁକ୍ତ ବ୍ୟକ୍ତି । ମୋରି ପରି ମକଦ୍ଦମାରେ ପଡ଼ିଛ । ଅତି ବେଶୀରେ ତୁମେ ଜଣେ ଭଦ୍ରଲୋକ ହେଲେ, ମୁଁ ବି କହି ରଖେ, ମୁଁ ବି ତୁମ ପରି ଜଣେ ଭଦ୍ରଲୋକ । ଅଧିକ ନ ହୋଇପାରେ । ଭଦ୍ର ଭାବରେ ମୋ' ସାଙ୍ଗରେ ତୁମକୁ କଥା କହିବାକୁ ପଡ଼ିବ । ଏଥିପାଇଁ ମୁଁ ତୁମକୁ ବାଧ୍ୟ କରିବି । ତୁମେ ଯଦି ଭାବୁଥାଅ ଯେ ଆରାମରେ ବସି ମୋର ଘୁମୁରିବା ଅବସ୍ଥାକୁ ଦେଖୁଛ ବୋଲି ତୁମର ସ୍ଥାନ ମୋଠାରୁ ଟିକିଏ ଉଚ୍ଚରେ ତେବେ ମୁଁ ତୁମକୁ ଗୋଟିଏ ପୁରୁଣା ନୀତି କଥା କହିଦିଏ । କଥାଟି ହେଉଛି : ସନ୍ଦେହ ଭିତରେ ଥିବା ଲୋକମାନେ ଚୁପ୍‌ଚାପ୍ ବସିବା ଅପେକ୍ଷା ବରଂ ବୁଲୁଥିବା ଭଲ । କାରଣ ଚୁପ୍‌ଚାପ ବସିଥିଲା ବେଳେ ସେମାନେ ହୁଏତ ତାଙ୍କ ଅଜାଣତରେ ତରାଜୁରେ ବସି ନିଜ ପାପ ସହି ମପା ହେଉଥାଆନ୍ତି ।' କେ' ପଦଟିଏ ବି କଥା କହିଲାନାହିଁ । ସେ ଖାଲି ଆଶ୍ଚର୍ଯ୍ୟ ହୋଇ ଅପଲକ ଆଖିରେ ଏହି ପାଗଳା ଲୋକଟିକୁ ଅନାଇ ରହିଲା । ଶେଷ ମୁହୂର୍ତ୍ତରେ ଏଇ ଲୋକଟିର କି ପରିବର୍ତ୍ତନ ନ ହେଲା ! ତାର ମକଦ୍ଦମା କଅଣ ତାକୁ ଏତେ ଉତ୍ତେଜିତ କରିଦେଇଛି ଯେ ସେ ତାର ବନ୍ଧୁ ଆଉ ଶତ୍ରୁ ମଧ୍ୟରେ ପାର୍ଥକ୍ୟ ଜାଣିପାରୁନାହିଁ ? ଜାଣିଶୁଣି ଓକିଲ ତାକୁ ଅପମାନିତ କରୁଛନ୍ତି ସେ କଅଣ ତା' ବୁଝିପାରୁନି ? ସେ କଅଣ ଜାଣିପାରୁନି ଯେ ଏପରି ଗୋଟିଏ ଅବସ୍ଥା

Digitized by srujanika@gmail.com

ସୃଷ୍ଟି କରିବାର ଏକମାତ୍ର କାରଣ ହେଉଛି ଜେ' ଆଗରେ ତାଙ୍କର କ୍ଷମତା ପ୍ରଦର୍ଶନ କରିବା । ହୁଏତ ଜେ'ର ମୁଣ୍ଡକୁ ଲୁଆଁଇ ବିନା ଆପତ୍ତିରେ ସବୁ ମାନି ନେବାକୁ ତାକୁ ବାଧ୍ୟ କରିବା । ଯଦି ବ୍ଲକ୍ ଏହା ଦେଖିପାରୁନଥାଏ ଜମା ଓକିଲଙ୍କୁ ତାର ଏତେ ଡର ଯେ ଏହା ଦେଖିବାକୁ ଚାହୁଁ ନଥାଏ କେବଳ ଏତେ ଚାଲାକ କରି ସେ କେମିତି କହି ପାରିଲା ଯେ ଏହି ଓକିଲଙ୍କ ବ୍ୟତୀତ ସେ ଆଉ କୌଣସି ଓକିଲର ସାହାଯ୍ୟ ନେଇ ନାହିଁ ବୋଲି । ଏହା କେମିତି ସମ୍ଭବ ହେଲା ? ଏମିତି ଠକାଇବାକୁ ତାର ଏତେ ବୁଦ୍ଧି କେଉଁଠୁ ଆସିଲା ? ଏତେ ମୋଟାବୁଦ୍ଧିଆ ହୋଇ ଜେ'କୁ ପିଟିବା ପାଇଁ ସେ କେମିତି ଆଗେଇ ଆସିଲା ? ଜେ' ଯେ ତାର ଗୁପ୍ତକଥା ପ୍ରକାଶ କରି ଦେଇପାରେ ଏକଥା କଅଣ ସେ ଜାଣି ପାରିବନି ? ତାର ମୋଟା ବୁଦ୍ଧି ଆଉ ପାଦେ ଆଗେଇ ଗଲା । ଓକିଲଙ୍କ ବିଛଣା ପାଖକୁ ଯାଇ ଜେ' ବିରୁଦ୍ଧରେ ସେ ଗୋଟିଏ ଆପତ୍ତି ଜଣାଇଲା । 'ଡକ୍ଟର ହୁଲଡ୍ ! ଏ ଲୋକ ମୋତେ କଅଣ କହୁଛି ଆପଣ ଜାଣନ୍ତି ? ମୋ' କେଶ୍ ତୁଳନାରେ ତା' ମକଦ୍ଦମା କେବଳ କେତେ ଘଣ୍ଟାର । ଏ ମକଦ୍ଦମାରେ ମୋର ପାଞ୍ଚବର୍ଷର ଅନୁଭୂତି । ତଥାପି ସେ ମୋତେ ଉପଦେଶ ଦେବାକୁ ବାହାରିଛି । ଏମିତିକି ସେ ମୋତେ ଗାଳି ଦେଉଛି । ମୋ' ଶ୍ରେଷ୍ଠ ବୁଦ୍ଧିରେ ଯେତିକି ସମ୍ଭବ ଏ ମକଦ୍ଦମା ପାଇଁ ସବୁ ନିୟମ କାନୁନ୍ ଯାଞ୍ଚ କରିବା ଉଚିତ୍ ଏହାର ପରମ୍ପରା ଏବଂ ସମ୍ପର୍କ ସବୁ ଅନୁଧ୍ୟାନ କରିସାରିଛି । ତଥାପି ସେ ମୋର ଗୁରୁ ହେବାକୁ ବସିଛି ।'

'ତାହାରି କଥାରେ କାନ ଦିଅ ନାହିଁ । ଯାହା ଠିକ୍ ବୋଲି ଭାବୁଛ ତାହାହିଁ କର ।' ଓକିଲ କହିଲେ ।

'ନିଶ୍ଚୟ' ବ୍ଲକ୍ କହିଲା । ଯେମିତିକି ସେ ନିଜପାଇଁ ଆତ୍ମବିଶ୍ୱାସ ସଞ୍ଚୟ କରୁଛି । ତା'ପରେ ତରତରରେ କଡ଼କୁ ଚାହିଁ ବିଛଣା ପାଖରେ ଆଣ୍ଠେଇ ପଡ଼ିଲା ।

'ମୁଁ ଆଣ୍ଠୁମାଡ଼ି ମିନତି କରୁଛି ଡକ୍ଟର ହୁଲଡ୍ ।' ସେ କହିଲା । କିନ୍ତୁ ଓକିଲ କିଛି ଉତ୍ତର ଦେଲେ ନାହିଁ । ବ୍ଲକ୍ ବଡ଼ ସତର୍କ ହୋଇ ଶେଯଟିକୁ ହାତରେ ଆଉଁସିବାକୁ ଲାଗିଲା । ରାଜତ୍ୱ କରୁଥିବା ନୀରବତା ଭିତରେ ଲେନି ନିଜକୁ ଜେ' ପାଖରୁ ମୁକୁଳାଇ କହିଲା—'ତୁମେ ମୋତେ ଆଘାତ ଦେଉଛ । ମୋତେ ଯିବାକୁ ଦିଅ । ମୁଁ ବ୍ଲକ୍ ପାଖକୁ ଯିବି । ସେ ଯାଇ ବିଛଣା ପାଖରେ ବସିଲା । ଲେନି ଆସିବାରୁ ବ୍ଲକ୍ ଖୁବ୍ ଖୁସି ହେଲା । ଅନେକ ନୀରବ ଭଙ୍ଗିରେ ସେ ଲେନିକୁ ତା' କେଶ୍ ପାଇଁ ଓକିଲଙ୍କୁ କହିବା ପାଇଁ ଅନୁରୋଧ କଲା । ନିଶ୍ଚିତ ଭାବରେ ସେ କୌଣସି ଜରୁରୀ ଖବର ଜାଣିବାକୁ ଚାହୁଁଥିଲା ଯାହା ହୁଏତ ଓକିଲ କେବଳ ଦେଇପାରିବେ । ଏହି ଖବର ସେ ଅନ୍ୟ ଓକିଲଙ୍କୁ ଦେଇ ସେ ହୁଏତ ତା' କାମ ହାସଲ କରିବାକୁ ଚାହୁଁଥିଲା । ଓକିଲଙ୍କୁ କେମିତି ଖୁସି କରିବାକୁ ହୁଏ

Digitized by srujanika@gmail.com

ମେଲଥା ଲେନ ଠିକ୍ ଜାଣେ । ଓକଲଙ୍କ ହାତକୁ ଦେଖାଇ ଚୁମାଟିଏ ଦେବାର ଭଙ୍ଗିକଲା ! ବ୍ଲକ୍ ସାଙ୍ଗେ ସାଙ୍ଗେ ଓକଲଙ୍କ ହାତରେ ଗୋଟିଏ ଚୁମା ଦେଲା । ଏବଂ ଲେନର ପ୍ରରୋଚନାରେ ଦୁଇଥର ଚୁମା ଦେଲା । ଓକଲ କିନ୍ତୁ ସେହିପରି ଚୁପ୍‌ଚାପ୍ ଶୋଇଥିଲେ । ତାଙ୍କର ଯେମିତି କିଛି ପ୍ରତିକ୍ରିୟା ନଥିଲା । ତା'ପରେ ଲେନ ନିଜ ଲମ୍ବା ଦେହର ସୁନ୍ଦର ଅଙ୍ଗଗୁଡ଼ିକୁ ଦେଖାଇ ବୃଦ୍ଧର ମୁହଁ ପାଖରେ ନଇଁ ପଡ଼ିଲା । ଆଉ ତାଙ୍କ ଲମ୍ବା ଲମ୍ବା ଧଳା ବାଳକୁ ସାଉଁଳିବାରେ ଲାଗିଲା । ଏପରି କରିବାରୁ ଶେଷରେ ଓକଲ କହିଲେ—'ତାକୁ କହିବାକୁ ମୁଁ ଦ୍ୱିଧା ବୋଧ କରୁଥିଲି । ସେ ଧୀରେ ଧୀରେ ତାଙ୍କ ମଥା ହଲାଉ ଥିବାର ଜଣେ ବେଶ୍ ଲକ୍ଷ୍ୟ କରିପାରିବ । ବୋଧହୁଏ ଲେନ ହାତର ସ୍ପର୍ଶକୁ ଭଲ ଭାବରେ ଉପଭୋଗ କରିବା ପାଇଁ ସେ ଏମିତି କରୁଥିଲେ । ତଳକୁ ଆଖି କରି ବ୍ଲକ୍ ଶୁଣୁଥିଲା । ଏମିତି ଶୁଣିବା ଦ୍ୱାରା ସତେଯେମିତି ସେ ଗୋଟିଏ ଆଇନ୍ ଭଙ୍ଗ କରୁଛି ।

'କାହିଁକି ଦ୍ୱିଧା ବୋଧ କରୁଥିଲେ ?' ଲେନ ପଚାରିଲା । କେ'ର ମନେ ହେଉଥିଲା ଯେମିତିକି ସେ ଗୋଟିଏ ବହୁ ଅଭ୍ୟସ୍ତ କଥାବାର୍ତ୍ତା ଶୁଣୁଛି । ତାର ମନେ ହେଉଥିଲା ଯେମିତି ଏପରି କଥାବାର୍ତ୍ତାର ବହୁବାର ପୁନରାବୃତ୍ତି ହୋଇଛି ଏବଂ ଭବିଷ୍ୟତରେ ଏହାର ପୁନରାବୃତ୍ତି ପୁଣି ବହୁବାର ହେବ । କେବଳ ବ୍ଲକ୍ ପାଖରେ ହିଁ ଏହାର ନୂତନତା ସବୁଦିନ ଥିବ । ଲେନର ପ୍ରଶ୍ନର ଉତ୍ତର ନ ଦେଇ ଓକଲ ପଚାରିଲେ—'ଆଜି କେମିତି ସେ ବ୍ୟବହାର କରୁଛି ?' ଏ ବିଷୟରେ କିଛି କହିବା ଆଗରୁ ଲେନ ବ୍ଲକ୍ ଆଡ଼କୁ ଅନାଇଲା ଓ କ୍ଷଣେକ ପାଇଁ ନିରୀକ୍ଷଣ କଲା । ସେତେବେଳେ ବ୍ଲକ୍ କାକୁତି କରିବା ଭଙ୍ଗିରେ ତାର ଦୁଇହାତ ଯୋଡ଼ି ଦେଇଥିଲା । ଶେଷରେ ଲେନ ଗମ୍ଭୀର ହୋଇ ତା' ମୁଣ୍ଡ ହଲାଇଲା ଆଉ ଓକଲଙ୍କ ଆଡ଼କୁ ଗୁହାରି କହିଲା । 'ସେ ବେଶ୍ ଶାନ୍ତ ଆଉ ପରିଶ୍ରମୀ' । ଦାଢ଼ି ବାଳବାଳ ଜଣେ ବୟସ୍କ ବ୍ୟବସାୟୀ ଗୋଟିଏ ଅଳ୍ପ ବୟସ୍କ ତରୁଣୀକୁ ତା ସପକ୍ଷରେ କିଛି କହିବା ପାଇଁ ଭିକ୍ଷା କରୁଛି । ହୁଏତ ତାର କିଛି ବ୍ୟକ୍ତିଗତ ସ୍ୱାର୍ଥ ଥାଇ ପାରେ ମାତ୍ର ସଙ୍ଗୀମାନଙ୍କ ଆଗରେ ଏପରି ବ୍ୟବହାର ତାର ପ୍ରୟୋଜନୀୟତାକୁ ପ୍ରତିପାଦିତ କରିବାରେ ସଫଳ ହେବ ନାହିଁ । କେ' ବୁଝିପାରିଲାନି ଯେ କେମିତି ଓକଲ ଧରି-ନେଲେ ଯେ ଏପରି ବ୍ୟବହାର କେ'ର ମନକୁ ଜୟ କରିପାରିବ । ପୂର୍ବରୁ ଯଦି ଓକଲ ତାକୁ ପୂରା ଦୂରେଇ ପାରିନଥିଲେ ତେବେ ଏହି ଦୃଶ୍ୟ ନିଶ୍ଚିତ ଭାବରେ ସବୁ ସମ୍ପର୍କକୁ ସବୁଦିନ ପାଇଁ ତୁଟାଇ ଦେବାରେ ସମର୍ଥ ହେବ । ଦେଖଣାହାରୀ ପ୍ରତି ଏପରି ଦୃଶ୍ୟ ଅପମାନଜନକ । ଏହି ଓକଲଙ୍କ ପଦ୍ଧତି (ଭାଗ୍ୟବଶତଃ ଯାହା କେ' ପାଖରେ ବେଶୀ କାମ କରି ନାହିଁ ।) ହେଉଛି : ମହକିଲ ସାରା ପୃଥିବୀକୁ ଭୁଲିଯାଇ ଏହି ଭୁଲ୍ ପଥରେ କେଶର ଶେଷ ହେବାର ଆଶାରଖି କଷ୍ଟେମଷ୍ଟେ

Digitized by srujanika@gmail.com

ଆଗେଇ ଯାଇବ । ମହନ୍ତକଲ ଆଉ ମହନ୍ତକଲ ହୋଇ ରହିବ ନାହିଁ । ସେ ଓକିଲର କୁକୁର ହୋଇଯିବ । ଏମାନଙ୍କୁ ଯଦି ଓକିଲ ତାଙ୍କ ଖଟତଳେ କୁକୁର ଭଳି ପେଟେଇ ପେଟେଇ ଯାଇ ଶୋଇବାକୁ କହିବେ । ତେବେ ଏମାନେ ଖୁସିରେ ଏ ଆଦେଶ ପାଳନ କରିବେ । ଗୋଟିଏ ଜଟିଳ ଉଦାସୀନତା ରଖି କେ' ସବୁ ଶୁଣୁଥିଲା । ଯେମିତିକି ସେ ଏହି ପଦ୍ଧତିକୁ ଅନୁଧ୍ୟାନ କରିବା ପାଇଁ ଏଠାକୁ ଆସିଛୁ । ସତର୍କ ତାର ସତ୍ତ୍ୱ ସବୁ ଦେଖି ଲିପିବଦ୍ଧ କରିବ ଆଉ ଉପର ମହଲାକୁ ତାର ରିପୋର୍ଟ ପଠାଇବ ।

'ସେ ଧନସାଗ୍ର କଅଣ କରୁଥିଲା ?' ଓକିଲ ପଚାରିଲେ ।

'ଯ୍ୱକରଣୀର ଘରେ ମୁଁ ତାକୁ ଯ୍ୱବ ପକାଇ ଦେଇଥିଲି । ଯେମିତିକି ମୋ କାମବେଳେ ଆଉ ଗଣ୍ଡଗୋଳ କରି ପାରିବନାହିଁ । ଯାହା ହେଉ ସେ ଧନସାଗ୍ର ସେଇଠି ରହିଥିଲା ।' ଲେନି କହିଲା । 'ମୁଁ ଜାଲିକବାଟ ଦେଇ ବେଳେ ବେଳେ ସେ କଅଣ କରୁଛି ଦେଖୁଥିଲି । ସବୁବେଳେ ସେ ତାର ବିଛଣା ଉପରେ ଆଣ୍ଠେଇ ପଡ଼ି ଆପଣ ଦେଇଥିବା କାଗଜସବୁକୁ ପଢ଼ୁଥିଲା । କାଗଜସବୁ ଝରକା ପାଖରେ ଖେଳେଇ ପଡ଼ିଥିଲା । ମୋ ଉପରେ ଏହାର ଗୋଟିଏ ଭଲ ପ୍ରଭାବ ପଡ଼ୁଥିଲା କାରଣ ସେ ଝରକାଟା ପବନ ଯିବାପାଇଁ ଏକମାତ୍ର ବାଟଥିଲା ଆଉ ସେଠାରେ ବେଶୀ ଆଲୁଅ ପଡୁନଥିଲା । ବ୍ଲକ୍‌ର ଏକନିଷ୍ଠ ଭାବେ ପଢ଼ିବା ଦେଖି ମନେ ହେଉଥିଲା ଯେ ତାକୁ ଯାହା କରିବାକୁ କୁହାଯାଉଛି ତାହା ସେ ଖୁବ୍ ବିଶ୍ୱସ୍ତ ଭାବରେ କରିଛି ।'

'ଶୁଣି ଖୁସି ହେଲି ।' ଓକିଲ କହିଲେ । 'କିନ୍ତୁ ଯାହା ପଢ଼ୁଥିଲା ତାକୁ ବୁଝୁଥିଲାନା ?' ଓକିଲ ପୁଣି ପଚାରିଲେ

ଏ କଥା ଚାଲିଥିଲା ବେଳେ ବ୍ଲକ୍‌ର ଓଠ ସବୁବେଳେ ଥରୁଥିଲା ଲେନି କି ଉତ୍ତର ଦେବ ସେହି କଥା ସେ ତା ଓଠରେ ଫୁଟାଇବାକୁ ଚେଷ୍ଟା କରୁଥିଲା ।

'ଅବଶ୍ୟ ସେକଥା ମୁଁ ଠିକ୍ କହିପାରିବନି । ତେବେ ଏତିକି ନିଶ୍ଚିତ କହିବ ଯେ ସେ ତା ପଢ଼ାରେ ବେଶ୍ ଏକନିଷ୍ଠ ଥିଲା । ସେ ଗୋଟିଏ ପୃଷ୍ଠାକୁ ଧନସାଗ୍ର ପଢିବାରେ ଲଗିଥିଲା । ଆଗକୁ ଯାଇପାରୁ ନଥିଲା । ଆଙ୍ଗୁଳି ଦେଇ ସେ ପ୍ରତ୍ୟେକ ଧାଡ଼ି ପଢ଼ୁଥିଲା । ଯେତେବେଳେ ଦେଖୁଥିଲି ସେ ଖାଲି ଦୀର୍ଘଶ୍ୱାସ ପକାଉଥିଲା ଯେମିତିକି ଏମିତି ପଢ଼ିବା ଦ୍ୱାରା ତାକୁ ବହୁତ କଷ୍ଟ ହେଉଛି । ଅବଶ୍ୟ ଆପଣ ଦେଇଥିବା କାଗଜଗୁଡ଼ିକ ବୁଝିବା ବଡ଼ କଷ୍ଟକର ।' ଲେନି କହିଲା ।

'ସତ କଥା । ସେ ଧର୍ମବାଣୀଗୁଡ଼ିକ ବୁଝିବା ବଡ଼ କଷ୍ଟ । ସେଗୁଡ଼ିକ ସେ ସେ ପ୍ରକୃତରେ ବୁଝିଛି ଏ ବିଶ୍ୱାସ ମୋର ହେଉନି । ତା କେଶ୍ ଲଢ଼ିବାକୁ ଯାଇ ମୋତେ କେତେ କଷ୍ଟ କରିବାକୁ ପଡୁଛି ସେ ବିଷୟରେ ଖାଲି ତା ମନରେ

Digitized by srujanika@gmail.com

ଗୋଟିଏ ଧାରଣା ଦେବାପାଇଁ ସେ ସବୁକୁ ପଢ଼ିବା କଥା । ତାହାପାଇଁ ମୁଁ ଏମିତି ପରିଶ୍ରମ କରୁଛି ? ବ୍ଲକ୍ ପାଇଁ ମୁଁ ଏ ପରିଶ୍ରମ କରୁଛି ; ପ୍ରକୃତରେ ଏହା ବଡ଼ ହାସ୍ୟାସ୍ପଦ କଥା । ତଥାପି ତାର ବୁଝିବା ଉଚିତ୍ ଏସବୁର ଅର୍ଥ କଅଣ । ସେ କଅଣ ଆଦୌ ବନ୍ଦ ନହୋଇ ପଢ଼ୁଥିଲା ?'

'ପ୍ରାୟ ବନ୍ଦ ନହୋଇ, ସେ କେବଳ ପିଇବାପାଇଁ ପାଣି ମାଗିଥିଲା ଆଉ ମୁଁ ଜାଳିକବାଟ ଦେଇ ତାକୁ ପାଣି ଦେଇଥିଲି । ପ୍ରାୟ ଆଠଟା ବେଳେ ତାକୁ ବାହାର କରିଆଣି କିଛି ଖାଇବାକୁ ଦେଇଥିଲି ।' ବ୍ଲକ୍ କେ' ଆଡ଼କୁ ଟିକିଏ କଣେଇ କରି ଚାହିଁଲା । ତା ବିଷୟରେ ଏପରି ଭଲ କଥା ଶୁଣି କେ' କେମିତି ବ୍ୟବହାର କରୁଛି ତା ଦେଖିବା ବୋଧହୁଏ ତାର ଉଦ୍ଦେଶ୍ୟ ଥିଲା । ତାର ଆଶା ଧୀରେ ଧୀରେ ବଢ଼ିବାକୁ ଲାଗିଲା । ତାର ଗତି ସ୍ୱଚ୍ଛନ୍ଦ ହୋଇ ଆସିଲା । ସେ ତାର ଦୁଇଆଣ୍ଠୁକୁ ପରସ୍ପର ଠାରୁ ଟିକିଏ ତଫାତ୍ କରିଦେଲା । କିନ୍ତୁ ଏହା ଲକ୍ଷ୍ୟ କରିବାର କଥା ଯେ ଓକିଲଙ୍କ ପରବର୍ତ୍ତୀ କଥା ପଦକ ପୁଣି ଥରେ ତାକୁ କାଠ କରି ଦେଲା ।

'ତୁମେ ତାର ପ୍ରଶଂସା କରୁଛ । ତୁମର ଏହି ପ୍ରଶଂସା ହିଁ ମୋତେ ସବୁ କଥା ତାକୁ କହିବା ପାଇଁ ବାଧା ସୃଷ୍ଟି କରୁଛି । ଜଜ୍‌ଙ୍କ ମତ ଯେ କୌଣସି ପ୍ରକାରେ ତାପାଇଁ ବା ତା କେସ୍ ସପକ୍ଷରେ ନୁହେଁ ଏ କଥା ମୁଁ ତାକୁ କହି ପାରୁନି ।' ଓକିଲ କହିଲେ ।

'ତା ସପକ୍ଷରେ ନୁହେଁ ? ଏହା କେମିତି ସମ୍ଭବ ହେଲା ?' ଲେନି ପଚାରିଲା । ବ୍ଲକ୍ ଏକଲୟରେ ଲେନିକୁ ଚାହିଁଲା । ତାର ବିଶ୍ୱାସ ଥିଲା ଯେମିତି କି ଏହି ଲେନି ଜଜ୍‌ଙ୍କ କଥାର ମୋଡ଼କୁ ତା ସପକ୍ଷରେ ବୁଲାଇ ଦେଇ ପାରିବ ।'

'ଜମା ସପକ୍ଷରେ ନୁହେଁ । ଏମିତିକି ଯେତେବେଳେ ମୁଁ ବ୍ଲକ୍ କଥା କହିଲି ସେ ରାଗିଗଲେ । ଆଉ କହିଲେ—

'ବ୍ଲକ୍ କଥା ମୋତେ କୁହନାହିଁ ।'

'କିନ୍ତୁ ସେ ଯେ ମୋର ମକ୍କେଲ ।' ମୁଁ କହିଲି । 'ତୁମେ ସେ ଲୋକଟି ପାଇଁ ନିଜର କ୍ଷତି କରୁଛ ।' ଜଜ୍ କହିଲେ । 'ତା ମକଦ୍ଦମା ଏତେ ଖରାପ ବୋଲିତ ମୁଁ ଭାବୁନି ।' ମୁଁ କହିଲି । 'ବ୍ଲକ୍ ତ ତା ମକଦ୍ଦମାରେ ବେଶ୍ ସଚ୍ଚୋଟ ଭାବେ ଜଡ଼ିତ । ସେଥିପାଇଁ ସବୁବେଳେ ବେଶ୍ ଲାଗିଛି ମଧ୍ୟ । ତା କେସ୍ କେତେ-ଦୂର ଅଗେଇଲା ସେ କଥା ଜାଣିବାପାଇଁ ସେ ପ୍ରାୟ ମୋ ଘରେ ରହୁଛି । ଏପରି ଉତ୍ସାହ ସାଧାରଣତଃ ଦେଖିବାକୁ ମିଳେ ନାହିଁ । ଅବଶ୍ୟ ବ୍ୟକ୍ତିଗତ ଭାବରେ ସେ ବଡ଼ ଆକର୍ଷଣୀୟ । ତାର ବ୍ୟବହାର ବଡ଼ ଖରାପ । ପୁଣି ସେ ଭାରି ଅପରିଷ୍କାର । କିନ୍ତୁ ସିଏତ ଜଣେ ମକ୍କେଲ । ତାକୁ ଗାଳି ଦେଇ ହେବ ନାହିଁ ।'

Digitized by srujanika@gmail.com

'ତାକୁ ଗାଳି ଦେଇ ହେବ ନାହିଁ । ହଁ ଏଇକଥା ମୁଁ ଜାଣିଶୁଣି ଟିକଏ ଅତିରଞ୍ଜିତ କରିବା ପାଇଁ କହିଲି । ମୋର ଏକଥାରେ ସେ କହିଲେ 'କ୍ଲାର୍କ୍ ବେଶ୍ ଚତୁର । ତାର ବହୁତ ଅନୁଭୂତି ବି ହେଲାଣି । ସେ ଜାଣେ ବିପକ୍ଷଟିକୁ କେମିତି ଦୁଆଇ ନେବାକୁ ହୁଏ । କିନ୍ତୁ ତାର ଅଜ୍ଞତା ତାର ଚତୁରତା ଠାରୁ ଆହୁରି ଅଧିକ । ସେ ଯଦି ଶୁଣେ ଯେ ତାର ମକଦ୍ଦମା ଏବେବି ଆରମ୍ଭ ହେବାର ଘଣ୍ଟି ବାଜିବାକୁ ଆହୁରି ବିଳମ୍ବ ଅଛି ତେବେ ସେ କ'ଣ କହିବ ସେ ବିଷୟରେ ତୁମେ କ'ଣ ଭାବୁଛ ?' 'କ୍ଲାର୍କ୍ ଶାନ୍ତ ହୁଅ' ଓକିଲ କହିଲେ । କାରଣ ଏସବୁ ଶୁଣି ବୋଧହୁଏ କିଛି କହିବାକୁ ଥରଥର ଗୋଡ଼ରେ କ୍ଲର୍କ୍ ଉଠିବାକୁ ଚେଷ୍ଟା କରୁଥିଲା । ଏହାହିଁ ପ୍ରଥମଥର ଯେତେବେଳେ ଓକିଲ ସିଧା ସଳଖ କ୍ଲର୍କ୍ ସହ କଥା କହିଲେ । ତାଙ୍କ ସ୍ୱହାଣି କିଛିଟା ଅନିର୍ଦ୍ଦିଷ୍ଟ ଏବଂ ତାହା କିଛିଟା କ୍ଲର୍କ୍ ଉପରେ ଆବଦ୍ଧ ଯିଏକି ସେତେବେଳକୁ ପୁଣିଥରେ ଆଣ୍ଠେଇ ପଡ଼ିଥାଏ । 'ଜଜ୍ଙ୍କର ଏପରି ମତରେ ତୁମ ପାଖରେ କିଛି ଅର୍ଥ ନାହିଁ ।' ଓକିଲ କହିଲେ । ପ୍ରତ୍ୟେକ କଥାରେ ତୁମେ ଡରି ଯାଅନାହିଁ ତୁମେ ଯଦି ଏମିତି ଡରିଯିବ ତେବେ ମୁଁ ତୁମକୁ ଆଉ କେବେ କିଛି କହିବି ନାହିଁ । ମୁଁ ତ ଦେଖୁଛି କୌଣସି କଥା ଆରମ୍ଭ କରି ପାରିବିନି । କାରଣ କିଛିକଥା ଆରମ୍ଭ କଲେ ତୁମେ ମୋତେ ଚହୁଁଚ ଯେମିତିକି ତୁମ ସମ୍ପର୍କରେ ମୁଁ ଶେଷକଥା କହୁଛି । ମୋ' ମହକିଲ ଆଗରେ ସେପରି ବ୍ୟବହାର ପାଇଁ ତୁମର ଲଜ୍ଜିତ ହେବା ଉଚିତ । ତୁମେ ମୋ' ଉପରୁ ତାଙ୍କ ବିଶ୍ୱାସକୁ ନଷ୍ଟ କରିଦେଉଛ । ତୁମର କ'ଣ ହୋଇଛି ? ତୁମେ ଏବେବି ବଞ୍ଚିଛ । ଏବେ ବି ମୋର ହେପାଜତରେ ରହିଚ । ତୁମର ଏ ଭୟ ଅର୍ଥହୀନ । ତୁମେ ହୁଏତ କେଉଁଠୁ ପଢ଼ିଛ ଯେ ମଣିଷର ମୃତ୍ୟୁ ଆଶାତୀତ ଭାବେ ଅଜ୍ଞାତ ଲୋକଠାରୁ ଅପ-ମୟରେ ଆସିଥାଏ । ଏପରି ଭାବନାରେ କିଛିଟା ସତ୍ୟ ଥିଲେ ମଧ୍ୟ ଏହାର ବ୍ୟତିକ୍ରମ ମଧ୍ୟ ଅନେକ ଅଛି । ତୁମର ଏପରି ଭୟ ମୋତେ ବିରକ୍ତ କରିବା ସଙ୍ଗେ ସଙ୍ଗେ ସୂଚାଇ ଦେଉଛି ଯେ ମୋ' ଉପରେ ତୁମର ଆସ୍ଥା ଆଉ ବିଶ୍ୱାସ ନାହିଁ । ଜଜ୍ ଦେଇଥିବା ଗୋଟିଏ ମତକୁ ତୁମ ପାଖରେ କହିଲି । ତୁମେ ଜାଣ ଯେ ଏସବୁ କ୍ଷେତ୍ରରେ ମତ ପାର୍ଥକ୍ୟ ଏତେ ବେଶୀ ହୁଏ ଯେ ତାକୁ ବୁଝି ଅର୍ଥ କରିବା ଅସମ୍ଭବ । ଉଦାହରଣ ସ୍ୱରୂପ ନିଆଯାଇପାରେ ଯେ ଉପରୋକ୍ତ ଜଜ୍ ଧରି ନେଇଛନ୍ତି ଯେ ବିଚାରର କାମ ଗୋଟିଏ ନିର୍ଦ୍ଦିଷ୍ଟ ବିନ୍ଦୁରେ ଆରମ୍ଭ ହୁଏ ଆଉ ମୁଁ ଧରି ନେଇଛି ଏହା ଆଉ ଗୋଟିଏ ବିନ୍ଦୁରୁ ଆରମ୍ଭ ହୋଇଥାଏ । ଏହା କେବଳ ମତ ପାର୍ଥକ୍ୟ ଅଧିକ କିଛି ନୁହେଁ । ପୁରୁଣା ପ୍ରଥା ଅନୁସାରେ ବିଚାରର ଗୋଟିଏ ପର୍ଯ୍ୟାୟରେ ଘଣ୍ଟାଟିଏ ନିଶ୍ଚୟ ବାଜିବ । ଜଜ୍ଙ୍କ ମତରେ ତା' ହେଉଛି ବିଚାରର ଆରମ୍ଭ । ତାଙ୍କ ବିରୁଦ୍ଧରେ ଥିବା ଯୁକ୍ତି ସବୁକୁ ମୁଁ ବର୍ତ୍ତମାନ ତୁମକୁ କହିପାରୁନ

Digitized by srujanika@gmail.com

ତୁମେ ସେସବୁ ବୁଝି ପାରିବନି । ଏତିକି ଜାଣିଲେ ତୁମର ଯଥେଷ୍ଟ ହେବ ଯେ ତାଙ୍କ ମତ ବିରୁଦ୍ଧରେ ଅନେକ ଯୁକ୍ତି ଅଛି ।' ଅପ୍ରତିଭ ହୋଇ ବ୍ଲକ୍ ବିଛଣା ପାଖରେ ପଡ଼ିଥିବା କମ୍ବଳଟିରୁ ବାଳସବୁ ଉପାଡ଼ିବାକୁ ଲାଗିଲା । ନିଜଙ୍କ କଥାରେ ସେ ଏତେ ବେଶୀ ଡୁବି ଯାଇଥିଲା ଯେ ଓକିଲଙ୍କ ପ୍ରତି ତାର ବଶ୍ୟତାକୁ କ୍ଷଣକେ ପାଇଁ ଭୁଲି ଯାଇଥିଲା । ସେ କେବଳ ନିଜକଥା ହିଁ ଭାବୁଥିଲା । ଓକିଲଙ୍କ କଥାକୁ ଏପାଖ ସେପାଖ କରି ସବୁ ଦିଗରୁ ବିଚାର କରିବାକୁ ଲାଗିଥିଲା ।

'ବ୍ଲକ୍' ସତର୍କ କରିବା ଗଳାରେ ଲେନି କହି ଉଠିଲା ଆଉ ତା କଲର୍ ଧରି ଉପରକୁ ଟିକିଏ ଝିଙ୍କି ଦେଲା ।

'କମ୍ବଳକୁ ରଖି ଓକିଲ କଅଣ କହୁଛନ୍ତି ଶୁଣ ।'

କେ' କିନ୍ତୁ ଗୋଟିଏ କଥା ବୁଝିପାରିଲାନି । ଓକିଲ କେମିତି କଳ୍ପନା କରିପାରିଲେ ଯେ ଏପରି ବ୍ୟବହାର ତାଙ୍କୁ ପ୍ରବର୍ତ୍ତାଇ ପାରିବ, ତାଙ୍କୁ ନିଜ ପକ୍ଷକୁ ଆଣିପାରିବ । ବର୍ତ୍ତମାନ ପୁଣି ଓକିଲ ଯଦି ତାଙ୍କୁ ଦୂରେଇ ଦେବାରେ, ପର କରି ଦେବାରେ ସଫଳ ହୋଇନାହାନ୍ତି ତେବେ ଆଜିର ଏଇ ଘଟଣା, ତାଙ୍କୁ ସବୁଦିନ ପାଇଁ ଶେଷ କରିଦେବ, ତାଙ୍କ ସଂପର୍କରେ ଯବନିକା ଟାଣିଦେବ ।



Digitized by srujanika@gmail.com

## ନବମ ପରିଚ୍ଛେଦ

# ଗୀର୍ଜାରେ

ତାର ଜଣେ ଇଟାଲୀୟ ସହକର୍ମୀ ସେ ସହରକୁ ପ୍ରଥମ କରି ବୁଲି ଆସି ଥାଆନ୍ତି । ତାଙ୍କର ଏଭଳି କିଛି ଲୋକ ବା ଅନୁଷ୍ଠାନ ସହିତ ସମ୍ପର୍କ ଥାଏ ଯେଉଁଥି-ପାଇଁ ତାହା ବ୍ୟାଙ୍କର ଦୃଷ୍ଟିରେ ସେ ଜଣେ ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତି । ପ୍ରସିଦ୍ଧ ଐତିହାସିକ ସ୍ଥିତିର ନିଦର୍ଶନ ଓ କଳା ସମ୍ପଦ ବୁଲାଇ ଦେଖାଇବା କେ'ର ଦାୟିତ୍ୱ ଥିଲା । ଅନ୍ୟ କେତେବେଳେ ହୋଇଥିଲେ ଏ ପ୍ରକାର ଦାୟିତ୍ୱ ପାଇଁ କେ' ନିଜକୁ ସମ୍ମାନିତ ମନେ କରିଥାନ୍ତା । ମାତ୍ର ବର୍ତ୍ତମାନର ପରିସ୍ଥିତି ତା' ପାଇଁ ଭିନ୍ନ । ବର୍ତ୍ତମାନ ତାର ସମସ୍ତ ଶକ୍ତି ବ୍ୟାଙ୍କରେ ନିଜର ସମ୍ମାନକୁ ଅକ୍ଷୁଣ୍ଣ ରଖିବା ପାଇଁ କାର୍ଯ୍ୟରେ ଲଗିବା ଲାଗି ପ୍ରୟୋଜନ । ତେଣୁ ସେ ଏ କାମକୁ ବଡ଼ ଅନିଚ୍ଛା ସହକାରେ ଗ୍ରହଣ କଲା, ବ୍ୟାଙ୍କ ବାହାରେ କଟାଉଥିବା ପ୍ରତି ଘଣ୍ଟା ତାକୁ ଦୁର୍ବିସହ ଲାଗୁଥାଏ । ସତ କହିବାକୁ ଗଲେ ଆଗେ ଯେମିତି ସେ ତାର ଅଫିସ ସମୟତକ ପ୍ରକୃତ କାମରେ ଲଗାଇ ପାରୁଥିଲା ଏବେ ଆଉ ସେମିତି ପାରୁନଥିଲା । ଆଜିକାଲି କେବଳ କାମ କରିବା ବାହାନାରେ ସେ ଅନେକ ସମୟ ନଷ୍ଟ କରୁଥିଲା କିନ୍ତୁ ସେଇଥିପାଇଁ ସେ ତା ଟେବୁଲରେ ନଥିଲା ବେଳେ ତା ମନରେ ଅବଶ୍ୟ ଦୁଶ୍ଚିନ୍ତା ହେଉଥିଲା । ମନେ ମନେ ସେ ଦେଖୁଥିଲା ଯେ ତାର ଉପର ହାକିମ ଡେପୁଟି ମ୍ୟାନେଜର ଯେ ସବୁବେଳେ ତାର ଛିଦ୍ର ଉଣ୍ଡୁଥାଏ ସେ ଧଡ଼ ଧଡ଼କେ ତା ଅଫିସ ଭିତରକୁ ପଶି ଆସୁଛି । ତା ଡେକ୍‌ସ ପାଖେ ବସି ପଡ଼ୁଛି, ତା କାଗଜପତ୍ର ତରତର କରି ପଢ଼ି ଯାଉଛି । ବ୍ୟାଙ୍କ ସହିତ ଯେଉଁମାନଙ୍କର କାରବାର ଥାଏ । ଯେପରି ଯେଉଁମାନେ ବହୁଦିନର ସମ୍ବନ୍ଧ ଫଳରେ ତାର ପ୍ରାୟ ପୁରୁଣା ବନ୍ଧୁ ହୋଇ ଯାଇଥିଲେ ସେମାନେ ଆସିଲେ ତାଙ୍କୁ ଅଭ୍ୟର୍ଥନା ଜଣାଉଛି, ତାଙ୍କୁ ତାର ବିରୋଧୀ କରାଇ ଦେଉଛି, ହୁଏତ ସେ କି କି ଭୁଲ୍ କରି ଦେଇଥିଲା ତାଙ୍କୁ ସବୁ ଖୋଳି ତାଡ଼ି ବାହାର କରୁଛି— କାରଣ କେ'କୁ ଲାଗିଲାଣି ଯେ ବୁଢ଼ାଟା ତା' କାମ

Digitized by srujanika@gmail.com

କାମ ଭିତରକୁ ନାନା ଯୁକ୍ତି କୁଆଡୁ କୁଆଡୁ ଆସି ପଶି ଯାଉଛି ଓ ତାକୁ ସେ ରୋକି ପାରୁ ନାହିଁ । ତେଣୁ ଯେତେବେଳେ ତାକୁ ଏହିପରି କିଛି ଅଲଗା କାମ ଦିଆଯାଉଛି ଯାହା ପାଇଁ ତାକୁ ଅଫିସ ଛାଡ଼ିବାକୁ ପଡ଼ିବ ତେବେ ସେ କାମ ଯେତେ ସମ୍ମାନଜନକ ହେଲେ ମଧ୍ୟ ତାକୁ ଗ୍ରହଣ କରିବାକୁ ସେ ଟିକିଏ ପଛୁଇଯାଉଛି । ତା ମନରେ କାହିଁକି କେଜାଣି ସନ୍ଦେହ ଆସୁଛି ।

ପୁଣି ଆଜିକାଲି ତାକୁ ବାରମ୍ବାର ବାହାରକୁ ଯିବାକୁ ପଡ଼ୁଥିବାରୁ ଏପରି ସନ୍ଦେହ ତା' ମନରେ ବେଶୀ ଘନୀଭୂତ ହେଉଛି । ସେ ସନ୍ଦେହ କରୁଛି ଯେ ତା' ବିରୁଦ୍ଧରେ ଗୋଟିଏ ଷଡ଼ଯନ୍ତ୍ର ଚାଲିଛି । ତା' କାମକୁ ତନଖି କରିବା ପାଇଁ ବିଭିନ୍ନ ଛଳ ଦେଖାଇ ତାକୁ ଅଫିସ ବାହାରକୁ ପଠାଇ ଦିଆହେଉଛି କିମ୍ବା ଅଫିସରେ ତା' ଉପସ୍ଥିତି ଯେ ଏକାନ୍ତ ପ୍ରୟୋଜନୀୟ ନୁହେଁ ଏପରି ଧାରଣା ସୃଷ୍ଟି କରା ହେଉଛି । ଏସବୁ ବାହାରିଆ କାମକୁ ସେ ଖୁସିରେ ମନା କରି ଦେଇପାରନ୍ତା ମାତ୍ର ସେପରି କରିବାକୁ ସେ ସାହସ କରି ପାରିନାହିଁ । ତାର ଏପରି ସନ୍ଦେହ ପାଇଁ ଯଦି ସାମାନ୍ୟତମ କାରଣ ଥା'ନ୍ତା ତେବେ ତାର ଯିବାକୁ ମନା କରିଦେବା ଉଚିତ ବୋଲି ଗୃହୀତ ହୁଅନ୍ତା ତାକୁ ସମସ୍ତେ ଡରୁଆ ବୋଲି ଭାବନ୍ତେ । ସେଇଥିପାଇଁ ଖାଲି ବାହାରକୁ ଦେଖାଇବା ଉଦ୍ଦେଶ୍ୟରେ ସେ ଧୀର ସ୍ଥିର ଭାବରେ ସବୁ କାମକୁ ଗ୍ରହଣ କରିନେଉଛି । ଏମିତିକି ତାକୁ ଭୀଷଣ ଥଣ୍ଡା ଧରିଥିଲା ବେଳେ ମଧ୍ୟ ସେ କ୍ଳାନ୍ତିକର ଦୁଇଦିନିଆ ଯାତ୍ରା କରିଛି । ଶରତ୍ ଋତୁର ଥଣ୍ଡା ଓଦାଳିଆ ପାଗର ଛଳ ଦେଖାଇ ମନା କରି ନାହିଁ । ଏହି କ୍ଳାନ୍ତିକର ଯାତ୍ରା ସାରି ଦୁଇଦିନ ପରେ ଭୀଷଣ ମୁଣ୍ଡ ବ୍ୟଥା ଧରି ଯେତେବେଳେ ଫେରିଲା ସେ ଦେଖିଲା ଯେ ଇଟାଲୀୟ ଦର୍ଶକର ସାଥୀ ହିସାବରେ ପୁଣି ତାକୁ ହିଁ ବଛା ହୋଇଛି । ସାଙ୍ଗେ ସାଙ୍ଗେ ପରଦିନ ସେ ଲୋକଙ୍କ ସହ ବାହାରିବାକୁ ପଡ଼ିବ । ତା' ବିରୁଦ୍ଧରେ ହୋଇଥିବା ଅଭିଯୋଗ ତା ସ୍ୱକଳ୍ପ ସନ୍ତାନ୍ତ୍ରୀସ୍ୱ ହୋଇ ନଥିବାରୁ ଏପରି କାମକୁ ମନା କରି ଦେବାର ଇଚ୍ଛା ପ୍ରବଳ ହେଉଥିଲେ ମଧ୍ୟ ବିଦେଶୀ ସହକର୍ମୀ ପ୍ରତି ଏକ ସାମାଜିକ ଦାୟିତ୍ୱ ଦୃଷ୍ଟିରୁ ଏବଂ ନିସନ୍ଦେହରେ ଏହା ଦରକାରୀ ହୋଇଥିବାରୁ ସେ ମନା କଲା ନାହିଁ । କିନ୍ତୁ ନିଜସ୍ୱାର୍ଥ ପାଇଁ ଏପରି କାମର କିଛି ଦରକାର ନଥିଲା । ସେ ଠିକ୍ ଜାଣିଥିଲା ଯେ ଭଲ ଭାବରେ କାମ କରିବା ବ୍ୟତୀତ ତାକୁ ଆଉ କେହି ରକ୍ଷା କରିପାରିବେ ନାହିଁ । କାମ ନ କଲେ ତାର କିଛି ଲାଭ ବି ହେବ ନାହିଁ । ବିଶେଷତଃ ଆଜିର କାମରେ ତାର ପ୍ରୟୋଜନ ବେଶୀ କାରଣ ଇଟାଲୀୟମାନେ ତାକୁ ଗାଇଡ୍ ହିସାବରେ ଖୁବ୍ ବେଶୀ ପସନ୍ଦ କରନ୍ତି । ତା କାମରୁ ଦିନକ ପାଇଁ ଦୂରେଇ ଯିବାକୁ ମଧ୍ୟ ସେ ଇଚ୍ଛା କରୁଥିଲା । କାରଣ ତାର ଖୁବ୍ ଭୟ ହେଉଥିଲା ଯେ ଥରେ

Digitized by srujanika@gmail.com

ଦୂରକୁ ଚାଲିଗଲେ ହୁଏତ ତାକୁ ଆଉ ଫେରିବାକୁ ଦିଆଯିବ ନାହିଁ । ସିଏ ଜାଣେ ଏପରି ଭୟ ଅତିରଞ୍ଜିତ ତଥାପି ଏ ଭୟ ତାକୁ ଟଳଟଳ କରି ଜର୍ଜରିତ କରୁଥିଲା । ଏପରି ପରିସ୍ଥିତିରେ ଗ୍ରହଣଯୋଗ୍ୟ ଗୋଟିଏ କାରଣ ଖୋଜି ବାହାର କରିବା ତା ପକ୍ଷରେ କଷ୍ଟକର । ଇଟାଲୀୟ ଭାଷାରେ ତାର ଜ୍ଞାନ ନିଶ୍ଚିତ ଭାବରେ ଖୁବ୍ ବେଶୀ ନହେଲେ ମଧ୍ୟ ଅନ୍ତତ ପକ୍ଷେ ଚଳନୀୟ । ପୁଣି ତା' ସପକ୍ଷରେ ବଳିଷ୍ଠ ଯୁକ୍ତି ହେଲା ଯେ କଳା ସମ୍ପର୍କରେ ତାର ସମ୍ୟକ୍ ଧାରଣା ଅଛି । ଅବଶ୍ୟ ଏପରି ଧାରଣା ଉଦ୍‌ଭଟ ଭାବରେ ଅତିରଞ୍ଜିତ । ବ୍ୟାଙ୍କରେ ଏପରି ଧାରଣା ହେବାର ଗୋଟିଏ କାରଣ ଅଛି । ପୁରାତନ କଳାକୃତିକୁ ରକ୍ଷା କରିବା ଉଦ୍ଦେଶ୍ୟରେ ପ୍ରତିଷ୍ଠିତ ଅନୁଷ୍ଠାନର ସେ ଜଣେ ମେମ୍ବର ହୋଇଥିଲା । ଅବଶ୍ୟ ଏପରି ମେମ୍ବର ସେ ହୋଇଥିଲା ସମ୍ପୂର୍ଣ୍ଣ ବ୍ୟବସାୟ ଦୃଷ୍ଟିରୁ । ତଥାପି ଏହି ମେମ୍ବର ହେବା ଏପରି ଧାରଣା ସୃଷ୍ଟି କରିଛି । ସ୍ୱିଟଜରଲାଣ୍ଡ ଗୁଜବ ଯେ ଇଟାଲୀୟ ଲୋକଟି କଳାର ଜଣେ ଚିହ୍ନାର ଗରାଖ । ତେଣୁ ତାର ସହଯୋଗୀ ହିସାବରେ କେ'କୁ ବାଛିବା ନିହାତି ଯୁକ୍ତିଯୁକ୍ତ ।

ସେଦିନ ସକାଳେ ଝିପି ବର୍ଷା ହେଉଥାଏ, ଜୋରରେ ପବନ ବହୁଥାଏ । କେ' ଅଫିସ୍‌ରେ ପହଞ୍ଚିଲା ବେଳକୁ ସକାଳ ସାତଟା । ଦିନର କାର୍ଯ୍ୟସୂଚୀ ଦେଖି ତା ମନ ବିରକ୍ତିରେ ଭରିଯାଇଥିଲା । ତଥାପି ଆଗନ୍ତୁକ ଆସି ତା କାମରେ ବାଧା ସୃଷ୍ଟି କରିବା ଆଗରୁ ଅନ୍ତତଃ କିଛି କାମ ସାରିଦେବାକୁ ସେ ବଦ୍ଧପରିକର ହୋଇଥିଲା । ସକାଳେ ସେ ଖୁବ୍ କ୍ଳାନ୍ତ ହୋଇ ପଡ଼ିଥିଲା । କାରଣ ଆଗଦିନ ରାତି ଅଧଯାଏ ସେ ସାମାନ୍ୟ ପ୍ରସ୍ତୁତି ପାଇଁ ଇଟାଲୀୟ ବ୍ୟାକରଣ ପଢ଼ିବାରେ କଟାଇ ଥିଲା । ଆଜିକାଲି ଝରକା ପ୍ରତି କେ'ର ଆକର୍ଷଣ ବଢ଼ିଯାଇଛି । ଟେବୁଲ୍ ଅପେକ୍ଷା ସେ ଅଧିକ ସମୟ ଝରକା ପାଖରେ କଟାଇବାକୁ ପସନ୍ଦ କରୁଛି । କିନ୍ତୁ ଆଜି ସେ ଲୋଭକୁ ସମ୍ବରଣ କରି କେ' ଟେବୁଲ ପାଖରେ କାମ କରିବାକୁ ବସିଲା । ଦୁର୍ଭାଗ୍ୟ-ବଶତଃ ଠିକ୍ ସେହି ସମୟରେ ପିଅନ ଆସି କହିଲା ଯେ ହେଡ୍‌କ୍ଳର୍କ ଅଫିସ୍‌ରେ ଅଛନ୍ତି କି ନାହିଁ ଦେଖିବାକୁ ମ୍ୟାନେଜର୍ ତାକୁ ପଠାଇଛନ୍ତି ଏବଂ ଯଦି ସେ ଥା'ନ୍ତି ତେବେ ତାଙ୍କୁ ବୈଠକଖାନାକୁ ଆସିବାପାଇଁ ଅନୁରୋଧ କରିଛନ୍ତି । କାରଣ ଇଟାଲୀୟ ଭଦ୍ରଲୋକ ଆସିସାରିଲେଣି ।

'ଅଚ୍ଛା' ଏତିକି କହି କେ' ଗୋଟିଏ ଛୋଟ ଅଭିଧାନ ତା ପକେଟ୍‌ରେ ରଖିଲା । ଦର୍ଶକମାନଙ୍କ ପାଇଁ ଦର୍ଶନୀୟ ସ୍ଥାନମାନଙ୍କର ଗୋଟିଏ ଆଲ୍‌ବମ୍ କାଖ ତଳେ ଜାକିଲା । ବାହାର ଲୋକଙ୍କୁ ଦେଖାଇବା ପାଇଁ ନିଜର ପ୍ରସ୍ତୁତି ସ୍ୱରୂପ ଏ ସବୁକୁ ସେ ପୂର୍ବରୁ ଯୋଗାଡ଼ କରିଥିଲା । ଡେପୁଟି ମ୍ୟାନେଜରଙ୍କ ଅଫିସ୍ ଦେଇ

Digitized by srujanika@gmail.com

ମ୍ୟାନେଜରଙ୍କ କୋଠରୀ ଭିତରକୁ ଗଲା । ସେ ଖୁସି ହେଲା ଯେ ଆଜି ସେ ଖୁବ୍ ସହଳ ସହଳ ଚାଲିଆସିଛି । କାରଣ ଖୋଜିଲାମାତ୍ରେ ସେ ଠିକ୍ ଜାଗାରେ ପହଞ୍ଚି ପାରିଛି । ସେ ଏମିତି କରିପାରିବ ବୋଲି କେହି ଭାବିପାରିନଥିବେ । ଆସିଷ୍ଟାଣ୍ଟ୍ ମ୍ୟାନେଜର ଅଫିସ୍ ଅବଶ୍ୟ ଦାନ୍ତ ଅଧରେ ଯେମିତି ଫାଙ୍କା ପଡ଼ିଥାଏ ସେମିତି ଫାଙ୍କା ପଡ଼ିଥିଲା । ହୁଏତ ତାଙ୍କୁ ଡାକିବାପାଇଁ ପିଅନକୁ କୁହା ହୋଇଥିବ ମାତ୍ର ଫଳ କିଛି ହୋଇନଥିବ । କେ' ଯେତେବେଳେ ବୈଠକଖାନାରେ ପଶିଲା ଦୁଇ ଜଣ ଭଦ୍ରଲୋକ ଆରାମ୍ ଚୌକିରୁ ଉଠି ଠିଆ ହୋଇପଡ଼ିଲେ । କେ'କୁ ଦେଖି ମ୍ୟାନେଜର ସାମାନ୍ୟ ହସିଲେ । ତାକୁ ଦେଖି ମ୍ୟାନେଜର ନିଶ୍ଚିତ ଭାବେ ଖୁସି ହୋଇଯାଇଥିଲେ ଏବଂ ସଙ୍ଗେ ସଙ୍ଗେ ଆଗନ୍ତୁକଙ୍କ ସହ ପରିଚୟ କରାଇ ଦେଲେ । ଇଟାଲୀୟ ଭଦ୍ରଲୋକ କେ' ସହ କରମର୍ଦ୍ଦନ କରି ହସିହସି କହିଲେ ଯେ ଜଣେ ବ୍ୟକ୍ତି ଖୁବ୍ ଶୀଘ୍ର ଉଠନ୍ତି । କାହାକୁ ଲକ୍ଷ୍ୟ କରି ଭଦ୍ରଲୋକ ଏକଥା କହିଲେ କେ' ଠିକ୍ ଧରି ପାରିଲାନି । କାରଣ ତାଙ୍କ ଭାଷା ତାକୁ ବଡ ନୂଆ ନୂଆ ଲାଗିଲା ଏବଂ ତାଙ୍କ କଥାର ଠିକ୍ ଅର୍ଥ ସହଜରେ ତା ମନକୁ ଆସିଲାନି । ସେ ବଡ ସହଜ ଭାଷାରେ ପ୍ରଶ୍ନର କିଛିଟା ଉତ୍ତର ଦେଲା ଯାହାକୁ ଇଟାଲୀୟ ଲୋକଟି ହସହସି ଗ୍ରହଣ କଲେ । ଏପରି କଥାବାର୍ତ୍ତା ବେଳେ ସେ ତାର କପରିଆ ବାଦୁଆ ନିଶକୁ ଶାଉଁଳିବାରେ ଲାଗିଲା । ସେ ନିଶରେ ନିଶ୍ଚିତ ଭାବରେ ଅତର ଦିଆ ହୋଇଥିଲା । ଏବଂ ସେ ଅତରର ବାସ୍ନା ଏମିତିଯେ ଜଣେ ପାଖକୁ ଯାଇ ସେ ବାସ୍ନା ଶୁଙ୍ଘିବାକୁ ନିଶ୍ଚୟ ଲୋଭ କରିବ ।

ସମସ୍ତେ ନିଜ ନିଜ ଜାଗାରେ ବସିଗଲାପରେ ଆଲୋଚନା ଆରମ୍ଭ ହେଲା । ଆଲୋଚନାର ଆରମ୍ଭରୁ ହିଁ କେ'ର ମନ ଭାଙ୍ଗିଗଲା କାରଣ ସେ ଦେଖିଲା ଯେ ଇଟାଲୀୟ ଲୋକଟି ଯାହାକହୁଛି ତାର କେବଳ ସାମାନ୍ୟ ଅଂଶ ସେ ବୁଝିପାରୁଛି । ଲୋକଟି ଧୀରେ ଧୀରେ କହିଲାବେଳେ କେ' ତାର ପ୍ରତ୍ୟେକ କଥା କିଛି ବୁଝି ପାରୁଛି । ମାତ୍ର ସେପରି ଧୀରେ ଧୀରେ ସେ ଆଦୌ କହୁନାହାନ୍ତି । ତା ମୁହଁରୁ ଶବ୍ଦ ସବୁ ଅନର୍ଗଳ ସୁଅପରି ଛୁଟିଚାଲିଛି ଏବଂ ଏପରି ଗଡାଗଡ କହିଲା ବେଳେ ସେ କେତେ ପ୍ରକାର ଭାବଭଙ୍ଗୀ କରି ଚାଲିଛନ୍ତି । ଯେମିତି ମନେ ହେଉଛି ଏପରି ତରତର କହିବାରେ ତାଙ୍କର ଖୁବ୍ ଆନନ୍ଦ । ପୁଣି ଏପରି କଥାବାର୍ତ୍ତା ଚାଲିଥିଲା ବେଳେ ସେ ପ୍ରାୟ ସ୍ଥାନୀୟ ଭାଷା ବ୍ୟବହାର କରୁଛନ୍ତି ଯାହାର ବିନ୍ଦୁବିସର୍ଗ କେ' ଧରିପାରୁ ନଥାଏ । ସେ ଭାଷା ତାକୁ ଇଟାଲୀୟ ପରି ଆଦୌ ଜଣା ପଡୁନଥାଏ ଅଥଚ ମ୍ୟାନେଜର ବେଶ୍ ଭଲଭାବରେ ତାକୁ ବୁଝିପାରୁଥାଆନ୍ତି ଏବଂ କହି ମଧ୍ୟ ପାରୁଥା'ନ୍ତି । କେ' ବୁଝିପାରିଲା ଯେ ଆଗନ୍ତୁକ ଭଦ୍ରବ୍ୟକ୍ତି ଜଣକ ଇଟାଲୀର ଦକ୍ଷିଣରୁ ଆସିଛନ୍ତି । ଯେଉଁଠିକି ତାଙ୍କ ମ୍ୟାନେଜର ଅନେକ ବର୍ଷ କଟାଇଥିଲେ ।

Digitized by srujanika@gmail.com

ଯା'ହେଉ ଶେଷରେ କେ' ଅନୁଭବ କଲା ଯେ ଭଦ୍ରଲୋକଙ୍କ ସହ କଥାବାର୍ତ୍ତା କରି ଭାବର ଆଦାନ ପ୍ରଦାନ କରିବା ଅସମ୍ଭବ । କାରଣ ଭଦ୍ରବ୍ୟକ୍ତିଙ୍କ ଫରାସୀ ଭାଷା ଅତ୍ୟନ୍ତ ତ୍ରୁଟିପୂର୍ଣ୍ଣ । ପୁଣି ତାଙ୍କ ମୁହଁ ବାଘୁଆ ନିଶ ଦ୍ୱାରା ଢ଼ାଙ୍କି ରହିଥିବାରୁ ତାଙ୍କ ଓଠ ଚାଳନାରୁ ଅର୍ଥ ଖୋଜିବା ମଧ୍ୟ ଦୁରୂହ ବ୍ୟାପାର । ତେଣୁ କେ'ଙ୍କୁ ଖୁବ୍ ବିରକ୍ତ ଲାଗିଲା । ସେ ଭଦ୍ରବ୍ୟକ୍ତିଙ୍କ କଥାବାର୍ତ୍ତା ବୁଝିବାକୁ ଆଦୌ ଚେଷ୍ଟା କରୁ-ନାହିଁ । ଯେତେବେଳେ ନିଜେ ଅଛନ୍ତି ଏବଂ ସେ ଭଦ୍ରବ୍ୟକ୍ତିଙ୍କ ସବୁକଥା ବୁଝି ପାରୁଛନ୍ତି ସେତେବେଳେ କେ' ପାଖରେ ତାଙ୍କ ବୁଝିବାପାଇଁ ଚେଷ୍ଟା କରିବା ଅଯଥା ପରିଶ୍ରମ । ସେ ଖାଲି ଉଦାସ ଦୃଷ୍ଟିରେ ଦେଖୁଥାଏ କେମିତି ସେ ଭଦ୍ରବ୍ୟକ୍ତି ଆରାମରେ ଚୌକିରେ ବସି ତାଙ୍କ ଶ୍ରେଷ୍ଠ ଫଟେଇର ଗୋଟିଏ କୋଣକୁ ହାତରେ ମୋଡୁଥା'ନ୍ତି ଏବଂ ହାତକୁ ଟେକି ବେଳେବେଳେ କଅଣ ସବୁ ବୁଝାଇବାର ଭଙ୍ଗି କରୁଥା'ନ୍ତି । ସେସବୁ ବୁଝିବା କେ' ପକ୍ଷରେ ଅସମ୍ଭବ ହୋଇ ପଡ଼ିଲା । ତଥାପି ସେ ଆଗକୁ ନଇଁପଡ଼ି ଭଦ୍ରଲୋକଙ୍କ ସବୁ ଭଙ୍ଗିକୁ ନିରେଖି ଦେଖୁଥାଏ । କିନ୍ତୁ ଶେଷରେ କଥାବାର୍ତ୍ତାରେ ଆଦୌ ଭାଗ ନେଇ ନପାରି ଚୁପ୍‌ଚାପ୍ ବସିଗଲା । ସେ ଦୁଇଜଣଙ୍କ କଥାରେ ଉଠ୍ ପଡ୍ ଗତି ଉପରେ କେ'ର ଆଖି ଠନ୍ ଭଳି ଲାଗି ରହୁଥାଏ । ସେ ଆଉ ଥରେ ତା ପୂର୍ବ କ୍ଳାନ୍ତି ଅନୁଭବ କରିବାକୁ ଲାଗିଲା । ଅନ୍ୟମନସ୍କ ଭାବରେ ଚାଲିଯିବାକୁ ଉଠିଲା ବେଳକୁ ସେ ଠିକ୍ ସମୟରେ ସଚେତନ ହୋଇଗଲା । ଅନେକ ସମୟ ପରେ ଭଦ୍ରବ୍ୟକ୍ତି ତାଙ୍କ ଘଣ୍ଟାକୁ ଚାହିଁ ଠିଆହେଲେ । ମ୍ୟାନେଜରଙ୍କ ଠାରୁ ବିଦାୟ ନେଇ ସେ କେ'ର ଏତେ ପାଖକୁ ଘୁଞ୍ଚିଆସିଲେ ଯେ ସୁବିଧାରେ ଟିକିଏ ହଲଚଲ ହେବାପାଇଁ କେ'କୁ ତା ଚଉକି ଘୁଞ୍ଚାଇବାକୁ ପଡ଼ିଲା । ଏହି ଅବୋଧ ଇଟାଲୀୟ ସହ କେ'ର ଦୁରବସ୍ଥାକୁ ଲକ୍ଷ୍ୟ କରି ମ୍ୟାନେଜର ଏମିତି ଚତୁରତାର ସହ ଅବସ୍ଥାଟିକୁ ସମ୍ଭାଳି ନେଲେ ଯେ ଜଣାଗଲା ଯେମିତି ସେ କେ'ଙ୍କୁ କିଛି ଉପଦେଶ ଦେଉଛନ୍ତି । କିନ୍ତୁ ସେ ପ୍ରକୃତରେ ଇଟାଲୀୟ କ'ଣ କହୁଥିଲା, ତାର ଉଦ୍ଦେଶ୍ୟ କ'ଣ, ସେହି ବିଷୟରେ ହିଁ ସୂଚନା ଦେଉଥିଲେ । ତାଙ୍କ ପାଖରୁ କେ' ଜାଣିପାରିଲା ଯେ ଇଟାଲୀୟ ବ୍ୟକ୍ତିଙ୍କର ବର୍ତ୍ତମାନ ଜରୁରୀ କାମ ଅଛି । ଦୁର୍ଭାଗ୍ୟବଶତଃ ତାଙ୍କ ହାତରେ ସମୟ ଖୁବ୍ ଅଳ୍ପ । ତେଣୁ ତରତର ହୋଇ ସବୁ ଦର୍ଶନୀୟସ୍ଥାନ ଦେଖିବାପାଇଁ ସେ ଆଗ୍ରହୀ ନୁହନ୍ତି । ଯଦି କେ' ଇଚ୍ଛାକରେ, କାରଣ ତା ହାତରେ ସବୁ, ତେବେ ସେ କେବଳ ତାଙ୍କୁ ଗୀର୍ଜାଟିକୁ ଦେଖାଇ ଦେବ । ଅବଶ୍ୟ ଗୀର୍ଜାଟିକୁ ଭଲ ଭାବରେ ଟିକିନିଖି କରି ବୁଲାଇ ଦେଖାଇ ଦେବ । ଏପରି ଜଣେ ବିଜ୍ଞ ଭଦ୍ରବ୍ୟକ୍ତିଙ୍କ ସହ ଯିବାପାଇଁ ସୁଯୋଗ ପାଇଥିବାରୁ ଭଦ୍ରବ୍ୟକ୍ତି ଭାରି ଖୁସି ହୋଇଛନ୍ତି । ଭଦ୍ରବ୍ୟକ୍ତି କେ'କୁ ଜଣେ ବିଜ୍ଞ ବ୍ୟକ୍ତି ହିସାବରେ ଧରି ନେଇଛନ୍ତି ବୋଲି ସେ କହିଲେ । କେ' ତାଙ୍କ କଥା ନଶୁଣିବାକୁ ପ୍ରାଣପଣେ

Digitized by srujanika@gmail.com

ଚେଷ୍ଟା କରୁଥାଏ । ଏବଂ ମ୍ୟାନେଜର କଥଣ କହୁଛନ୍ତି ତାର ଅର୍ଥଟିକୁ ଯଥାଶୀଘ୍ର ଧରିବାକୁ ଚେଷ୍ଟା କରୁଥାଏ । ସେ ମ୍ୟାନେଜରଙ୍କୁ ଅନୁରୋଧ ସ୍ୱରରେ ପଚାରିଲେ ଦୁଇଘଣ୍ଟା ଭିତରେ ଅର୍ଥାତ୍ ପ୍ରାୟ ଦଶଟା ବେଳକୁ ତାଙ୍କୁ ସେଠାରେ ଭେଟିଲେ ସୁବିଧା ହେବନି । ଠିକ୍ ସେତିକି ବେଳକୁ ଭଦ୍ରବ୍ୟକ୍ତି ସେଠାରେ ପହଞ୍ଚି ପାରିବେ ବୋଲି ଆଶା ପ୍ରକାଶ କଲେ । ତେଣୁ କେ' କଥା ପକ୍କା କରି ନେଲା । ଭଦ୍ରବ୍ୟକ୍ତି ମ୍ୟାନେଜରଙ୍କ ହାତକୁ ଚିପି ଧରିଲେ । ତାପରେ କେ'ର ହାତକୁ ଏବଂ ପୁଣିଥରେ ମ୍ୟାନେଜରଙ୍କ ହାତକୁ ଚିପି ଧରିଲେ । ତାପରେ ତାଙ୍କ ଅନୁସରଣ କରୁଥିବା ଦୁଇ ବ୍ୟକ୍ତିଙ୍କ ଆଡ଼କୁ ଅଧା ନଇଁପଡ଼ି ପୂର୍ବପରି କଥାର ସୂଅ ଛୁଟାଇ ଛୁଟାଇ ଦ୍ୱାର ଆଡ଼କୁ ଆଗେଇ ଚାଲିଲେ । କେ' ଅଳ୍ପ ସମୟ ପାଇଁ ମ୍ୟାନେଜରଙ୍କ ପାଖରେ ରହିଗଲା । ସେଦିନ ମ୍ୟାନେଜର କାହିଁକି ସାମାନ୍ୟ ଅସୁସ୍ଥ ଜଣାପଡ଼ୁଥିଲେ । ସେ ଭାବୁଥିଲେ କେ' ପାଖରେ ସେ କ୍ଷମା ମାଗିବାକୁ ଚାହାନ୍ତି । ଅତି ଘନିଷ୍ଠ ଭାବରେ କେ'ର ଖୁବ୍ ନିକଟରେ ଠିଆହୋଇ ସେ କହିଲେ ଯେ ପ୍ରଥମେ ସେ ନିଜେ ଇଟାଲୀୟ ଭଦ୍ରଲୋକଙ୍କ ସହ ଯିବାକୁ ଇଚ୍ଛା କରୁଥିଲେ । କିନ୍ତୁ ପରେ ଭାବି ଦେଖିଲେ ଯେ କେ' ତାଙ୍କ ସାଙ୍ଗରେ ଗଲେ ଭଲ ହେବ । ଏପରି ସିଦ୍ଧାନ୍ତ ପାଇଁ ଅବଶ୍ୟ ସେ କୌଣସି କାରଣ ଦର୍ଶାଇ ନଥିଲେ । ପ୍ରଥମରୁ କେ' ସେ ଲୋକର କଥାକୁ ବୁଝିପାରୁ ନଥିଲେ ବି ଚିନ୍ତା କରିବାର କିଛି ନଥିଲା । କାରଣ ତାଙ୍କ କଥାର ଅର୍ଥକୁ ବୁଝିବା ପାଇଁ କେ'କୁ ବେଶୀ ସମୟ ଲାଗୁନଥିଲା । ପୁଣି ତାଙ୍କ କଥାକୁ ଅନ୍ୟ କେହି ଠିକ୍ ବୁଝିପାରୁଛନ୍ତି କି ନାହିଁ ସେ ବିଷୟରେ ସେ ଇଟାଲୀୟ ବ୍ୟକ୍ତି ଜଣକ ଆଦୌ ଗୁରୁତ୍ୱ ଦେଉ ନଥିଲେ । ଇଟାଲି ଭାଷାରେ ତ କେ'ର ଜ୍ଞାନ ଖୁବ୍ ଭଲ ଏବଂ ନିଶ୍ଚିତ ଭାବେ ସେସବୁ କାମ ସୁରୁଖୁରୁରେ ଚଳାଇ ନେଇ ପାରିବ । ଏହା କହି ମ୍ୟାନେଜର କେ'କୁ ତା' ରୁମ୍‌କୁ ପଠାଇ ଦେଲେ । ତା ହାତରେ ଥିବା ସମୟ ଭିତରେ ଅଭିଧାନରୁ କେତୋଟି ଶବ୍ଦର ଅର୍ଥ ଟିପି ନେବାକୁ ପଡ଼ିବ । କାରଣ ଗୀର୍ଜାରେ ବୁଲିଲା ବେଳେ ସେ ଶବ୍ଦଗୁଡ଼ିକର ପ୍ରୟୋଜନ ପଡ଼ିବ । ଏହା ଗୋଟିଏ ଅସମ୍ଭବ ଭାବେ ବିରକ୍ତିକର କାମ । ପିଅନମାନେ କାଗଜପତ୍ର ଧରି ଆସୁଛନ୍ତି । କିରାଣୀମାନେ କାମ ବୁଝିବା ପାଇଁ ଆସୁଛନ୍ତି ମାତ୍ର ତାଙ୍କୁ ବ୍ୟସ୍ତ ଥିବାର ଦେଖି ଦ୍ୱାର ପାଖରେ ଠିଆହୋଇ ରହୁଛନ୍ତି । କିନ୍ତୁ ନ କହିବା ପୂର୍ବରୁ ସେ ସ୍ଥାନ ଛାଡ଼ି ଯାଉ ନ ଥାଆନ୍ତି । ଡେପୁଟି ମ୍ୟାନେଜର ସୁଯୋଗ ଦେଖି ବାରମ୍ବାର ବିରକ୍ତ କରିବାକୁ ଆସୁଛି । ଜାଣିଶୁଣି ତା ପାଖରୁ ଅଭିଧାନଟିକୁ ଟାଣିନେଇ ମିଛଟାରେ ପୃଷ୍ଠା ଓଲଟାଇବାରେ ଲାଗୁଛି । ଏମିତିକି ଯେତେବେଳେ ଦ୍ୱାର ଖୋଲା ହେଉଛି ବସିବା ଘରେ ଗରାଖମାନେ ଅଳ୍ପ ଅଳ୍ପ ଦିଶିଯାଉଛନ୍ତି । ସେମାନେ ଦୃଷ୍ଟି ଆକର୍ଷଣ କରିବା ପାଇଁ ମୁଣ୍ଡ ନୁଆଁଉଛନ୍ତି ମାତ୍ର ଜାଣିପାରୁନାହାନ୍ତି

Digitized by srujanika@gmail.com

ତାଙ୍କୁ କେହି ଦେଖୁଛନ୍ତି କି ନାହିଁ । ଏହିସବୁ ଘଟଣା କେ'ର ସ୍ମୃତିପଟେ ଘଟି ଯାଉଛି । ଯେମିତିକି ସେ କେବଳ ଏ ସବୁର କେନ୍ଦ୍ରବିନ୍ଦୁ । କିନ୍ତୁ ଏସବୁ ଘଟୁଥିଲା ବେଳେ ତା ଦରକାରରେ ଆସିବା ଶବ୍ଦ ସବୁକୁ ସେ ଅବଧାନରେ ଖୋଜି ଚାଲିଛି, ଲେଖି ରଖୁଛି ଆଉ କେମିତି କହିବାକୁ ପଡ଼ିବ ଅଭ୍ୟାସ କରୁଛି । ଶେଷରେ ମୁଖସ୍ଥ କରିବାକୁ ଚେଷ୍ଟା କରୁଛି । ଅଜ୍ଞାତର ଚମତ୍କାର ସ୍ମୃତିଶକ୍ତି ତା ପାଖରୁ ଛାଡ଼ି ଚାଲିଗଲାଣି ବୋଲି ତାର ମନେ ହେଲା । ତାକୁ ଏତେ ହଇରାଣ କରୁଥିବା ସେ ଇଟାଲୀୟ ସ୍ମୃତି ଉପରେ ସେ ଏତେ ରାଗି ଯାଉଥିଲା ଯେ ବିରକ୍ତ ହୋଇ ଅଭିଧାନଟିକୁ କାଗଜ ଗଦା ତଳେ ରଖି ସେ ଆଉ ମନେ ମନେ ପ୍ରତିଜ୍ଞା କଲା କେବେ ହେଲେ ସେ ଇଟାଲି ଶବ୍ଦ ଶିଖିବାକୁ ଚେଷ୍ଟା କରିବ ନାହିଁ । ତଥାପି ଶବ୍ଦ ନ ଖୋଜି ରହିପାରୁ ନଥିଲା । କାରଣ ଚୁପ୍‌ଚାପ୍ ରହି ଗୀର୍ଜାର କଳାକୃତି ସବୁକୁ ଦେଖାଇ ହେବ ନାହିଁ । ତେଣୁ ଅଧିକ ବିରକ୍ତ ସହି ସେ ପୁଣି ଥରେ ଅଭିଧାନ ଖୋଜୁଥିଲା ।

ଠିକ୍ ସାଢ଼େ ନଅଟା ବେଳେ ଯିବା ପାଇଁ କେ' ଉଠିଲା ବେଳକୁ ଟେଲି-ଫୋନ୍ ବାଜିଉଠିଲା । ଲେନି ତାକୁ ସୁପ୍ରଭାତ ଜଣାଇ କେମିତି ଅଛି ବୋଲି ଫୋନ୍‌ରେ ପଚାରିଲା । ଶୀଘ୍ର ଧନ୍ୟବାଦ ଜଣାଇ କେ' କହିଲା ଯେ କଥା କହିବା ପାଇଁ ତାର ଏବେ ସମୟ ନାହିଁ । କାହିଁକିନା ତାକୁ ଏବେ ଗୋଟିଏ ଗୀର୍ଜା ଯିବାକୁ ପଡ଼ିବ ।

'ଗୀର୍ଜାକୁ ଯିବ ?' ଲେନି ପଚାରିଲା ।

'ହଁ ଗୀର୍ଜାକୁ' କେ' କହିଲା ।

'କିନ୍ତୁ ଗୀର୍ଜାକୁ କାହିଁକି ?' ଲେନି ପଚାରିଲା ।

ଅଳ୍ପରେ କେ' ତାକୁ ବୁଝାଇବାକୁ ଚେଷ୍ଟା କଲା । କିନ୍ତୁ କହିବାକୁ ଆରମ୍ଭ କରିଛି କି ନାହିଁ ଲେନି ହଠାତ୍ କହିଲା—'ସେମାନେ ତୁମକୁ ମଣାଉଛନ୍ତି । ତାଙ୍କ ଇଚ୍ଛାରେ ତୁମକୁ ଏଣେ ତେଣେ ନେଉଛନ୍ତି ।' କେ' କେବେ ଦୟା ଚାହିଁନଥିଲା କିମ୍ବା କାହାପାଖରୁ ଆଶା ବି କରିନଥିଲା । ତଥାପି ଏପରି କଥା କେ'ର କହିବା ଶକ୍ତିକୁ ବଳିଗଲା । ମାତ୍ର ଦୁଇଟି ବିଦାୟୀ ଶବ୍ଦ ଉଚ୍ଚାରଣ କରି ରିସିଭର୍‌କୁ ସେ ରଖି ଦେଲା ବେଳେ ଗୁଣୁଗୁଣୁ ହୋଇ ନିଜକୁ ଆଉ ତାକୁ ଶୁଣିପାରୁଥିବା ଦୂରର ସେହି ଝିଅଟି ଉଦ୍ଦେଶ୍ୟରେ କହିଲା —'ହଁ ସେମାନେ ମୋତେ ମଣୁଛନ୍ତି···'

ବର୍ତ୍ତମାନ ବିଳମ୍ବ ହୋଇଯାଇଛି । ଠିକ୍ ସମୟରେ ଠିକ୍ ସ୍ଥାନରେ ପହଞ୍ଚି ନପାରିବାର ଭୟ ହେଲାଣି । ସେ ଗୋଟିଏ ଟ୍ୟାକ୍ସିରେ ଗଲା । ଶେଷ ମୁହୂର୍ତ୍ତରେ

Digitized by srujanika@gmail.com

ତାର ମନେ ପଡ଼ିଲା ଯେ ଯେଉଁ ଆଲ୍‌ବମ୍‌ଟି ସେ ନେଇପାରି ନଥିଲା ତାକୁ ବର୍ତ୍ତମାନ ସାଙ୍ଗରେ ନେଇଯିବ । ସେ ଆଲ୍‌ବମ୍‌ଟିକୁ ନିଜ ଜଙ୍ଘ ଉପରେ ଥୋଇଥିଲା । ବାକି ସାରା ଅଧୈର୍ଯ୍ୟ ଭାବରେ ତା ଉପରେ ଆଙ୍ଗୁଳିରେ ବାଜା ବଜାଉଥିଲା । ବର୍ଷା କମି ଯାଇଥିଲା । କିନ୍ତୁ ଦିନଟି ଥିଲା ବଡ଼ ସନ୍ତସନ୍ତିଆ ଓ କଦର୍ଯ୍ୟ । ଏପରି ପାଗରେ ଜଣେ ଗୀର୍ଜାରେ ବେଶୀ କିଛୁ ଦେଖିପାରିବ ନାହିଁ । ବାହାରେ ଓଦା ପଥରଚଟାଣ ଉପରେ ଠିଆ ହେଲେ ତାର ଯେ ଥଣ୍ଡି ବସିଯିବ ଏଥିରେ ଆଉ ସନ୍ଦେହ ନାହିଁ ।

ଗୀର୍ଜାର ଛକ ନିଘେରା ଥିଲା । କେ'ର ମନେ ପଡ଼ିଲା ତାର ଛୁଆବେଳେ ଏହି ସଙ୍କୀର୍ଣ୍ଣ ଛକର ଚାରିକଡ଼ରେ ଥିବା ଘରଗୁଡ଼ିକର ଝର୍କା ସବୁ କେମିତି ସବୁ- ବେଳେ ବନ୍ଦ ଥାଏ । ଆଜିପରି କଦର୍ଯ୍ୟ ପାଗରେ ଝର୍କା ବନ୍ଦ ରହିବା ବୁଝିହୁଏ । ଗୀର୍ଜା ମଧ୍ୟ ନିଘେରା ଥିଲା । ଏ ସମୟରେ କିଏ ବା କାହିଁକି ଗୀର୍ଜାକୁ ଆସିବ । କେ' ଉଭୟ ପାଖ ରାସ୍ତା ଦେଇ ଗଲା କିନ୍ତୁ କାହାରିକୁ ଦେଖିଲାନି । କେବଳ ଜଣେ ବୁଢ଼ୀ ବୃଦର ଯୋଡ଼ାଇ ହୋଇ ମେଡ଼ୋନା ଆଗରେ ଭକ୍ତିଭରା ଆଖିରେ ଅଣ୍ଠେଇ ପଡ଼ିଥିବାର ସେ ଦେଖିଲା । ଗୋଟିଏ ଖ୍ରୋଟା କର୍ମଚାରୀ ଦ୍ୱାର ଦେଇ ଅଦୃଶ୍ୟ ହୋଇଯିବାର ସେ ଦେଖିଲା । ସେ ଠିକ୍ ସମୟରେ ପହଞ୍ଚିଥିଲା । ସେ ପହଞ୍ଚିଲା ବେଳକୁ ଘଣ୍ଟାରେ ଦଶ ବାଜୁଥିଲା । ମାତ୍ର ଇଟାଲୀୟ ବ୍ୟକ୍ତି ଜଣକ ଏବେ ବି ଆସି ନଥିଲେ । ସେ ମୁଖ୍ୟ ପ୍ରବେଶ ଦ୍ୱାର ପାଖକୁ ଫେରିଆସିଲା । ଇତସ୍ତତଃ ହୋଇ କିଛି ସମୟ ସେଠି ଠିଆ ହେଲା । ପରେ ବର୍ଷାରେ ଭିଜିଭିଜି ଗୀର୍ଜାର ଚାରିପଟେ ଥରେ ବୁଲିଆସିଲା । କାଳେ ଅନ୍ୟ କେଉଁ ଦ୍ୱାରପାଖରେ ଭଦ୍ରବ୍ୟକ୍ତି ଅପେକ୍ଷା କରିଥିବେ । କେଉଁଠି କିନ୍ତୁ ତାଙ୍କୁ ପାଇଲା ନାହିଁ । ସମସ୍ତ ସଂବାଦରେ ମ୍ୟାନେଜର କ'ଣ କିଛି ଭୁଲ୍ କଲେ ? ଏପରି ଲୋକକୁ ଯେ ଠିକ୍ ବୁଝିପାରିଛି ସେ ବିଷୟରେ କ'ଣ ଜଣେ ନିଶ୍ଚିତ ହୋଇପାରେ ? ଯା'ହେଉନା କାହିଁକି କେ'କୁ ତା'ପାଇଁ ଅଧ ଘଣ୍ଟାଏ ଅପେକ୍ଷା କରିବାକୁ ପଡ଼ିବ । ଅତିବେଶୀ ଥକି ଯାଇଥିବାରୁ ବସିପଡ଼ିବାକୁ ତାର ଇଚ୍ଛା ହେଉଥାଏ । ଗୀର୍ଜା ଭିତରକୁ ସେ ପୁଣି ଥରେ ଫେରିଗଲା । ପାହାଚରେ ଛୋଟ୍ଟା କାର୍ପେଟ୍ ଖଣ୍ଡେ ପଡ଼ିଥିଲା । ସେ ତାକୁ ଗୋଡ଼ରେ ପେଲି ପେଲି ପାଖ ବେଞ୍ଚ୍ ପାଖକୁ ନେଲା । ତା'ଓଭରକୋଟ୍‌ରେ ନିଜକୁ ଭଲ ଭାବରେ ଢାଙ୍କି ପକାଇଲା । ଆଉ ବେଞ୍ଚ୍‌ରେ ବସିପଡ଼ିଲା । ସମୟ କଟାଇବାକୁ ଯାଇ ଆଲ୍‌ବମ୍‌ଟିକୁ ଅଳସ ଭାବରେ ଦେଖିବାକୁ ଲାଗିଲା । କିନ୍ତୁ ଅଳ୍ପ ସମୟ ପରେ ତାଙ୍କୁ ଆଲ୍‌ବମ୍ ବନ୍ଦ କରିବାକୁ ପଡ଼ିଲା । କାହିଁକିନା ହଠାତ୍ ଏତେ ଅନ୍ଧାର ହୋଇଗଲା ଯେ ମୁଣ୍ଡଟେକି ଦେଖିଲା ବେଳକୁ ଗୀର୍ଜାର ପାଖ ବାରନ୍ଦାରେ କିଛି ଠିକ୍ ବାରି ପାରିଲାନି ।

Digitized by srujanika@gmail.com

ଦୂରରେ ବେଦୀ ଉପରେ ତ୍ରିଭୁଜାକାରରେ ସଜ୍ଜିତ ମହମବତୀର ଆଲୁଅ ଝଟକି ଉଠିଲା । ପୂର୍ବରୁ ଏହି ଆଲୁଅକୁ ନଜର କରିଥିଲା କି ନାହିଁ ସେକଥା କେ' ନିଶ୍ଚିତ ଭାବରେ ଜାଣିପାରିନାହିଁ । ବୋଧହୁଏ ବତୀଗୁଡିକ ନୂଆକରି ଜଳାଗଲା । ଟହଲିଆମାନେ ସାଧାରଣତଃ ଭାରି ଧୀର ପାଦରେ ଚାଲନ୍ତି । ସହଜରେ ତାଙ୍କୁ ଦେଖି ହୁଏନାହିଁ । କେ' ହଠାତ୍ ପଛକୁ ବୁଲି ପଡ଼ିଲା ଏବଂ ଦେଖିଲା ଯେ ତା' ପାଖରୁ ଅନତି ଦୂରରେ ଆଉ ଗୋଟିଏ ବତୀ ଜଳୁଛି । ଖୁବ୍ ବଡ ମୋଟା ବତୀଟିଏ ସ୍ତମ୍ଭ ଦେହରେ ଲଗାହୋଇଛି । ଏହା ଦେଖିବାକୁ ଖୁବ୍ ସୁନ୍ଦର କିନ୍ତୁ ବେଦୀରେ ଥିବା ଚିତ୍ର ଆଉ ମୂର୍ତ୍ତି ସବୁକୁ ଆଲୋକିତ କରିବାପାଇଁ ଯଥେଷ୍ଟ ନୁହେଁ । ଅନ୍ଧାରୁଆ ପୂଜାମଣ୍ଡପରେ ସେମାନେ ଝୁଲୁଥାଆନ୍ତି । ଏହା କେବଳ ଅନ୍ଧାରକୁ ଅଧିକ ଅନ୍ଧାର କରୁଥାଏ । ଇଟାଲୀୟ ବ୍ୟକ୍ତି ନଆସି ନିଜର ସଚେତନତା ଆଉ ଅଭଦ୍ରାମିର ପରିଚୟ ଦେଲେ । କାରଣ ଆସିଥିଲେବି ସେ କିଛି ଦେଖିପାରି ନଥା'ନ୍ତେ । କେ'ର ପକେଟ୍ ଟର୍ଚ୍ଚ ଆଲୁଅରେ କେତୋଟି ଛବିକୁ ଯାହା ଏଣୁ ତେଣୁ ଟିକିଏ ଦେଖି ତାଙ୍କୁ ସନ୍ତୁଷ୍ଟ ହେବାକୁ ପଡ଼ିଥା'ନ୍ତା । ଟର୍ଚ୍ଚ ଆଲୁଅ କି ପ୍ରକାର ପ୍ରଭାବ ପକାଉଛି ତାହା ଜାଣିବାକୁ କୌତୂହଳ ହେବାରୁ କେ' ଗୋଟିଏ ପାଖ ପୂଜାମଣ୍ଡପକୁ ଗଲା । କେତୋଟି ପାହାଚ ଚଢ଼ିଲା ଏବଂ ପାଖ ବାଡ଼ ଉପରେ ନଇଁପଡ଼ି ବେଦୀ ଉପରେ ଥିବା ଛବି ଉପରେ ଟର୍ଚ୍ଚ ଆଲୁଅ ପକାଇଲା । ସେଠାରେ ଥିବା ଦୀପର ଆଲୁଅ ଜବରଦସ୍ତି ପଶିଆସିଲା ପରି ଝୁଲି ରହିଥାଏ । ପ୍ରଥମେ କେ'ର ଦୃଷ୍ଟିରେ ଯାହା ପଡ଼ିଲା, ସେ ଅନୁମାନ କଲା ଯେ ସାଞ୍ଜୁପିନ୍ଧା ଗୋଟିଏ ବିରାଟ ଯୋଦ୍ଧାର ଛବି ପାଖରେ ସେ ଛିଡ଼ା ହୋଇଛି । ଗୋଟେ ଦୁଇଟା ଘାସବୁଦା ଥିବା ବ୍ୟତୀତ ଆଉ କିଛି ନଥିବା ଫାଙ୍କା ଭୂଇଁରେ ତା ଖଣ୍ଡା ଉପରେ ସେ ଆଉଜି ଠିଆ ହୋଇଛି । ତା ଆଗରେ ଘଟିଯାଉଥିବା କୌଣସି ଘଟଣାକୁ ସେ ଲକ୍ଷ୍ୟ କରୁଥିବା ପରି ଜଣା ପଡୁଛି । ଆଶ୍ଚର୍ଯ୍ୟର କଥା ଘଟୁଥିବା ଜାଗା ଆଡ଼କୁ ଆଗେଇ ନଯାଇ ସେ ଚୁପ୍‌ଚାପ୍ ଠିଆ ହୋଇଛି । ଦୀର୍ଘଦିନ ଧରି କୌଣସି ଛବି ଦେଖି ନଥିବା କେ' ଯୋଦ୍ଧାର ଛବିଟିକୁ ବହୁତ ସମୟ ଧରି ନିରେଖି ଦେଖିଲା । ଯଦିଓ ଦୀପର ସବୁଜ ଆଲୁଅରେ ପରିଷ୍କାର ଦେଖିପାରୁ ନଥିଲା ! ଯେତେବେଳେ ସେ ତାର ଟର୍ଚ୍ଚ ଆଲୁଅ ଛବିର ଅନ୍ୟ ଅଂଶ ଉପରେ ପକାଇଲା ସେ ଦେଖିଲା ଯେ ଏହା ଯୀଶୁ ଖ୍ରୀଷ୍ଟଙ୍କୁ କବର ଦେବାର ଛବି । ଛବିର ଶୈଳୀ ପାରଂପାରିକ ଏବଂ ଛବିଟି ମଧ୍ୟ ଖୁବ୍ ଅଳ୍ପ ଦିନର । ସେ ଟର୍ଚ୍ଚଟିକୁ ପକେଟ୍‌ରେ ରଖି ତା ଜାଗାକୁ ଫେରିଆସିଲା ।

ସବୁଦୃଷ୍ଟିରୁ ଇଟାଲୀୟ ଭଦ୍ରବ୍ୟକ୍ତିଙ୍କ ପାଇଁ ଆଉ ଅପେକ୍ଷା କରିବାର କୌଣସି କାରଣ ନାହିଁ । ବାହାରେ ବର୍ଷା ଜୋରରେ ପଡୁଥାଏ ଏବଂ ଗୀର୍ଜା ଭିତରେ କେ' ଯେତେ ଭାବିଥିଲା ସେତେ ବେଶୀ ଥଣ୍ଡା ହେଉନଥିଲା । ସେ

Digitized by srujanika@gmail.com

ଅପାତତଃ ସେଠାରେ ରହିବ ବୋଲି ଠିକ୍ କଲା । ତାର ଖୁବ୍ ପାଖରେ ଗୋଟିଏ ବଡ଼ ବେଦୀ । ତାର ଗଂବୁଜାକୃତ ଛାତ ଉପରେ ଦୁଇଟି ଦୂତଙ୍କ ଯୀଶୁଙ୍କ ପୁତେଳି ମୂର୍ତ୍ତି । ସେ ଦୁଇଟି ଏପରି ବିପରୀତ ଦିଗରୁ ସଜ୍ଜା ହୋଇଛନ୍ତି ଯେ ଗୋଟିଏ ଶୀର୍ଷ-ବିନ୍ଦୁରେ ସେମାନେ ଉଭୟଙ୍କୁ ସ୍ପର୍ଶ କରୁଛନ୍ତି । ମୂର୍ତ୍ତିଗୁଡ଼ିକ ଧରି ରଖିଥିବା ସ୍ତମ୍ଭ ସହିତ ଲାଗିଥିବା ବେଢ଼ାରେ ନାନା ପ୍ରକାର ଓ ପଥର କାମ ହୋଇଅଛି । ନାନା ପ୍ରକାର ଗଛପତ୍ରମାନଙ୍କରୁ ଶ୍ରେଷ୍ଠ ଶ୍ରେଷ୍ଠ ପକ୍ଷୀ ସବୁ ଶୋଭା ପାଉଛନ୍ତି । ସେ ପକ୍ଷୀ ସବୁ କେତେବେଳେ ଶାନ୍ତ ପୁଣି କେତେବେଳେ ପ୍ରାଣ ପ୍ରାଚୁର୍ଯ୍ୟରେ ଭରପୂର । କେ' ବେଦୀ ପାଖକୁ ଉଠିଗଲା । ଏବଂ ସବୁ ଦିଗରୁ ସେସବୁକୁ ପରୀକ୍ଷା କରିବାକୁ ଲାଗିଲା । ପଥରଗୁଡ଼ିକରେ ଖୋଦାଇ କାମ ବଡ଼ ନିପୁଣ ଭାବରେ ହୋଇଥାଏ । ପତ୍ରର ଗହଳି ମଧ୍ୟରେ ଆଉ ପଛରେ ଥିବା ଅନ୍ଧାରର ଗଭୀରତା ସେଗୁଡ଼ିକରେ ଧରାପଡ଼ି ଯେମିତି ସବୁଦିନ ପାଇଁ ରହିଯାଇଛି । ସେ ମୂର୍ତ୍ତି ଭିତରୁ ଗୋଟିକ ଦେହରେ କେ' ବଡ଼ ସତର୍କତା ସହି ତା ହାତ ମାରି ପଥର ଦେହରେ ବିଭିନ୍ନ ଭାଗଙ୍କୁ ଅନୁଭବ କଲା । ଏମିତି ଗୋଟିଏ ବେଦୀ ଏଠାରେ ଅଛି ବୋଲି ସେ ଆଗରୁ ଜାଣିନଥିଲା । ଦୈବାତ୍ ସେ ଦେଖିଲା ଯେ ନିକଟରେ ପଡ଼ିଥିବା ବେଞ୍ଚ୍ ପାଖରେ ଜଣେ ଟହଲୁଆ ଢିଲା କଳା ପୋଷାକ ପିନ୍ଧି ଠିଆ ହୋଇଛି । ତାର ବାମ ହାତରେ ଗୋଟିଏ ନାଣଦାନି । ସେ କେ' ଆଡ଼କୁ ଅନାଇ ରହିଛି । ଲୋକଟିର କଅଣ ଦରକାର ? ମୁଁ କ'ଣ ସନ୍ଦେହଜନକ ଲୋକଟିଏ ପରି ଦିଶୁଛି କି ? ସେ କ'ଣ କିଛି ହାତଗୁଞ୍ଜା ଚାହୁଁଛି ? କିନ୍ତୁ ଯେତେବେଳେ ସେ ଜାଣିଲା ଯେ କେ' ତା' ବିଷୟରେ ସଚେତନ ହୋଇଗଲାଣି ଟିପେ ନାଣ ଆଙ୍ଗୁଳିରେ ଧରି ସେ ତାର ଡାହାଣ ହାତ ଏକ ଅନିର୍ଦ୍ଦିଷ୍ଟ ଦିଗ ଆଡ଼କୁ ଦେଖାଇଲା । ତା ଭଂଗିରେ କିଛି ଅର୍ଥ ଥିଲାଭଳି ମନେ ହେଉନଥିଲା । ପ୍ରଥମେ କେ' ଟିକିଏ ଦୋଦୋପାଞ୍ଚ ହେଲା । ମାତ୍ର ଟହଲୁଆ ଯେଉଁ ଆଡ଼କୁ ହାତ ଦେଖାଉଥିଲା ସେଥିରୁ ବିରତ ନହୋଇ ବରଂ ମୁଣ୍ଡ ଟୁଙ୍ଗାରି ତା ହାତ ଦେଖାଇବା ଭଂଗି ଉପରେ ଆହୁରି ଜୋର୍ ଦେଲା । ଅତି ଧୀର ଗଳାରେ କେ' କହିଲା—'ଲୋକଟା କଅଣ ଚାହୁଁଛି ?' ସେଠାରେ ସେ ତାହା ସ୍ୱରକୁ ଆଉ ଚଡ଼ା କରିବାକୁ ଚାହିଁଲାନି । ତା'ପରେ ସେ ତାର ଟଙ୍କାଥଳି କାଢ଼ି ବେଞ୍ଚ୍ କଡ଼ ଦେଇ ଟହଲୁଆ ଆଡ଼କୁ ଗଲା । କିନ୍ତୁ ଟହଲୁଆ ଟଙ୍କା ନ ନେବାର ଭଂଗିକରି କାନ୍ଧକୁ ଟିକିଏ କୁଞ୍ଚାଇ ଦେଲା ଏବଂ ଖ୍ରୋଟେଇ ଖ୍ରୋଟେଇ ଚାଲିଗଲା । ଘୋଡ଼ା ଚଢ଼ୁଥିବା ଲୋକଟିର ଚାଲିବାକୁ ଯେମିତି ସେ ଛୁଆବେଳେ ଅନୁକରଣ କରୁଥିଲା ସେ ଟହଲୁଆର ଚାଲି ଠିକ୍ ସେମିତି ଥିଲା । ବୁଢ଼ାଟିର କିନ୍ତୁ ପିଲାଳିଆ ଢଙ୍ଗ ଯାଇନି । । ଟହଲୁଆ ହେବା ପାଇଁ ଯେତିକି ବୁଦ୍ଧି ଦରକାର ସେତିକି ଯାହା ଅଛି । କେ' ଭାବିଲା ମୁଁ ଯେତେବେଳେ ଠିଆ ହେଉଛି, ସିଏ ଠିଆ ହେଉଛି,

Digitized by srujanika@gmail.com

ମୁଁ ପଛେ ପଛେ ଆସୁଛନ୍ତି କି ନାହିଁ ପୁଣି ଘୂରି ଦେଖୁଛନ୍ତି । ମନେ ମନେ ହସି କେ' ତା' ପଛେ ପଛେ ପାଖ ବେଦୀ କଡ଼ ଦେଇ ମୁଖ୍ୟ ବେଦୀ ପର୍ଯ୍ୟନ୍ତ ଚାଲିଗଲା । ବୁଢ଼ାଟି କ'ଣ ଗୋଟିଏ ବସ୍ତୁ ଆଡ଼କୁ ହାତ ଦେଖାଉଥିଲା । ମାତ୍ର କ'ଣ ସେ ଦେଖାଉଛି ତାକୁ ଦେଖିବା ପାଇଁ ଜାଣିଶୁଣି ପଛକୁ ଘୂରି ଚାହୁଁ ନଥିଲା । କେ'ଙ୍କୁ ସେଠାରୁ ବାହାର କରିବା ବ୍ୟତୀତ ତାର ଭଂଗିର ଆଉ କୌଣସି ଉଦ୍ଦେଶ୍ୟ ନଥିଲା । ଶେଷରେ ତା ପଛେ ପଛେ ଯିବା କେ' ବନ୍ଦ କରିଦେଲା । ସେ ବୁଢ଼ାଟିକୁ ଆଉ ଅଧିକ ଉପସ୍ଥିତ କରିବାକୁ କେ' ଚାହୁଁ ନଥିଲା । ତାଛଡ଼ା ଇଟାଲୀୟ ବ୍ୟକ୍ତିଟିର ଆସିବାର ଅଛି । ତେଣୁ ଟହଲିଆକୁ ଆଗରୁ ତଡ଼ିଦେବା ଉଚିତ୍ ହେବନାହିଁ ।

ଯେଉଁଠି କେ' ତାର ଆଲବମ୍‌ଟିକୁ ରଖିଥିଲା ଗୀର୍ଜାର ସେହି ମଝି ସ୍ଥାନକୁ ଯେତେବେଳେ ସେ ଆଉ ଥରେ ଫେରିଆସିଲା ଦେଖିଲା ଯେ ସେଠାରେ ଆଉ ଗୋଟିଏ ବେଦୀ ଅଛି । ବେଦୀଟି ସାଧାରଣ ପଥରରେ ତିଆରି ଆଉ ଖମ୍ବଟି ସହିତ ଲଗି କରି ଅଛି । ସଙ୍ଗୀତ ଗାନ କରାଯାଉଥିବା ସ୍ଥାନଟି ତାର ଖୁବ୍ ପାଖରେ । ଏ ବେଦୀଟି ଖୁବ୍ ଛୋଟ ଶ୍ରେଣୀର । ଶ୍ରେଣୀର ମୂର୍ତ୍ତିଟି ପାଇଁ ଗଢ଼ା ପିଢ଼ାଟିଏ ପରି । ବେଦୀ ପାଖରୁ ପାଦଟିଏ ଘୁଞ୍ଚିବାର ସ୍ଥାନ ଧର୍ମଯାଜକଙ୍କ ପାଇଁ ସେଠାରେ ନାହିଁ । ପଥରର ଗ୍ରୀଲ ମଧ୍ୟ ସେଠି ଆଗକୁ ନଇଁ ଯାଇଛି । ଅବଶ୍ୟ ସେ ଗ୍ରୀଲରେ ସାଜସଜ୍ଜା କିଛି ନାହିଁ । ଗ୍ରୀଲଟି ସେଠାରେ ଏତେ ନୁଆଁଣିଆ ଯେ ସାଧାରଣ ଡେଙ୍ଗା ଲୋକଟିଏ ପାଇଁ ତା ତଳେ ସିଧା ହୋଇଠିଆ ହେବା କଷ୍ଟକର । ତାକୁ ବାଧ୍ୟହୋଇ ସେ ବେଢ଼ା ଉପରେ ନଇଁବାକୁ ପଡ଼ିବ । ବିଚରା ଧର୍ମଯାଜକଙ୍କୁ କଷ୍ଟ ଦେବା ପାଇଁ ଯେମିତି ସେଠି ସବୁ ଜିନିଷ ଏମିତି ତିଆରି ହୋଇଛି । ଯେତେବେଳେ ଅନ୍ୟାନ୍ୟ ବେଦୀସବୁ ଏତେ ବଡ଼ବଡ଼ ପୁଣି ସେସବୁ ଏତେ ସୁନ୍ଦର କାରୁକାର୍ଯ୍ୟ ଖଚିତ, ଏପରି ନୁଆଣିଆଁ ବେଦୀଟିଏ ଯେ କାହିଁକି ସେଠାରେ ଅଛି ତାର ଉଦ୍ଦେଶ୍ୟ ଠିକ୍ ଭାବରେ ଧରି ହୁଏ ନାହିଁ ।

ଯଦି ସେଠାରେ ମଦ୍ଦମବତୀଟିଏ ଜଳୁ ନଥାନ୍ତା ! ଯାହାକି ଅସ୍ତ୍ରାଧିକାର ସୂଚନା ଦେଉଥିଲା, କେ' କଦାପି ସେ ବେଦୀଟିକୁ ଦେଖି ପାରିନଥାନ୍ତା । ବର୍ତ୍ତମାନ କଅଣ ଏଠାରେ ଧର୍ମ ପ୍ରବଚନ ଦିଆଯିବ ? ଏମିତି ଏକ ଖାଲି ଗୀର୍ଜାରେ ? ବେଦୀ ଉପରକୁ ଉଠିଯାଇଥିବା ଶ୍ରେଣୀର ପାହାଚ ଗୁଡ଼ିକୁ କେ' ଚାହିଁଲା । ଉପରକୁ ଲମ୍ବି ଯାଇଥିବା ଅଣ ଓସାରିଆ ପାହାଚଗୁଡ଼ିକ ଖୁଣ୍ଟଗୁଡ଼ିକୁ ଏମିତି ବେଢ଼େଇ ବେଢ଼େଇ ଯାଇଛନ୍ତି ଯେ ସେଗୁଡ଼ିକୁ ପାହାଚ ବୋଲି ସହଜରେ କହି ହେବ ନାହିଁ । ସେଗୁଡ଼ିକ ଯେମିତି ଖୁଣ୍ଟଗୁଡ଼ିକର ସୌନ୍ଦର୍ଯ୍ୟ ପାଇଁ କାରୁକାର୍ଯ୍ୟର ଅଂଶ

Digitized by srujanika@gmail.com

ପରି ମନେହେବ । କିନ୍ତୁ କେ' ଦେଖିଲା ଯେ ସେପରି ସିଡ଼ି ମୂଳରେ ଜଣେ ପୁରୋହିତ ସିଡ଼ି ଚଢ଼ିବା ପାଇଁ ପ୍ରକୃତରେ ଠିଆ ହୋଇଛି । ତାଙ୍କ ହାତ ବେଢ଼ା ଦେହରେ ଆଉ ଆଖି କେ' ଉପରେ । ଏ ଦୃଶ୍ୟ ଦେଖି କେ' ଆଶ୍ଚର୍ଯ୍ୟରେ ହସି ପକାଇଲା, ପୁରୋହିତ ସାମାନ୍ୟ ମୁଣ୍ଡ ଝୁଙ୍କାଇଲେ । ପ୍ରତି ବଦଳରେ କେ' ପୂର୍ବରୁ ଯେମିତି କରିଥାଆନ୍ତା ସେମିତି ହାତ ଝଣ୍ କରି ମୁଣ୍ଡ ଝୁଙ୍କାଇଲା । ପୁରୋହିତ ଶୀଘ୍ର ଶୀଘ୍ର ଛୋଟ ଛୋଟ ପାଦ ପକାଇ ପାହାଚ ଚଢ଼ି ବେଦୀ ଉପରକୁ ଉଠିଗଲେ । ସେ କଅଣ ପ୍ରକୃତରେ ପ୍ରବଚନ ଦେବାକୁ ଯାଉଛନ୍ତି ? ବୋଧହୁଏ ସେ ଟହଲୁଅଛି ଅଥବ ନଥିଲ । ସେ ବୋଧହୁଏ ଏହି ପୁରୋହିତଙ୍କୁ ଦେଖାଇବା ପାଇଁ ଚେଷ୍ଟା କରୁଥିଲା । ଏହାହିଁ ବୋଧହୁଏ ଏପରି ଏକ ନିର୍ଜନ ଗୀର୍ଜାରେ ତାର ଏକମାତ୍ର ଦରକାରୀ କର୍ତ୍ତବ୍ୟ । କିନ୍ତୁ କେଉଁଠୁ କେଜାଣି ମେଡୋନା ଛବିଟି ଆଗରେ ବୁଢ଼ୀଟିଏ ଆସି ବସିଥିଲେ । ତାର ମଧ୍ୟ ସେଠାକୁ ଆସିବା ଉଚିତ୍ । ଯଦି ବର୍ତ୍ତମାନ ପ୍ରବଚନ ଦିଆଯିବ ତାର ଆରମ୍ଭର ସୂଚନା ସଙ୍ଗୀତ ଦ୍ୱାରା କାହିଁକି ଦିଆହେଉ ନାହିଁ ? କିନ୍ତୁ ବାଦ୍ୟଯନ୍ତ୍ର ନୀରବ ଅଛି । ତାର ଦୀର୍ଘ ପାଇପ୍‌ସବୁ ଅନ୍ଧାରରେ ଝାପ୍‌ସା ଦିଶୁଛି ।

କେ' ଭାବିଲା ବର୍ତ୍ତମାନ ଏଠାରୁ ଖସିଯିବାର ବେଳ । ବର୍ତ୍ତମାନ ଯଦି ସେ ନ ଯାଉଛି ତେବେ ପ୍ରବଚନ ଆରମ୍ଭ ହୋଇଗଲେ ଆଉ ଯାଇପାରିବ ନାହିଁ । ପ୍ରବଚନ ସରିବା ପର୍ଯ୍ୟନ୍ତ ତାକୁ ଏଠାରେ ରହିବାକୁ ପଡ଼ିବ । ଅଫିସ୍ କାମରେ ସେ ପଛରେ ପଡ଼ିଛି ଆଉ ଏହି ଇଟାଲୀୟ ଭଦ୍ରଲୋକ ପାଇଁ ଅପେକ୍ଷା କରିବା ଦରକାର ନାହିଁ । କେ' ତାର ଘଡ଼ିକୁ ଚାହିଁଲା । ଏଗାରଟା ବାଜିଲାଣି । ପ୍ରକୃତରେ କଅଣ ପ୍ରବଚନ ଦିଆଯିବ ? କେ' କଅଣ ଏକୁଟିଆ ତାକୁ ଶୁଣିବା ପାଇଁ ସେଠାରେ ଶ୍ରୋତାଙ୍କ ପ୍ରତିନିଧିତ୍ୱ କରିବ ? ସେ ଯଦି ଖାଲି ଜଣେ ଅଜଣା ଲୋକଟିଏ ପରି ଗୀର୍ଜା ଦେଖିବାକୁ ଆସିଥାଏ, ତେବେ କଅଣ ହେଲା ? ଏହାହିଁ ତ ତାର ବର୍ତ୍ତ-ମାନର ଅବସ୍ଥା ।

ଦିନ ଏଗାରଟା ବେଳେ ଏପରି କଦର୍ଯ୍ୟ ପାଗରେ ପୁଣି ସପ୍ତାହ ମଝିରେ ପୁରୋହିତ ପ୍ରବଚନ ଦେବେ ଏପରି ଭାବିବା ତା ପାଗଳାମି ଛଡ଼ା ଆଉ କିଛି ନୁହେଁ । ପୁରୋହିତ ! ନିଶ୍ଚିତ ଭାବରେ ସେ ଜଣେ ପୁରୋହିତ । ଏଥିରେ ସନ୍ଦେହ ନାହିଁ । ସେ ଜଣେ ତରୁଣ । ମୁହଁ ମସୃଣ ଆଉ କଳା । ନିଶ୍ଚିତ ଭାବରେ ସେ ବେଦୀ ଉପରକୁ ଯାଉଛନ୍ତି । ପ୍ରବଚନ ଦେବା ପାଇଁ ନୁହେଁ । ଭୁଲରେ ଜଳୁଥିବା ବତୀଟିକୁ ଲିଭାଇବା ପାଇଁ ବୋଧହୁଏ ।

ପ୍ରକୃତରେ ତା' ନୁହେଁ । ବତୀଟିକୁ ପରୀକ୍ଷା କରିବା ପରେ ପୁରୋହିତ ସଳିତାଟିକୁ ଟିକିଏ ଉପରକୁ ଟେକି ଦେଲେ । ତା'ପରେ ଧୀରେ ଧୀରେ ବେଢ଼ା

Digitized by srujanika@gmail.com

ଆଡ଼କୁ ଯାଇ ଦୁଇ ହାତରେ ବେଡ଼ାର କଡ଼କୁ ଧରି ପକାଇଲେ । ଏହିପରି ଭାବରେ ସେ କିଛି ସମୟ ଠିଆହୋଇ ରହିଲେ ଓ ମୁଣ୍ଡ ନ ବୁଲାଇ ହିଁ ଭୂରିକଡ଼କୁ ଥରେ ନଜରେଷି ଷ୍ଟୁହିଲେ । କେ' ସେତେବେଳେ ବେଶ୍ କିଛିଦୂର ପଛକୁ ପୁଞ୍ଜୁଯାଇଥିଲା ଏବଂ ସବା ଆଗ ବେଞ୍ଚ ଉପରେ କହୁଣୀ ଭର ଦେଇଥିଲା । ସେତେବେଳେ ଝହିଲଆ କେଉଁଠି ଥିବ ସେ ବିଷୟରେ ସଠିକ କିଛି ଜାଣିପାରୁ ନଥିଲେ ବି କେ' ତାର କୁଜାପିଠିକୁ ମନେ ପକାଇ ପାରୁଥିଲା । ଆଉ ତାର କାମ ପୁରୁଣ୍ଟୁରେ ସଭିଁ ଜାଣି ଶାନ୍ତିରେ କେଉଁଠି ଆଉଜି ପଡ଼ିଥିବ ଏ ବିଷୟରେ କେମିତି ତାର ଧାରଣା ହେଉଥିଲା । ଗୀର୍ଜାରେ ଶାନ୍ତ ବିରାଜମାନ କରୁଥିଲା । କିନ୍ତୁ ଏପରି ଶାନ୍ତିକୁ ତାକୁ ଭାଙ୍ଗିବାକୁ ପଡ଼ିବ କାରଣ ସେଠାରେ ରହିବାକୁ ତାର ମନ ନଥିଲା । କୌଣସି ଏକ ନିର୍ଦ୍ଧାରିତ ସମୟରେ ପରିବେଶର ଅବସ୍ଥାକୁ ବିଚାର କରି ପ୍ରବଚନ ଦେବା ଯଦି ଏହି ପୁରୋହିତଙ୍କ କର୍ତ୍ତବ୍ୟ ତେବେ ସେ ତାଙ୍କ କର୍ତ୍ତବ୍ୟ କରନ୍ତୁ । କେ'ର ବିନା ସାହାଯ୍ୟରେ ସେ ତାଙ୍କ କାମ କରି ପାରିବେ । କାରଣ କେ'ର ଉପସ୍ଥିତି ତାଙ୍କ ପ୍ରବଚନରେ ପ୍ରଭାବ ପକାଇବାରେ କୌଣସି ପ୍ରକାର ସାହାଯ୍ୟ କରି ପାରିବ ନାହିଁ । ତେଣୁ ସେ ଧୀରେ ଧୀରେ ବେକକୁ ଧରି ଗୋଡ଼ ଟିପିଟିପି ଆଗେଇଲା ଏବଂ ଶେଷରେ ବସିବା ସ୍ଥାନର ମଝିରେ ଆସି ପହଞ୍ଚିଥିଲା । ବର୍ତ୍ତମାନ ସେ ବିନା ବାଧାରେ ଆଗକୁ ଥିଲା । ତାର ମୃଦୁ ପଦପାତ ପଥର ଦେହରେ ବାଜି ଯାହା ଶବ୍ଦ ହେଉଥିଲା ଆଉ ଗଂବୁଜାକୃତି ଛାତ ଦେହରେ ଧୀରେ ଅଥଚ କ୍ରମାଗତ ହେଉଥିବା ପ୍ରତିଧ୍ୱନି ବ୍ୟତୀତ ଆଉ କୌଣସି ଶବ୍ଦ ନଥିଲା । ପ୍ରତିଧ୍ୱନି ଅଧିକ ସଂଖ୍ୟାରେ ହେବାକୁ ଲାଗିଲା, ଧୀରେ ଧୀରେ ବଢ଼ିବାକୁ ଲାଗିଲା । ଆଗକୁ ଯାଉଥିଲା ବେଳେ କେ' କେମିତି ଏକୁଟିଆ ବୋଧକଲା । ଫାଙ୍କା ବେଞ୍ଚ୍‌ଗୁଡ଼ିକ ମଝିରେ ଯେମିତି ସେ ଗୋଟିଏ ଏକୁଟିଆ ମଣିଷ । ପୁରୋହିତଙ୍କ ଦୃଷ୍ଟି ଯାହା ତାକୁ ଅନୁସରଣ କରୁଛି । ଏପରି ଅବସ୍ଥାରେ ଗୀର୍ଜାର ବିଶାଳତା କେ'ର ଚେତନାରେ ଅଧିକ ଆଘାତ କଲା । ତାର ଏକୁଟିଆଭାବ ସହିବାର ସୀମା ଟପି ଯାଇଥିଲା । ଯେଉଁଠି ସେ ତାର ଆଲବମ୍‌କୁ ଛାଡ଼ିଥିଲା ସେଠାକୁ ସେ ଫେରିଆସିଲା । ମାତ୍ର ସେଠାରେ ଆଉ ନ ଅଟକି କେବଳ ଆଲବମ୍‌ଟିକୁ ଟେକିନେଲା । ସେତେବେଳକୁ ସେ ପ୍ରାୟ ଶେଷ ବେଞ୍ଚଟିକୁ ଟପିଯାଇ ଦ୍ୱାର ଆଉ ତା ଭିତରେ ଥିବା ଖୋଲା ସ୍ଥାନଟିରେ ପହଞ୍ଚିଥିଲା । ଆଉ ସେଇଠି ସେ ପୁରୋହିତଙ୍କ ସ୍ୱର ଶୁଣିବାକୁ ପାଇଲା । ଗୁରୁଗମ୍ଭୀର ପୁଣି ବହୁ ଅଭ୍ୟାସର ସେ ସ୍ୱର । ଗୀର୍ଜାର ପ୍ରତିଷ୍ଠିତ ନୀରବତା ଭିତରେ ସେ ସ୍ୱର ଲହରେଇ ଯାଉଥିଲା । ତାଙ୍କର ଏ ସ୍ୱର କୌଣସି ଦଳ ପାଇଁ ଉଦ୍ଦିଷ୍ଟ ନଥିଲା । ତଥାପି ତାଙ୍କ କଥା ଗୁଡ଼ିକ ବେଶ୍ ସ୍ପଷ୍ଟ ଏବଂ ତାକୁ ଏଡ଼ାଇବା ଅସମ୍ଭବ । ସେ ଡାକୁଥିଲେ 'ଜୋସେଫ୍ କେ' ।

Digitized by srujanika@gmail.com

କେ’ ଟିକିଏ ରହିଗଲା । ଆଉ ତା ସାମ୍ନାରେ ଥିବା ଖୋଲା ସ୍ଥାନଟିକୁ ଚାହିଁ ରହିଲା । ଏଇ ମୁହୂର୍ତ୍ତରେ ସେ ତଥାପି ମୁକ୍ତ । ଇଚ୍ଛା କଲେ ସେ ତା ବାଟରେ ଯାଇପାରେ । ଅଳ୍ପ ଦୂରରେ ତା ଆଗରେ ଥିବା ଅନ୍ଧାରୁଆ ଦ୍ୱାରଗୁଡ଼ିକ ଭିତରୁ ଯେ କୌଣସି ଗୋଟିକ ଭିତର ଦେଇ ସେ ବାହାରକୁ ଚାଲି ଯାଇପାରେ । ତାର ଏପରି ବ୍ୟବହାର ସୂଚାଇ ଦେବ ଯେ ସେ ପୁରୋହିତଙ୍କ ଡ଼ାକକୁ ବୁଝିପାରି ନାହିଁ ଅବା ଯଦି ବୁଝିପାରିଥାଏ ଜାଣିଶୁଣି ଖାତିର୍ କରି ନାହିଁ । ଯଦି ସେ ପଛକୁ ବୁଲେ ତେବେ ସେ ଧରାପଡ଼ିଯିବ । ତା ପଛକୁ ଚାହିଁବା ଦ୍ୱାରା ଏହା ବୁଝାଯିବ ଯେ ସେ ପୁରୋହିତଙ୍କ ଡ଼ାକକୁ ବେଶ୍ ଭଲଭାବେ ବୁଝିଛି । ସିଏ ହେଉଛି ପ୍ରକୃତ ବ୍ୟକ୍ତି, ଯାହାକୁ ଡ଼କା ଯାଉଥିଲା । ସେ ମଧ୍ୟ ଡ଼ାକକୁ ଗ୍ରହଣ କରିବା ପାଇଁ ପ୍ରସ୍ତୁତ ମଧ୍ୟ ଥିଲା । ଯଦି ପୁରୋହିତ କେ’ର ନାମକୁ ଦ୍ୱିତୀୟ ଥର ପାଇଁ ଡ଼ାକିଥା’ନ୍ତେ ତେବେ କେ’ ନିଶ୍ଚିତ ଭାବେ ଚାଲିଯାଇଥା’ନ୍ତା । ମାତ୍ର ସବୁ ଚୁପ୍‌ଚାପ୍ ହୋଇଗଲା । ଅନେକ ସମୟ ଅପେକ୍ଷା କରିବା ପରେ ବି ଆଉ କିଛି ନଶୁଣିଲାରୁ ପୁରୋହିତ କ’ଣ କରୁଛନ୍ତି ଦେଖିବାର ପ୍ରବଳ ଆଗ୍ରହକୁ କେ’ ଆଉ ଏଡ଼ି ପାରିଲାନି । ପୁରୋହିତ ବେଦୀ ଉପରେ ପୂର୍ବପରି ଚୁପ୍‌ଚାପ୍ ଧୀରସ୍ଥିର ହୋଇ ଠିଆ ହୋଇଥିଲେ । ତଥାପି ଜଣା ପଡ଼ୁଥିଲା ଯେମିତି ସେ କେ’ର ପଛକୁ ଚାହିଁବାକୁ ନଜର କରୁଛନ୍ତି । କେ’ ଯଦି ପଛ ପଡ଼ି ତାଙ୍କ ସାମ୍ନା ନକରେ ତେବେ ତାର ବ୍ୟବହାର ପିଲାଙ୍କର ଲୁଚକାଳି ଖେଳପରି ଜଣାଯିବ । ତେଣୁ ସେ ପୁରୋହିତଙ୍କ ଆଡ଼କୁ ଚାହିଁଲା ଏବଂ ପୁରୋହିତ ତାକୁ ତାଙ୍କ ପାଖକୁ ଆସିବାପାଇଁ ହାତଠାରି ଡ଼ାକିଲେ । ସେତେବେଳେ ଏଡ଼ାଇଯିବାର ଆଉ ପ୍ରଶ୍ନ ଉଠିଲାନି । କେ’ ଶୀଘ୍ର ଶୀଘ୍ର ପଛକୁ ଫେରିଲା । ବର୍ତ୍ତମାନ ତା ମନ କୌତୂହଳ ଭରି ଆଉ ସେ ତରତର ହେଉଥାଏ କେମିତି ଏ ସାକ୍ଷାତକାର ଅଳ୍ପକେ ସରିଯାଉ । ତେଣୁ ସେ ଲମ୍ବା ଲମ୍ବା ପାହୁଣ୍ଡ ପକାଇ ବେଦୀ ଆଡ଼କୁ ଆଗେଇଲା । ପଡ଼ିଥିବା ବେଞ୍ଚର ପ୍ରଥମ ଧାଡ଼ିପାଖରେ କେ’ ଅଟକିଲା । ମାତ୍ର କେ’ ଆଉ ତାଙ୍କ ଭିତରେ ଥିବା ବ୍ୟବଧାନକୁ ପୁରୋହିତ ଅଧିକ ମନେ କରିବାକୁ ଆଙ୍ଗୁଳି ଦେଖାଇ ବେଦୀର ଠିକ୍ ସାମ୍ନାରେ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନ ଦେଖାଇ ଦେଲେ । କେ’ ମଧ୍ୟ ତାଙ୍କ ଆଦେଶ ପାଳନ କଲା । ତାକୁ ଦେଖାଇ ଦିଆଯାଇ ଥିବା ସ୍ଥାନରେ ଯେତେବେଳେ କେ’ ଆସି ଠିଆ ହେଲା ସେଠାରୁ ପୁରୋହିତଙ୍କୁ ଠିକ୍‌ଏ ଦେଖିବା ପାଇଁ କେ’କୁ ତା ମଥାକୁ ପଛକୁ ବହୁତ ବଙ୍କାଇବାକୁ ପଡ଼ିଲା । ବାଡ଼ା ଉପର ଗୋଟିଏ ହାତକୁ ଅନିର୍ଦ୍ଦିଷ୍ଟ ଭାବରେ ଟେକି ପୁରୋହିତ କହିଲେ— ‘ତୁମେ ଜୋସେଫ୍ କେ’ ।’ କେ’ ହଁ କଲା ଏବଂ ମନେ ମନେ ଭାବିଲା କେତେ ସହଜରେ ସେ ତାର ନାମ କହିଦେଲା ଏବଂ ଅଳ୍ପ ସମୟ ଆଗରୁ ଏହି ନାମ ହିଁ ତା ପାଖରେ କେତେବଡ଼ ବୋଝ ହୋଇ ରହିଥିଲା । ଆଜିକାଲି ସେ ଦେଖୁଛି

Digitized by srujanika@gmail.com

ଯେଉଁମାନଙ୍କୁ ଆଗରୁ ସେ କେବେ ଦେଖିନାହିଁ ସେମାନେବ ତାର ନାମ ଜାଣିଛନ୍ତି । ଚିହ୍ନାହେବା ଆଗରୁ ନିଜକୁ ପରିଚିତ କରାଇବାର ଅନୁଭୂତ ଆଗରୁ କେତେ ଆନନ୍ଦଦାୟକ ଥିଲା ।

'ତୁମେ ଜଣେ ଅଭିଯୁକ୍ତ ବ୍ୟକ୍ତି' ଅତି ଧୀର ଗଳାରେ ପୁରୋହିତ କହିଲେ ।

'ହଁ, ମୋତେ ସେମିତି ଜଣାଇ ଦିଆଯାଇଛି ।' କେ' କହିଲା ।

'ତା'ହେଲେ ତୁମକୁ ହିଁ ମୁଁ ଖୋଜୁଥିଲି । ମୁଁ ବନ୍ଦୀଶାଳାର ପୁରୋହିତ ।' ପୁରୋହିତ କହିଲେ ।

'ସତେ ?' କେ' କହିଲା ।

'ତୁମ ସହ କଥା ହେବାକୁ ମୁଁ ତୁମକୁ ଡକାଇଥିଲି ।

'ମୁଁ ତ ତା' ଜାଣିନଥିଲି । ମୁଁ ତ ଜଣେ ଇଟାଲୀୟ ଭଦ୍ରବ୍ୟକ୍ତିଙ୍କୁ ଗୀର୍ଜା ବୁଲାଇ ଦେଖାଇବାକୁ ଏଠାକୁ ଆସିଥିଲି ।' କେ' କହିଲା ।

'ସେ ଅଲଗା କଥା ।' ତୁମ ହାତରେ ସେଟା କଅଣ ? କଅଣ ଗୋଟେ ପ୍ରାର୍ଥନା ପୁସ୍ତକ ?' ପୁରୋହିତ ପଚାରିଲେ ।

'ନା, ସହରର ଦର୍ଶନୀୟ ସ୍ଥାନମାନଙ୍କର ଗୋଟିଏ ଆଲ୍‌ବମ୍‌ କେ' କହିଲା ।

'ତାକୁ ତଳେ ରଖିଦିଅ ।' ପୁରୋହିତ କହିଲେ ।

'କେ' ଆଲ୍‌ବମ୍‌ଟିକୁ ଏତେ ଜୋର୍‌ରେ ଫିଙ୍ଗିଦେଲା ଯେ ତାହା ପୁରା ଖୋଲିଯାଇ ଚଟାଣ ଉପରେ ପଡ଼ିଲା ଏବଂ ଗୁଡ଼ାଏ ବାଟ ଘଷରି ଗଲା ।

'ତୁମେ ଜାଣିଛନା ତୁମ କେଶ୍‌ ଖୁବ୍‌ ଖରାପ ଅବସ୍ଥାରେ ଅଛି ?'

'ମୋର ନିଜର ସେ ଧାରଣା ଅଛି । ମୋ ଦ୍ୱାରା ଯାହା ସମ୍ଭବ କରିଛି । କିନ୍ତୁ କିଛି ଫଳ ପାଇନି । ଅବଶ୍ୟ ମୋର ଆବେଦନ ଏବେବି ସରିନାହିଁ ।'

'ଏହା ସରିବ ବୋଲି ତୁମେ କେମିତି ଭାବୁଛ ?' ପୁରୋହିତ କହିଲେ ।

'ପ୍ରଥମେ ଏହା ଭଲରେ ସରିବ ବୋଲି ମୁଁ ଭାବିଥିଲି । ବର୍ତ୍ତମାନ କିନ୍ତୁ ମୋର ବେଳେ ବେଳେ ସନ୍ଦେହ ହେଉଛି । କଅଣ ହେବ ଏବେ ମୁଁ କହିପାରିବି ନାହିଁ । ଆପଣ କହିପାରିବେ କି' ? କେ' ପଚାରିଲା ।

Digitized by srujanika@gmail.com

'ନା, ତେବେ ମୋର ଉପସ୍ଥିତ ଏହାର ସମାପ୍ତି ଖରାପ ହେବ । 'ତୁମେ ଦୋଷୀ ବୋଲି ଧରାଯାଇଛ । ତଳକୋର୍ଟରୁ ଉପରକୁ ବୋଧହୁଏ ତୁମ କେଶ୍ ଆଉ ଯାଇପାରିବ ନାହିଁ । ବର୍ତ୍ତମାନ ପାଇଁ ଅନ୍ତତଃ ଅଡକମ୍‌ରେ ତୁମ ଦୋଷ ପ୍ରମାଣିତ ହୋଇଛି ବୋଲି ଧରାଯାଇଛି ।' ପୁରୋହିତ କହିଲେ ।

'କିନ୍ତୁ ମୁଁ ତ ଦୋଷୀ ନୁହେଁ, ଏପରି ଧରିବା ଗୋଟେ ବିରାଟ ଭୁଲ୍,' ଏହାହିଁ ଯଦି ପରିଣତ ହୁଏ ତେବେ ଯେକୌଣସି ଲୋକଙ୍କୁ କିଣ ଦୋଷୀ କରିବା ସମ୍ଭବ ? ଆମେ ଏଠାରେ ସମସ୍ତେ ସରଳ । ଆପଣ ଯେମିତି ମୁଁ ବି ସେମିତି ।' କେ' କହିଲା ।

'ଏହାତ ସତ । କିନ୍ତୁ ଦୋଷୀମାନେ ତ ଏଇମିତି କହିଥାଆନ୍ତି ।' ପୁରୋହିତ କହିଲେ ।

'ଆପଣଙ୍କ ମନ ବି କ'ଣ ମୋ ବିରୁଦ୍ଧରେ ପୂର୍ବରୁ ଖରାପ ହୋଇଛି ?' କେ' ପଚାରିଲା ।

'ତୁମ ବିରୁଦ୍ଧରେ ମୋର ପୂର୍ବ ଧାରଣା କିଛି ନାହିଁ ।' ପୁରୋହିତ କହିଲେ ।

'ଧନ୍ୟବାଦ । କିନ୍ତୁ ଏ ମକଦ୍ଦମା ସହିତ ଅନ୍ୟ ଯେଉଁମାନେ ଜଡ଼ିତ ସେମାନଙ୍କ ମନ ମୋ ବିରୁଦ୍ଧରେ ପୂର୍ବରୁ ଖରାପ ହୋଇଛି । ସେମାନେ ବାହାର ଲୋକଙ୍କୁ ବି ପ୍ରଭାବିତ କରୁଛନ୍ତି । ମୋର ଅବସ୍ଥା ଦିନକୁଦିନ ଜଟିଳ ହୋଇ ପଡ଼ୁଛି ।' କେ' କହିଲା ।

'ତୁମେ କେଶ୍‌କୁ ଭୁଲ୍ ଭାବରେ ପ୍ରକାଶ କରୁଛ । ଶେଷ ସିଦ୍ଧାନ୍ତ ତର-ତର ହୋଇ ନିଆଯାଏ ନାହିଁ । ଧୀରେ ଧୀରେ ବିଭିନ୍ନ ଧାରା, ଉପାୟ ଦେଇ ଏହି ସିଦ୍ଧାନ୍ତରେ ଉପନୀତ ହେବାକୁ ପଡ଼େ ।'

'ତେବେ ଏପରି ଭାବରେ ସବୁ ସିଦ୍ଧାନ୍ତ ନିଆଯାଏ ?' ତା ମୁଣ୍ଡକୁ ନୁଆଁଇ କେ' ପଚାରିଲା ।

'ଏହାପରେ ଆଉ କଣ କରିବାକୁ ତୁମେ ଠିକ୍ କରିଛ ?' ପୁରୋହିତ ପଚାରିଲେ ।

'ଅଧିକ ସାହାଯ୍ୟ ପାଇବା ପାଇଁ ଚେଷ୍ଟା କରିବି ।' ଏତିକି କହି କେ' ମୁଣ୍ଡଟେକି ପୁରୋହିତଙ୍କୁ ଅନାଇଲା । ତାର ଉଦ୍ଦେଶ୍ୟ ପୁରୋହିତ ଏପରି ମତକୁ କପରି ଭାବରେ ଗ୍ରହଣ କରୁଛନ୍ତି ତାହା ଜାଣିବାକୁ ଚେଷ୍ଟା କରିବା । 'ଆହୁରି

Digitized by srujanika@gmail.com

ଅନେକ ସମ୍ଭାବନା ଅଛି  ଯାହାକୁ ମୁଁ ଏବେବି ପାଇବା ପାଇଁ ଚେଷ୍ଟା କରିନାହିଁ ।' କେ' କହିଲା ।

'ବାହାରିଆ ସାହାଯ୍ୟ ପାଇଁ ତୁମେ ବହୁତ ଚେଷ୍ଟା କରୁଛ । ବିଶେଷତଃ ସ୍ତ୍ରୀଲୋକମାନଙ୍କର । ଏପରି ସାହାଯ୍ୟ ନେବା ଠିକ୍ ନୁହେଁ ତୁମେ କଅଣ ଏକଥା ଜାଣିପାରୁନ ?' ପୁରୋହିତ ନାପସନ୍ଦ କରି କହିଲେ ।

'ଆପଣ ଯାହା କହୁଛନ୍ତି ତା ହୁଏତ ଅନେକ କ୍ଷେତ୍ରରେ ଠିକ୍ ମାତ୍ର ସବୁ କ୍ଷେତ୍ରରେ ନୁହେଁ । ଆପଣଙ୍କ ସହ ମୁଁ ଏକମତ ହୋଇପାରୁ ନାହିଁ । କେ' ଏତିକ କହି କିଛିଏ ରହି ପୁଣି କହିଲା—'ମୋର ଜଣାଶୁଣା କେତେକ ସ୍ତ୍ରୀ ଲୋକଙ୍କୁ ଯଦି ମୋ' ପାଇଁ ଲଗାଇ ପାରନ୍ତି ତେବେ ତ ନିଶ୍ଚିତ ଭାବେ ଜିତାପଟ ମୋର ହୁଅନ୍ତା । ବିଶେଷ କରି ଏହି କୋର୍ଟରେ ଲୋକମାନେ ଯେଉଁଠି ସ୍ତ୍ରୀ ଲୋକର ଅନୁବାପଟିଏ ପାଇଁ ପାଗଳ । ଦୂରରୁ ସ୍ତ୍ରୀ ଲୋକକୁ ଦେଖିଲେ ବିଚାର କରୁଥିବା ମାଜିଷ୍ଟ୍ରେଟ୍ ଯେଉଁଠି ତା ପାଖକୁ ଯିବା ପାଇଁ ବ୍ୟସ୍ତ ହୋଇ ଉଠେ ।'

ପ୍ରଥମଥର ପାଇଁ ତାଙ୍କ ମୁଣ୍ଡ ଉପରେ ଥିବା ନୁଆଁଣିଆ ଛାତ ପାଇଁ ହେଉ-ଥିବା ଅସୁବିଧାକୁ ଅନୁଭବ କରି ପୁରୋହିତ ବାଡ଼ା ଉପରେ ନଇଁ ପଡ଼ିଲେ । ବାହାରେ କି କଦର୍ଯ୍ୟ ପାଗ ବର୍ତ୍ତମାନ ପର୍ଯ୍ୟନ୍ତ ଦିନର କିଛିଏ ଫିକା ଆଲୁଅର ବି ଦେଖା ନାହିଁ । ଅନ୍ଧାର ଯେମିତି ଘୋଟି ଯାଇଛି । କେବଳ ମାତ୍ର ଜଳୁଥିବା ଗୋଟିଏ ଦୀପର ମଳିନ ଆଲୁଅ ସାହାଯ୍ୟରେ ବଡ଼ବଡ଼ ଝରକାର ରଙ୍ଗୀନ କାଚ ଗୁଡିକବି ଅନ୍ଧାର ଦୂର କରିବାରେ ସଫଳ ହେଉନାହାନ୍ତି । ଏପରି ଅବସ୍ଥାରେ ଟହଲିଆ ଉଚ୍ଚ ବେଦୀ ଉପରେ ଜଳୁଥିବା ଦୀପଗୁଡ଼ିକୁ ଗୋଟିକ ପରେ ଗୋଟିଏ ଲିଭାଇ ଦେବାକୁ ଲାଗିଲା ।

'ଆପଣ ମୋ' ଉପରେ ରାଗିଲେ କି ? ଏହା ହୋଇପାରେ ଯେ ଆପଣ ଯେଉଁ କୋର୍ଟର ସେବା କରୁଛନ୍ତି ତାର ପ୍ରକୃତ ରୂପ ଜାଣିନାହାନ୍ତି ।' କେ' ପଚାରିଲା ମାତ୍ର କୌଣସି ଉତ୍ତର ପାଇଲା ନାହିଁ । ପୁଣି କେ' କହିଲା 'ଏଗୁଡ଼ିକ ମୋର କେବଳ ବ୍ୟକ୍ତିଗତ ଅନୁଭୂତି ।' ତଥାପି କୌଣସି ଉତ୍ତର ନାହିଁ ।

'ମୁଁ ଆପଣଙ୍କୁ ଅପମାନିତ କରିବାକୁ ଚାହୁଁଥିଲି ।' ଏତିକି ଶୁଣିଲା ମାତ୍ରେ ବେଦୀ ଉପରୁ ପୁରୋହିତ ଚିତ୍କାର କରି ଉଠିଲେ—'ତୁମେ କଅଣ ତୁମ ସାମ୍ନାରେ ପାଦେ ବି ଦେଖି ପାରୁନ ?' ଏହା ଏକ ବିରକ୍ତ ହେବାର ଚିତ୍କାର । କିନ୍ତୁ ତା' ସଙ୍ଗେ ସଙ୍ଗେ ଜଣେ ପଡ଼ିଗଲେ ଆଉ ଜଣେ ଯେମିତି ହଠାତ୍ ଚିତ୍କାର କରି ଉଠେ ଏହା ଠିକ୍ ସେହିମିତି ଜଣାଗଲା ।

Digitized by srujanika@gmail.com

କିନ୍ତୁ ଅନେକ ସମୟ ଧରି ଦୁଇଜଣ ନୀରବ । ଘୋଟିଥିବା ଅନ୍ଧାର ଭିତରେ ପୁରୋହିତ କେ'ର ଆକୃତିକୁ ଦେଖିପାରୁ ନଥିଲେ । କିନ୍ତୁ ଷ୍ଟେଜ ଲାମ୍ପଟିର ମଳିନ ଆଲୁଅରେ କେ' ପୁରୋହିତଙ୍କୁ ପରିଷ୍କାର ଦେଖି ପାରୁଥିଲା । ସେ କାହିଁକି ବେଦୀ ଉପରୁ ଓହ୍ଲାଇ ଆସୁନାହାନ୍ତି । ସିଏତ କିଛି ପ୍ରବଚନ ଦେଉ ନାହାନ୍ତି । ସେ କେବଳ କେ'ଙ୍କୁ କିଛି ଖବର ଦେଲେ ମାତ୍ର । ସେ ଖବର ତାର କିଛି ଉପକାର ନ କରି ବରଂ କ୍ଷତି କରିବ । ତଥାପି ପୁରୋହିତଙ୍କର ମହତ ଉଦ୍ଦେଶ୍ୟ ବିଷୟରେ କେ'ର ସନ୍ଦେହ ନଥିଲା । ଦୁଇଜଣଙ୍କ ଭିତରେ ଗୋଟିଏ ସାଲିସ୍ ହୋଇଯିବା ମଧ୍ୟ କିଛି ଅସମ୍ଭବ ନୁହେଁ । କିନ୍ତୁ ବେଦୀ ଉପରୁ ସେ ତଳକୁ ଆସିଲେ ଯାଇ ଏହା ସମ୍ଭବ । ଏହା ମଧ୍ୟ ଅସମ୍ଭବ ନୁହେଁ ଯେ କେ' ତାଙ୍କ ପାଖରୁ କିଛି ଗ୍ରହଣଯୋଗ୍ୟ ଓ ହିତବୃତ୍ତିମୂଳକ ଉପଦେଶ ପାଇପାରେ ଯାହାକି ହୁଏତ ପଦକ୍ଷେପ ବିଷୟରେ ନୁହେଁ ବରଂ ସବୁଦିନ ପାଇଁ କେମିତି ଏକେସ୍‌ରୁ ମୁକୁଳି ହେବ; ଏ ବିଷୟରେ ଗୋଟିଏ ପୂର୍ଣ୍ଣଚ୍ଛେଦ ଟାଣି ହେବ, ସେ ବିଷୟରେ କିଛି ସୂଚନା ଦେବ । ତାଙ୍କ ଉପଦେଶରୁ ହୁଏତ କୋର୍ଟର ପ୍ରଭାବରୁ ମୁକ୍ତରହି ବହୁଦୂରରେ ବଞ୍ଚିବାର ଗୋଟିଏ ନୂଆ ରାହା ମିଳିଯିବ । ଏପରି ସମ୍ଭାବନାତ ନିଶ୍ଚୟ ଅଛି । କେ' ଏ ବିଷୟରେ ବହୁତ ଚିନ୍ତା କରିଛି । ଯଦି ପୁରୋହିତ ଏପରି ସମ୍ଭାବନା ବିଷୟରେ ଅବଗତ ହୁଅନ୍ତେ ତେବେ ହୁଏତ ଅନୁରୋଧ କଲେ ସେ ତାଙ୍କର ଉପଦେଶ ଦିଅନ୍ତେ । ଅବଶ୍ୟ ପୁରୋହିତ ଜଣେ କୋର୍ଟର ଅଂଶ ବିଶେଷ । କିନ୍ତୁ କୋର୍ଟର ନାମ ଶୁଣିବାମାତ୍ରେ ସେ ତାଙ୍କର ଧୀରସ୍ଥିର ସ୍ୱଭାବକୁ ଭୁଲି ନିଜ ଚିତ୍କାର ଦ୍ୱାରା କେ'ଙ୍କୁ ଚୁପ୍ କରିଦେବାକୁ ବସିଲେ ।

'ଆପଣ କ'ଣ ଏଠାକୁ ଆସିବେ ନାହିଁ ? ଆପଣଙ୍କରତ ପ୍ରବଚନ ଦେବାର ନାହିଁ । ମୋ ପାଖକୁ ଓହ୍ଲାଇ ଆସ ।' କେ' କହିଲା ।

'ମୁଁ ବର୍ତ୍ତମାନ ଓହ୍ଲାଇଯାଇ ପାରେ ।' ନିଜ ଚିତ୍କାରରେ ଦୁଃଖିତ ହୋଇ ପୁରୋହିତ କହିଲେ । ବନ୍ଧାଟିକୁ ଖୁଣ୍ଟାରୁ କାଢ଼ୁକାଢ଼ୁ ପୁଣି ସେ କହିଲେ । 'ତୁମ ପାଖରୁ କିଛି ଦୂରତା ରଖି ମୋତେ ସବୁ କହିବାକୁ ପଡ଼ିବ । ତା ନହେଲେ ମୁଁ ଖୁବ୍ ସହଜରେ ପ୍ରଭାବିତ ହୋଇଯିବି ଆଉ ମୋର କର୍ତ୍ତବ୍ୟକୁ ଭୁଲିଯିବି ।'

ପାହାଚତଳେ କେ' ତାଙ୍କ ପାଇଁ ଅପେକ୍ଷା କଲା । ଉପର ପାହାଚରେ ଥିଲା ବେଳେ ପୁରୋହିତ କେ' ଆଡ଼କୁ ତାଙ୍କ ହାତ ବଢ଼ାଇ ଦେଲେ ।

'ମୋ'ପାଇଁ ଅଳ୍ପ ସମୟ ଦେଇ ପାରିବେ କି ?' କେ' ପଚାରିଲା ।

Digitized by srujanika@gmail.com

'ଯେତେ ସମସ୍ତ ତୁମର ଦରକାର' କେ' ହାତକୁ ଘାଣ୍ଟିକୁ ବଢ଼ାଇ ଦେଇ ଦେଇ ପୁରୋହିତ କହିଲେ । ଏତେ ପାଖରେ ବି ସେ କେମିତି ଗମ୍ଭୀର ପରିବେଶ ସୃଷ୍ଟି କରୁଥିଲେ ।

'ଆପଣ ମୋ ପାଇଁ ଖୁବ୍ ଭଲ ।' କେ' କହିଲା । ସେମାନେ ପାଖାପାଖି ହୋଇ ଅନ୍ଧାରୁଆ ଗୀର୍ଜାରେ ବୁଲିବାକୁ ଲାଗିଲେ । 'କିନ୍ତୁ ଆପଣଙ୍କ କୋର୍ଟ ସହ ସମ୍ପୃକ୍ତ ବ୍ୟକ୍ତିମାନଙ୍କ ଭିତରୁ କେତେ ଭିନ୍ନ । ସେଠି କୋର୍ଟ ଲୋକଙ୍କ ଭିତରୁ ଅନେକଙ୍କୁ ମୁଁ ଜାଣେ ତଥାପି ସେମାନଙ୍କଠାରୁ ଆପଣଙ୍କ ଉପରେ ମୋର ବେଶୀ ବିଶ୍ୱାସ । ଆପଣଙ୍କ ସହ ଖୋଲି ମନରେ ମୁଁ କଥା ହୋଇପାରିବି ।'

'କେବେ ପ୍ରତାରିତ ହୁଅ ନାହିଁ ।' ପୁରୋହିତ କହିଲେ ।

'ମୁଁ କେମିତି ପ୍ରତାରିତ ହେଲି ?' କେ' ପଚାରିଲା ।

'ନ୍ୟାୟାଳୟ ସମ୍ପର୍କରେ ତୁମେ ନିଜକୁ ପ୍ରତାରିତ କରୁଛ । ଆଇନ ପୁସ୍ତକର ମୁଖବନ୍ଧରେ ଏପରି ପ୍ରତାରଣା ବିଷୟରେ ଲେଖା ହୋଇଛି ଯଥା— 'ଆଇନର ସମ୍ମୁଖରେ ଜଣେ ଦ୍ୱାରପାଳ ଛିଡ଼ାହୋଇଛି । ଆଇନର ଦ୍ୱାରସ୍ଥ ହେବା ପାଇଁ ଗ୍ରାମରୁ ଜଣେ ବ୍ୟକ୍ତି ଆସି ଏହି ଦ୍ୱାରପାଳ ନିକଟରେ ଠିଆ ହେଲା । କିନ୍ତୁ ଦ୍ୱାରପାଳ କହିଲା ଯେ ସେ ତାକୁ ସେତେବେଳେ ଛାଡ଼ିପାରିବ ନାହିଁ । ତାପରେ ସାମାନ୍ୟ ଚିନ୍ତା କରି ପଚାରିଲା ଯେ କିଛିକ୍ଷଣ ପରେ ତାକୁ ଭିତରକୁ ଯିବାପାଇଁ ଅନୁମତି ମିଳି ପାରିବ କି ? ଏହା ସମ୍ଭବ ବୋଲି ଦ୍ୱାରପାଳ କହିଲା । 'କିନ୍ତୁ ବର୍ତ୍ତମାନ ନୁହେଁ ।' ଆଇନର ଦ୍ୱାର ତ ସବୁବେଳେ ଖୋଲା । ଦ୍ୱାରପାଳ ଟିକିଏ ଘୁଞ୍ଚି ଠିଆ ହେବାରୁ ଗ୍ରାମରୁ ଆସିଥିବା ଲୋକଟି ଦ୍ୱାର ଦେଇ ଉଙ୍କିମାରି ଦେଖିବାକୁ ଚେଷ୍ଟା କଲା । ଏହା ଦେଖି ଦ୍ୱାରପାଳ ହସି ଉଠିଲା ଆଉ କହିଲା—'ଭିତରକୁ ଯିବାପାଇଁ ତୁମର ଆଗ୍ରହ ଯଦି ଏତେ ପ୍ରବଳ ତେବେ ମୋ' ଅନୁମତିକୁ ଅପେକ୍ଷା ନ କରି ଭିତରକୁ ଯାଉନ ? କିନ୍ତୁ ମନେରଖ ମୁଁ ଖୁବ୍ ଶକ୍ତିଶାଳୀ । ଏ ପ୍ରସଙ୍ଗରେ ମନେରଖ ଯେ ମୁଁ ସବାତଳିଆ ଦ୍ୱାରପାଳ । ପ୍ରତ୍ୟେକ ଦ୍ୱାର ଆଗରେ ଗୋଟିଏ ଗୋଟିଏ ଦ୍ୱାରପାଳ ଜଗିଛନ୍ତି । ସମସ୍ତେ ଏକରୁ ଆରେକ ମହାବଳି । ଏମିତିକି ତୃତୀୟ ଦ୍ୱାରପାଳ ଆଗରେ ଠିଆ ହେବାର ଶକ୍ତି ମୋର ମଧ୍ୟ ନାହିଁ । ଗ୍ରାମରୁ ଆସିଥିବା ଲୋକଟି ଏସବୁ ଅସୁବିଧାର ସମ୍ମୁଖୀନ ହେବ ବୋଲି ଆଶା କରି ନଥିଲା । ସେ ଭାବିଥିଲା ଆଇନ ସବୁବେଳେ ସମସ୍ତଙ୍କ ପାଇଁ ସହଜରେ ମିଳିଥାଏ । କିନ୍ତୁ ଯେତେବେଳେ ସେ ଦ୍ୱାରପାଳକୁ ନିରେଖି ଦେଖିଲା, ତାର ଦୀର୍ଘ ତୀକ୍ଷ୍ଣ ନାକ, ଲମ୍ବା ପତଳା ଅସଜ୍ଜିତ ଦାଢ଼ି ଆଉ ଲୋମଶ ପୋଷାକକୁ ଭଲ କରି ଦେଖିଲା ସେ

Digitized by srujanika@gmail.com

ଠିକ୍ କଲା ସେ ଯିବା ପାଇଁ ଅନୁମତି ମିଳିବା ପର୍ଯ୍ୟନ୍ତ ସେଠାରେ ଅପେକ୍ଷା କରିଯିବା ଭଲ । ଦ୍ୱାରପାଳ ତାକୁ ଗୋଟିଏ ଷ୍ଟୁଲ୍ ଦେଲା ଯେମିତିକି ଦ୍ୱାରର ଗୋଟିଏ କଡ଼ରେ ସେ ବସିପାରିବ । ସେଇଠି ସେ ଅପେକ୍ଷା କରି ବସି ରହିଲା ଦିନ ଦିନ ଧରି, ବର୍ଷ ବର୍ଷ ଧରି । ଭିତରକୁ ଯିବାର୍ ଅନୁମତି ପାଇଁ ସେ ବହୁତ ଚେଷ୍ଟାକଲା । ଏବଂ ଦ୍ୱାରପାଳକୁ ବହୁ ଅପ୍ରୀତିକର ଅନୁରୋଧ ଦ୍ୱାରା କ୍ଲାନ୍ତ କରି ଦେଲା । ଅନେକ ସମୟରେ ଦ୍ୱାରପାଳ ତା ସାଙ୍ଗରେ ଅଳ୍ପ ଅଳ୍ପ କଥାବାର୍ତ୍ତା ହେଉଥାଏ । ତା' ନିଜ ବିଷୟ, ଘର ବିଷୟ ଏବଂ ଅନ୍ୟାନ୍ୟ ବିଷୟ ପଚାରି ବୁଝୁଥାଏ । ମାତ୍ର ପ୍ରଶ୍ନଗୁଡ଼ିକ ବଡ଼ ଅବୈକ୍ତିକ । ଯେମିତି ବଡ଼ ଲୋକମାନେ ସାଧାରଣତଃ ପଚାରିଥାନ୍ତି ସେଇ—ମିତିକା ଉପର ଠାଉରିଆ । ସବୁକଥାବାର୍ତ୍ତାର ଶେଷରେ କିନ୍ତୁ ସେହି ଗୋଟିଏ କଥା ବର୍ତ୍ତମାନ ଭିତରକୁ ଯିବାପାଇଁ ଅନୁମତି ମିଳିପାରିବ ନାହିଁ । ସେ ଲୋକଟି ତା ଯାତ୍ରା ପାଇଁ ଅନେକ ଜିନିଷପତ୍ର ଧରି ଆସିଥିଲା । ଦ୍ୱାରପାଳକୁ ଲାଞ୍ଚ ଦେବା ଉଦ୍ଦେଶ୍ୟରେ ସେସବୁ ଜିନିଷ; ଯେତେ ଦାମିକା ହେଲେବି, ସବୁ ଦେଇ ଦେଲା । ଦ୍ୱାରପାଳ ସବୁ ଜିନିଷକୁ ଗ୍ରହଣ କଲା ଏବଂ ଉପହାରଗୁଡ଼ିକୁ ନେଲା ବେଳେ କିନ୍ତୁ କହୁଥାଏ । 'ମୁଁ ଏସବୁ ଜିନିଷ ନେଉଛି କେବଳ ତୁମ ମନରେ ଏହି ଧାରଣା ଦେବାପାଇଁ ଯେ ତୁମେ ନିରୁପାୟ ନୁହଁ ।' ଏସବୁ ବର୍ଷ ମାନଙ୍କରେ ଲୋକଟି ଦ୍ୱାରପାଳକୁ ପ୍ରାୟ ସବୁବେଳେ ନଜର ରଖିଥାଏ । ଅନ୍ୟ ଦ୍ୱାରପାଳମାନଙ୍କ ବିଷୟରେ ସେ ଭୁଲିଗଲା । ଲୋକଟିର ମନେ ହେଲା ଯେମିତି ଆଇନ୍ ଆଉ ତା ଭିତରେ ଏହି ଦ୍ୱାରପାଳ ହିଁ ଏକମାତ୍ର ପ୍ରତିବନ୍ଧକ । ପ୍ରଥମ ବର୍ଷ ସେ ତାର ମନ୍ଦ ଭାଗ୍ୟକୁ ଧିକ୍କାର କଲା । ପରେ ପରେ ତା' ବୟସ ବଢ଼ିବାରୁ ସେ କେବଳ ନିଜ ସାଥିରେ ହିଁ କଥା କହିବାରେ ଲାଗିଲା । ସେ ଧୀରେ ଧୀରେ ପିଲାଳିଆ ହୋଇଗଲା । ଏବଂ ତାର ଦୀର୍ଘ ଅନୁଧ୍ୟାନ ଫଳରେ ଦ୍ୱାରପାଳର ଲୋମଶ ପୋଷାକର କଲର୍‌ରେ ବସୁଥିବା ମାଛିଗୁଡ଼ିକୁ ବି ଚିହ୍ନି ରଖିଲା । ତାକୁ ସାହାଯ୍ୟ କରିବା ପାଇଁ ସେହି ମାଛିଗୁଡ଼ିକୁ ସେ ଅନୁରୋଧ କଲା । ଦ୍ୱାରପାଳର ମନ ପରିବର୍ତ୍ତନ କରିବାକୁ ପ୍ରବର୍ତ୍ତାଇବା ପାଇଁ ଅନୁରୋଧ କଲା । ଶେଷରେ ତା' ଆଖିରେ ପରଳ ପଡ଼ିଆସିଲା । ସେ ଜାଣିପାରିଲାନି ଯେ ତା' ଚାରିପାଖର ପୃଥିବୀ ଧୀରେ ଧୀରେ ଅନ୍ଧାରୁଆ ହୋଇ ଆସୁଛି ନା ତା' ଆଖି ତାକୁ ପ୍ରତାରିତ କରୁଛି । କିନ୍ତୁ ଏହି ମାଡ଼ି ଆସୁଥିବା ଅନ୍ଧାର ଭିତରେ ସେ ହଠାତ୍ ଏକ ଉଜ୍ଜ୍ୱଳ ଆଭା ଦେଖି ପାରିଲା ଯାହାକି ଆଇନର ଦ୍ୱାର ଦେଶରୁ ଅନିର୍ବାପିତ ଭାବେ ଜଳି ଉଠୁଥିଲା । ବର୍ତ୍ତମାନ ତା' ଜୀବନର ଶେଷ ମୁହୂର୍ତ୍ତ ଆଗତ ପ୍ରାୟ । ମରିବା ପୂର୍ବରୁ ଏଠାକୁ ଆସି କଟାଇଥିବା ସମୟରେ ପାଇଥିବା ସବୁ ଅନୁଭୂତିର ନିର୍ଯ୍ୟାସ ସ୍ୱରୂପ ଗୋଟିଏ ପ୍ରଶ୍ନ ତା' ମନରେ ଉଠିଥିଲା । ସେ ପ୍ରଶ୍ନଟିକୁ କିନ୍ତୁ ସେ କେବେ ଦ୍ୱାରପାଳକୁ ପଚାରି ପାରିଲା ନାହିଁ । ହାତଠାରି

Digitized by srujanika@gmail.com

ଦ୍ୱାରପାଳକୁ ସେ ଡାକିଲା । କାହିଁକି ନା ତା' ଦେହ ଧୀରେ ଧୀରେ କାଠ ପାଲଟି ଯାଉଥିଲା । ତା' ଦେହକୁ ସେ ଆଉ ଉଠାଇ ପାରୁନଥିଲା । ତା' କଥା ଶୁଣିବା ପାଇଁ ଦ୍ୱାରପାଳକୁ ଖୁବ୍ ନଇଁବାକୁ ପଡ଼ିଲା । କାହିଁକି ନା ସେ ଦୁହିଁଙ୍କ ଭିତରେ ଥିବା ଆକାରର ପାର୍ଥକ୍ୟଟା ଦିନକୁ ଦିନ ବଢ଼ିବାରେ ଲାଗିଥିଲା । ଏ ପାର୍ଥକ୍ୟଟି ଲୋକଟି ପ୍ରତି ହିଁ ଅସୁବିଧାର କାରଣ ହୋଇଥିଲା ।

'ତୁମେ ବର୍ତ୍ତମାନ କଅଣ ଜାଣିବାକୁ ଚାହୁଁଚ ? ତୁମେ ତ ସବୁବେଳେ ଅସନ୍ତୁଷ୍ଟ ।' ଦ୍ୱାରପାଳ କହିଲା ।

'ସମସ୍ତେ ତ ଆଇନ୍ ଚାହାନ୍ତି । କେବଳ ମୋତେ ବ୍ୟତୀତ ଆଉ କାହିଁ କେହି ତ ଆଇନ୍ ପାଇବାକୁ ଏଠାକୁ ଆସିନାହାନ୍ତି । ଏତେ ବର୍ଷ ଧରି ଅପେକ୍ଷା କରିନାହାନ୍ତି । ଏହା କେମିତି ସମ୍ଭବ ?' ଲୋକଟି ପଚାରିଲା ।

ଦ୍ୱାରପାଳ ଦେଖିଲା ଯେ ଲୋକଟିର ଶେଷ ମୁହୂର୍ତ୍ତ ପ୍ରାୟ ଆସିଗଲାଣି ଏବଂ ତାକୁ ଆଉ ପ୍ରାୟ ଶୁଭୁନାହିଁ । ତେଣୁ ସେ ତା' କାନ ପାଖରେ ପାଟି କରି କହିଲା । ତୁମ ବ୍ୟତୀତ ଆଉ କେହି ଏହି ଦ୍ୱାର ଦେଇ ଯାଇ ପାରିବେ ନାହିଁ । କାରଣ ତୁମରି ପାଇଁ ହିଁ ଏହି ଦ୍ୱାର ଖୋଲା ଥିଲା । ମୁଁ ବର୍ତ୍ତମାନ ଏହାକୁ ବନ୍ଦ କରି ଦେବାକୁ ଯାଉଛି ।'

ଗଳ୍ପ ଦ୍ୱାରା ଖୁବ୍ ବେଶୀ ଅଭିଭୂତ ହୋଇ କେ' କହିଲା—'ତେଣୁ ଏଇମିତି ଦ୍ୱାରପାଳ ଲୋକଟିକୁ ଠକାଇ ଦେଲା ।

'ଏତେ ତରବର ହୁଅ ନାହିଁ । ପରୀକ୍ଷା ନ କରି ଅନ୍ୟ କାହାରି ମତାମତକୁ ଗ୍ରହଣ କରି ନିଅ ନାହିଁ । ଧର୍ମ ପୁସ୍ତକରେ ଯେମିତି ଲେଖା ହୋଇଛି ଠିକ୍ ସେମିତି ଅକ୍ଷରେ ଅକ୍ଷରେ ମୁଁ ଗଳ୍ପଟିକୁ କହୁଛି । ସେଠାରେ ତ ଠକାଇବା କଥା ଉଲ୍ଲେଖ ହୋଇନାହିଁ ।' ପୁରୋହିତ କହିଲେ ।

'କିନ୍ତୁ ଏଠାରେ କଥା ତ ଖୁବ୍ ସହଜ । ଆପଣଙ୍କର ପ୍ରଥମ ବ୍ୟାଖ୍ୟା ଏକବାରେ ଠିକ୍ । ଦ୍ୱାରପାଳ ଲୋକଟିକୁ ମୁକ୍ତିର ବାର୍ତ୍ତା ସେତିକିବେଳେ ଦେଲା ଯେତେବେଳେ ସେ ଜାଣିପାରିଲା ଯେ ତାକୁ ଆଉ ସେ ସାହାଯ୍ୟ କରିପାରିବ ନାହିଁ ।' କେ' କହିଲା ।

'ଆଗରୁ ତ ତାକୁ ପ୍ରଶ୍ନ ପଚରା ଯାଇନଥିଲା । ତୁମର ମଧ୍ୟ ବିଚାର କରିବା ଉଚିତ୍ ଯେ ସେ ଜଣେ ଦ୍ୱାରପାଳ ଏବଂ ତାର କର୍ତ୍ତବ୍ୟ ସେ ଠିକ୍ ସମ୍ପାଦନ କରିଛି ।' ପୁରୋହିତ କହିଲେ ।

Digitized by srujanika@gmail.com

'ସେ ଯେ ତାର କର୍ତ୍ତବ୍ୟ ଠିକ୍ ପାଳନ କରୁଛି ଏହା ଆପଣ କିପରି କହିଲେ ? ସେ ତାର କର୍ତ୍ତବ୍ୟ କରି ନାହିଁ । ତାର କର୍ତ୍ତବ୍ୟ ହୁଏତ ଅନ୍ୟସବୁ ଅଜଣା ଲୋକଙ୍କୁ ଛାଡ଼ି ନ ଦେବା ମାତ୍ର ଏ ଯେଉଁ ଲୋକଟି ପାଇଁ ଦ୍ୱାର ଖୋଲିଥିଲା ତାକୁ ତ ଭିତରକୁ ଛାଡିବା ତାର କର୍ତ୍ତବ୍ୟ ।' କେ' କହିଲା ।

'ଧର୍ମ ପୁସ୍ତକରେ ଲେଖାଥିବା ଶବ୍ଦ ପ୍ରତି ତୁମର ଯଥେଷ୍ଟ ସମ୍ମାନ ନାହିଁ । ତୁମେ ଗଳ୍ପକୁ ବଦଳାଇ ଦେଉଛ ।' ପୁରୋହିତ କହିଲେ ।

'ଦ୍ୱାରପାଳ କହିଥିବା ଦୁଇଟି ପ୍ରଧାନ କଥା ଗଳ୍ପଟିରେ ଉଲ୍ଲେଖ ଅଛି । ଗୋଟିଏ ଅଛି ଗଳ୍ପର ପ୍ରଥମରେ ଅନ୍ୟଟି ଶେଷରେ । ପ୍ରଥମ କଥାଟି ହେଉଛି : ସେଇ ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ସେ ତାକୁ ଛାଡ଼ି ଦେଇ ପାରିବ ନାହିଁ । ଅନ୍ୟଟି ହେଉଛି ସେ ଦ୍ୱାରଟି କେବଳ ସେହି ଲୋକଟି ପାଇଁ ଉଦ୍ଦିଷ୍ଟ । ଏହି ଦୁଇ ବକ୍ତବ୍ୟ ଭିତରେ ଯଦି ବିରୋଧ ଥାଏ ତେବେ ତୁମେ ଠିକ୍ କହୁଛ ବୋଲି ଗ୍ରହଣ କରାଯାଆନ୍ତା ଏବଂ ମାନି ନିଆ ଯାଆନ୍ତା ଯେ ଦ୍ୱାରପାଳ ଲୋକଟିକୁ ପ୍ରତାରିତ କଲା । କିନ୍ତୁ ଏହି ଦୁଇ ବକ୍ତବ୍ୟ ଭିତରେ ତ ବିରୋଧାଭାଷ ନାହିଁ । ବରଂ ତାହା ନହୋଇ ପ୍ରଥମ ବକ୍ତବ୍ୟ ଦ୍ୱିତୀୟ ବକ୍ତବ୍ୟର ସୂଚନା ଦେଉଛି । ଜଣେ କେବଳ କହିପାରେ ଯେ ଭବିଷ୍ୟତରେ ଭିତରକୁ ଯିବାର ସମ୍ଭାବନା ବିଷୟରେ ଲୋକଟିକୁ ସୂଚନା ଦେଇ ଦ୍ୱାରପାଳ ତା କର୍ତ୍ତବ୍ୟର ସୀମା ଲଙ୍ଘନ କରିଛି । ସେ ସମୟରେ ତାର ଏକମାତ୍ର କର୍ତ୍ତବ୍ୟ ହେଉଛି ଲୋକଟିକୁ ଭିତରକୁ ଯିବାକୁ ନ ଦେବା । ଅନେକ ବ୍ୟାଖ୍ୟାକାର ପ୍ରକୃତରେ ଆଶ୍ଚର୍ଯ୍ୟ ହୁଅନ୍ତି । ଏମିତି ସୂଚନା ଦିଆ ହୋଇଛି ବୋଲି ସେମାନେ ବିଶ୍ୱାସ କରି ପାରନ୍ତି ନାହିଁ । କାହିଁକନା ଦ୍ୱାରପାଳ ଜଣେ କର୍ତ୍ତବ୍ୟ ସଚେତନ, ଗମ୍ଭୀର ପ୍ରକୃତିର ଲୋକ । ଏତେବର୍ଷ ଭିତରେ ସେ ଥରେ ହେଲେ ତାର ସ୍ଥାନ ଛାଡ଼ିଯାଇ ନାହିଁ । ଶେଷ ପର୍ଯ୍ୟନ୍ତ ସେ ଦ୍ୱାରକୁ ମଧ୍ୟ ବନ୍ଦ କରିନାହିଁ । ସେ ତାର କର୍ତ୍ତବ୍ୟର ଗୁରୁତ୍ୱକୁ ହୃଦୟଙ୍ଗମ କରିଛି କାହିଁକ ନା ସେ କହୁଛି—'ମୁଁ ଶକ୍ତିଶାଳୀ ।' ତା ଉପରିସ୍ଥ ବ୍ୟକ୍ତି ପ୍ରତି ତାର ସମ୍ମାନ ଅଛି । ସେ କହୁଛି—'ମୁଁ କେବଳ ସବାତଳିଆ ଦ୍ୱାରପାଳ ।' ସେ ସ୍ୱଳ୍ପଭାଷୀ କାରଣ ଏତେବର୍ଷ ଭିତରେ ସେ 'ଉପର ଠାଉରିଆ ଅବୈକ୍ତିକ' ପ୍ରଶ୍ନ କେବଳ ପଚାରିଛି । ତାକୁ ସେ ଲୋକଟି ଲାଞ୍ଚ ଦେଇ ପାରିନାହିଁ । କାରଣ ଭେଟିସବୁ ନେଲା ବେଳେ ସେ କହୁଛି—'ମୁଁ ଏହାକୁ ନେଉଛି କାରଣ ତୁମେ ଯେମିତି ନ ଭାବ ଯେ ତୁମେ ନିରୁପାୟ ।' ତା କର୍ତ୍ତବ୍ୟ ଦୃଷ୍ଟିରୁ ସେ ଲୋକଟି ଦୟା କିମ୍ବା କ୍ରୋଧ ଦ୍ୱାରା ପରିଚାଳିତ ହୋଇନାହିଁ । ଆମକୁ କୁହାହୋଇଛି ଯେ ଲୋକଟି ତାକୁ ଅପ୍ରୀତିକର ଅନୁରୋଧ ଦ୍ୱାରା କ୍ଳାନ୍ତ କରି ଦେଇଥିଲା । ଶେଷରେ ତାର ଦୈହିକ ବର୍ଣ୍ଣନା ମଧ୍ୟ ଏକପ୍ରକାର ଗୁରୁଗମ୍ଭୀର ଓ ଦାୟିତ୍ୱପୂର୍ଣ୍ଣ ଚରିତ୍ର

Digitized by srujanika@gmail.com

ସୂଚନା ଦିଏ । ଲମ୍ବା ତୀକ୍ଷ୍ଣ ନାକ, ଲମ୍ବା ପତଳା ପୁଣି ଅସଜ୍ଜିତ କଳା ଦାଢ଼ି ଏହାର ସୂଚକ । ଏହାଠାରୁ ଅଧିକ ବିଶ୍ୱସ୍ତ ଦ୍ୱାରପାଳ କଥା ତୁମେ ଚିନ୍ତା କରି ପାରୁଛ ? ତଥାପି ଦ୍ୱାରପାଳର ଚରିତ୍ରରେ ଅନ୍ୟ ଉପାଦାନ ସବୁ ଥିଲା ଯାହାକି ପ୍ରବେଶ ପାଇଁ ଇଚ୍ଛୁକ ଯେକୌଣସି ବ୍ୟକ୍ତି ପାଇଁ ସୁଯୋଗ ଦେଉଥିଲା । ଭବିଷ୍ୟତ ପ୍ରବେଶର ସମ୍ଭାବନା ବିଷୟରେ ସେ ଯେ ସୂଚନା ଦେବ ଏକଥା ସେହି ଉପାଦାନର ଉପସ୍ଥିତି ଯୋଗୁଁହିଁ ବିଶ୍ୱାସଯୋଗ୍ୟ ହେଉଥିଲା । କାରଣ ଏହା କେବେ ଅସ୍ୱୀକାର କରିହେବ ନାହିଁ ଯେ ସେ ଅତି ସରଳ, ଫଳତଃ ଅଳ୍ପବୁଦ୍ଧିଆ । ନିଜ କ୍ଷମତା ଏବଂ ଅନ୍ୟ ଦ୍ୱାରପାଳଙ୍କ କ୍ଷମତା ସମ୍ପର୍କରେ ସେ ଯାହା କହୁଛି । ଅର୍ଥାତ୍ ସେମାନଙ୍କ ଶକ୍ତିର ଭୟଙ୍କରତା ଆଗରେ ସେ ଠିଆ ମଧ୍ୟ ହୋଇପାରେ ନାହିଁ—ଏହି ଉକ୍ତିକୁ ବିସ୍ତର କରିଯାଉ । ମୋର ମତ ଯେ ଏପରି ବର୍ଣ୍ଣନା ହୁଏତ ସତ ହୋଇ ପାରେ । କିନ୍ତୁ ଯେଉଁ ଭାବରେ ସେସବୁର ଉପସ୍ଥାପନା ସେ କରିଛି ତାହା ସୂଚାଇ ଦିଏ ଯେ ତାର ଚିନ୍ତା ଓ ଧାରଣା ବଡ଼ ଅସ୍ପଷ୍ଟ ଏବଂ ଏପରି ହେବାର କାରଣ ହେଉଛି ତାର ସରଳ ମନ ଆଉ ବୁଦ୍ଧି । ଏ ବିଷୟରେ ବ୍ୟାଖ୍ୟାକାରଙ୍କ ମତ ହେଲା : 'କୌଣସି ବିଷୟରେ ସଠିକ ଧାରଣା ଏବଂ ସେହି ବିଷୟରେ ଥିବା ଭ୍ରମାତ୍ମକ ଧାରଣା ଉଭୟେ ଉଭୟଙ୍କୁ ଅଗ୍ରାହ୍ୟ କରନ୍ତି ନାହିଁ । ଜଣେ ହୁଏତ ଧରି ନେଇ ପାରେ ଯେ ଏପରି ସରଳତା ଆଉ ବୁଦ୍ଧି ଯେତେ ସାମାନ୍ୟ ଭାବରେ ପ୍ରକାଶିତ ହୋଇଥିଲେ ହେଁ ଦ୍ୱାରର ସୁରକ୍ଷାକୁ ତାହା ଦୁର୍ବଳ କରି ଦେବାରେ ସମ୍ଭାବନା ଅଛି । ଦ୍ୱାରପାଳର ଚରିତ୍ରରେ ସେଗୁଡ଼ିକ ଦୁର୍ବଳତା । ଏସବୁ ଗୁଣ ସହି ଆଉ ଗୋଟିଏ ଗୁଣ ଯୋଗ କରିଯାଇ ପାରେ । ତାହା ହେଉଛି ଯେ ଦ୍ୱାରପାଳ ବଡ଼ ମେଳାପି ପ୍ରକୃତିର । ତେଣୁ ସେ ତାର ସରକାରୀ ସଂଭ୍ରମତାକୁ ସବୁବେଳେ କୌଣସି ପ୍ରକାରେ ରକ୍ଷା କରି ପାରୁନଥିବ । ଭିତରକୁ ପ୍ରବେଶ ନ କରିବାପାଇଁ କଡ଼ା ବାରଣ ଥିବା ସତ୍ତ୍ୱେ ସେ ଲୋକଟିକୁ ପ୍ରଥମରୁ ହିଁ ନିମନ୍ତ୍ରଣ କରିବାର ଭଙ୍ଗୀ ଦେଖାଇଛି । ଉଦାହରଣ ସ୍ୱରୂପ ଆମେ ଯାହା ଶୁଣିଛୁ, ଲୋକଟିକୁ ପଠାଇ ନ ଦେଇ ଦ୍ୱାର କଡ଼ରେ ବସିବା ପାଇଁ ତାକୁ ଷ୍ଟୁଲଟିଏ ଦେଇଛି । ଯେଉଁ ଧୈର୍ଯ୍ୟର ସହି ସେ ଲୋକଟିର କାକୁତିମିନତି ବର୍ଷବର୍ଷ ଧରି ସହିଛି, ତା ସହି ଅଳ୍ପ କଥାବାର୍ତ୍ତା କରିଛି । ତାଠାରୁ ଭେଟି ଗ୍ରହଣ କରିଛି ପୁଣି ଯଦିଓ ତା' ଭାଗ୍ୟ ପାଇଁ ସେ ଲୋକଟି ନିଜେ ଦାୟୀ ତଥାପି ନିଜ ମନ୍ଦ ଭାଗ୍ୟକୁ ତା' ସମ୍ମୁଖରେ କହିବା ପାଇଁ ଅନୁମତି ଦେଇଛି । ଏସବୁ ବିଶ୍ଳେଷଣ କଲେ ଦ୍ୱାରପାଳ ଯେ ଦୟାଳୁ ଏଥିରେ ସନ୍ଦେହ ରହେ ନାହିଁ । ସବୁ ଦ୍ୱାରପାଳ ଏପରି ବ୍ୟବହାର କରନ୍ତେ ନାହିଁ । ଶେଷରେ ଲୋକଟିର ଠାରକୁ ବୁଝି ସେ ନଇଁ ପଡ଼ିଛି ଏବଂ ଲୋକଟିକୁ ତାର ଶେଷ ପ୍ରଶ୍ନ ପଚାରିବାକୁ ସୁଯୋଗ ଦେଇଛି । କେବଳ ମୃଦୁ ଧୈର୍ଯ୍ୟହୀନତା ଛଡ଼ା ଏହା ଆଉ କିଛି ନୁହେଁ ।

Digitized by srujanika@gmail.com

ଏହା ଲୋକଟିର ଶେଷକଥା ବୋଲି ଦ୍ୱାରପାଳ ତ ଜାଣେ । 'ତୁମେ ବଡ଼ ଅସନ୍ତୁଷ୍ଟ' ତାର ଏହି ବାକ୍ୟରୁ ହିଁ ଏହା ସ୍ପଷ୍ଟ ଜାଣିହୁଏ । ଏପ୍ରକାର ବିଶ୍ଳେଷଣକୁ ଆଉ ଟିକିଏ ଆଗେଇ ନେଇ ଅନେକ କହନ୍ତି ଯେ ଏସବୁ କଥା ବନ୍ଧୁତ୍ୱପୂର୍ଣ୍ଣ ପ୍ରଶଂସାର ସୂଚନା ଦିଅନ୍ତି । ଯଦିଓ ଏଥିରେ ଟିକିଏ ହେଲେ ବିନମ୍ର ଭାବର ସ୍ପର୍ଶ ନଥିଲା । ଯାହା ହେଲେ ବି ଏତିକି କୁହାଯାଇ ପାରେ ଯେ ତୁମେ ଯେମିତି ଅନୁମାନ କରିଥିଲ ଦ୍ୱାରପାଳର ଚରିତ୍ର ତାଠାରୁ ଭିନ୍ନ ।'

'ଆପଣ ଗଳ୍ପଟିକୁ ମୋ'ଠାରୁ ଅଧିକ ଅନୁଧ୍ୟାନ କରିଛନ୍ତି ।' କେ' କହିଲା । ଅଳ୍ପ ସମୟ ପାଇଁ ଉଭୟ ନୀରବ ରହିଲେ । ତା'ପରେ କେ' କହିଲା—'ତାହା ହେଲେ ଆପଣ ଭାବୁଛନ୍ତି ଯେ ଲୋକଟି ଠକି ନାହିଁ ?'

'ମୋତେ ଭୁଲ୍ ବୁଝନାହିଁ ।' ପୁରୋହିତ କହିଲେ । 'ମୁଁ କେବଳ ଗୋଟିଏ କଥା ସମ୍ପର୍କରେ ବିଭିନ୍ନ ମତକୁ ଦେଖାଇ ଦେଉଥିଲି । ତୁମେ ସେସବୁ ବିଷୟରେ ଖୁବ୍ ବେଶୀ ନଜର ଦେବ ନାହିଁ । ଧର୍ମ ପୁସ୍ତକଗୁଡ଼ିକ ଅପରିବର୍ତ୍ତନୀୟ ଏବଂ ସେମାନଙ୍କ ଉପରେ ମତାମତଗୁଡ଼ିକ ଅନେକ ସମୟରେ କେବଳ ବ୍ୟାଖ୍ୟାକାରଙ୍କ ହତାଶାବୃତ୍ତି ପ୍ରକାଶ କରିଥାଏ । ଏପରି କ୍ଷେତ୍ରରେ ଆଉ ଗୋଟିଏ ବିଶ୍ଳେଷଣ ମଧ୍ୟ ଅଛି । ସେହି ବିଶ୍ଳେଷଣ ଅନୁଯାରେ ସେହି ପ୍ରତାରିତ ବ୍ୟକ୍ତିଟି ହେଉଛି ନିଜେ ଦ୍ୱାରପାଳ ।'

'ଏହା ଅତି ଖାପ୍ଛଡ଼ା ବିଶ୍ଳେଷଣ ।' କେ' କହିଲା ଏବଂ ପୁଣି ପଚାରିଲା—'କାହାଉପରେ ଏପରି ବିଶ୍ଳେଷଣ ଆଧାରିତ ?'

ପୁରୋହିତ କହିଲେ—'ଏହା ଦ୍ୱାରପାଳର ମନର ସରଳତା ଉପରେ ଆଧାରିତ । ଯୁକ୍ତି ହେଉଛି ଯେ ସେ ଆଇନ୍‌କୁ ଭିତରୁ ଦେଖିନାହିଁ । ଆଇନ ପାଖକୁ କଢ଼େଇ ନେଉଥିବା ରାସ୍ତାକୁ ହିଁ ସେ କେବଳ ଜାଣିଛି । ସେଇ ରାସ୍ତାରେ ସେ ଖାଲି ପହରା ଦେଉଛି । ଆଇନର ଅଭ୍ୟନ୍ତରୀଣ କଥା ସମ୍ପର୍କରେ ତାର ଧାରଣା ପିଲାକିଆ ଏବଂ ଏହା ଧରି ନିଆହୋଇଛି ଯେ ସେ ନିଜେ ଅନ୍ୟ ଦ୍ୱାରପାଳମାନଙ୍କୁ ଭୟ କରେ । ପ୍ରକୃତରେ ସେ ସେମାନଙ୍କୁ ଅନ୍ୟ ଲୋକଟି ଅପେକ୍ଷା ଅଧିକ ଭୟ କରେ । କାରଣ ଭିତରର ଭୟଙ୍କର ଦ୍ୱାରପାଳଙ୍କ ବିଷୟରେ ଏତେ ଶୁଣି ମଧ୍ୟ ସେ ଲୋକଟି ଭିତରକୁ ଯିବାପାଇଁ ବଦ୍ଧପରିକର । କିନ୍ତୁ ଦ୍ୱାରପାଳର ଭିତରକୁ ଯିବାପାଇଁ ଇଚ୍ଛା ନଥିଲା । ଅନ୍ତତଃ ଆମକୁ ଯାହା କୁହାଯାଇଛି ସେଇଥିରୁ ଯାହା ଅନୁମାନ କରିହୁଏ । ଅନ୍ୟମାନେ ପୁଣି କହନ୍ତି ଯେ ସେ ନିଶ୍ଚିତ ଭାବେ ଭିତର ମହଲର ଅଙ୍ଗ ବିଶେଷ କାରଣ ସେ ଆଇନର ସେବାପାଇଁ ନିଯୋଜିତ ଏବଂ କେବଳ ଭିତର

Digitized by srujanika@gmail.com

ମହଲ ଦ୍ୱାରୀ ସେ ନିଯୁକ୍ତପ୍ରାପ୍ତ । ଏପରି ଧାରଣା ଶିରୁଛରେ ମଧ୍ୟ ସୂଚିତ କରାଯାଏ । ଏ ସୂତ୍ରରେ କୁହାଯାଏ ଯେ ଭିତରୁ ଡ଼ାକିଥିବା ଗୋଟିଏ ସ୍ୱର ଦ୍ୱାରା ସେ ନିଯୁକ୍ତ । କୌଣସିମତେ ସେ ଖୁବ୍ ବେଶୀ ଭିତରକୁ ଯାଇପାରିନାହିଁ । କାରଣ ତୃତୀୟ ଦ୍ୱାରପାଳର ଗୁଣର ଖଣ୍ଡଣତାକୁ ସହିବା ତା ଶକ୍ତିର ବାହାରେ । ଅଧିକନ୍ତୁ ଏତେ ବର୍ଷ ଭିତରେ ଭିତରମହଲ ସମ୍ପର୍କରେ ତାର ଜ୍ଞାନ ବିଷୟରେ ସେ କିଛି ସୂଚନା ଦେଇନାହିଁ । ସେ କେବଳ ଦ୍ୱାରପାଳଙ୍କ ବିଷୟରେ ଯାହା ସୂଚନା ଦେଇଛି । ସେହିପରି କରିବାକୁ ହୁଏତ ତାକୁ ବାରଣ କରାଯାଇଥିବ । ମାତ୍ର ସେ ବିଷୟରେତ କୌଣସି କଥା ଉଲ୍ଲେଖ ନାହିଁ ଏହିପରି ଦୃଷ୍ଟିରୁ ଶେଷ ନିଷ୍ପତ୍ତି ନିଆଯାଇ ପାରେ ଯେ ଭିତର ମହଲର ବିଭିନ୍ନ ଢଗ ଏବଂ ତାର ମହତ୍ତ୍ୱ ବିଷୟରେ ସେ କିଛି ଜାଣେ ନାହିଁ । ତେଣୁ ନିଜେ ପ୍ରତାରିତ ଅବସ୍ଥାରେ ଅଛି । କିନ୍ତୁ ଗ୍ରାମରୁ ଆସିଥିବା ସେ ଲୋକଟି ସହ ତାର ସମ୍ପର୍କ ବିଷୟରେ ମଧ୍ୟ ସେ ପ୍ରତାରିତ, କାରଣ ଗାଉଁଲି ଲୋକ ଠାରୁ ସେ ହୀନ କିନ୍ତୁ ସେ ତାହା ଜାଣେ ନାହିଁ । ସେ ଗାଉଁଲି ଲୋକଟି ସହ ତାର ବ୍ୟବହାରରୁ ଜଣାଯାଏ ଯେମିତି ସେ ଲୋକଟି ତାର ଅଧସ୍ତନ । ତୁମ ମନରେ ଏବେବି ସଦ୍ୟଥିବା ଗଳ୍ପଟିରୁ ଟିକିନିଖି ବର୍ଣ୍ଣନା କଲେ ଏହା ତୁମେ ଜାଣିପାରିବ । କିନ୍ତୁ ଗଳ୍ପଟିକୁ ଏହି ଦୃଷ୍ଟିରୁ ବିଚାର କଲେ ଏହା ସ୍ପଷ୍ଟ ସୂଚିତ ହେବ ଯେ ସେ ପ୍ରକୃତରେ ଗାଉଁଲି ଲୋକଟିର ଅଧୀନ । ପ୍ରଥମତଃ ଦାସଟିଏ ମୁକ୍ତ ମଣିଷର ଅଧୀନ । ବର୍ତ୍ତମାନ ଗାଉଁଲି ଲୋକଟି ପ୍ରକୃତରେ ମୁକ୍ତ, ସ୍ୱାଧୀନ । ଯେଉଁଠିକି ଇଚ୍ଛାକରିବ ସେ ଯାଇପାରିବ । କେବଳ ତାହାପାଇଁ ଯାହା ଆଇନ ମନା । ଆଇନର ଦ୍ୱାର ତାପାଇଁ ବନ୍ଦ । ଏ ଦ୍ୱାର କେବଳ ଜଣେ ବ୍ୟକ୍ତି ବନ୍ଦ କରିଛି ସେ ହେଉଛି ଦ୍ୱାରପାଳ । ଲୋକଟି ଯେତେବେଳେ ତାର ବାକି ଜୀବନତକ ଷ୍ଟୁଲ୍ ଉପରେ ବସି ରହିଲା, ତାହା ସେ ନିଜ ଇଚ୍ଛାରେ କରିଥିଲା । ଗଳ୍ପରେ ବାଧ୍ୟବାଧକତା ବିଷୟରେ ତ କିଛି ଉଲ୍ଲେଖ ନାହିଁ । କିନ୍ତୁ ଦ୍ୱାରପାଳତ ତାର କର୍ତ୍ତବ୍ୟ ଯୋଗୁଁ ତା ସ୍ଥାନରେ ବନ୍ଧା । ସେ କେବେ ଗାଁକୁ ଯିବାପାଇଁ ସାହସ କରିବନାହିଁ । କିମ୍ବା ଏମିତି ଆଇନର ଭିତର ମହଲକୁ ବି ଯାଇପାରିବ ନାହିଁ ଏମିତିକି ଯଦିବା ସିଏ ଇଚ୍ଛାକରେ । ଏହା ବ୍ୟତୀତ ଯଦିବା ସେ ଆଇନର ସେବାରେ ନିଯୁକ୍ତ ତାର ସେବା କେବଳ ଏହି ଗୋଟିଏ ପ୍ରବେଶ ଦ୍ୱାର ପାଖରେ ସୀମିତ । କହିବାକୁ ଗଲେ ସେ ଖାଲି ଗାଉଁଲି ଲୋକଟିର ସେବା କରୁଥିଲା । କାରଣ ତାହାରିପାଇଁ ତ ଏ ପ୍ରବେଶ ଦ୍ୱାର ଉଦ୍ଦିଷ୍ଟ ଥିଲା । ସେହି ଦୃଷ୍ଟିରୁ ମଧ୍ୟ ଦ୍ୱାରପାଳ ସେ ଲୋକଟି ପାଖରୁ ହୀନ । ଅନେକ ବର୍ଷ ପର୍ଯ୍ୟନ୍ତ ଜଣକୁ ଏହାହିଁ ନିଶ୍ଚିତ ଭାବେ ଧରି ନେବାକୁ ପଡ଼ିବ । ଜୀବନର ପୂର୍ଣ୍ଣତା ପାଇଁ ଜଣକୁ ଯେତେ ବର୍ଷ ଲାଗେ ସେପର୍ଯ୍ୟନ୍ତ ଜଣକର ସ୍ୱକୀୟ ଗୋଟିଏ ଦୃଷ୍ଟିରୁ କେବଳ ଜୀବନର ବାହ୍ୟ ଅନୁଷ୍ଠାନ ଉପକ୍ରମ ମାତ୍ର । କାରଣ ତାକୁ ଜଣେ

Digitized by srujanika@gmail.com

ଲୋକର ଆଗମନ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିବ । ତେଣୁ ତା' ସଙ୍କଳ୍ପର ଉଦ୍ଦେଶ୍ୟ ସାଧିତ ହେବା ପୂର୍ବରୁ ତାକୁ ଦୀର୍ଘ ସମୟ ଅପେକ୍ଷା କରିବାକୁ ପଡ଼ିବ । ଅଧିକନ୍ତୁ ତାକୁ ଅପେକ୍ଷା କରିବାକୁ ପଡ଼ିବ ଆଗନ୍ତୁକର ମର୍ଜି ଉପରେ ନିର୍ଭରକରି । କାହିଁକନା ଲୋକଟି ଆସିବ ତା ଖୁସିରେ । କିନ୍ତୁ ତା ସଙ୍କଳ୍ପର ସମାପ୍ତି ମଧ୍ୟ ଲୋକଟିର ଜୀବନ ଉପରେ ନିର୍ଭର କରେ । ତେଣୁ ଶେଷପର୍ଯ୍ୟନ୍ତ ଦ୍ୱାରପାଳ ସେହି ଗାଉଁଲି ଲୋକଟିର ଅଧୀନ ହୋଇ ରହେ । ଦ୍ୱାରପାଳ ଏସବୁ ବିଷୟ ଆଦୌ ବୁଝି ନଥିଲା ବୋଲି ସମସ୍ତ ଗଳ୍ପରେ ଜୋର୍ ଦିଆଯାଇଛି । ଏକଥା ଏତେ ଆକର୍ଷଣୀୟ ମଧ୍ୟ ନୁହେଁ । କାରଣ ଏହି ବ୍ୟାଖ୍ୟା ଅନୁଯାୟୀ ଦ୍ୱାରପାଳ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଦୃଷ୍ଟିରୁ ଠକି ଯାଇଥିଲା । ତା ପ୍ରତାରିତ ହେବା ତା ଦାୟିତ୍ୱକୁ ମଧ୍ୟ ପ୍ରତାରିତ କରିଥିଲା । ଉଦାହରଣ ସ୍ୱରୂପ ସବା ଶେଷରେ ସେ ଆଇନ୍‌କୁ ପାଇବା ସମ୍ପର୍କରେ କହିଥିଲା । 'ମୁଁ ବର୍ତ୍ତମାନ ଏହାକୁ ବନ୍ଦ କରି ଦେବାକୁ ଯାଉଛି ।' କିନ୍ତୁ ଗଳ୍ପର ଆରମ୍ଭରେ କୁହାଯାଇଛି ଯେ ଆଇନ୍‌କୁ ପ୍ରବେଶ ଦ୍ୱାର ସବୁବେଳେ ଖୋଲା । ଅର୍ଥାତ୍ ସବୁ ସମୟରେ ଏହା ଖୋଲା । କୌଣସି ବ୍ୟକ୍ତିର ଜୀବନ କିମ୍ବା ମୃତ୍ୟୁ ସହି ଏହାର କିଛି ସମ୍ପର୍କ ନାହିଁ । ତା'ହେଲେ ଦ୍ୱାରପାଳ ତାକୁ ବନ୍ଦ କରି ପାରିବ ନାହିଁ । ଦ୍ୱାରପାଳର କଥାର ଉଦ୍ଦେଶ୍ୟ ନେଇ କେତେକ ମତ ପାର୍ଥକ୍ୟ ଅଛି । ଖାଲି ଗୋଟିଏ ଉତ୍ତର ଦେବାପାଇଁ ସେ ଦ୍ୱାର ବନ୍ଦ କରି ଦେଉଛି ବୋଲି କହିଥିଲା ନା କର୍ତ୍ତବ୍ୟ ପ୍ରତି ତାର ଅନୁରକ୍ତି ଉପରେ ଗୁରୁତ୍ୱ ଦେବା ପାଇଁ କହିଥିଲା । ଅବା ସେହି ଲୋକଟିକୁ ତା' ଜୀବନର ଶେଷ ମୁହୂର୍ତ୍ତରେ ଏକପ୍ରକାର ଦୁଃଖ ଆଉ ଅନୁଶୋଚନାର ଅବସ୍ଥାରେ ପକାଇବା ପାଇଁ ଏହା କହିଥିଲା ସେ ବିଷୟରେ ମତ ପାର୍ଥକ୍ୟ ଅଛି । କିନ୍ତୁ ସମସ୍ତେ ଏକମତ ଯେ ଦ୍ୱାରପାଳ କେବେ ସେ ଦ୍ୱାର ବନ୍ଦ କରି ପାରିବ ନାହିଁ । ଅନେକ କହନ୍ତି ଯେ ଦ୍ୱାରପାଳ ସେ ଲୋକଠାରୁ ଜ୍ଞାନରେ ନ୍ୟୂନ; ଅନ୍ତତଃ ଶେଷ ଆଡ଼କୁ । କାହିଁକି ନା ସେ ଲୋକଟି ଆଇନ୍‌ର ଦ୍ୱାର ପାଖରୁ ଯେଉଁ ଆଲୁଅର ରଶ୍ମି ଆସୁଥିଲା ତାକୁ ଦେଖିଥିଲା । ମାତ୍ର ଦ୍ୱାରପାଳ ତା କର୍ତ୍ତବ୍ୟ ଯୋଗୁଁ ଦ୍ୱାର ଆଡ଼କୁ ପଛ କରି ଛିଡ଼ା ହୋଇଥିବ ପୁଣି ସେ କେବେ କହିନାହିଁ ଯେ ସେ ଏପରି କିଛି ପରିବର୍ତ୍ତନ ଦେଖିଛି ।'

'ଏହା ପ୍ରକୃତରେ ସୁନ୍ଦର ଯୁକ୍ତି ।' ପୁରୋହିତଙ୍କ କଥାରୁ ଅନେକ ପଂକ୍ତି ଧୀର ସ୍ୱରରେ ଉଚ୍ଚାରଣ କରି କରି କେ' କହିଲା ।

'ସୁନ୍ଦର ଯୁକ୍ତି । ଦ୍ୱାରପାଳ ଯେ ଠକି ଯାଇଛି ମୁଁ ଏହାକୁ ମାନିନେବାକୁ ପ୍ରସ୍ତୁତ । କିନ୍ତୁ ଏହା କେବେ ମୋର ପୂର୍ବ ଧାରଣାକୁ ବଦଳାଇ ପାରିବ ନାହିଁ । କାରଣ ଉଭୟ ନିଷ୍ପତ୍ତି ବିଶ୍ୱାସଯୋଗ୍ୟ । ଦ୍ୱାରପାଳ ପ୍ରତାରିତ ଅବା ସତ୍ୟଦ୍ରଷ୍ଟା ।

Digitized by srujanika@gmail.com

ଏହା ବିଷୟବସ୍ତୁଟିରେ ସମାପ୍ତି ଆଣୁ ନାହିଁ । ମୁଁ କହୁଥିଲି ଲୋକଟି ଠକି ଯାଇଛି । ଯଦି ଦ୍ୱାରପାଳ ସଫଳ ଦ୍ରଷ୍ଟା, ଏହି ଧାରଣାକୁ ଜଣେ ସନ୍ଦେହ କରିପାରେ । ମାତ୍ର ଯଦି ଦ୍ୱାରପାଳ ନିଜେ ଠକି ଯାଇଥାଏ ତେବେ ପ୍ରୟୋଜନୀୟତା ଦୃଷ୍ଟିରୁ ଏ ବିଷୟ ଲୋକଟିକୁ ଜଣାଇ ଦେବାକୁ ପଡ଼ିବ । ଏହା ତେଣୁ ଦ୍ୱାରପାଳକୁ ପ୍ରତାରକ ଭାବେ ଉପସ୍ଥାପିତ କରୁନାହିଁ । ଏହା ବରଂ ତାକୁ ଏତେ ସରଳମତି ଲୋକଟିଏ ଭାବେ ଉପସ୍ଥାପିତ କରୁଛି ଯେ ତା ଦାୟିତ୍ୱ ପାଇଁ ଅଯୋଗ୍ୟ ବୋଲି ବିବେଚିତ ହେଉଛି । ଫଳରେ ତାକୁ ତାର ଦାୟିତ୍ୱରୁ ବରଖାସ୍ତ କରିଦେବା ପାଇଁ ସୂଚନା ଦେଉଛି । ତୁମର ଭୁଲିଯିବା ଉଚିତ୍ ନୁହେଁ ଯେ ଦ୍ୱାରପାଳର ପ୍ରତାରିତ ହେବା ତାର କ୍ଷତି କରି ନାହିଁ ମାତ୍ର ତାହା ସେ ଲୋକଟିର ପ୍ରଭୂତ କ୍ଷତି କରିଅଛି ।' କେ' କହିଲା । 'ଏ କଥାରେ ଆପତ୍ତି ଅଛି ।' ପୁରୋହିତ କହିଲେ । 'ଅନେକ ମତ ପ୍ରକାଶ କରନ୍ତି ଯେ ଏ ଗଳ୍ପଟି ଦ୍ୱାରପାଳକୁ ବିଚାର କରିବାର ଅଧିକାର କାହାରି ଉପରେ ନ୍ୟସ୍ତ କରୁନାହିଁ । ଆମ ପାଖରେ ସେ ଯାହା ହେଉନା କାହିଁକି ସେ ଯେ ଆଇନ୍‌ର ଦାସ । ଅର୍ଥାତ୍ ସେ ଆଇନ୍‌ର ଅଧୀନ । ତେଣୁ ମାନବିକ ବିଚାରର ଊର୍ଦ୍ଧ୍ୱରେ । ସେପରି କ୍ଷେତ୍ରରେ ଜଣେ ବିଚାର କରିବ ନାହିଁ ଯେ ଦ୍ୱାରପାଳ ସେ ଲୋକଠାରୁ ନ୍ୟୁନ । ତା କର୍ତ୍ତବ୍ୟ ଦ୍ୱାରା ସେ ଯେମିତି ବନ୍ଧା, ହୋଇପାରେ କେବଳ ଆଇନ୍‌ର ଦ୍ୱାର ଦେଶରେ ସେ ବନ୍ଧା, ତଥାପି ଅତୁଳନୀୟ ଭାବରେ ସେ ପୃଥିବୀର ଯେ କୌଣସି ବ୍ୟକ୍ତିଠାରୁ ବଡ଼ । ଆଉ ଲୋକଟି କେବଳ ଆଇନ୍ ଖୋଜୁଥିଲା । ମାତ୍ର ଦ୍ୱାରପାଳ ଆଇନ୍ ସହ ପୂର୍ବରୁ ଜଡ଼ିତ, ସମ୍ପୃକ୍ତ । ଏହି ଆଇନ୍ ହିଁ ତାକୁ କେବଳ ସେହି ସ୍ଥାନରେ ଅବସ୍ଥାପିତ କରିଥିଲା । ତେଣୁ ତାର ମହନୀୟତାକୁ ସନ୍ଦେହ କରିବା ଅର୍ଥ ଆଇନ୍‌ର ମହନୀୟତାକୁ ସନ୍ଦେହ କରିବା ।'

ମୁଣ୍ଡ ହଲାଇ ହଲାଇ କେ' କହିଲା—'ମୁଁ ଏପରି ଦୃଷ୍ଟିକୋଣ ସହ ଏକମତ ହୋଇପାରିବି ନାହିଁ । କାରଣ ଥରେ ଏହାକୁ ଗ୍ରହଣ କଲେ ଦ୍ୱାରପାଳ ଯାହା କହିବ ତାକୁ ସତ ବୋଲି ମାନିନେବାକୁ ପଡ଼ିବ । କିନ୍ତୁ ଆପଣ ତ ନିଜେ ଯଥେଷ୍ଟ ପ୍ରମାଣ କରି ସାରିଲେଣି ଯେ ଏହା କରିବା କିପରି ଅସମ୍ଭବ କଥା ।'

ପୁରୋହିତ କହିଲେ—'ନା, ସବୁକଥାକୁ ସତ ବୋଲି ମାନି ନେବାର ପ୍ରୟୋଜନ ନାହିଁ । ପ୍ରୟୋଜନୀୟତା ହିସାବରେ ଜଣେ ଏହାକୁ ଗ୍ରହଣ କରିବାକୁ ବାଧ୍ୟ ।'

'ଏକ ଦୁଃଖଦାୟକ ନିଷ୍ପତ୍ତି । ମିଛ କହିବାକୁ ଏହା ଏକ ସାର୍ବଜନୀନ ନୀତିରେ ପରିଣତ କରେ ।' କେ' କହିଲା ।

କେ' ଏହି କଥାକୁ ଶେଷକଥା ହିସାବରେ କହିଲା । ମାତ୍ର ଏହା ତାର ଶେଷ ବିଚାର ନୁହେଁ । ଗଳ୍ପଟିରୁ ବାହାରିଥିବା ବିଭିନ୍ନ ନିଷ୍ପତ୍ତି ସବୁକୁ ବିଚାର କରିବା

Digitized by srujanika@gmail.com

ପାଇଁ ତାର ଆଉ ଶକ୍ତିନଥିଲା । ସେ ଖୁବ୍ କ୍ଲାନ୍ତ ହୋଇପଡ଼ିଲା । ଏ ଗଳ୍ପ ପୁଣି ସେଇଁ ଚର୍ଚ୍ଚା ଅଡ଼କୁ ତାକୁ ଟାଣି ନେଇଥିଲା ତାହା ତାପାଇଁ ଅତ୍ୟନ୍ତ ଅପରିଚିତ ପୁଣି ଏକାନ୍ତ ଅବୋଧ । କୋର୍ଟ ବାବୁମାନଙ୍କ ବିଷୟର ଆଲୋଚନା ପାଇଁ ସେସବୁ ଯିନା ଉପଯୁକ୍ତ ବିଷୟ କିନ୍ତୁ ତା'ପାଇଁ ନୁହେଁ । ଅତି ସରଳ ଗଳ୍ପଟି ତାର ସହଜ ରୂପରେଖ ହରାଇ ବସିଥିଲା । ଗଳ୍ପର ସବୁ ପ୍ରସ୍ତାବକୁ ତା ମନରୁ ବାହାର କରି-ଦେବାକୁ କେ' ଚାହୁଁଥିଲା । ଅଳ୍ପକ୍ଷଣ ଆଗରୁ ପୂର୍ଣ୍ଣ ହୃଦୟର ଶକ୍ତିର ପରିଚୟ ଦେଇ-ଥିବା ସେ ପୁରୋହିତ ତାର ଏପରି ମନୋଭାବପାଇଁ ଦାୟୀ । ସେ ବର୍ତ୍ତମାନ କେ'ର ମତଗୁଡ଼ିକୁ ନୀରବରେ ଗ୍ରହଣ କରୁଥିଲେ ସିନା କିନ୍ତୁ ନିଃସନ୍ଦେହରେ ଏକମତ ହୋଉନଥିଲେ ।

ସେ ଦୁହେଁ ନୀରବରେ କିଛିସମୟ ଏପାଖ ସେପାଖ ଟହଲିବାକୁ ଲାଗିଲେ । ପୁରୋହିତଙ୍କ ବିଷୟରେ କିଛି ନଜାଣି ମଧ୍ୟ କେ' ତାଙ୍କର ଖୁବ୍ ପାଖରେ ରହୁ-ଥାଏ । ତାଙ୍କ ହାତରେ ଜଳୁଥିବା ଦୀପଟି କେତେବେଳୁ ଲିଭି ସାରିଥିଲା । ସନ୍ଥ ମାନଙ୍କ ରୁପେଲି ମୂର୍ତ୍ତି ଗୁଡ଼ିକ ଆପଣା ତେଜରେ ହଠାତ୍ ଜଳିଉଠି ପୁଣି ସାଙ୍ଗେ ସାଙ୍ଗେ ଅନ୍ଧାରରେ ହଜି ଯାଉଥିଲେ । ପୁରୋହିତଙ୍କ ଉପରେ ପୂରା ନିର୍ଭରଶୀଳ ହେବାରୁ ନିଜକୁ ରକ୍ଷା କରିବାକୁ ଯାଇ କେ' କହିଲା—'ଆମେ କଣ' ବର୍ତ୍ତମାନ ମୁଖ୍ୟ ଦ୍ୱାର ପାଖରେ ପହଞ୍ଚିନାହୁଁ କି ?'

'ନା', ଆମେ ତାପାଖରୁ ବହୁତ ଦୂରରେ । ତୁମେ କ'ଣ ଯିବାପାଇଁ ଚାହିଁ-ଲଣିକି ?' ପୁରୋହିତ ପଚାରିଲେ । ଯଦିଓ ସେହି ମୁହୂର୍ତ୍ତରେ ଯିବାପାଇଁ କେ' ଭାବୁ ନଥିଲା କିନ୍ତୁ ସେ ସାଙ୍ଗେ ସାଙ୍ଗେ କହିଲା ।

'ଅବଶ୍ୟ ମୋତେ ନିଶ୍ଚୟ ଯିବାକୁ ପଡ଼ିବ । ମୁଁ ବ୍ୟାଙ୍କ୍‌ରେ ହେଡ୍‌କ୍ଲର୍କ । ସେମାନେ ମୋତେ ଅପେକ୍ଷା କରିଥିବେ । ମୁଁ କେବଳ ବିଦେଶରୁ ଆସିଥିବା ଜଣେ ବ୍ୟବସାୟୀ ବନ୍ଧୁଙ୍କୁ ଗୀର୍ଜା ବୁଲାଇ ଦେଖାଇବାକୁ ଅସିଥିଲି ।'

'ବେଶ୍, ତାହେଲେ ଯାଅ ।' କେ'ର ହାତ ଧରିବାକୁ ନିଜର ହାତବଢ଼ାଇ ପୁରୋହିତ କହିଲେ ।

''କିନ୍ତୁ ଏ ଅନ୍ଧାରରେ ଯେ ମୁଁ ମୋ ବାଟ ପାଇପାରିବି ନାହିଁ ।' କେ' କହିଲା ।

'ବାମକୁ ବୁଲିପଡ଼ । କାନ୍ଥକୁ ନଛାଡ଼ି ତାରି କଡ଼େ କଡ଼େ ଯାଅ । ତୁମେ ଗୋଟିଏ ଦ୍ୱାର ପାଖରେ ପହଞ୍ଚିବ ।' ପୁରୋହିତ କହିଲେ । ପୁରୋହିତ ସେତେ-ବେଳକୁ କେ' ପାଖରୁ ଗୋଟେ ଦୁଇଟା ପାଦ ଦୂରକୁ ଯାଇ ସାରିଥିଲେ କିନ୍ତୁ ବଡ଼ ପାଟିରେ କେ' ଡ଼ାକିଉଠିଲା—'ଦୟାକରି ଟିକିଏ ଅପେକ୍ଷା କରନ୍ତୁ ।'

Digitized by srujanika@gmail.com

'ମୁଁ ଅପେକ୍ଷା କରୁଛି ।' ପୁରୋହିତ କହିଲେ ।

'ମୋ ପାଖରୁ ଆପଣ କ'ଣ ଆଉ ଅଧିକ କିଛି ଚାହାଁନ୍ତି ନାହିଁ ?' କେ' ପଚାରିଲା ।

'ନା' ପୁରୋହିତ କହିଲେ ।

'କିଛି ସମୟ ପାଇଁ ଆପଣ ମୋ ପାଖରେ କେତେ ମେଲାପି ହୋଇଥିଲେ । ମୋତେ ନିଜର କରି କେତେ କଥା ବୁଝାଇଥିଲେ । କିନ୍ତୁ ବର୍ତ୍ତମାନ ଆପଣ ମୋତେ ଛାଡ଼ି ଯାଉଛନ୍ତି ଯେମିତି ମୋପାଇଁ ଆପଣଙ୍କର କିଛି ଯାଏ ଆସେ ନାହିଁ ।' କେ' କହିଲା ।

"କିନ୍ତୁ ତୁମକୁ ବର୍ତ୍ତମାନ ଯିବାକୁ ପଡ଼ିବ ।' ପୁରୋହିତ କହିଲେ ।

'ଆଚ୍ଛା ଠିକ୍ ଅଛି । ଆପଣ ନିଶ୍ଚୟ ଦେଖିପାରିବେ ଯେ ମୁଁ ନିରୁପାୟ ।' କେ' କହିଲା ।

'ପ୍ରଥମେ ତୁମର ନିଶ୍ଚୟ ଜାଣିବା ଉଚିତ୍ ଯେ ମୁଁ କିଏ ?'

'ଆପଣ ବନ୍ଦୀଶାଳାର ପୁରୋହିତ ।' ଅନ୍ଧାରରେ ଅଣ୍ଡାଳି ଅଣ୍ଡାଳି କେ' ପୁରୋହିତଙ୍କ ପାଖକୁ ଆଉଥରେ ଆସିବାକୁ ଚେଷ୍ଟା କରୁଥିଲା । ବର୍ତ୍ତମାନ ସାଙ୍ଗେ ସାଙ୍ଗେ ବ୍ୟାଙ୍କ୍‌କୁ ଫେରିଯିବା ତାପାଇଁ ଦରକାର ନାହିଁ । କାରଣ ବେଶ୍ ବିଳମ୍ବ ପର୍ଯ୍ୟନ୍ତ ସେ ଏଠାରେ ରହିଯାଇପାରେ ।

'ତାର ଅର୍ଥ ମୁଁ କୋର୍ଟ ସହ ସମ୍ପୃକ୍ତ ।' ପୁରୋହିତ କହିଚାଲିଲେ । 'ତେଣୁ ତୁମ ପାଖରୁ ମୁଁ କାହିଁକି କ'ଣ ଚାହିଁବ ? କୋର୍ଟ ତୁମ ପାଖରୁ କିଛି ଚାହେଁ ନାହିଁ । ତୁମେ ଯେତେବେଳେ ଆସ ତୁମକୁ ସେ ସ୍ୱାଗତ କରେ, ତୁମେ ଯେତେବେଳେ ଯାଅ ତୁମକୁ ସେ ବହିଷ୍କାର କରେ ।'



Digitized by srujanika@gmail.com

## ଦଶମ ପରିଚ୍ଛେଦ

# ସମାପ୍ତି

କେ'ର ଏକତ୍ରିଂଶତମ ଜନ୍ମଦିନର ପୂର୍ବ ସନ୍ଧ୍ୟା । ସମୟ ନ'ଟା । ରାସ୍ତାରେ ସେତେବେଳେ ଏକ ନୀରବତା ଛାଇ ଯାଇଥାଏ । ଦୁଇଜଣ ଲୋକ କେ'ର ବସା ଘରକୁ ଆସିଲେ । ଫ୍ରକ୍ କୋଟ୍ ଆଉ କାଟିନହେବା ଭଳି ଲମ୍ବା ଟୋପି ପିନ୍ଧି ସେମାନେ ମୋଟା ଆଉ କଦର୍ଯ୍ୟ ଦିଶୁଥିଲେ । ଚଳିଆସୁଥିବା କେତେକ ପ୍ରଥାକୁ ପ୍ରଥମ ଦ୍ୱାର ପାଖରେ କରିସାରିଲା ପରେ କେ'ର ଦ୍ୱାର ପାଖରେ ସେସବୁକୁ ଆଉ ଥରେ ଅଧିକ ବିସ୍ତୃତ ଭାବରେ ଦୋହରାଇଲେ । ସେମାନଙ୍କ ଆସିବା ସମ୍ପର୍କରେ କିଛି ନଜାଣି ସୁଦ୍ଧା କଳା ପୋଷାକ ପିନ୍ଧି ଦ୍ୱାର ପାଖ ଗୋଟିଏ ଆରାମ ଚଉକିରେ କେ' ବସିଥିଲା । ବସିବସି ହଳେ ନୂଆ ଦସ୍ତାନକୁ ଧୀରେ ଧୀରେ ହାତରେ ଗଳାଉ ଥିଲା । ତା ଆଙ୍ଗୁଳିକୁ ସେ ଦସ୍ତାନ ବଡ଼ ଯାକଯ୍ୟକ ହେଉଥାଏ । ହାତରେ ଦସ୍ତାନ ଗଳାଉଥିଲା ବେଳେ ସେ ବାହାରକୁ ଚାହିଁଥାଏ । ଯେମିତିକି କୌଣସି ଅତିଥିକୁ ଅପେକ୍ଷା କରି ବସିଛି । ସେ ହଠାତ୍ ଠିଆ ହୋଇପଡ଼ିଲା ଆଉ କୌତୂହଳତା ସହ ସେ ଦୁଇଜଣ ଭଦ୍ରଲୋକଙ୍କୁ ଦେଖିବାରେ ଲଗିଲା । 'ତାହାହେଲେ ଆପଣମାନେ ମୋ ପାଖକୁ ଆସିଛନ୍ତି ।' କେ' ପଚାରିଲା । ଭଦ୍ରଲୋକ ଦୁଇଜଣ ମୁଣ୍ଡ ନୁଆଁଇଲେ । ଲମ୍ବା ଟୋପିକୁ ଧରିଥିବା ହାତରେ ଉଭୟେ ଉଭୟଙ୍କୁ ଦେଖାଇ ଦେଲେ । କେ' ତାଙ୍କ ଆଗରେ ସ୍ୱୀକାର କଲା ଯେ ସେ ଭିନ୍ନ ଆଗନ୍ତୁକଙ୍କୁ ଆଶା କରୁଥିଲା । ଝରକା ପାଖକୁ ଯାଇ ଅନ୍ଧାରୁଆ ରାସ୍ତାକୁ ସେ ଆଉଥରେ ଚାହିଁଲା । ଅନେକ ଝରକାରେ ପର୍ଦ୍ଦା ଝୁଲୁଥିଲା । ଆଲୁଅ ଜଳୁଥିବା ଭଡ଼ା ଘରଟିର ଗୋଟିଏ ଝରକାର ରେଲିଂ ସେପଟେ କେତୋଟି ଛୋଟ ଛୁଆ ଖେଳୁଥିଲେ । ଯଦିଓ ସେମାନେ ତାଙ୍କ ବସିବା ଜାଗାରୁ ଉଠି ପାରୁନଥିଲେ ତଥାପି ସେମାନେ ପ୍ରତ୍ୟେକେ ପ୍ରତ୍ୟେକଙ୍କ ଆଡ଼କୁ ସେମାନଙ୍କ ଛୋଟ ଛୋଟ ହାତ ବଢାଉଥିଲେ । 'ମୋ ପାଇଁ ସେମାନେ ଦଶମ ସ୍ତରର ପୁରୁଣା ଅଭିନେତାଙ୍କୁ ପଠାଇଛନ୍ତି ।' କେ' ନିଜକୁ ନିଜେ କହିଲା ଏବଂ ନିଜ ଧାରଣାର ସତ୍ୟକୁ ପ୍ରତିପାଦିତ କରିବାପାଇଁ ଆଉଥରେ ପୁଣି ଚାହିଁଲା । 'ସେମାନେ

Digitized by srujanika@gmail.com

ଶସ୍ତାରେ ମୋତେ ଶେଷ କରିବାକୁ ଚାହାଁନ୍ତି ।' ଏତକ କହି ସେ ହଠାତ୍ ସେ ଦୁଇଜଣଙ୍କ ଆଡ଼କୁ ବୁଲିପଡ଼ିଲା ଆଉ ପଚାରିଲା । 'କେଉଁ ଥିଏଟର୍‌ରେ ଆପଣମାନେ ଅଭିନୟ କରୁଛନ୍ତି ?'

'ଥିଏଟର ?' ଜଣେ କହିଲା । ତା ମୁହଁର ଗୋଟିଏ କୋଣ କେମିତି ଟିକିଏ କୁଞ୍ଚିଗଲା । ସେତେବେଳେ ସେ ଆଉ ଲୋକଟା ଆଡ଼କୁ ଉପଦେଶ ପାଇଁ ଚାହିଁଲା । ଅନ୍ୟ ଲୋକଟି କିନ୍ତୁ ଗୋଟିଏ ଅସୁବିଧାକୁ ଏଡ଼ାଇବା ପାଇଁ ଚେଷ୍ଟା କରୁଥିବା ଗୋଟିଏ ବୋକାର ଅଭିନୟ କଲା ।

'ସେମାନେ କୌଣସି ପ୍ରଶ୍ନର ଉତ୍ତର ଦେବାକୁ ପ୍ରସ୍ତୁତ ନୁହଁନ୍ତି ।' ନିଜକୁ ନିଜେ ଏତକ କହି କେ' ତାର ଟୋପି ଆଣିବାକୁ ଗଲା ।

ସିଡ଼ିରେ ଗଲାବେଳେ ସେ ଦୁଇଜଣ କେ'ର ବାହୁକୁ ଧରିବାକୁ ଚେଷ୍ଟା କରୁଥିଲେ । କେ' କହିଲା—'ରାସ୍ତାରେ ପହଞ୍ଚିବା ପର୍ଯ୍ୟନ୍ତ ଅପେକ୍ଷା କର । ମୁଁ ପଙ୍ଗୁ ନୁହେଁ ।' କିନ୍ତୁ ଠିକ୍ ରାସ୍ତାପାଖ ଦ୍ୱାରରେ ପହଞ୍ଚିବା ପୂର୍ବରୁ ସେମାନେ ତାକୁ ସେମାନଙ୍କ ସହ ଏମିତି ବାନ୍ଧି ଦେଲେ ଯେ ଏହାପୂର୍ବରୁ ଏପରି ଅନୁଭୂତି ତାର କେବେ ହୋଇନଥିଲା । ତା କାନ୍ଧର ଠିକ୍ ପଛକୁ ଲଗାଇ ସେମାନେ ସେମାନଙ୍କ କାନ୍ଧକୁ ରଖିଲେ । ସେମାନେ ତାଙ୍କ କହୁଣୀକୁ ବଙ୍କା ନକରି ତାଙ୍କ ବାହୁକୁ ତା ବାହୁ ସହ ପୂରା ଲମ୍ବାଇ ଛନ୍ଦିଦେଲେ । ଏପରି କଲାବେଳେ ସେମାନେ ତାର ହାତକୁ ରୀତିମତ ଅଭ୍ୟାସ କରିଥିବା ରୀତିରେ ଶକ୍ତ ମୁଠା କରି ଧରିଲେ । ସେ ଦୁଇ ଜଣଙ୍କ ମଝିରେ କେ' ଶକ୍ତ ହୋଇ ଚାଲିଥାଏ । ସେ ତିନିଜଣ ବର୍ତ୍ତମାନ ଗୋଟିଏ ଏକକରେ ବନ୍ଧା । ସେମାନଙ୍କ ଭିତରୁ ଜଣେ ଟିକିଏ ହଲିଲେ ତିନିଜଣ ଯାକ ସମସ୍ତେ ଏକାସାଙ୍ଗରେ ତଳେ ପଡ଼ିବେ । ଏପରି ଏକତା କେବଳ ନିର୍ଜୀବ ବସ୍ତୁ ବ୍ୟତୀତ ଆଉ କେଉଁଠି ସମ୍ଭବ ନୁହେଁ ।

ରାସ୍ତାର ବତିଖୁଣ୍ଟ ତଳେ କେ' ଅନେକଥର ତାର ସାଙ୍ଗମାନଙ୍କୁ ଭଲକରି ନିକଟରୁ ଦେଖିବାକୁ ଚେଷ୍ଟା କରୁଥାଏ । ଅବଶ୍ୟ ଏତେ ପାଖରୁ ଏପରି ଦେଖିବା ଖୁବ୍ କଷ୍ଟକର । ତଥାପି ତା' କୋଠରୀର ଅନ୍ଧାର ଅପେକ୍ଷା ରାସ୍ତା ଆଲୁଅରେ ଆଉ ଟିକିଏ ଭଲ କରି ଦେଖିବା ହୁଏତ ସମ୍ଭବ ।

'ବୋଧହୁଏ ସେମାନେ ଗୀତ ଗାଇବାବାଲା ହୋଇଥିବେ ।' ସେମାନଙ୍କର ମୋଟା ଦୁଇ ଥଙ୍ଗିଆ ଚିବୁକକୁ ଦେଖି କେ' ଭାବିଲା । ସେମାନଙ୍କ ମୁହଁର ଯନ୍ତ୍ରଣା-ଦାୟକ ଭାବେ ପରିଚ୍ଛନ୍ନତା ତା' ମନରେ କେମିତି ବିତୃଷ୍ଣା ସୃଷ୍ଟି କଲା । ସେ ପରିଷ୍କାର ଭାବରେ ଲକ୍ଷ୍ୟ କରି ପାରୁଥିଲା ଯେ ସେମାନଙ୍କ ହାତ ଆଖି କୋଣକୁ

Digitized by srujanika@gmail.com

ସଫା କରିବାରେ, ଲୁହର ଓଠକୁ ଘଷିବାରେ ପୁଣି ଚିବୁକର ଗାରଗୁଡ଼ିକୁ ଦଳିବାରେ ବ୍ୟସ୍ତ ।

ଏଇକଥା ଯେତେବେଳେ କେ' ମନକୁ ଆସିଲା ସେ ଠିଆ ହୋଇଗଲା । ଫଳତଃ ଅନ୍ୟ ଦୁଇଜଣ ମଧ୍ୟ ଅଟକି ଗଲେ । ସେମାନେ ଫୁଲ୍ ଭର୍ତ୍ତି ଗୋଟିଏ ନିର୍ଜନ ଛକ ପାଖରେ ଠିଆ ହେଲେ 'ଏତେ ଲୋକ ଥାଉଁ ଥାଉଁ ସେମାନେ ତୁମମାନଙ୍କୁ କାହିଁକି ପଠାଇଲେ ?' ପ୍ରଶ୍ନ ଅପେକ୍ଷା ଏହା ଯେମିତି ଚିତ୍କାର ପରି ଜଣା ଯାଉଥିଲା । ଭଦ୍ରଲୋକଙ୍କର ଅବଶ୍ୟ କୌଣସି ଉତ୍ତର ଦେବାର ନଥିଲା । ସେମାନଙ୍କର ଖୋଲା ହାତକୁ ଝୁଲାଇ ସେମାନେ ଖାଲି ଠିଆ ହେଲେ ଯେମିତିକି ରୋଗୀଟିଏ ବିଶ୍ରାମ ନେଉଥିଲା ବେଳେ ତାକୁ ଜଗିଥିବା ଲୋକମାନେ ଚୁପ୍‌ଚାପ୍ ଠିଆ ହୁଅନ୍ତି । ପରୀକ୍ଷା କରିବା ପାଇଁ କେ' ପଚାରିଲା—'ମୁଁ ଆଉ ଆଗକୁ ଯିବି ନାହିଁ ।' ଏଥିପାଇଁ କୌଣସି ଉତ୍ତର ଦେବାକୁ ପଡ଼ିଲା ନାହିଁ । ସେ ଦୁଇଜଣ ଲୋକ ତାଙ୍କ ମୁଠାକୁ ଢିଲା କରି ନଥିଲେ । ତେଣୁ ସେହି ସ୍ଥାନରୁ କେ'କୁ ଆଗକୁ ଟାଣିନେବା ପାଇଁ ତାଙ୍କ ପକ୍ଷରେ ଅତି ସହଜ । କିନ୍ତୁ ସେମାନଙ୍କୁ କେ' ବାଧା ଦେଲା । 'ଶକ୍ତି ମୋର ଆଉ କଅଣ ଦରକାର ହେବ ? ମୋର ଯାହା ବଳ ଅଛି ସବୁ ଆଜି ସାରି ଦେବି ।' ସେ ଭାବିଲା ଅଠା କାଗଜରେ ଲାଗି ଛଟପଟ ହେଉଥିବା ମାଛିଟିର ଛବି ତା ମନକୁ ଆସିଲା । 'ମୋତେ ନେବାକୁ ଭଦ୍ରଲୋକମାନଙ୍କ ପକ୍ଷରେ ଏତେ ସହଜ ହେବନି ।'

କିଛି ସମୟ ପରେ ଫ୍ରଲିନ୍ ବାର୍ସନାର୍ ସେମାନଙ୍କ ଆଗରେ ଆସି ପହଞ୍ଚିଲା । ପାଖ ରାସ୍ତାରୁ ଛକ ଉପରକୁ ଉଠିଥିବା ଛୋଟ ଛୋଟ ସରୁ ପାହାଚଗୁଡ଼ିକରେ ଉଠି ଉଠି ସେ ପହଞ୍ଚିଲା । ସେ ଯେ ଫ୍ରଲିନ୍ ସେ ବିଷୟରେ କେ' ନିଶ୍ଚିତ ନଥିଲା । ତଥାପି ଫ୍ରଲିନ୍ ସହିତ ଆଗନ୍ତୁକଟିର ସାମଞ୍ଜସ୍ୟ ଖୁବ୍ ଅଧିକ । ଲୋକଟି ଫ୍ରଲିନ୍ ହେଉ ବା ନହେଉ ସେଥିରେ କେ'ର ବେଶୀ କିଛି ଯାଏଆସେ ନାହିଁ । ତା' ପାଖରେ ବଡ଼କଥା ହେଲା ସେ ବର୍ତ୍ତମାନ ତା ବାଧା ଦେବାର ଅର୍ଥହୀନତାକୁ ବୁଝିପାରିଲା । ବର୍ତ୍ତମାନ ସେ ଯଦି ବାଧାଦିଏ, ତା' ସାଙ୍ଗରେ ଆସୁଥିବା ଲୋକମାନଙ୍କ ପାଇଁ ଯଦି ଅସୁବିଧା ସୃଷ୍ଟି କରେ, ଜୀବନର ଶେଷ ଝଲକକୁ ସଂଘର୍ଷ କରି ଧରି ରଖିବାକୁ ଚେଷ୍ଟା କରେ ତେବେ ସେଥିରେ କିଛି ଗୌରବ ନାହିଁ । ବୀରତ୍ୱର ଭୂମିକା ରହିବ ନାହିଁ । ସେ ଚାଲିବାରେ ଲାଗିଲା । ଏଥିଯୋଗୁଁ ତା ଓ୍ୱାଡ଼ର୍‌ମାନେ ଯେଉଁ ଆଶ୍ୱସ୍ତି ଅନୁଭବ କଲେ ତାହା ତା' ପାଖକୁ ବି ସଞ୍ଚରି ଆସିଲା । ବାଟ କଢ଼େଇ ନେବା ପାଇଁ ସେମାନେ ତାକୁ ବାଧ୍ୟ କଲେ । ତେଣୁ ତା ଆଗରେ ବାଟ ଦେଖାଇ ଯାଉଥିବା ଝିଅଟିକୁ କେ' ଖାଲି ଅନୁସରଣ କରିବାରେ ଲାଗିଲା । ଝିଅଟିକୁ କେବେ ଟପିଯିବାକୁ ସେ ଚାହୁଁ ନଥିଲା କିମ୍ବା ଯେତେଦୂର ସମ୍ଭବ ତାକୁ ନଜର ଭିତରେ

Digitized by srujanika@gmail.com

ରକ୍ଷିବାକୁ ବି ଚାହୁଁ ନଥିଲା । ସେ କେବଳ ଏତିକି ଚାହୁଁଥିଲା ଯେ ଝିଅଟି ଦେଇଥିବା ଶିକ୍ଷା ଯେମିତି ସେ ଭୁଲି ନଯାଏ ।

'ବର୍ତ୍ତମାନ କେବଳ ମୁଁ ଗୋଟିଏ ଜିନିଷ କରିପାରିବି ।' କେ' ଭାବିଲା । ତା' ପାଦ ଶବ୍ଦ ସହ ତାଳ ଦେଇ ପଡୁଥିବା ଅନ୍ୟ ଦୁଇଜଣଙ୍କର ପାଦଶବ୍ଦର ବିଜନମସ୍କ ତାର ଚିନ୍ତାଧାରାକୁ ଅଧିକ ଜାଗ୍ରତ କଲା । 'ଯେଉଁ ଗୋଟିଏ ଜିନିଷ ମୋ ପାଇଁ ମୋତେ କରିବାକୁ ପଡ଼ିବ ତାହା ହେଉଛି ଶେଷ ପର୍ଯ୍ୟନ୍ତ ମୋ ମନକୁ ଧୀର ଶାନ୍ତ ଆଉ ବିଶ୍ଳେଷଣାତ୍ମକ କରି ରଖିବାକୁ ପଡ଼ିବ । କୋଡ଼ିଏଟି ହାତ ନେଇ ଏ ପୃଥିବୀକୁ ଜାବୁଡ଼ି ଧରିବାକୁ ମୁଁ ଚାହିଁଥିଲି । ଏପରି ଚାହିଁବାରେ ଅବଶ୍ୟ କିଛି ପ୍ରଶଂସନୀୟ କାରଣ ନଥିଲା । ସେମିତି କରିବା ମୋ' ପକ୍ଷରେ ଭୁଲ ହୋଇଥିଲା । ମୋତେ କଅଣ ବର୍ତ୍ତମାନ ଦେଖାଇ ଦେବାକୁ ପଡ଼ିବ ଯେ ଏମିତିକ ଗୋଟିଏ ବର୍ଷର ବିଚାର ମଧ୍ୟ ମୋତେ କିଛି ଶିଖାଇ ପାରିନାହିଁ ? ସାଧାରଣଜ୍ଞାନ ନଥିବା ଜଣେ ଲୋକପରି ମୋତେ କଅଣ ଏ ପୃଥିବୀକୁ ଛାଡ଼ିଯିବାକୁ ପଡ଼ିବ ? ମୋ' ଚାଲିଯିବା ପରେ ଲୋକମାନେ କହିବେ ଯେ ଲୋକଟା ବିଚାରର ଆରମ୍ଭ ବେଳେ ତାକୁ ପାରିଦେବାକୁ ବସିଥିଲା ଆଉ ବିଚାରର ଶେଷ ବେଳକୁ ଅଉଥରେ ତାକୁ ଆରମ୍ଭ କରିବାକୁ ଚାହିଁଥିଲା ? ମୋ' ବିଷୟରେ ଏମିତି କୁହାଯାଉ ଏକଥା ମୁଁ ଚାହେଁ ନାହିଁ । ମୁଁ କୃତଜ୍ଞ ଯେ ମୋ' ସାଙ୍ଗରେ ଯିବା ପାଇଁ ଏପରି ଅଧାବୋବା କାଣ୍ଡଜ୍ଞାନ ଶୂନ୍ୟ ଏପରି ଜୀବମାନଙ୍କୁ ପଠାଯାଇଛି ଯା' ଫଳରେ କି ମୋର ଯାହା ଦରକାର ମୁଁ ମୋତେ କହି ପାରୁଛି ।'

ଫ୍ରାଲିନ୍ ବାର୍ଷନାର୍ ଏତେବେଳକୁ ପାଖ ରାସ୍ତାର ବାଙ୍କ ପାଖକୁ ଚାଲି-ଗଲାଣି । ଏତେବେଳକୁ କେ' ପାଇଁ ବାର୍ଷନାର୍‌ର ସାହାଯ୍ୟ ଦରକାର ନଥିଲା । ବାଟ କଢ଼ାଇବା ପାଇଁ କେ' ତାର ଜଗୁଆଳମାନଙ୍କ ପାଖରେ ନିଜକୁ ସମର୍ପି ଦେଇଥିଲା । ଜହ୍ନ ଆଲୁଅରେ ତାଳ ପକାଇ ତିନିଜଣ ପୋଲ୍ ଉପରଦେଇ ଆଗେଇ ଚାଲିଲେ । କେ' ଟିକିଏ ଏପାଖ ସେପାଖ ହେଲେ ଆର ଦୁଇଜଣ ଖୁବ ବ୍ୟସ୍ତ-ହୋଇ ପଡୁଥିଲେ । ଯେତେବେଳେ କେ' ପୋଲର ବାଡ଼ା ଆଡ଼କୁ ସାମାନ୍ୟ ଚାଲି ଆସୁଥିଲା ସେମାନେ ତା ସାମ୍ନାକୁ ଚାଲିଆସୁଥିଲେ । ଜହ୍ନ ଆଲୁଅରେ ଥରିଲା ନଈ ପାଣି ଝଟକୁ ଥିଲା । ଗୋଟିଏ ଗ୍ରେଟ ଦ୍ୱୀପର ଦୁଇପଟ ଦେଇ ବହି ଯାଉଥିଲା । ସେଇ ଦ୍ୱୀପଟିରେ ବୁଦା ଆଉ ଗଛଗୁଡ଼ିକ ଭାରି ଗହଳ ହୋଇ ବଢ଼ିଥିଲେ । ମନେ ହେଉଥିଲା ଯେମିତିକି ସବୁ ଏକା ସଙ୍ଗରେ ଛନ୍ଦା ଛନ୍ଦି ହୋଇଛନ୍ତି । ଗଛତଳେ ଗୋଡ଼ରାସ୍ତା ଲମ୍ବି ଯାଇଥାଏ । ବର୍ତ୍ତମାନ ଆଉ ସେସବୁ ଦିଶୁନଥିଲା । ସେଇ ରାସ୍ତାର ଦୁଇ କଡ଼ରେ ପଡ଼ିଥିବା ବେଞ୍ଚ୍ ଉପରେ କେ' ଖରାଦିନରେ ଅନେକଥର ଆରାମରେ ବସିଛି ।

Digitized by srujanika@gmail.com

‘ମୁଁ ଅଟକ ଯିବାକୁ ଚାହୁଁ ନଥିଲି ।’ କେ’ ତାର ସହଚରମାନଙ୍କୁ କହିଲା । କେ’ର ପଛରେ ଜଣେ ଅନ୍ୟଜଣଙ୍କୁ ଗାଳି ଦେବାର ଜଣାଗଲା । ଗାଳି ଦେବାର କାରଣ କେବଳ ଭୁଲ୍‌ବଶତଃ ସେମାନେ ଠିଆ ହୋଇଯାଇଥିଲେ ବୋଲି । ତା’ପରେ ସେ ତିନିଜଣ ପୁଣି ଆଗେଇ ଚାଲିଲେ ।

ଅନେକ ଗଳି ରାସ୍ତା ଦେଇ ସେମାନେ ଆଗେଇ ଚାଲିଲେ । ସେ ରାସ୍ତା-ମାନଙ୍କରେ ପୋଲିସ୍ ଲୋକସବୁ ମଝିରେ ମଝିରେ ପହଁରା ମାରୁଥିଲେ । କେତେବେଳେ ଖୁବ୍ ଦୂରରେ ପୁଣି କେତେବେଳେ ଖୁବ୍ ପାଖରେ ସେମାନେ ଦିଶୁଥିଲେ । ବାଘୁଆ ଢଙ୍ଗ ଥିବା ଜଣେ ପୋଲିସ୍ ତା ଖଣ୍ଡାର ମୂଠା ଉପରେ ହାତରଖି କୌଣସି ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ନେଇ ନିହାତି ନିଶ୍ଚିନ୍ତ ଦିଶୁଥିବା ଏହି ଦଳଟି ଆଡ଼କୁ ଆଗେଇ ଆସିଲା । ସେ ଦୁଇଜଣ ଭଦ୍ରଲୋକ ଠିଆ ହେଲେ । ପୋଲିସ୍ କଣ କହିବା ଭଳି ମନେ ହେଉଥିଲା । କେ’ ଜବରଦସ୍ତ ତା ସହଚରମାନଙ୍କୁ ଆଗକୁ ପେଲି-ଦେଲା । ପୋଲିସ୍‌ଟି ସେମାନଙ୍କୁ ଅନୁସରଣ କରୁଛି କି ନାହିଁ ଏହା ସେ ସତର୍କତାର ସହିତ ଲକ୍ଷ୍ୟ କରୁଥିଲା ।

ପୋଲିସ୍ ଆଉ ତା ଭିତରେ ଯେତେବେଳେ ସାମାନ୍ୟ ଦୂରତା ଆସିଗଲା କେ’ ଦଉଡ଼ିବାକୁ ଲାଗିଲା । ତାର ଦୁଇଜଣ ସହଚର ମଧ୍ୟ ଅଣନିଶ୍ୱାସୀ ହୋଇ ଧାଇଁବାକୁ ଲାଗିଲେ ।

ତେଣୁ ଖୁବ୍ ଜଲ୍‌ଦି ସେମାନେ ସହର ବାହାରକୁ ଚାଲିଆସିଲେ । ଏଠାରେ ବିନା ବାଧାରେ ସହର ମୁକ୍ତ ପ୍ରାନ୍ତର ସହ ମିଶିଯାଇଛି । ପାଖରେ ଗୋଟିଏ ନିଛାଟିଆ ପଥର ଖାଦାନ । ଖାଦାନ ପାଖରେ ଖୁବ୍ ନିଛାଟିଆ ଗୋଟିଏ ସହର ଘର । ଏଇଠାରେ ସେ ଦୁଇଜଣ ନିଶ୍ଚଳ ହୋଇ ଠିଆ ହେଲେ । ଏହି ଘରଟି ହୁଏତ ତାଙ୍କର ଲକ୍ଷ୍ୟ ଥିଲା । କିମ୍ବା ସେମାନେ ଏତେ କ୍ଳାନ୍ତ ହୋଇ ପଡ଼ିଲେ ଯେ ଆଉ ଚାଲି ପାରିଲେ ନାହିଁ । ଚୁପ୍‌ଚାପ୍ ଠିଆ ହୋଇଥିବା କେ’ ଉପରୁ ସେମାନେ ତାଙ୍କ ହାତମୁଠାକୁ କୋହଳ କରିଦେଲେ । ମୁଣ୍ଡରୁ ସେମାନେ ତାଙ୍କ ଲମ୍ବା ଟୋପିକୁ କାଢ଼ିଦେଲେ ଓ ରୁମାଲ୍‌ରେ କପାଳରୁ ଝାଳ ପୋଛିଲେ । ଏସବୁ କରୁଥିଲା ବେଳେ ସେମାନେ ପଥର ଖାଦାନଟିକୁ ଲକ୍ଷ୍ୟ କରୁଥିଲେ । ସବୁ ବସ୍ତୁ ଉପରେ ନୀରବ ଜହ୍ନ ଆଲୁଅ ଶାନ୍ତ ଭାବରେ ପଡ଼ୁଥିଲା । ଜହ୍ନ ଆଲୁଅ ଏଡ଼େ ସୁନ୍ଦର ପଡ଼ୁଥିଲା ଯେ ଆଉ କୌଣସି ଆଲୁଅ ଏପରି ପଡ଼ିବ ନାହିଁ ।

ସେମାନଙ୍କ କାର୍ଯ୍ୟକଳାପରୁ ଜଣାପଡୁଥିଲା ଏହି ଦୁଇବ୍ୟକ୍ତିଙ୍କୁ ନିର୍ଦ୍ଦିଷ୍ଟ ଦାୟିତ୍ୱ କିଛି ଦିଆ ହୋଇନଥିଲା । ତେଣୁ ସେମାନେ ନିଜ ଭିତରେ ତାଙ୍କର କାର୍ଯ୍ୟକ୍ରମ ଠିକ୍ କରୁଥିଲେ । ପରବର୍ତ୍ତୀ କାର୍ଯ୍ୟକ୍ରମରେ ସେମାନଙ୍କ ଭିତରୁ କିଏ ଅଗ୍ରଣୀ ହେବ

Digitized by srujanika@gmail.com

ସେ ବିଷୟରେ ସାମାନ୍ୟ ଆଲୋଚନା ପରେ ଜଣେ କେ' ପାଖକୁ ଆଗେଇ ଆସିଲା ଏବଂ ତାର କୋଟ୍, ଫତେଇ ଏବଂ ଶେଷରେ ତାର ସାର୍ଟକୁ ଖୋଲିଦେଲା । ତା ଅଜାଣତରେ ସେ ଥରିବାକୁ ଲାଗିଲାବେଳେ ତାକୁ ସାନ୍ତ୍ୱନା ଦେବାପାଇଁ ଲୋକଟି କେ'ର ପିଠି ଆଉଁଷିଲା । ତାପରେ ତାର ପୋଷାକଗୁଡ଼ିକୁ ଏକାସଙ୍ଗରେ ସଜାଡ଼ି ରଖିଲା ଯେମିତିକି ଆଉ କେତେବେଳେ ସେଗୁଡ଼ିକ ଦରକାରରେ ଆସିବ । ପଥରର କଣକଣିଆ ଥଣ୍ଡା ପବନରେ କେ' ନିଶ୍ଚଳ ହୋଇ ଠିଆ ହୋଇଥିଲା । ତାକୁ ଏକୁଟିଆ ଛାଡ଼ି ନଯିବାପାଇଁ ଲୋକଟି କେ'ର ଗୋଟିଏ ହାତକୁ ଧରି ଏପାଖ ସେପାଖ ଟହଲିବାକୁ ଲାଗିଲା । ଲୋକଟି ଏପରି କରୁଥିଲାବେଳେ ତାର ସାଙ୍ଗଟି ପଥର ଖାଦାନଟିକୁ ପରୀକ୍ଷା କରି ଦେଖୁଥିଲା । ବୋଧହୁଏ ଭଲ ଜାଗାଟିଏ ଖୋଜୁଥିଲା । ଯେତେବେଳେ ତା ମନକୁ ପାଇଲାଭଳି ଜାଗାଟିଏ ପାଇଗଲା ସେ ତା ସାଙ୍ଗକୁ ଡାକିଲା । ସେ କେ'କୁ ଧରି ସେଠାରେ ପହଞ୍ଚିଲା । ଖାଲ ଚଟ୍ଟାଣ ପାଖରେ ସେ ଜାଗାଟି । ସେଠାରେ ଗୋଟିଏ ଅଲଗା ପଥରଖଣ୍ଡ ପଡ଼ିଥିଲା । ସେ ଦୁଇଜଣ କେ'କୁ ଭୂଇଁ ଉପରେ ଶୁଆଇ ଦେଲେ । ପଥର ଉପରେ ତାକୁ ଆଉଜାଇ ଦେଇ ତା ମୁଣ୍ଡକୁ ପଥର ଦେହରେ ରଖିଦେଲେ । ବହୁତ କଷ୍ଟ ସ୍ୱୀକାର କରି ସେମାନେ ଏହା କରୁଥିଲେ । କେ' ମଧ୍ୟ ତାଙ୍କର ସବୁ କଥାକୁ ମାନି ନେଉଥିଲା । ତଥାପି ସେମାନେ ଯେତେବେଳେ ତାକୁ ଶୁଆଇ ଦେଲେ କେ'ର ଭଙ୍ଗୀରେ ସାମାନ୍ୟ ଅସ୍ୱାଭାବିକତା ଦେଖା ଦେଇଥିଲା । ଏହା ଦେଖି ଜଣେ ଅନ୍ୟ ଜଣକୁ କେ'ର ସବୁ କାମ ଛାଡ଼ିଦେବାକୁ ଅନୁରୋଧ କଲା । ଏହାସତ୍ତ୍ୱେ ବି ଅବସ୍ଥାରେ ଉନ୍ନତି ଦେଖା ଦେଲା ନାହିଁ । ଶେଷରେ ସେମାନେ କେ'କୁ ଗୋଟିଏ ଅବସ୍ଥାରେ ଶୁଆଇଦେଲେ । ଏ ଅବସ୍ଥାଟି କିନ୍ତୁ ସେମାନେ ପରୀକ୍ଷା କରିଦେଖିଥିବା ଭଙ୍ଗୀଗୁଡ଼ିକ ଠାରୁ ଭଲ ନୁହେଁ । ତାପରେ ଦୁଇଜଣଙ୍କ ଭିତରୁ ଜଣେ ନିଜର କୋଟ୍ ଖୋଲିଦେଲା, କମର-ପଟି ଦେହରେ ଝୁଲୁଥିବା ଖୋଳ ଭିତରୁ ଗୋଟିଏ ସରୁ ଲମ୍ବା ଦୁଇ ଧାରୁଆ କଂସେଇ ଛୁରୀ ବାହାର କଲା । ଛୁରୀଟିକୁ ଉପରକୁ ଟେକି ଧରି ଜହ୍ନ ଆଲୁଅରେ ସେ ତାର ଧାର ପରଖିବାକୁ ଲାଗିଲା । ପୁଣିଥରେ ବିରକ୍ତିକର ଉପଚାର ଆରମ୍ଭ ହେଲା । ପ୍ରଥମ ଜଣକ କେ' ଉପର ଦେଇ ଛୁରୀଟିକୁ ଦ୍ୱିତୀୟ ଜଣକ ପାଖକୁ ବଢ଼ାଇ ଦେଲା ଏବଂ ଦ୍ୱିତୀୟ ଜଣକ କେ' ଉପର ଦେଇ ଛୁରୀଟିକୁ ପ୍ରଥମ ଜଣକ ପାଖକୁ ଫେରାଇ ଦେଲା । କେ' ବର୍ତ୍ତମାନ ପରିଷ୍କାର ଜାଣିପାରିଲା ଯେ ତାଠୁଁ ଆଶା କରା-ଯାଉଥିଲା ଯେ ତା ଉପର ଦେଇ ଏପାଖ ସେପାଖ ହେଉଥିବା ଛୁରୀଟିକୁ ନିଜେ ଧରିନେଇ ନିଜ ଛାତିରେ ଭୁଷିଦେବ । କିନ୍ତୁ ସେ ତାହା କଲାନାହିଁ । ଏବେ ବି ବୁଲାଇ ପାରୁଥିବା ତା ମୁଣ୍ଡକୁ ଏପାଖ ସେପାଖ କରି ସେ ଘରପଟକୁ ଦେଖିବାକୁ ଲାଗିଲା । ଏପରି ଅବସ୍ଥାରେ ତାର ଯାହା କରିବା ଉଚିତ୍ ତା ସେ କରିପାରିଲା

ନାହିଁ । ଯେଉଁ କର୍ମସ୍ୱଗ୍ରମାନଙ୍କର ଯାହା ଯାହା କର୍ତ୍ତବ୍ୟ ତହିଁରୁ ସେ ଟିକିଏ ବି ଲଘବ କରିପାରିଲା ନାହିଁ । ତା ଜୀବନର ଏହି ଶେଷ ବିଫଳତା ପାଇଁ ଦାୟୀ ସେହି ବ୍ୟକ୍ତି ଯେ ଏପରି କାମ ପାଇଁ ଯେତିକି ଶକ୍ତି ଦରକାର ସେତିକି ତା ପାଖରେ ଆଉ ରହି ନଥିଲା । ପଥର ଖାଦାନକୁ ଲାଗିଥିବା ଘରର ଶେଷ ମହଲ ଉପରେ ତାର ନଜର ପଡ଼ିଲା । ହଠାତ୍ ଆଲୁଅ ଜଳି ଉଠିଲା ପରି ଗୋଟିଏ ଝଲକରେ ସେ ଘରର ଗୋଟିଏ ଝରକା ହଠାତ୍ ଖୋଲିଗଲା । ଦିଶିଲା ଗୋଟିଏ ମଣିଷର ଆକୃତି । ଏତେ ଦୂରରୁ ଆଉ ଏତେ ଉଚ୍ଚରୁ ସେ ଅସ୍ପଷ୍ଟ ଆଉ ଗ୍ଳଇଗ୍ଳଇକା ଦିଶୁ-ଥିଲା । ଦିଶୁଥିବା ସେ ମଣିଷଟି ଝରକା ଉପରେ ହଠାତ୍ ଖୁବ୍ ଆଗକୁ ନଇଁପଡ଼ିଲା ଆଉ ନିଜ ଦୁଇ ବାହୁକୁ ଆଗକୁ ଲମ୍ବାଇ ଦେଲା । ସେ କିଏ ? ଜଣେ ବନ୍ଧୁ ? ଜଣେ ଭଲ ମଣିଷ ? ଜଣେ ଯିଏ ସହାନୁଭୂତି ଦେଖାଇଲା ? ଜଣେ ଯିଏ ସାହାଯ୍ୟ କରିବାକୁ ଚାହେଁ ? ସେ କ'ଣ କେବଳ ଜଣେ ନା ସମସ୍ତେ ସେଠି ଥିଲେ ? ସାହାଯ୍ୟ କ'ଣ ଖୁବ୍ ହେଲାଣି ? ତାହା ସପକ୍ଷରେ କ'ଣ ଏପରି କିଛି ଯୁକ୍ତି ଅଛି ଯାହାକୁ ଅବହେଳା କରାଯାଇଥିଲା ? ଅବଶ୍ୟ ଥିବ । ଉଚିତ୍ ଯୁକ୍ତିକୁ ଟାଳେଇ ହେବ ନାହିଁ । ଏହା ନିଃସନ୍ଦେହ, ମାତ୍ର ବଞ୍ଚିରହିବାକୁ ଚାହୁଁଥିବା ଗୋଟିଏ ମଣିଷ ତାହା ଅଟକାଇ ପାରିବନାହିଁ । ଯେଉଁ ଜଜ୍ଙ୍କୁ ସେ କେବେ ଦେଖିନାହିଁ ସେ ବର୍ତ୍ତମାନ କେଉଁଠି ? କେଉଁଠି ସେ ହାଇକୋର୍ଟ ଯାହା ଭିତରକୁ ସେ କେବଳ ପଶି ନାହିଁ ? ସେ ତାର ହାତ ଉପରକୁ ଟେକିଲା ଓ ତାର ସବୁ ଆଂଗୁଳିଗୁଡ଼ିକୁ ମେଲାଇ ଦେଲା ।

କିନ୍ତୁ ସେତେବେଳକୁ ସେ ଦୁଇଜଣଙ୍କ ଭିତରୁ ଜଣକର ହାତ କେ'ର ତଣ୍ଟିକୁ ଧରିସାରିଥିଲା ଓ ଆରଜଣକ ତା ଛୁରିଟାକୁ କେ'ର ଗ୍ରୁଢରେ ହୃଦୟ ଭିତରକୁ ଦେଇ ଦୁଇଥର ବୁଲାଇଦେଲା । ବୁଜି ଆସୁଥିବା ଆଖିରେ କେ' ତଥାପି ସେ ଦୁଇଜଣଙ୍କୁ ତାର ଖୁବ୍ ନିକଟରେ ଦେଖିପାରୁଥିଲା । ଠିକ୍ ତା ମୁହଁ ଆଗରେ ସେ ଦୁହେଁ ତାଙ୍କ ଗାଲରେ ଗାଲ ଜୋଡି ଅନ୍ତିମ ଦୃଶ୍ୟଟିକୁ ନିରେଖି ଦେଖୁଥିଲେ । "ଗୋଟିଏ କୁକୁର ପରି"—ସେ କହିଲା । ବୋଧହୁଏ ତାର କଥାର ଅର୍ଥ ଏଇଆ ଯେ ସେ ମଲାପରେ ସେମାନେ ବଞ୍ଚିରହିବା ସେହିପରି ଲଜ୍ଜାକର ।



Digitized by srujanika@gmail.com